# ସ୍ମୃତି ଓ ସ୍ମାରକୀ

## କିଛି ଆଲେଖ୍ୟ, କିଛି ଅଭିବ୍ୟକ୍ତି

ଡକ୍ଟର ପ୍ରତିଭା ଶତପଥୀ



ବିଦ୍ୟାପୁରୀ

# ସ୍ମୃତି ଓ ସ୍ମାରକୀ
# କିଛି ଆଲେଖ୍ୟ, କିଛି ଅଭିବ୍ୟକ୍ତି

ଜାତୀୟକବୀର ସମ୍ମାନପ୍ରାପ୍ତା
ପ୍ରଫେସର ଡକ୍ଟର ପ୍ରତିଭା ଶତପଥୀ



ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ବିଦ୍ୟାପୁରୀ
ସ୍ଥାପିତ : ୧୯୬୧
ପ୍ରତିଷ୍ଠାତା : ପୀତାମ୍ବର ମିଶ୍ର

SMRUTI O SMĀRAKI
KICHHI ĀLEKHYA, KICHHI ABHIBYAKTI
[Some Memories, Speeches & Interviews]
by Prof. Dr. Prativa Satapathy
Published by Vidyapuri, Balubazar, Cuttack 753 002

ISBN 978-81-949054-0-0

ପ୍ରଥମ ପ୍ରକାଶ
ଡିସେମ୍ବର ୨୦୨୦

ପ୍ରକାଶକ
ଜୀବାନନ୍ଦ ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ବିଶ୍ୱନାଥ ଏଣ୍ଟରପ୍ରାଇଜେସ୍
ପ୍ଲଟ୍ ନଂ. 8/E, ଚନ୍ଦକା ଇଣ୍ଡଷ୍ଟ୍ରିଆଲ ଏରିଆ
ଭୁବନେଶ୍ୱର ୭୫୧ ୦୨୪

ମୂଲ୍ୟ ଟ ୧୯୦-୦୦

## ଉତ୍ସର୍ଗ

ଦିବଂଗତ ଓ ଜୀବିତ
ମୋର ପ୍ରିୟ
କେତେକ କବି,
ଲେଖିକା ଓ ଲେଖକଙ୍କୁ
ଶ୍ରଦ୍ଧା, ଭକ୍ତିର ସମର୍ପଣ...

**ପ୍ରତିଭା ଶତପଥୀ**

# ମୋର ଏଇ ଦି' ଧାଡ଼ି

ଏହି ପୁସ୍ତକଟିକୁ ପ୍ରକାଶ କରିବା ନିମିତ୍ତ ମୋର କିଛି ହିଁ ଯୋଜନା ନ ଥିଲା । କନୀୟାନ୍ କବିମାନେ ଜିଦ୍‌ଧରିଲେ, ଆପଣଙ୍କର ଏଇ ଗଦ୍ୟ ରଚନାଗୁଡ଼ିକ ଖୁବ୍ ମୂଲ୍ୟବାନ୍ । ଘଟଣାପ୍ରବାହ ସହ ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଓ ନିଜ ବକ୍ତବ୍ୟକୁ ନେଇ ଯାହା ଲେଖିଛନ୍ତି ସେଗୁଡ଼ିକୁ ପ୍ରକାଶ କରନ୍ତୁ । ମୋର ଯେ ଲେଖାଗୁଡ଼ିକ ଅଯତ୍ନରେ, ବାରମ୍ବାର ନିବାସ ପରିବର୍ତ୍ତନରେ କୁଆଡ଼େ ହଜିସାରିଛି । ଉପଯୁକ୍ତ ହେପାଜତ କରିପାରି ନାହିଁ । ପୁଣି ଅନେକ ପୁସ୍ତକ ବିଶିଷ୍ଟ ଲାଇବ୍ରେରୀମାନଙ୍କୁ ପ୍ରଦାନ କରିଛି । ଏଥିପାଇଁ ମନରେ ଦୁଃଖ ହୁଏତ ଆସିଛି— ମାତ୍ର ସ୍ଥାନାଭାବ ଯୋଗୁଁ ଏସବୁ ଘଟିଛି । ତଥାପି ସେମାନଙ୍କ ଆଗ୍ରହକୁ ମାନିନେଲି । ଯେତିକି ପାଖରେ ଅଛି-ଅଭିଜ୍ଞତା ହେଲା ଯେ, ଓଡ଼ିଆରେ ଭଲ ଡି.ଟି.ପି. କୁଶଳୀ ଏଣିକି ମିଳିବେ ନାହିଁ । ବିଦ୍ୟାପୁରୀର ୰ପୀତାମ୍ବର ମିଶ୍ର ବହିଟିକୁ ଛାପିବାକୁ ଆଗ୍ରହ ପ୍ରକାଶ କରିଥିଲେ । ଇତି ମଧ୍ୟରେ ସେ ଅସୁସ୍ଥ ହୋଇପଡ଼ିଥିଲେ । ବାଙ୍ଗାଲୋରରୁ ଫୋନ୍‌ରେ କହିଥିଲେ ଦୋକାନରେ ଦେଇଦିଅନ୍ତୁ । ମାତ୍ର ମୋର ସାହସ କୁଳାଇଲା ନାହିଁ, ସେ ନାହାନ୍ତି, ଫାଇଲଟି ଯଦି ସ୍ଥାନଚ୍ୟୁତ ହୋଇଯାଏ !

ଏହି ପୁସ୍ତକରେ 'ଆଲେଖ୍ୟ' ଓ 'ଅଭିବ୍ୟକ୍ତି' ବିଭାଗରେ କିଛିଟା ପୁନରୁକ୍ତି ରହିଛି । ମଣିଷ ତ ଜଣେ ମୁଁ, ପ୍ରସଙ୍ଗ ହେଲା 'କବିତା' । ତେଣୁ ମୋ ବକ୍ତବ୍ୟ ଓ ସାକ୍ଷାତକାରରେ କଦବା ପୁନରୁକ୍ତି ଆସିଛି ମାତ୍ର ଖଣ୍ଡାଂଶକୁ ପୂରଣ କରିବାରେ ସହାୟକ ହୋଇଛି ।

ଯେଉଁମାନେ ଚିର ଅମର, ସେମାନଙ୍କ ସ୍ମୃତି ଓ ମୋର ପ୍ରିୟବାନ୍ଧବୀ କେତେକଙ୍କ ପ୍ରତି ମୋର ଆନ୍ତରିକତା 'ସ୍ମୃତି' ଓ 'ସ୍ମାରକୀ' ବିଭାଗରେ ସ୍ଥାନିତ । ଏମାନଙ୍କ ପ୍ରତି ମୋର ଗଭୀର ଭକ୍ତି ଓ ଶ୍ରଦ୍ଧା ନିବେଦିତ ।

ଏହି ପୁସ୍ତକଟିର ସାଗ୍ରହ ପ୍ରକାଶନ ନିମନ୍ତେ ମୋତେ ଆସ୍ଥା ପ୍ରଦାନ କରିଥିବାରୁ 'ବିଦ୍ୟାପୁରୀ' ପ୍ରକାଶନ ସଂସ୍ଥାକୁ ଅଜସ୍ର ଶ୍ରଦ୍ଧା ଓ ଧନ୍ୟବାଦ ।

ପରିଶେଷରେ ଏହି ମହାନ୍ ବ୍ୟକ୍ତିମାନଙ୍କ ଭାବତରଙ୍ଗରେ ପୁଷ୍ଟ, ପୁସ୍ତକଟି ବିଦ୍ୟାପୁରୀ ପ୍ରକାଶନର ଯୁବପ୍ରକାଶକ ଶ୍ରୀମାନ୍ ଜୀବାନନ୍ଦ ମିଶ୍ରଙ୍କ ଉତ୍ସାହ ହେତୁ ଆତ୍ମପ୍ରକାଶ କରିବାକୁ ଯାଉଛି । ଏହି ପରିପ୍ରେକ୍ଷୀରେ ମୁଁ ଜୀବାନନ୍ଦଙ୍କୁ ଶ୍ରଦ୍ଧା ଓ ସାଧୁବାଦ ଜଣାଉଛି ।

**ପ୍ରତିଭା ଶତପଥୀ**

ଠିକଣା : ବି-୩ / ୨, ଚନ୍ଦ୍ରମା ହାଉସିଂ କମ୍ପ୍ଲେକ୍ସ
ଖାରବେଳ ନଗର, ୟୁନିଟ୍-୩
ଭୁବନେଶ୍ୱର-୧

# ସୂଚୀପତ୍ର

## ସ୍ମୃତି

## ସ୍ମାରକୀ



## ଆଲେଖ୍ୟ

## ଅଭିବ୍ୟକ୍ତି



---

**ସ୍ମୃତି**

# ନବୋତ୍କଳର ନିର୍ମାତା ଉତ୍କଳଗୌରବ ୰ମଧୁସୂଦନ

ସେ ନବଉତ୍କଳର ନିର୍ମାତା, ଏହା ଅବିସମ୍ବାଦିତ ସତ୍ୟ । କିଛି କିଛି କଥା ତାଙ୍କ ଜୀବନ ଓ କାର୍ଯ୍ୟକଳାପ ସମ୍ପର୍କରେ ଲେଖାଯାଇଛି । ତଥାପି ବି ଅନ୍ଧାରରେ ରହିଛି ବହୁତ କିଛି । ତା'ର କାରଣ, ତାଙ୍କ ଜନ୍ମକାଳ ଓ ସମାଜ ଏପରି ଜଣେ ବିଚକ୍ଷଣ ବ୍ୟକ୍ତିତ୍ୱଙ୍କୁ ଚିହ୍ନିବାକୁ ପ୍ରସ୍ତୁତ ହୋଇ ନ ଥିଲା । ଅନେକ ଅନ୍ଧବିଶ୍ୱାସ, ଜାତିପ୍ରଥା ଓ କୁସଂସ୍କାର ବେଶ୍ ବଳବତ୍ତର ହୋଇ ରହିଥିଲା । ବିଶିଷ୍ଟ ଲେଖକ ୰ ସୁରେନ୍ଦ୍ର ମହାନ୍ତିଙ୍କ ଲିଖିତ 'ଶତାବ୍ଦୀର ସୂର୍ଯ୍ୟ' ଓ 'କୁଳବୃଦ୍ଧ' ପୁସ୍ତକ ଦୁଇଖଣ୍ଡ ତାଙ୍କ କାଳର ଇତିହାସ ଉପରେ ଆଲୋକପାତ କରିଥିଲା ସର୍ବପ୍ରଥମେ । ଏବେ ଲେଖକ ଶ୍ରୀ ଜିତେନ୍ଦ୍ର ନାରାୟଣ ଦାଶଙ୍କ 'ପଗଡ଼ିପୁରୁଷ' ଅନେକ ଦୃଷ୍ଟିରୁ ମଧ୍ୟ ସ୍ୱାଗତଯୋଗ୍ୟ । ଏଥିପୂର୍ବରୁ କେତେକ ମଧୁପ୍ରେମୀ ଲେଖକ ତାଙ୍କ କୃତିତ୍ୱ ଉପରେ ଆଲୋଚନା ଲେଖିଛନ୍ତି । ସେ ହିସାବ ମୁଁ ଏଠାରେ ଦେଉ ନାହିଁ । ତଥାପି ତାଙ୍କ ଜୀବନ ଓ ସାଧନାର କେତେ ଯେ ଅକୁହା କର୍ମାବଳୀ, ବେଦନା ଓ ଯନ୍ତ୍ରଣା ଅବ୍ୟକ୍ତ, ଅପ୍ରକାଶିତ ହୋଇ ରହିଯାଇଛି, ତା'ର ଇୟତ୍ତା ନାହିଁ । କିଏ ବା ଜାଣିଥିଲା, ବାଳରେ ବେଣ୍ଟି ବାନ୍ଧିଥିବା ଏଇ ବାଳକ ଦିନେ ଇତିହାସର ସଂରଚକ ହେବ ଓ ମହାନ୍ ଜନନାୟକ ହୋଇପାରିବ ! ହୋଇପାରିବ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ !

ତେବେ, ତାଙ୍କ ବିଷୟରେ ମୁଁ କିଛି ବ୍ୟକ୍ତିଗତ କଥା କହିବି । ମୋ ଜେଜେ ତାଙ୍କୁ ବୋଧେ ନାକ ଟେକୁଥିବେ କି କ'ଣ । କିନ୍ତୁ ୧୯୦୮ରେ ଜନ୍ମିତ ସ୍ୱାଧୀନତା ସଗ୍ରାମୀ ଭାବରେ କାରାରୁଦ୍ଧ, କାରାଗାରରୁ ଫେରି ମେଡିକାଲ ସ୍କୁଲରେ ପାଠପଢ଼ା ଓ ଗାନ୍ଧିଜୀଙ୍କ ଆହ୍ୱାନରେ ଆଦର୍ଶ ବିବାହ କରିଥିବା ମୋ ବାପାଙ୍କ ସହ ତାଙ୍କର ପରିଚୟ ଥିଲା ଓ ବାପା ତାଙ୍କୁ 'ମି. ଦାସ' ବୋଲି କହୁଥିଲେ । ଯେ ବୋଧେ ୧୯୩୦/୩୨ ମସିହାର କଥା । ସେତେବେଳକୁ ନିଶ୍ଚେ ମଧୁବାବୁ ସାୟାହ୍ନ କାଳରେ । ମୋର ଜନ୍ମସ୍ଥାନ ସତ୍ୟଭାମାପୁର, ଯାହାର ରାସ୍ତାଧୂଳିରେ ମଧୁବାବୁ ଚାଲିଥିଲେ, ମୁଁ ତା' ଉପରେ ଚାଲିଛି । ମୋର ହେତୁ ପାଇଲାବେଳକୁ ତାଙ୍କ ସାତପୁରୁଷର ଘର ଭାଙ୍ଗି ସାନଭାଇ ଗୋପାଳବଲ୍ଲଭ କୋଠାତୋଳି ସାରିଥିଲେ । ଲାଇବ୍ରେରୀଟିଏ ବି କରିଥିଲେ । ମୁଁ କିନ୍ତୁ ମଧୁବାବୁଙ୍କ ଦ୍ୱାରା ନିର୍ମିତ ଗ୍ରାମର ଅନତିଦୂରରେ ଥିବା ତାଙ୍କ କୋଠା, ରୋଷେଇଶାଳ, କୂଅ, ଏସବୁ ଉପରେ ଖେଳିଛି, ବୁଲିଛି । କାରଣ ତାଙ୍କ ଦ୍ୱାରା ୧୯୧୧ ମସିହାରେ ପ୍ରତିଷ୍ଠିତ ବାଳିକା ସ୍କୁଲରେ ପାଠପଢ଼ିଛି ।

ପ୍ରଶସ୍ତ ପରିବେଶ, ପାଇଖାନା, କୂଅ, କୋଠା, ଫୁଲଗଛର ସେ ସ୍କୁଲ – ଆଜିକାଲି କୋଉଠି ଆଉ ଦେଖିବାକୁ ମିଳିବ ନାହିଁ । ନାରୀଶିକ୍ଷାର ପ୍ରସାରପାଇଁ ସ୍କୁଲଟି ତିଆରି କରିଥିଲେ ମଧୁବାବୁ । ସ୍କୁଲ ଗଲା ଆଇଲାବେଳେ ମୁଁ ବାଲିବନ୍ତ ଉପରର ସେଇ ବିଧର୍ମୀକୋଠା, ତା'ର ଭଙ୍ଗା ଝର୍କା ବାଟେ ଭିତରକୁ ଉଣ୍ଟିଚି-ବାରଣ୍ଡାରେ ଖେଳିଛି । ତାଙ୍କ ପ୍ରପିତାମହୀ କୃଷ୍ଣାଦେଈଙ୍କ ବିଲ ଭିତରେ ସତୀଚଉରା ପିଣ୍ଡିରେ ବୁଲିଛି । ସେ ପତିଙ୍କ ସହ ସତୀ ହୋଇଥିଲେ, ଶୁଣିଛି । ଋତୁ ଅନୁସାରେ ପିଣ୍ଡି ଉପରେ ଥିବା ଛୋଟ ଗଛଟି ଧଳାଫୁଲରେ ମଣ୍ଡି ହୋଇଥିବାର ଦେଖିଚି । କେହି କହନ୍ତି 'ଗର୍ଭିଣୀ' ଗଛ-ସାଙ୍ଗ ଝିଅମାନେ ବିଲରେ ଖେଳୁଥିବାବେଳେ, ମୁଁ ପିଣ୍ଡି ଉପରକୁ ଉଠିଯାଇ ଗଛଟିକୁ କୁଣ୍ଢେଇ ଧରିଚି – ''ସତ କହିଲ, ତମକୁ ଡର ମାଡ଼ିଲା ନାହିଁ,'' ତାଙ୍କୁ ପଚାରିଛି – "ଜଳନ୍ତା ନିଆଁ ଭିତରକୁ କେମିତି ଭଲା ଡେଇଁପଡ଼ିଲ ?" ଗଛ ଦୋହଲେ, ପବନ ଶିରିଶିରି ବହେ । ସାଙ୍ଗମାନେ କହନ୍ତି, "ଏୟ, କ'ଣ କରୁଚୁ ସେଠି ! ଭୋକ କଲାଣି, ସଂଜ ହବ ଏଣିକି, ଆ ଘରକୁ ଯିବା ।"

ମୁଁ ମାଇନର ସ୍କୁଲ ଛାତ୍ରୀ ଭାବରେ ତାଙ୍କ ଜନ୍ମ ଦିନ ଅପ୍ରେଲ ୨୮ ତାରିଖ ଓ ଶ୍ରାଦ୍ଧଦିବସ ଫେବୃଆରୀ ୪ ତାରିଖ ଗ୍ରାମରେ ପାଳିତ ହେଉଥିବା ଉତ୍ସବରେ ବକ୍ତୃତା ଦେଇଛି । ପଢ଼ା ବକ୍ତୃତା ଅବଶ୍ୟ, କେତେ ବା ବୁଦ୍ଧି, କେତେ ବା ବୟସ ତାଙ୍କ ବ୍ୟକ୍ତିତ୍ୱକୁ ଆକଳନ କରିପାରିବାର । ନାରୀଶିକ୍ଷା ସମ୍ପର୍କରେ ସେ କହିଥିଲେ – "ଜଳଧାର ଯେପରି ତା'ର ଉତ୍ସସ୍ଥଳରୁ ଉପରକୁ ଉଠିପାରେ ନାହିଁ, ଠିକ୍ ସେହିପରି ନାରୀ ଜାତିକୁ ଅଶିକ୍ଷା କୁସଂସ୍କାରଗ୍ରସ୍ତ କରି କୌଣସି ଜାତି ଉପରକୁ ଉଠିପାରିବ ନାହିଁ ।" 'ବକ୍ତୃତା ଓ ଗୀତ' ପୁସ୍ତକ ପଢ଼ିଛି । ତାଙ୍କ ସ୍ମୃତିର ଆଲୋକରେ ମୋର ଚେତନା ପ୍ରତିଫଳିତ ହୋଇଛି । କି' ଉତ୍ସାହ ସେତେବେଳେ ! ମଧୁବାବୁଙ୍କ ଜନ୍ମସ୍ଥାନ, ମୋର ଜନ୍ମସ୍ଥାନ ।

ମଧୁବାବୁ ଯେତିକି ଭଦ୍ର, ସେତିକି ଦିବ୍ୟ ତାଙ୍କର ବ୍ୟକ୍ତିତ୍ୱ । ସେତିକି କରୁଣ ଓ ନିଃସଙ୍ଗ ତାଙ୍କର ଜୀବନ । ଯଥାର୍ଥରେ କହିହେବ– ମହାନ୍ ଆତ୍ମାମାନେ ବଡ଼ ନିଃସଙ୍ଗ ଜୀବନ ଯାପନ କରନ୍ତି । ଯିଏ ସାରା ବିଶ୍ୱର ପୂଜନୀୟ, ସେମାନେ ଏକୁଟିଆ ବିଚରଣ କରୁଥାଆନ୍ତି । ତାଙ୍କର ଜୀବନବ୍ୟାପୀ ସାଧନା ବ୍ୟର୍ଥ ମଧ୍ୟ ହୋଇଯାଇପାରେ । ତଥାପି ସେମାନେ ଅବିଚଳିତ ରହନ୍ତି । ତାଙ୍କର ଅନ୍ତରାତ୍ମାର ନିଷ୍ଠା ହିଁ ତାଙ୍କର ଶକ୍ତି । ଏତେ ବଡ଼ ବ୍ୟକ୍ତିଙ୍କୁ ପୁଣି ଲାଞ୍ଛନା– 'କିରସ୍ତାନୀ', 'ବଙ୍ଗାଳୀ' । ଅବଶ୍ୟ, ଆଜିକାଲି ଏ କଥାକୁ କିଏ ବା ଧରି ବସୁଛି ! ସେଇ ବ୍ୟକ୍ତିଟି 'ମାଆ', ଭାଇଙ୍କୁ ଖୋଜି ହଉଥିଲେ । – "ମାଆ ମାଆ ବୋଲି ଯେତେ ମୁଁ ଖୋଜିଲି, ମାଆକୁ ପାଇଲି ନାହିଁ; ଭାଇ ଭାଇ ବୋଲି ଯେତେ ମୁଁ ଡାକିଲି ନ ଦେଲେ ଉତ୍ତର କେହି ।"

ମାଆ କାହିଁ, ଭାଇ କାହାନ୍ତି ?

କଲିକତାରୁ ଯୋଗ୍ୟ ହେଲାପରେ ଗାଆଁକୁ ପ୍ରଥମଥର ଆସିଲେ । ଜନ୍ମକଲା ମାଆଙ୍କୁ ଦେଖିବାପାଇଁ, ରାସ୍ତାଘାଟ ତ ନ ଥାଏ– ଶଗଡ଼ଗୁଳା ନ ହେଲେ ବିଲହିଡ଼ । ଚାଲି ଚାଲି ଆସିଥିଲେ, ସନ୍ଧ୍ୟା ହେଲାଣି । ଘରକୁ କେହି ଡାକିଲେ ନାହିଁ । ଦାଣ୍ଡପିଣ୍ଡାରେ ସତରଞ୍ଜି କି କ'ଣ ବିଛାହେଲା– ଘର ଭିତରକୁ ନିଷେଧ । ସେଇଠି ରାତିରେ ଶୋଇଲେ । ମାଆ ପାର୍ବତୀଦେବୀ ହୁଏତ କଦଳୀପତ୍ରରେ କିଛି ଖାଇବାକୁ ଦେଇଥିଲେ । ମୋର ବିଶ୍ୱାସ, ସ୍ୱାଭିମାନୀ ଗୋବିନ୍ଦ (ମଧୁବାବୁ) ଖାଇ ନ ଥିବେ, ଉପବାସ ରହିଥିବେ । ପାହାନ୍ତାରୁ ଉଠି ଫେରିଗଲେ ଜଗତପୁର ଓ ସେଠୁ କଟକ ।

ମୁଁ ବହୁସ୍କୁଲରୁ, ଦିଲ୍ଲୀ, କଲିକତା, ଜେ.ଏନ୍.ୟୁ. ଓ ଓଡ଼ିଶାର ବିଭିନ୍ନ କର୍ପୋରେସନ୍‌ରୁ ନିମନ୍ତ୍ରଣ ପାଇ ଉତ୍କଳ ଦିବସର ଅତିଥି ରୂପେ ଯୋଗଦେଇଛି । ସବୁଠାରୁ ସ୍ମରଣୀୟ ରହିଯାଇଛି–ଜେ.ଏନ୍.ୟୁ. ଛାତ୍ର ସମାଜର ଉତ୍କଳ ଦିବସ । ୨୦୦୩ ମସିହାର କଥା । ମଞ୍ଚାସୀନ ମୋ ସହିତ ବଡ଼ ବଡ଼ ରାଜନୀତିକ ନେତା, ମନ୍ତ୍ରୀ, ସାଂସଦ, ସ୍ୱର୍ଗତ ଜାନକୀ ବଲ୍ଲଭ ପଟ୍ଟନାୟକ ମଧ୍ୟ । ମୁଁ ତ ବକ୍ତା ନୁହେଁ - କବିତା ଲେଖେ ବୋଲି ସମୟ ବିଶେଷରେ ଅତିଥି ହୋଇଯାଏ ଓ ଦି'ପଦ କହିଥାଏ । ସେଦିନ ମୁଁ କଥା ପ୍ରସଙ୍ଗରେ ପଦଟିଏ ଆବୃତ୍ତି କଲି- "ଜାତି ନନ୍ଦିଘୋଷ ଚଳିବ କି ଭାଇ/ସ୍ୱାର୍ଥକୁ ସାରଥି କଲେ / ଟାଣେ କିରେ ଗାଡ଼ି ଦାନାର ତୋବଡ଼ା/ଘୋଡ଼ା ମୁହେଁ ବନ୍ଧା ଥିଲେ ?" ତାଳି ଉପରେ ତାଳି, ହଲ୍ କମ୍ପିଉଠିଲା । ମୁଁ ଭାବିଲି, ଏଠାକାର ବୁଦ୍ଧିମାନ୍ ପିଲାଏ କ'ଣ ଏଇ ଗୀତ ପଦକ ଜାଣି ନ ଥିଲେ ? ଆଶ୍ଚର୍ଯ୍ୟ ହେଲି । ଗୀତଟି ଜାଣିଥିଲେ ନିଶ୍ଚୟ - ମାତ୍ର ସ୍ଥାନ, କାଳ, ପାତ୍ର ସମ୍ପର୍କରୁ ଗୀତଟି ସେମାନଙ୍କୁ ଉପଯୁକ୍ତ ମନେହେଲା । ସେଥିପାଇଁ ସେମାନେ ଅଧିକ ଉତ୍ସାହିତ ହୋଇଥିଲେ । କହିଲି । ମଧୁବାବୁଙ୍କ ଦ୍ୱାରା ପ୍ରୋତ୍ସାହିତ ତାରକସି କାମ ବିଳୟ ଭଜିଲା, ଉତ୍କଳ ଟାନେରି ଗଲା, ଶେଷକୁ ସେ ଦେବାଳିଆ ହେଲେ । କେତେ ରୋଜଗାର ତାଙ୍କର ନ ଥିଲା ! ମାତ୍ର ସେ ନ୍ୟାୟ ପକ୍ଷରେ ଓକିଲାତି କରି ଅର୍ଥକୁ ଭ୍ରୂକ୍ଷେପ କଲେ ନାହିଁ ।

ତାଙ୍କ ଜନ୍ମମାଟିର ସୁଯୋଗ୍ୟ ସନ୍ତାନ, ବିଶିଷ୍ଟ ସାହିତ୍ୟିକ ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି, ବହି ଲେଖି ହୁଏତ ଜନ୍ମ ମାଟିର ଋଣ ଶୁଝିଦେଲେ । ମାତ୍ର ମୁଁ? ମୁଁ କ'ଣ ତାହା କରିପାରିଲି ? ଅବଶ୍ୟ ମୋର ଆତ୍ମକଥାରେ ଗୋଟିଏ ଅଧ୍ୟାୟ ସୁରେନ୍ଦ୍ର ମହାନ୍ତି ଓ ଅନ୍ୟଟି ରମାଦେବୀଙ୍କୁ ନେଇ ଲେଖିଛି । ତଥାପି ଧିକ୍‌କାର ଲାଗେ । ତେବେ, 'ବାଲିପୋଖରୀ'କୁ ନେଇ ବିଭିନ୍ନ ସମୟରେ ତିନିଗୋଟି କବିତା ଲେଖିଛି - ଯାହା ସେ ଅଞ୍ଚଳର ସଚେତନ ନାଗରିକଙ୍କର ଅଧିକ ପ୍ରିୟ । ସେ ୩ ଗୋଟି କବିତା ମୋର

ପୂର୍ବବର୍ତ୍ତୀ କବିତା ସଂକଳନରେ ଏକତ୍ର ପ୍ରକାଶ ପାଇସାରିଛି । ଆଉ ଗୋଟିଏ କାର୍ଯ୍ୟ ମୁଁ କରିଛି- ସ୍ୱର୍ଗତା ସରଳାଦେବୀଙ୍କ ଜୀବନୀ ଏନ୍.ବି.ଟି.ପ୍ରକାଶ କରିଥିଲା ଓ ଲେଖିବା ଦାୟିତ୍ୱ ଥିଲା ମୋର । ଅଥଚ ନିଜେ ସରଳାଦେବୀ ନିଜ ଜୀବନ ବିଷୟରେ କୋଉଠି କିଛି ଲେଖିଯାଇ ନ ଥିଲେ । ବହିଟି ପୁଣି 'ଜାତୀୟ ଜୀବନୀ ସିରିଜ୍' ବା National Biography Series । ତାହା ସକଳ ଭାରତୀୟ ଭାଷାରେ ଅନୂଦିତ ହେବାର ଓ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ସେସବୁକୁ ଛପାଇବାର ନିୟମ ରହିଛି । ବହୁ ସାଧନା ବଳରେ ମୁଁ କିଛି ଓଡ଼ିଆ ଓ ଇଂରାଜୀ ବହି ଜୁଟାଇଲି-ଇଂରାଜୀଟି A Marriage to India. ଫ୍ରିଡ଼ା ହାଉସ୍ତୱର୍ଥଙ୍କ ଲିଖିତ । ଫ୍ରିଡ଼ା ଥିଲେ ଢେଙ୍କାନାଳର ଗାନ୍ଧୀ ୯ ସାରଙ୍ଗଧର ଦାସଙ୍କ ପତ୍ନୀ । ଓଡ଼ିଆ ବହିଟି 'ପରିଣୟ' । ତେବେ, ଆଉ ଯାହା ରହିଥିଲା-ସେଥିରେ ତାଙ୍କ ଜୀବନୀ ବିଷୟଟି ଥିଲା ନଗଣ୍ୟ । ଏହି ଦୁଇଟି ବହି ମତେ ବହୁତ ସାହାଯ୍ୟ କଲା । ଏଥିରେ ମୁଁ ବର୍ତ୍ତମାନର ମ୍ୟୁଜିୟମ୍ ମୁଖ୍ୟ ଡଃ ଜୟନ୍ତୀ ରଥଙ୍କୁ ସାହାଯ୍ୟ ପାଇଁ ଅନୁରୋଧ କଲି । ଖବର ପାଇଲି, ମଧୁବାବୁଙ୍କ ମୃତ୍ୟୁଶଯ୍ୟାର ଶବାଧାର ନିକଟରେ ସରଳାଦେବୀ ଉପସ୍ଥିତ ଥିଲେ । ଜୟନ୍ତୀ ବହୁ ଶ୍ରମରେ ସେ ଫଟୋଟି ମୋତେ ଦେଇଥିଲେ । ସେଥିରେ, ଶୈଳବାଳା, ସୁଧାଂଶୁବାଳା, ବିଚିତ୍ରାନନ୍ଦ ଦାସ ଓ ଆହୁରି ବିଶିଷ୍ଟ ନାରୀପୁରୁଷ କେତେକ ଥିଲେ । ଏହି ପୁସ୍ତକଟି ଯେ, ଉପନ୍ୟାସ ପରି ମର୍ମସ୍ପର୍ଶୀ ଏହା ଏନ.ବି.ଟି. ପ୍ରକାଶିତ ପୁସ୍ତକର ଆଲୋଚନା ସମୟରେ କୁହାଯାଇଥିଲା ଓ ସବୁ ଭାରତୀୟ ଭାଷାରେ ଅନୂଦିତ ଓ ପ୍ରକାଶିତ ପୁସ୍ତକରେ ମଧୁବାବୁଙ୍କ ଶବାଧାରର ଫଟୋ ରହିବ ବୋଲି ସ୍ଥିର ହୋଇଥିଲା । ମୋ ପ୍ରତି ଏହା ପରମ ସାନ୍ତ୍ୱନା ବୋଲି ମୁଁ ଭାବେ । ନ ହେଲେ, ନିଜ ବାହାଦୁରି ଦେଖାଇବା ଉଦ୍ଦେଶ୍ୟରେ ମୁଁ ଏହା ଲେଖି ନାହିଁ । ଏହା ଅବିସମ୍ବାଦିତ ଯେ, ମଧୁବାବୁ ଉତ୍କଳମାତାର ଯୋଗ୍ୟତମ ସନ୍ତାନ ଥିଲେ । ଅନ୍ତିମ ଶଯ୍ୟାରେ ପଣ୍ଡିତ ନୀଳକଣ୍ଠଙ୍କୁ ଚାହିଁ ମଧୁସୂଦନ କହିଥିଲେ, "ମନେ ରଖିବ । ଜଣେ ଓଡ଼ିଆ ଥିଲା"– ଏ ବାକ୍ୟ କେଉଁ ଓଡ଼ିଆ ଭୁଲିପାରିବ ? ଶେଷକୁ ନବୋତ୍କଳର ନିର୍ମାତା ମଧୁବାବୁଙ୍କ ଉଦ୍ଦେଶ୍ୟରେ ଆଭୂମିପ୍ରଣତି ଜଣାଉଛି । ମୋର ସୌଭାଗ୍ୟ, ତାଙ୍କ ଘର, ତାଙ୍କ ଗାଁର ଫୁଲବଗିଚା, ଫଳବଗିଚା– ଯାହା ତାଙ୍କ ଭାଇ ଓ ପୁତୁରା (ଉପେନ୍ଦ୍ର କିଶୋର, ମୋ ବାପାଙ୍କ 'ଉପ'ଭାଇ)ଙ୍କ ଦ୍ୱାରା ସୁସଜ୍ଜିତ ଥିଲା ସେଇଠି ମୁଁ ବୁଲିଚି, ଖେଳିଚି, ଫୁଲ ତୋଳିଛି । ମୋର ବିଶ୍ୱାସ, ସେ କାଳରେ କୌଣସି ଓଡ଼ିଆ ଝିଅ – ଏତେ ସଂଖ୍ୟାରେ ସୁନ୍ଦର, ସୁଗନ୍ଧଯୁକ୍ତ ଫୁଲସବୁ ଦେଖି ନ ଥିବେ । ଶେଷକୁ ନବଉତ୍କଳର ନିର୍ମାଣ ହେଲା । ଆମେ 'ଓଡ଼ିଆ' ବୋଲି ଗର୍ବ କଲୁ ।



# ଜେଜେମାଆ ଡାକି ନାହିଁ କେବେ ବି...

## [ ସ୍ୱର୍ଗତା ପୀତାମ୍ବରୀ ଦେବୀଙ୍କୁ ନିବେଦିତ ]

'ଜେଜେମାଆ' ବୋଲି ଡାକିନି, କ'ଣ ଡାକିଚି ତେବେ ? କିଛି ଡାକି ନାହିଁ । ରାତିରେ ରହନ୍ତି ଥରେ ଥରେ, ମୋ ବାଣୀବିହାର ଘରେ । ରୁଟି, କ୍ଷୀର, ସନ୍ତୁଳା ଖାଦ୍ୟ – ଶୋଇବାପାଇଁ ଶେଯ, ମଶାରି, ଡ୍ରଇଂ ରୁମ୍‌ରେ- ତିନି ଚାରି ଥର ଆସିଥିବେ ସମୁଦାୟ । ବିଶେଷ ଗୁରୁତ୍ୱ ଦେଇପାରି ନାହିଁ ମୁଁ ସେତେବେଳେ ।

ଜନ୍ମକାଳରୁ ତ ଶୁଣିଆସିଲି, ସେ ମାରିଛନ୍ତି, ମୋ ଜେଜେବାପାଙ୍କୁ, ତାଙ୍କ ପତ୍ନୀଙ୍କୁ ମାରିବାରେ ସହାୟତା କରିଛନ୍ତି- କିପରି ଅନ୍ୟଥା ଭାବିପାରନ୍ତି ତାଙ୍କୁ ? 'ଇତର' ବୋଲି ନ ଭାବି ? ୧୯୪୫ମୋର ଜନ୍ମ, ଗୋପାଳ ପ୍ରହରାଜଙ୍କ ମୃତ୍ୟୁ ଓ ପୀତାମ୍ବରୀଙ୍କ ସର୍ବସ୍ୱାନ୍ତ ହେବାର ବର୍ଷ ସେଇଟି । ପ୍ରହରାଜଙ୍କ ମର୍ଡର କେସ୍‌ରେ ଦୋଷୀ ସାବ୍ୟସ୍ତ ହେବାର ସନ୍ଦେହରେ, ଓକିଲମାନେ ଜାଣତ-ଅଜାଣତରେ କୌଶଳ କରି ସର୍ବସ୍ୱ ନେଇଗଲେ ତାଙ୍କ ଠାରୁ । ଏପରିକି, ସୁପ୍ରିମକୋର୍ଟରେ ଲଢ଼ିବାପାଇଁ କଟକ ଘର ଖଣ୍ଡିକ ବି ନେଇଗଲେ । କେହି ଭାବିଲେ ନାହିଁ ଏହି ସଂସ୍କୃତି-ସମ୍ପନ୍ନା ପ୍ରହରାଜଙ୍କ ଶାଳିକା, ତାଙ୍କ ସହକର୍ମିଣୀ ପ୍ରୌଢ଼ା ସ୍ତ୍ରୀଲୋକଟି କିପରି ବଞ୍ଚିବ ? ଏକଥା ଶୁଣିଚି, କେଶବ କକେଇଙ୍କ (୰କେଶବ ଚନ୍ଦ୍ର ନନ୍ଦ, ମୋ ବାପାଙ୍କ ନିଜ ମାମୁ ପୁଅ ଭାଇ) ମୁହଁରୁ "ପୀତାମ୍ବରୀଙ୍କୁ ତତ୍କାଳର ଜଣେ ପ୍ରତିଷ୍ଠିତ ଓକିଲ ଚିପୁଡ଼ି ନେଇଛନ୍ତି ।" 'ଚିପୁଡ଼ି' ଶବ୍ଦଟିକୁ କକେଇ ଓଦାଲୁଗା ଚିପୁଡ଼ିଲା ପରି ମୁଦ୍ରା ଦେଖାଇ କହିଛନ୍ତି । କେମିତି ବା ସେ ନିଃସ୍ୱତାର ସ୍ୱରୂପକୁ ମୁଁ ହୃଦୟଙ୍ଗମ କରିଥାଆନ୍ତି? ଆଗ୍ରହ ବି ନ ଥିଲା । କାରଣ ଆମେ ଦୂରରେ । କୋରାପୁଟରେ ଥିଲୁ । ବାପା ଛୁଟିନେଇ ପ୍ରହରାଜଙ୍କ ମୃତ୍ୟୁବେଳକୁ କଟକ ଆସିଥିଲେ । ତା' ପରେ ଆମେ ପ୍ରାୟ ୧୯୪୯ରେ ସତ୍ୟଭାମାପୁର ଆସିଲୁ, ସେଇଠି ରହିଲୁ । ପ୍ରହରାଜଙ୍କ ନିଜ ପରିବାରରେ ବି ସଂହତି ନ ଥିଲା, ଆଉ ବାପା ତ ଆମପ୍ରତି ଥିଲେ ନିସ୍ପୃହ । ଅନ୍ୟ କାହା ପ୍ରତି ଅଧିକ ଦରଦୀ ବା ହୋଇଥାଆନ୍ତେ !

ରେଭେନ୍ସା କଲେଜ କନିକା ଲାଇବ୍ରେରୀରେ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ରୁ ଦେଖିଥିଲି ପୀତାମ୍ବରୀଙ୍କ ଫଟୋ । ମନର ଭାବନା, ଯେ ଫଟୋ ସଂଗେ ମିଶି ମନରେ ମଧ୍ୟ କିଛି ସୁପ୍ରଭାବ ପକାଇପାରି ନ ଥିଲା । କିନ୍ତୁ ଏତେବଡ଼ ସାହିତ୍ୟିକ କୃତିରେ ସହକର୍ମିଣୀ,

ହୁଏତ ବି ପ୍ରହରାଜଙ୍କ ପ୍ରେରଣାଦାତ୍ରୀ, ଏତେ ତୁଚ୍ଛ ବ୍ୟକ୍ତିତ୍ୱ କ'ଣ ହୋଇପାରନ୍ତି ? ଏ କଥା ଭାବି ନ ଥିଲି । ସମୟ ଗଡ଼ି ଗଡ଼ି ଚାଲିଥାଏ । ବାଣୀବିହାର ଘରେ, ବୋଧହୁଏ ୧୯୮୦ ମସିହା ପରବର୍ତ୍ତୀକାଳରେ ତାଙ୍କୁ ଦେଖିଲି, ଅତ୍ୟନ୍ତ ଶୀର୍ଣ୍ଣ, ପକ୍ୱକେଶା, ଦରିଦ୍ର ବୃଦ୍ଧା ଜଣକ, ହସ ଓ କଥାରେ କିନ୍ତୁ ଚଟୁଳ ରସିକତା ଲକ୍ଷ୍ୟ କରିପାରିଥିଲି । ଏହା ସମ୍ପର୍କରେ ମୁଁ ମୋର ଆତ୍ମକଥା 'ଶୈଶବରୁ ସଂସାର'ରେ ଲେଖିଛି । କିନ୍ତୁ ଆତ୍ମକଥାର ରଚନା ମଧ୍ୟରେ ଏଇଲେ ୧୦ ବର୍ଷର ବ୍ୟବଧାନ । ଯା' ଭିତରେ ପଢ଼ିଲି, ଭାଷାକୋଷରୁ ପ୍ରହରାଜଙ୍କର ନାରୀମାନଙ୍କ ସ୍ଥିତି ସମ୍ପର୍କିତ ମତାମତ । ଖୁବ୍ ନୂଆ ଲାଗିଲା, ଲାଗିଲା ସଂବେଦନାଭରା ତୀର୍ଯ୍ୟକ ଦୃଷ୍ଟିରେ ଶାଣିତ । କାରଣ, ମୁଁ ମୋର ୟୁଜିସି-ପ୍ରକଳ୍ପ-ପୁସ୍ତକ 'ନାରୀ ଅସ୍ତିତ୍ୱର ବାସ୍ତବତା: ବିବର୍ତ୍ତିତ ଓଡ଼ିଆ କବିତା' ଶୀର୍ଷକ ପୁସ୍ତକ ରଚନା କାଳରେ ଏହି ମତାମତକୁ ଆବିଷ୍କାର କରିଥିଲି । କିଛି ବର୍ଷପରେ ସୁଲେଖକ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ (ପ୍ରହରାଜଙ୍କ ସମ୍ପର୍କୀୟ)ଙ୍କ ସହିତ ଆଳାପ-ଆଲୋଚନାକାଳରେ ଜାଣିବାକୁ ପାଇଲି ଯେ ପ୍ରହରାଜଙ୍କ ମୃତ୍ୟୁର କାରଣ ପୀତାମ୍ବରୀ ତ ଆଦୌ ନୁହନ୍ତି, ତେବେ ମୃତ୍ୟୁର କାରଣ ରହସ୍ୟାଚ୍ଛନ୍ନ । ପୁଣି, ଏହା ମଧ୍ୟରେ ମୁଁ ପଢ଼ିଲି ଲେଖିକା ରମାଦେବୀ (ੴ ନୀଳକଣ୍ଠଙ୍କ ଦାସଙ୍କ ସୁପୁତ୍ରୀ)ଙ୍କ ଲିଖିତ ପୁସ୍ତକରୁ ପୀତାମ୍ବରୀଙ୍କ ଜୀବନାଲେଖ୍ୟର କିୟଦଂଶ । ତାଙ୍କ କରୁଣ, ହୃଦୟବିଦାରକ ମୃତ୍ୟୁ ସମ୍ପର୍କରେ ପଢ଼ି ମୁଁ ସ୍ଥାଣୁ ପାଲଟିଗଲି । ଏପରି କ'ଣ ଘଟିପାରେ ? ଏତେ ସମ୍ଭାବନାମୟ ସଂସ୍କୃତି-ସମ୍ପନ୍ନା ମହିଳା ଜଣେ ଏଭଳି ମୃତ୍ୟୁ ବରଣ କରନ୍ତି ?

ଆଖିରେ ଦିଶିଯାଏ ଏକ ଗ୍ରାମ୍ୟ ଶ୍ମଶାନ-ସେଠାରେ ଶୀର୍ଣ୍ଣକାୟ ବୃଦ୍ଧାଟିର ଉଲଗ୍ନ ମୃତଶରୀର, ଶ୍ୱାନ ଶୃଗାଳ ତାହା ଭିଣିଭିଣି ଖାଉଥିବାର ଦୃଶ୍ୟ । ହଠାତ୍ ସେଠାରୁ ମନକୁ ଟାଣି ଆଣେ । ମାତ୍ର, ବେଳେବେଳେ ମନ ବୋଲ-ମାନେ ନା, ସେ ଆଡ଼କୁ ଧାଇଁ ପଳାଏ । ଏଥିପାଇଁ ଆମର ହୃଦୟହୀନତା, ଅମଣିଷପଣିଆ ହିଁ ଦାୟୀ । କାଠ କେଇ ବିଡ଼ା ମିଳିଥିଲେ କାର୍ଯ୍ୟ ହୋଇପାରିଥାନ୍ତା । କେହି ବଦାନ୍ୟବ୍ୟକ୍ତି କ'ଣ ନ ଥିବ । ଆହା ! କି ସୁରସିକା, ଲେଖିକା, ମର୍ଯ୍ୟାଦାଶୀଳା । ଗୋପାଳପ୍ରହରାଜଙ୍କ ସହ ଘୋଡ଼ାଗାଡ଼ିରେ ଯାତାୟାତ କରୁଥିବା ମହିଳାଙ୍କର ଏ ବୀଭତ୍ସ ଶେଷଦଶା ! ଆଉ ଏଭଳି ମୂର୍ଖ, ଦାୟିତ୍ୱହୀନ ବ୍ୟକ୍ତିମାନେ ତାଙ୍କ ପାଇଁ ଯାଚି କି କିଛି ଦେଇ ନ ଥିଲେ । ଶାନ୍ତନୁଭାଇନାଙ୍କ ଠାରୁ ଶୁଣିଲି, ସେ ବିଧବା ହୋଇଯିବାପରେ ତାଙ୍କର ସଙ୍ଗତିସମ୍ପନ୍ନ ଶାଶୂଘରର ଲୋକେ, ତାଙ୍କୁ ସବୁଧନରୁ ବଞ୍ଚିତ କରିବାକୁ ଚକ୍ରାନ୍ତ କରିଥିଲେ । ଏତିକିବେଳେ ପୀତାମ୍ବରୀଙ୍କ ପିତା ନିଜ ବନ୍ଧୁ ଜ୍ୱାଇଁ ଓକିଲ ଗୋପାଳଚନ୍ଦ୍ରଙ୍କୁ ଅନୁରୋଧ କରିଥିଲେ ଏଇଟିକୁ ନେଇ ପାଖରେ ରଖ ଓ ତା'ର କିସମତ୍ ପାଇବାରେ ସାହାଯ୍ୟ କର, ନ ହେଲେ ସେ ଭାସିଯିବ । ଏକଥା କେଉଁଠି ଲିଖିତ ନାହିଁ, ବରଂ ଏହା ପରିବାରର ଭିତିରି କଥା । ସେହି ସୂତ୍ରରୁ ବି ଜାଣିଲି ଯେ,

ନିଜ ପତ୍ନୀଙ୍କ ହତ୍ୟାରେ ଜଡ଼ିତ ପ୍ରହରାଜେ ଆଇନତଃ ଦୋଷୀ ପ୍ରମାଣିତ ହୋଇ ନ ଥିଲେ । ହୁଏତ ପତିପତ୍ନୀଙ୍କ ମନୋମାଳିନ୍ୟ ଓ ଶତ୍ରୁତା ଏହାର କାରଣ, ମାତ୍ର ପୀତାମ୍ବରୀ ନୁହନ୍ତି ।

ସବୁକୁ ମିଶାଇ ଫେଣ୍ଟି ଦେଖିଲା ବେଳକୁ, ତାଙ୍କର ରଚିତ କେତେକ କାହାଣୀ ମୁଁ ପଢ଼େ ଓ ତାଙ୍କୁ ଅଧିକରୁ ଅଧିକ ବୁଝିପାରେ । ତାଙ୍କ ରଚନା ବେଶ୍ ରସାଳ, ଭାଷାଚାତୁରୀରେ ଭରପୂର । ଅଥଚ ଏ ଭଳି ଗୋଟେ ଜୀବନକୁ ଏ ପ୍ରକାର ଦୁର୍ଭୋଗ ସହ ଗୁଡ଼ି ଦେଲାବେଳକୁ ଆମ ଓଡ଼ିଆ ଲୋକଙ୍କ (ମୋ ସମେତ) ହୃଦୟହୀନତାକୁ ସହ୍ୟକରି ହେଉ ନାହିଁ । ପୀତାମ୍ବରୀ ଦେବୀଙ୍କ ଭିଣୋଇ, ପ୍ରଖ୍ୟାତ ଓକିଲ, ଭାଷାକୋଷକାର ପ୍ରହରାଜେ ନିଜ ଶାଳିକାଙ୍କୁ ବହୁତ ସମ୍ମାନ ଦେଉଥିଲେ । ଏହା ଭାଷାକୋଷର ପ୍ରତିଟି ଖଣ୍ଡରେ ପ୍ରକୀର୍ତ୍ତିତ । ପାଦରେ ସୁନାପାଉଁଜି ଓ ପ୍ରଚୁର ଅଳଙ୍କାର ବିମଣ୍ଡିତ, ଶୁଭ୍ରବସ୍ତ୍ର, ସେମିଜ୍ ପରିହିତା ସେ ଜଣେ ସଂଭ୍ରାନ୍ତ ମହିଳା ଥିଲେ । ତାଙ୍କ ସହ ଚାକ୍ଷୁଷ ପରିଚୟ ଘଟିଥିଲା ଲେଖିକା ରମାଦେବୀଙ୍କର । ପୀତାମ୍ବରୀଙ୍କର ପୋଷ୍ୟପୁତ୍ରଟିଏ ଥିଲା ଓ ନିଜ ଗ୍ରାମରେ ସମ୍ପତ୍ତିବାଡ଼ି ମଧ୍ୟ ଥିଲା କିନ୍ତୁ ପ୍ରହରାଜଙ୍କ ହତ୍ୟାମାମଲାରୁ ଖଲାସ ହେବାପରେ ତାଙ୍କୁ କେହି ସେଠାରେ ସ୍ଥାନ ଦେଇ ନ ଥିଲେ । ପୁଅ ସହିତ ଲଢ଼ିବାକୁ ତାଙ୍କର କି ସମ୍ବଳ ବା ଥିଲା ! ହୁଏତ ସେ ସମୟରେ ଏପ୍ରକାର ଆଇନ୍ ପ୍ରଚଳିତ ନ ଥିଲା, ଜାଣେନା । ମୁଁ ଯେବେ ତାଙ୍କୁ ମୋ ଘରେ ଭେଟିଲି, ସେତେବେଳକୁ ସେ ପୁରୀର ହେରାଗୋହିରୀ ସାହିର 'ଗୋପବନ୍ଧୁ ଭବନ'ରେ ରହୁଥିଲେ । ଆମକୁ ବହୁତ କହିଯାଇଥିଲେ ସେଠାକୁ ଯିବାକୁ । ଥରେସପରିବାର ସକାଳବେଳା ତାଙ୍କର ରହଣି ସ୍ଥାନକୁ ଯାଇଥିଲି । ଛୋଟ ଫାଟକଟି ଖୋଲି ଭିତରକୁ ପଶିଲା ବେଳକୁ ବାଁ ହାତି ବୁଢ଼ୀଟିଏ ବସି ଘଷି ପାରୁଛି । ପତର ଗୋଟେଇ ବୁଢ଼ୀ ପରି ଦିଶୁଛି । ଆମକୁ ଦେଖିଲା ମାତ୍ରେ ଆହ୍ଲାଦିତ ହୋଇ ଭିତରକୁ ପାଛୋଟି ନେଲେ । ଶିଡ଼ିତଳ ଜାଗାଟି ଘର ପରି ହେଇଚି । ନିରାଶ୍ରୟାର ଆଶ୍ରୟ । ଅଧା ଅନ୍ଧାର ଭିତରେ ଖବରକାଗଜ ଖଣ୍ଡିକ ଉପରେ ଶୁନୁଶୁନିଆ ଶାଗ କି ଆମ୍ବିଳିତ ଶାଗ ମୁଠିଏ ଥୁଆ ହେଇଚି । ଜନତା ଷ୍ଟୋଭ୍ ଖଣ୍ଡିଏ ଅଛି । ଜିଦ୍ କଲେ, ମୋହନଭୋଗ କରିଦେବି, ଗୁହ ଖାଇକି ଯିବ । ସାମାନ୍ୟ କିଛି ଅର୍ଥ ତାଙ୍କ ହାତରେ ଦେଇ ତୁରନ୍ତ ଆମେ ଚାଲିଆସିଲୁ । କାହିଁକି ମୁଁ ଭାବିଲି ନାହିଁ ଯେ, ଯେ ପତରଗୋଟେଇ, ଘଷିବିକାଳି ବୁଢ଼ୀଟି ଚଳେ କେମିତି ? ଆଜି ମନେପଡ଼ିଲେ ଧିକ୍‌କାର ଆସୁଚି ନିଜପ୍ରତି । ମୋ ବାପା, ଜମିଦାର ଘର ପୁଅ ଥିଲେ, ଡାକ୍ତର ଚାକିରି କରିଥିଲେ । ସେଥିରୁ ପଇସା କାଟି ନିଜ ଉପର ଭାଇଙ୍କର ସବା ବଡ଼ ପୁଅଙ୍କୁ, ପରେ ଜଣେ ସାନପୁଅଙ୍କୁ ପାଠ ପଢ଼େଇଥିଲେ । ଏଥିପାଇଁ ବାପାଙ୍କର ବଡ଼ଭାଇ ପଦଲାଦଦେଇ କୋରାପୁଟ ଯାଇ ବାପାଙ୍କୁ ସାହାଯ୍ୟ ଦେବାପାଇଁ କହିଥିଲେ । କିନ୍ତୁ ସେ ତ ଦୂରରେ । ମନେହୁଏ, ପୀତାମ୍ବରୀ ସ୍ୱାଭିମାନୀ ଥିଲେ, ମାଗିବାକୁ ପସନ୍ଦ କରୁ ନ ଥିଲେ । ପୁଣି ତାଙ୍କ ନାମ କଳଙ୍କିତ ହୋଇଯାଇଥିଲା ବିନାଦୋଷରେ ।

ପରେ ଜାଣିବାକୁ ପାଇଲି, ଲେଖିକା ରମାଦେବୀଙ୍କ ଲେଖାରୁ, ଶେଷଜୀବନରେ ସେ ଗାଆଁ ପାଖଆଖ ବଜାରରୁ ବରାମାଗି ଖାଉଥିଲେ । ଜଣେ ମୁସଲମାନଙ୍କ ଛେଳି ଜଗୁଥିଲେ - ୨ଟି ଛେଳି, ଗୋଟିକ ନାମ 'ଇନ୍ଦିରା' ଆଉ ଗୋଟିକ ନାମ 'ନନ୍ଦିନୀ' । ମୃତ୍ୟୁପରେ ତାଙ୍କ ଶବକୁ ଫିଙ୍ଗିଦିଆଯାଇଥିଲା ଶ୍ମଶାନରେ । ଶବଟିକୁ ପୋତିଦେବା ବ୍ୟବସ୍ଥା ବି କେହି କରି ନ ଥିଲେ । ତାଙ୍କର ଏହି ପରିଣତି ପ୍ରହରାଜ ପରିବାରର ଓ ମୋର ମଧ୍ୟ ଅମାନବିକ ବିଚାରର ଦାରୁଣ ଫଳାଫଳ । ଏକଥା ସତ ଯେ, ପୁରୀରେ ସାକ୍ଷାତ୍ କରିବାପରେ ତାଙ୍କର କିଛି ବି ଖବର ମୁଁ ରଖି ନ ଥିଲି । ଏବେ ତାଙ୍କୁ ମନେମନେ ସମ୍ବୋଧିଲି । "ଜେଜେମା ! ମୁଁ କିଛି କରିପାରିଲି ନାହିଁ, ତୁମପାଇଁ । ମୋତେ ଧିକ୍ ।"

୧୯୩୧ ମସିହାରେ ଉତ୍କଳ ସାହିତ୍ୟରେ ପ୍ରକାଶିତ, ତାଙ୍କ 'କାନ୍ତରାବାବୁ' ଲେଖାଟି ମନେପଡ଼ି ଯାଉଛି । ଏହି ଲେଖାଟିକୁ ହାଇଦ୍ରାବାଦର କେନ୍ଦ୍ରୀୟ ବିଦ୍ୟାଳୟ ଇଂରାଜୀ ପ୍ରଫେସର ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି ତାଙ୍କ ପୁସ୍ତକରେ ସଂକଳିତ କରିଥିଲେ । ପୁସ୍ତକର ନାମ 'ବିସ୍ମୃତ ପରମ୍ପରା' ଓ 'ଓଡ଼ିଆ ସାହିତ୍ୟରେ ନାରୀ ପ୍ରତିଭା' ଏହି ଲେଖାଟିରେ କେତେକ ଢଗଢମାଳି, ପହଳି, ଛଟା ପୂରି ରହିଛି । ବିଂଶ ଶତକର ପ୍ରଥମ ଦ୍ୱିତୀୟ ଦଶକରେ ଓଡ଼ିଆ ଭାଷାର ଏକ ପ୍ରକାର କୁଶଳୀ ପ୍ରୟୋଗ ମୋତେ ଆଶ୍ଚର୍ଯ୍ୟ କରିଦେଇଚି- ଆଖିରେ ଭରିଦେଇଚି ଲୁହ । ପୀତାମ୍ବରୀ ଏଡ଼େ ରସିକା, ଗୁଣୀ, ସେ କାଳରେ କି ପାଠ ବା ପଢ଼ିଥିବେ ! ହୁଏତ ପ୍ରହରାଜେ କିଛି ପଢ଼ାଇଥିବେ କିନ୍ତୁ ଅଦ୍ଭୁତ, ବିଚକ୍ଷଣ ପ୍ରକାଶଭଙ୍ଗୀ ଏବେ ବି ପଢ଼ିଲେ ଭଲ ଲାଗିବ, ନୂଆ ଲାଗିବ । ଏହି ଗପଟିରେ ନଅଙ୍କ ଦୁର୍ଭିକ୍ଷକାଳରେ ପୁରୀର ଶାସନୀବ୍ରାହ୍ମଣଙ୍କର ବିଭାଘର ବିଧିବ୍ୟବସ୍ଥା, ବଡ଼ ଜୀବନ୍ତ । ସତେ ଆମେ ପରମ୍ପରାକୁ ଭୁଲିଯାଇଥିଲେ । 'କାନ୍ତରାବାବୁ' ପଢ଼ିଲାବେଳେ, ପୀତାମ୍ବରୀଙ୍କ ବ୍ୟକ୍ତିତ୍ୱ କିପରି ଥିଲା ବୁଝିହୁଏ । ଜଣେ ରଚନାକାରକୁ ବୁଝିବାକୁ ଗଲେ, ତା' ସମୟର ଇତିହାସକୁ ଅଣଦେଖା କରିହୁଏ ନାହିଁ । ପୀତାମ୍ବରୀଙ୍କ ସମୟ, ଓଡ଼ିଆ ସାହିତ୍ୟ ଓ ରାଜନୀତିରେ ଅଭୂତପୂର୍ବ ପ୍ରତିଷ୍ଠା ପାଇଥିବା ୰ ସରଳା ଦେବୀଙ୍କ ଠିକ୍ ପରବର୍ତ୍ତୀ ସମୟ । ତାଙ୍କ ଭଳି ତେଜସ୍ୱିନୀ ମହିଳାଙ୍କୁ ତ ନାନା କୁତ୍ସାର ଶରବ୍ୟ ହେବାକୁ ପଡ଼ିଥିଲା । "ମୂଳତଃ ସେ କାଳରେ ଜଣେ ନାରୀର ସ୍ୱାଭିମାନ, ଦୃଢ଼ତା, ରସିକତା ଓ ସାହସିକତାକୁ ଗ୍ରହଣ କରିବା ନିମିତ୍ତ ସମୟ ଅପ୍ରସ୍ତୁତ ଥିଲା ।" ଏହି ବାକ୍ୟ ମୋ ନିଜ ଦ୍ୱାରା ରଚିତ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ ସ୍ୱର୍ଗତା ସରଳାଦେବୀଙ୍କ 'ମନୋଗ୍ରାଫ୍'ରୁ ଉଦ୍ଧାର କରାଯାଇଛି । ଟ୍ରଷ୍ଟର 'ଭାରତୀୟ ନାରୀ ପ୍ରତିଭା' ସିରିଜ୍‌ରେ ଏହି ପୁସ୍ତକ ପ୍ରକାଶିତ ହେଇଛି ଓ ଇଂରାଜୀ ତଥା ଅନ୍ୟ ଭାରତୀୟ ଭାଷାରେ ଅନୂଦିତ ହୋଇ ପ୍ରକାଶିତ ହୋଇଛି ।

ରସିକ ପାଠକେ, ଏଠାରେ ଆପଣମାନଙ୍କ ଗୋଚରାର୍ଥେ ପୀତାମ୍ବରୀ ଦେବୀଙ୍କ ଦ୍ୱାରା ଲିଖିତ କେତେକ ଢଗଢମାଳି ଓ ଲୁପ୍ତପ୍ରାୟ ଶବ୍ଦାର୍ଥବୋଧକୁ ଉଲ୍ଲେଖ କରିବା ପ୍ରାସଙ୍ଗିକ

ମନେ କରୁଛି । ନାରୀ ନିର୍ଯାତନା, ଶାଶୂର ଆକଟ, ମାଡ଼, ସ୍ୱାମୀର ମାଡ଼, ପୁନର୍ବାର ଚକୁଳି ପିଠା ଟିକେ ବିଗିଡ଼ି ଯାଉ କି ନ ଯାଉ, ଶାଶୂର କିଶୋରୀ ବଧୂର ପାପୁଲିରେ ତେଲମାରି ତାତିଲା ପଲମରେ ହାତକୁ ଘଷିଦେବା ଭଳି ନିଷ୍ଠୁରତାର ଚିତ୍ର ସେ ଦେଇଛନ୍ତି । ଏହି ଚିତ୍ରର କଥା ମୋ ଆଈ ଠାରୁ ବି ମୁଁ ଶୁଣିଥିଲି । ମନେହୁଏ, ସେ ମୋ ଆଈର ସମସାମୟିକ ହୋଇପାରନ୍ତି । ବ୍ରାହ୍ମଣ ଘର ବିବାହର ଟିକିନିଖି ବର୍ଣ୍ଣନା, ନିୟମନିଷ୍ଠା, ମିଥ୍ୟା ଲୋକାଚାର ବିଷୟ ମଧ୍ୟ ଜାଣିବାକୁ ହୋଇଥାଏ । ଆପଣାର କହିବାର ବାଗକୁ ସରସ କରିବାପାଇଁ 'କାନ୍ତରାବାବୁ' ରଚନାଟିରେ ସଂଯୁକ୍ତ ଅଛକେତେକ ଛଟା, ପଢ଼ଳିକୁ ଦେଖନ୍ତୁ- "ଆଗତ ଚଢ଼େଇକି ବେସରବଟା / କୂଳ କନ୍ୟା କି କାଳୀ / ତୀର୍ଥ ପାଣି କି ଗୋଳି ?", "ଏକ୍ କୁଣ୍ଡା ଶଶୁର ଘରେ ଜୋଇଁ / ଏକ୍ କୁଣ୍ଡା ଭଉଣୀ ଘରେ ଭାଇ ।" "ଯେଝା କଥା ଯାହାକୁ ଚଉଦ ବିଶ୍ୱା, ତିନିକାଣି," ଯିଏ ପଖାଳ ଖାଇଚି, ସେ ତବତ ଖାଉ / ଯିଏ ମୂଳୁ ନ ଖାଇଚି ସେ ଗାଧୋଇ ଯାଉ" ଇତ୍ୟାଦି ।

ଅନେକ ତତ୍କାଳର ଶବ୍ଦ, ଯାହାକି ଏବକୁ ଆଂଶିକ ବା ପୂର୍ଣ୍ଣଭାବେ ଲିଭିଲିଭି ଯାଉଛି, ତାହାର ଏକ ସୂଚନା ଏଠାରେ ଦିଆଯାଇପାରେ । ପୁଷ୍ଠାନି-ଧରଣ, ଝିଂକର ଡେଈଁ-ନଗରବାଛି, ଅନ୍ଧବିଶ୍ୱାସରେ ଦୃଢ଼, ପେଣ୍ଡିପାଣ୍ଡି-ଗୋଲଗାଲ, ପଞ୍ଜାର-ଝର୍କା, ମାଳିଟେକା-ନିବନ୍ଧ, ଗୁଆଗାଈଏ-ନିମନ୍ତ୍ରଣର ନିର୍ଦ୍ଦିଷ୍ଟ ସଂଖ୍ୟକ, ମତୁଳିଗଲା-ମଉଳିଗଲା, ସଜିଲି ସାତ୍-ସଜାଡ଼ି ସଜାଡ଼ି, ସାଇ-ଖଞ୍ଜା, ମଙ୍ଗଳ ଦିନ- ମଙ୍ଗଳପାକ ବା ମଙ୍ଗନ, ମାଲପା-ତେଲ, ସାତକିଆବାଡ଼ ଡେଇଁ-ଦ୍ରୁତ ପଳାୟନ, କ୍ଷେମ-କ୍ଷମତା, ବାଜୀନ୍ଦ୍ର-ଧୁରନ୍ଧର, ଲେନ୍ତାକବାସନ-ଥାକେ ବାସନ ଇତ୍ୟାଦି ।

ସେହି ସଂକ୍ଷିପ୍ତ, ସରସ ରଚନାଟିଏର ସର୍ଜିକା ପୀତାମ୍ବରୀ ସେ କାଳର ବ୍ରାହ୍ମଣବିଧବା, ଏକଦା ରାଜରାଣୀ,-ଏସବୁ ବିଧିର ବିଚିତ୍ର ଲୀଳା । ମଲାପରେ ଶରୀର ଜଳିପୋଡ଼ିଯାଏ କି ପୋତି ହେଇ ମାଟି ଚରିଯାଏ, ନାହିଁ ତ ଶାଗୁଣା ବିଲୁଆ ଟାଣି ଟାଣି ଖାଆନ୍ତି, ସେଥିରେ ମରିସାରିଥିବା ଲୋକର କି ଯାଏ ଆସେ । ଆଉ ଆତ୍ମା, ସେ ଥାଏ କି ନ ଥାଏ, କିଏ ଦେଖିଚି । ଅଥଚ, ପୀତାମ୍ବରୀଙ୍କ ରସିକତା, କଳାକୁଶଳତା ତଥାପି ମୋ ଚେତନାରେ, ଯେ କୌଣସି ମରମୀ ପାଠକର ଚେତନାରେ, ଉଜଳି ରହିଛି ଓ ରହିବ । ତାଙ୍କ ସଂରଚନା ଓ ଭାଷାକୋଷରେ ସହଯୋଗ, ଯଦି କେହି ବ୍ୟକ୍ତି ହୃଦୟଙ୍ଗମ କରନ୍ତି, ନିଶ୍ଚୟ ସ୍ୱୀକାର କରିବେ ଯେ ପୀତାମ୍ବରୀ ଜଣେ ତେଜସ୍ୱିନୀ ମହିଳା ଥିଲେ । ତାଙ୍କ ଜୀବନ ବେଦନାରେ ଲୁହ ଛଳଛଳ ହୋଇଉଠିବେ, ପ୍ରଣିପାତ ଜଣାଇବେ ।



# ଇତିହାସର ବିଧାତା

## [ ସ୍ୱର୍ଗତ ପ୍ରଫେସର ପଦ୍ମଶ୍ରୀ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ନିମିତ୍ତ ଉତ୍ତର-ଓଡ଼ିଶା ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ସ୍ମାରକୀ ବକ୍ତବ୍ୟ ]

(ମଞ୍ଚାସୀନ ଭଦ୍ର ମହୋଦୟଗଣ ଏବଂ ପ୍ରେକ୍ଷାଳୟରେ ଆସୀନ ବିଦ୍ୱଜ୍ଜନ ମଣ୍ଡଳୀ, ପ୍ରଥମେ ମୁଁ ଆପଣମାନଙ୍କୁ ନମସ୍କାର ଜଣାଉଛି । ଆଜି ପ୍ରଫେସର ପଦ୍ମଶ୍ରୀ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ସ୍ମାରକୀ ଦିବସରେ ମୁଁ ତାଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ପ୍ରଣିପାତ ଜଣାଉଛି ।) ଏହି ମାର୍ଗଶିର ହିଁ ଡଃ ପାଣିଗ୍ରାହୀଙ୍କ ଭୂମିଷ୍ଠ ହେବାର ମାସ । ଓଡ଼ିଶା ମାଆର ପାର୍ବତ୍ୟ ପ୍ରକୃତି ଶୋଭିତ ଏହି ବିଶିଷ୍ଟ ଅଂଶ ମୟୂରଭଂଜ ମୋତେ ବାରମ୍ବାର ଆକର୍ଷିତ କରିଛି । ଅନନ୍ୟ ପ୍ରପାତ ବରେଇପାଣି ଓ ଯୋରନ୍ଦା ମୋ ସ୍ୱପ୍ନର ଅନିବାର୍ଯ୍ୟ ଅଂଶ ହୋଇପଡ଼ିଛି । ମୋର ପାରିବାରିକ ଜୀବନରେ ଏହି ସ୍ଥାନର ଏକ ବିଶିଷ୍ଟ ଭୂମିକା ରହିଛି । ଆଜିଠାରୁ ୨୮ ବର୍ଷ ତଳେ ମୋର ସାନନଣନ୍ଦକୁ ନବବଧୂ ବେଶରେ ସଜାଇ ମୁଁ ଏହି ଭୂମିକୁ ପ୍ରେରଣ କରିଛି । ଆଜି ଆପଣମାନଙ୍କ ସୁଜାଣ-ସାନ୍ନିଧ୍ୟରେ କିଛି ସମୟ ବିତାଇବା ସୁଯୋଗ ପ୍ରଦାନ କରିଥିବାରୁ, ମୁଁ ଉତ୍ତର-ଓଡ଼ିଶା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କୁ ଆନ୍ତିରକ ଧନ୍ୟବାଦ ଜଣାଉଛି । ମୋତେ ଆମନ୍ତ୍ରଣ କରିବାର ଶ୍ରଦ୍ଧାରେ ମୋ ହୃଦୟ ଅନୁରଂଜିତ ହେବାକାଳରେ, ଆପଣମାନଙ୍କ ଅନ୍ତଃକରଣ ମଧ୍ୟ ସୌନ୍ଦର୍ଯ୍ୟମଣ୍ଡିତ ହୋଇଛି । ଯେପରି ମେହେନ୍ଦୀ (ମଂଜୁଆତି) ଦ୍ୱାରା ଭୂଷିତ ନାରୀର କରପଲ୍ଲବ ରଙ୍ଗିନ୍ ହୋଇଉଠିଲା ବେଳେ ଯେଉଁ ବ୍ୟକ୍ତି ମେହେନ୍ଦୀ ରଚନା କରେ, ତା'ର କରପଲ୍ଲବ ମଧ୍ୟ ରଙ୍ଗିନ ହୋଇଯାଏ ।

ସେହି ନ୍ୟାୟରେ ଶ୍ରଦ୍ଧାପ୍ରାପ୍ତ ଓ ଶ୍ରଦ୍ଧାପ୍ରଦାନକାରୀ ଉଭୟେ ଶ୍ରଦ୍ଧାଦ୍ୱାରା ଅଭିଷିକ୍ତ ହୋଇଥାନ୍ତି– ଆପଣମାନେ ଏବଂ ମୁଁ ଉଭୟେ ଏହିଭଳି ଶ୍ରଦ୍ଧା ଦ୍ୱାରା ସମ୍ବର୍ଦ୍ଧିତ ହୋଇଛେ ବୋଲି ମୋର ବିଶ୍ୱାସ । ଏହି ବିଶେଷ ଦିବସର ଅବସରରେ ବର୍ତ୍ତମାନ ମୋ ଆଖି ସାମ୍ନାରେ ଦୃଶ୍ୟମାନ ହେଉଛନ୍ତି ସେହି ତପସ୍ୱୀ ଐତିହାସିକ ଡକ୍ଟର ପାଣିଗ୍ରାହୀ, ଯାହାଙ୍କୁ ୧୯୭୬ ମସିହାରେ ରେଭେନ୍ସା କଲେଜରେ ମୁଁ ନିୟମିତ ସାକ୍ଷାତ କରୁଥିଲି । ତାଙ୍କର 'ପଦ୍ମଶ୍ରୀ' ଉପାଧିପ୍ରାପ୍ତି କାଳରେ କଲେଜ ସ୍ନାତକୋତ୍ତର ଓଡ଼ିଆ ବିଭାଗ ତରଫରୁ, ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲୁ । ସମ୍ବର୍ଦ୍ଧନାର ଉତ୍ତରରେ ସେ ନିରାସକ୍ତି

ଓ ବିନୟ ପ୍ରକାଶ କରିଥିଲେ । ସର୍ବଦା ସଂଭ୍ରମଶୀଳ ସେ । ସ୍ମିତଧୀ ଓ ସର୍ବଂସହାର ମୁଦ୍ରା ତାଙ୍କ ମୁଖମଣ୍ଡଳରେ ପ୍ରକଟିତ ହେଉଥିଲା । ମୋର ପରମ ସୌଭାଗ୍ୟ ଯେ, ତାଙ୍କ ଉଦ୍ଦେଶ୍ୟରେ ସମ୍ମାନ ଅର୍ପଣ କରିବାର ଏକ ଆନୁଷ୍ଠାନିକ ସୁଯୋଗ ମୁଁ ଲାଭ କରିଛି ।

ବିଦ୍ୱଜ୍ଜନବୃନ୍ଦ, ଏହି 'ସୁନ୍ଦରୀ ନର୍ମଦା' ବାରିପଦା, କେବଳ ଏହାର ଭୌଗୋଳିକ ସୁଷମା ହେତୁ ନୁହେଁ, ଏହାର ଅଧିବାସୀମାନଙ୍କ ଅନ୍ତଃକରଣର ସୁଷମା ହେତୁ କବିମାନଙ୍କ ଦ୍ୱାରା 'ସୁନ୍ଦରୀ ନର୍ମଦା' ରୂପେ ଅଭିହିତ ହୋଇଛି । ଏହି ସ୍ଥାନକୁ ଦେଖିବାର ତୃଷା ଓ ତାହାର ନିକଟତର ହେବାର ଆଗ୍ରହରୁ ମୁଁ ଏଠାକୁ ବହୁବାର ଆସଛି- ଖିଚିଂ, ନଳଗଜା, ଶିମିଳିପାଳ, ବାରିପଦା – ପ୍ରତ୍ୟେକଥର କୌଣସି ବିଶିଷ୍ଟ ସ୍ଥାନ ଦେଖି ଅଭିଭୂତ ହୋଇଛି, ନଳଗଜା ରାସ୍ତାରେ ଜଙ୍ଗଲ ଭିତରେ ଏହାର ଅବଲୁପ୍ତପ୍ରାୟ ଉଡ଼ାଜାହାଜ ପଡ଼ିଆ, ଖିଚିଂର ସଂଗ୍ରହାଳୟରେ ବିରଳ କାରୁମଣ୍ଡିତ ସରସ୍ୱତୀ ମୂର୍ତ୍ତି ଏଯାବତ୍ ମୋର ସ୍ମୃତିପଟରେ ଉଜ୍ଜୀବିତ ରହିଛି । ଏହି ଭୂମିର ସୁଯୋଗ୍ୟ ସନ୍ତାନଗଣଙ୍କ ମଧ୍ୟରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଯାହାଙ୍କ ସମ୍ପର୍କରେ ମୁଁ ନିଜକୁ ଗୌରବାନ୍ୱିତ ମନେକରେ, ସେମାନେ ହେଲେ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ସଙ୍ଗୀତଜ୍ଞ ରାଧାକୃଷ୍ଣ ଭଞ୍ଜ, ଗାଳ୍ପିକ ରବି ପଟ୍ଟନାୟକ, କବି ସୌରୀନ୍ଦ୍ର ବାରିକ, ଶିକ୍ଷାବିତ୍ ଦୀପକ ଷଡ଼ଙ୍ଗୀ ଓ ଅନ୍ୟାନ୍ୟ । ମୁଁ ନିକଟ ସାନ୍ନିଧ୍ୟ ଲାଭ କରିଛି ଡକ୍ଟର ପାଣିଗ୍ରାହୀଙ୍କର । ଏହି ଇତିହାସର ବିଧାତାଙ୍କ ବ୍ୟକ୍ତିତ୍ୱ ଓ ବ୍ୟକ୍ତଗତ ଜୀବନ ତଥା ଚିତ୍ତ ଭୂମିର ବ୍ୟାପକତା ସମ୍ପର୍କରେ ମୁଁ ଆପଣମାନଙ୍କ ସମ୍ମୁଖରେ କିଛି ବକ୍ତବ୍ୟ ପ୍ରଦାନ କରିବାକୁ ଯାଉଛି ।

ଡକ୍ଟର ପାଣିଗ୍ରାହୀଙ୍କୁ ବାଦ୍‌ଦେଇ, ଓଡ଼ିଶା ସାହିତ୍ୟ, ସଂସ୍କୃତି ଓ ଇତିହାସର କୌଣସି ସାର୍ଥକ ସ୍ୱରୂପ ମଧ୍ୟ ଏହି ସ୍ମାରକୀ ବକ୍ତୃତାରେ ପ୍ରକଟ କରିବା ପ୍ରାସଙ୍ଗିକ ହୋଇପାରିଥାନ୍ତା । ମାତ୍ର ଡକ୍ଟର ପାଣିଗ୍ରାହୀ କେବଳ ଓଡ଼ିଶାର ଗୌରବ ନୁହନ୍ତି, ସାରା ବିଶ୍ୱର ଇତିହାସ ଅନୁଶୀଳନର, ଭାରତର ପ୍ରତ୍ନସମ୍ପଦର ଏକ ଯୋଗ୍ୟତମ ଗ୍ରାହକ । ତାଙ୍କ ପରି ଏକ ବ୍ୟକ୍ତିତ୍ୱ, ଆମରି ଭିତରେ ଜନ୍ମଲାଭ କରି, ନିଷ୍ଠା ଓ ସାଧନାରେ, ଆମ ଭୂମିକୁ ଧନ୍ୟ କରି ତିରୋହିତ ହୋଇଛନ୍ତି । ଆମେ ତାଙ୍କ ବିଚକ୍ଷଣତା ପ୍ରତି ଯଥେଷ୍ଟ ଧ୍ୟାନଶୀଳ ହୋଇପାରି ନାହୁଁ । ତାଙ୍କ ରଚନାବଳୀ ପାଠକରି ଏହା ମୁଁ ନିଜେ ହୃଦୟଙ୍ଗମ କରିଛି । ସେଇ ତାଙ୍କ ବ୍ୟକ୍ତିତ୍ୱ ଓ ଜୀବନ ସାଧନା ପ୍ରତି, ଆମ୍ଭମାନଙ୍କର ଅନବଧାନତା ଦୂର ହେଉ, ତାଙ୍କ କୃତିତ୍ୱକୁ ଆମେ ଆପଣାର ମଣୁ, ଏହି ଉଦ୍ଦେଶ୍ୟରେ ତାଙ୍କ ସାଧନାର ତଥ୍ୟକୁ ଭିତ୍ତିକରି, ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଆପଣମାନଙ୍କ ସମକ୍ଷରେ ଉପସ୍ଥାପନ କରିବା ଅଧିକ ପ୍ରାସଙ୍ଗିକ ବୋଲି ବିଚାର କରୁଛି ।

ଇତିହାସ ଓ ସାହିତ୍ୟ – ଦୁଇଗୋଟି ସଚେତନତାରେ ତାଙ୍କ ବ୍ୟକ୍ତିତ୍ୱ ସଙ୍ଗଠିତ । ତାଙ୍କ ସାହିତ୍ୟିକ ପ୍ରତିଭା ତଥା ବକ୍ତବ୍ୟ ଶାଣିତ କଟାକ୍ଷ, କଳାତ୍ମକ ଉତ୍କର୍ଷ ଦାବି କରେ । ତାଙ୍କ ଚେତନାରେ ଓଡ଼ିଆ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସମ୍ପଦ ସଞ୍ଚିତ ଥିଲା । ପୂର୍ବେ, ବିବାହ କାଳରେ କନ୍ୟା ସହିତ କେତେକ ପୁରାଣ ଓ ପୁସ୍ତକ ବାପଘର ତରଫରୁ ଉପଢୌକନର ବିଧି ରୂପେ ପ୍ରଦତ୍ତ ହେଉଥିଲା । ଆଜି ସେ ପ୍ରଥା ତା'ର ତୀକ୍ଷ୍ଣତା ହରାଇଛି । ଧନଦୌଲତ ଟଙ୍କା ସୁନାର ଚାକଚକ୍ୟ ଭିତରେ, ପୁସ୍ତକ ଖଣ୍ଡିଏ ବଡ଼, ନିଷ୍ପ୍ରଭ ହୋଇ ପଡ଼ିଛି । ବହୁ ସଭାସମିତି, ଅନୁଷ୍ଠାନର ଅନ୍ତରାଳରେ, ସାହିତ୍ୟ ସଂସ୍କୃତି ଯଥାର୍ଥରେ ଅବହେଳିତ ହୋଇପଡ଼ିବା ସ୍ପଷ୍ଟ ହେଉଛି । କିନ୍ତୁ ଡକ୍ଟର ପାଣିଗ୍ରାହୀଙ୍କ ଘରେ ହରିବଂଶ, ଭାଗବତ, ସାରଳା ମହାଭାରତ ତଥା ବହୁ ଓଷାବ୍ରତ କଥା ମହଜୁଦ୍ ଥିଲା । ଫଳରେ ପୁସ୍ତକ ପଠନ ଦ୍ୱାରା ତାଙ୍କ କୈଶୋର-ଅଭିରୁଚି ସୁଗଠିତ ହୋଇପାରିଥିଲା । ତାଙ୍କ ପରିବାର ଦାରିଦ୍ର୍ୟର ସମ୍ମୁଖୀନ ହୋଇଥିଲେ- ସେ ବାଲ୍ୟକାଳରେ ପିତା ମାତାଙ୍କୁ ହରାଇଥିଲେ । କିନ୍ତୁ, ଦାରିଦ୍ର୍ୟ, ତାଙ୍କ ସ୍ୱାଭିମାନକୁ ପ୍ରଭାବିତ କରିପାରି ନ ଥିଲା । ସେତେବେଳେ, ଖିଚିଂ ଅଞ୍ଚଳରେ ବସବାସ କରୁଥିବା ଭୂୟାଁ, ଗଣ୍ଡା, ଭୂମିଜ, ସାନ୍ତାଳ, ସାଉଁତି, ବାଥୁଡ଼ି ପ୍ରଭୃତି ଆଦିବାସୀଙ୍କ ସହ ଓ ତୈଳିକବୈଶ୍ୟ (ତେଲୀ)ମାନଙ୍କ ସହ ତାଙ୍କ ପରିବାର ମିଳିମିଶି ଚଳୁଥିଲେ । ସେ କାଳରେ ବ୍ରାହ୍ମଣମାନେ ଅନ୍ୟଠାରୁ ଜଳପାନ କରୁଥିଲେ, ମାତ୍ର ତେଲୀମାନଙ୍କଠାରୁ ଜଳପାନ କରୁ ନ ଥିଲେ । କୌଳିକ ବୃତ୍ତିରେ, ତାଙ୍କର ପିତା ଥିଲେ ପୁରୋହିତ । ତେଣୁ ତେଲୀ ତାଙ୍କଠାରେ ଅନୁନୟ ଜଣାଇଲେ ଯେ, ବ୍ରାହ୍ମଣମାନେ ତାଙ୍କ ହାତରୁ ଜଳପାନ କରନ୍ତୁ । ପିତା ସାଗର ପାଣିଗ୍ରାହୀ ଏଥିରେ ସମ୍ମତ ହେଲେ ମାତ୍ର ଅନ୍ୟ ବ୍ରାହ୍ମଣମାନେ ତାଙ୍କ ସହ ବିରୋଧକରି ତାଙ୍କୁ ନିଆଁପାଣି ବାସନ୍ଦ କଲେ । କୌଳିକ ବୃତ୍ତିରେ ବାଧା ଆସିଲା । ଆସିଲା ଦାରିଦ୍ର୍ୟ । ସମାଜର ଏ ଶାସ୍ତି ପାଖରେ କିନ୍ତୁ ପିତା ମୁଣ୍ଡ ନୋଇଁଲେ ନାହିଁ । ସେ କାଳରେ, ବଣ ଜଙ୍ଗଲ ମଝିରେ, ସ୍ୱାଭିମାନର ଏକ ଉଜ୍ଜ୍ୱଳ ସ୍ତମ୍ଭସ୍ୱରୂପ ତାଙ୍କ ପରିବାର ଜାତିଆଣପ୍ରଥା ବିରୋଧରେ ସଂଗ୍ରାମ ବଜାୟ ରଖିଲେ । ନିତାନ୍ତ ଅବହେଳିତ ତାଙ୍କ ଶୈଶବ ଓ କୈଶୋରରେ, ନିଜ ପାଳିତା ଘୋଡ଼ୀ ଦ୍ୱାରା ତାଙ୍କ ଓଠ ଓ ମୟୂରଦ୍ୱାରା ନାକ କ୍ଷତବିକ୍ଷତ ହୋଇଥିଲା । ୧୫ ବର୍ଷ ବୟସରେ, ଜଣେ ଶିକ୍ଷକଙ୍କ ରୋଷେୟା ହୋଇ ସେ ଅପର ପ୍ରାଇମେରୀ ପାଠପଢ଼ା ଆରମ୍ଭ କଲେ । ଯେପରି ସେ ଦିନ ମହାନୁଭବ ଗୋଦାବରୀଶ ମିଶ୍ର, ବିଦ୍ୟାଧ୍ୟୟନକାଳରେ ପ୍ରଧାନ ଶିକ୍ଷକ ଚନ୍ଦ୍ରମୋହନ ମହାରଣାଙ୍କ ପାଚକ ରୂପେ ରହିଥିଲେ । ଅନେକ ମହାନ୍ ବ୍ୟକ୍ତିଙ୍କ ଜୀବନର ପ୍ରାରମ୍ଭକାଳ ଏହିଭଳି ବିରୁଦ୍ଧାତ୍ମକ ପରିସ୍ଥିତିରେ ହିଁ ବିକାଶଲାଭ କରିଥାଏ । ସେହି କୈଶୋର କାଳରେ ଦୀର୍ଘ ୮୦ ମାଇଲ୍ ଧରି ପାଦରେ ବାଟ ଚାଲି ଡକ୍ଟର ପାଣିଗ୍ରାହୀ ଅପର ପ୍ରାଇମେରୀ ପରୀକ୍ଷା ଦେବାକୁ ରରୁଆଁରୁ ବାରିପଦା ପଥ ଅତିକ୍ରମ କରିଥିଲେ । ଆଜି, ଯେତେବେଳେ

୨/୩ କି.ମି. ଦୂରରେ ଗୋଟିଏ ଗୋଟିଏ ମହାବିଦ୍ୟାଳୟ ଅବସ୍ଥାପିତ, ଆମେ ତତ୍‌କାଳର କଷ୍ଟସ୍ୱୀକାରକୁ କଳ୍ପନାରେ ଆଣିପାରିବା ନାହିଁ । ଏହିଭଳି ସଂଘର୍ଷମୟ ଜୀବନଯାତ୍ରା ଐତିହାସିକ ସ୍ୱାଭିମାନ ଓ ଚାରିତ୍ରିକ ଦୃଢ଼ତାକୁ ଅଧିକ ଶୌର୍ଯ୍ୟବନ୍ତ କରିଥିଲା । ସେ ଆତ୍ମ-ବିଶ୍ଳେଷଣରେ ବ୍ରତୀ ହୋଇ ପ୍ରକାଶ କରିଛନ୍ତି ଯେ ଆଦିବାସୀଙ୍କ ମେଳରେ ଅରଣ୍ୟ ଭୂମିରେ ପଢ଼ିଥିବା ହେତୁ, ତାଙ୍କ ବ୍ୟକ୍ତିତ୍ୱରେ, ମୂଳତଃ ଆଦିବାସୀଗୁଣଗୁଡ଼ିକ ଆସ୍ଥାନ ଜମାଇଥିଲା । ନିରୀହତା, ସରଳତା, ସ୍ୱାଭିମାନ ଆଦି ସୁଗୁଣଗୁଡ଼ିକର ସେ ଅଧିକାରୀ । ଆଦିବାସୀ ଓ ଅରଣ୍ୟବାସିନ୍ଦାଙ୍କ ମାନବିକ ମୂଲ୍ୟବୋଧର ଦୃଷ୍ଟାନ୍ତସ୍ୱରୂପ ମୁଁ ଏଠାରେ ୨ଟି ସାମାନ୍ୟ ଅଥଚ ବିଶିଷ୍ଟ ଘଟଣା ଉଲ୍ଲେଖ କରୁଅଛି ।

ସେ କାଳର ଆଦିବାସୀ ଓ ସବର୍ଣ୍ଣଙ୍କ ମଧ୍ୟରେ ଏପରି ଆତ୍ମୀୟତା ଥିଲା, ଯାହାକି ବାଡ଼ିର କାକୁଡ଼ି, ପନିପରିବା, ବିଲର ମାଛ, ତୋଟାର ଆମ୍ବ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଜଣକ ବାଡ଼ିରୁ ଏସବୁ ଅନ୍ୟଜଣେ ନ ଜଣାଇ ଘେନିଯିବା ଦୋଷାବହ ନ ଥିଲା । ଆମର ଅସହାୟତାର କଥା ଯେ, ଆଜିକାଲି କେରାଏ ସଜନାଶାଗ ବା ଦୁଇ ଚାରିଟା ପିଜୁଳି କେହି ନେଇଗଲେ, ହଣାହଣି, ହତ୍ୟା ପର୍ଯ୍ୟନ୍ତ ପରିଣାମ ଭୋଗିବାକୁ ପଡୁଛି । ଏହି ପରିପ୍ରେକ୍ଷୀରେ ଅରଣ୍ୟ-ଜୀବନର ମହତ୍ତ୍ୱ ବୁଝିହୁଏ ଓ ବୁଝିହୁଏ ଯେ, ଆମେ ଏକବିଂଶ ଶତକ ପ୍ରାରମ୍ଭକାଳର ସଭ୍ୟ ମଣିଷ କେତେ ବେଶି ଅସଭ୍ୟ ଓ ଅମଣିଷ ପାଲଟି ଯାଇଛୁ ।

ଅନ୍ୟ ଏକ ପ୍ରସଙ୍ଗରେ ଆସେ ଡକ୍ଟର ପାଣିଗ୍ରାହୀଙ୍କ କୈଶୋର ଜୀବନର ଏକ ଚରିତ୍ର 'ମରାବାୟା' । ଆଦିବାସୀ କୋହ୍ଲ 'ମରା' ଭିକ୍ଷାବୃତ୍ତି ଧରିଥାଏ । ସମ୍ବଳ ବୋଲି ଗୋଟେ ମାଟିହାଣ୍ଡି, ଗୋଟେ ଗାମୁଛା । ଭିକ୍ଷାଚାଉଳ ନେଇ ତୋଟାରେ ଗଛମୂଳେ ରାନ୍ଧେ । ଭାତରୁ ଭାଗଦିଏ କୁକୁରକୁ, ଚଢ଼େଇକୁ, ତା'ପରେ ଗଛକୁ "ନେ, ତୋର ଯାହା ଇଚ୍ଛା ଖାଇଦେ ।" ଗଛ ତ ଖାଏ ନାହିଁ । ମରାବାୟା, ବାକି ଭାତତକ ଖାଇଦିଏ, ହାଣ୍ଡିଟିଏ ସାଙ୍ଗରେ ଧରେ । ବନ୍ଧୁଗଣ, ଏହି କୋହ୍ଲ ଆଦିବାସୀର ଅନ୍ତରାଳରେ ଆମକୁ ଅବଧୂତ ଦିଶିଯାଆନ୍ତି ନାହିଁକି ? ଭାଗବତ ଏକାଦଶ ସ୍କନ୍ଦର 'ଯଦୁରାଜା ଅବଧୂତ ସମ୍ବାଦରୁ ଅବଧୂତଙ୍କ ୨୪ଗୋଟି ଗୁରୁଦୀକ୍ଷାରୁ ଅଜଗର ଓ ବୁଢ଼ିଆଣୀଙ୍କ ନିରାସକ୍ତ, ନିଶ୍ଚିନ୍ତ ରହିବା ଦୀକ୍ଷା କେତେ ମହତ୍ ! ଶାସ୍ତ୍ର ପୁରାଣଜ୍ଞ ବ୍ୟକ୍ତିଗଣ ଏହି ନିରାସକ୍ତ ହେବାର ଅଭ୍ୟାସ କରିପାରନ୍ତି ନାହିଁ – 'ଦୁର୍ଗମପଥ ଏ ଭଜନ / ଭଯେ ଭାଜନ୍ତି ଯୋଗୀଜନ' ପରି । ଅଥଚ ନିଃସ୍ୱ ଆଦିବାସୀ ଆଚରିପାରେ ଏପରି ଅସଂଗ୍ରହର ଦୀକ୍ଷା ଯେଉଁ ଦୀକ୍ଷାର ମହତ୍ତ୍ୱକୁ ଗୀତା ଦ୍ୱିତୀୟ ଅଧ୍ୟାୟରେ ବୁଝାଇ ବୁଝାଇ ଅର୍ଜୁନଙ୍କ ସମକ୍ଷରେ ପରିଶ୍ରାନ୍ତ ହୋଇ ପଡ଼ନ୍ତି ଶ୍ରୀକୃଷ୍ଣ- ଯେ 'ବ୍ରହ୍ମଚର୍ଯ୍ୟ ଅସଂଗ୍ରହ'- ଗାନ୍ଧିଜୀ ମଧ୍ୟ ନିଜ କ୍ୟାମ୍ପମାନଙ୍କରେ 'ଅସଂଗ୍ରହ'କୁ ଅଭ୍ୟାସ କରୁଥିଲେ । ଅସଂଗ୍ରହ- ସଞ୍ଚୟର ପରିପନ୍ଥୀ-ସଂସାରୀର ନୁହେଁ ସାଧୁର ମାର୍ଗ । ଡକ୍ଟର ପାଣିଗ୍ରାହୀଙ୍କ ବ୍ୟକ୍ତିତ୍ୱ ଏହିଭଳି ପରିବେଶ ଓ ଚରିତ୍ର ମଧ୍ୟଦେଇ ସଙ୍ଗଠିତ ହୋଇଥିଲା ।

ଏହି ଅନ୍ଧାରି ମୂଳକରେ ଜ୍ୟୋତିଶିଖାପରି ଉଦ୍ଦୀପ୍ତ ହୋଇଉଠୁଥାଆନ୍ତି ନବଯୁବକ ଶ୍ରୀ ପାଣିଗ୍ରାହୀ, ଏହି ଜ୍ୟୋତିକୁ ବ୍ୟାପକ କରାଇବା ଦିଗରେ, ଉର୍ଦ୍ଧ୍ୱାୟିତ କରାଇବାରେ ସହଯୋଗ କରିଥିଲେ ରାଜା ପ୍ରତାପଚନ୍ଦ୍ର ଭଂଜଦେଓ, ନୂତନ ଓଡ଼ିଶାର ଇତିହାସର ଅପ୍ରତିଦ୍ୱନ୍ଦ୍ୱୀ, ଗୁଣଗ୍ରାହୀ, ଉଦାରଚେତା ରାଜା ରାମଚନ୍ଦ୍ର ଭଞ୍ଜଙ୍କ ଦ୍ୱିତୀୟ ପୁତ୍ର । ରାଜା ପୂର୍ଣ୍ଣଚନ୍ଦ୍ରଙ୍କ କନିଷ୍ଠଭ୍ରାତା । ଏହି ରାଜନ୍ୟମଣ୍ଡଳୀ ଉପଯୁକ୍ତ ପ୍ରତିଭାର ବିକାଶ ଘଟାଇବା ଦିଗରେ ଯତ୍ନଶୀଳ ଥିଲେ ।

ସେଦିନ ବୈଜ୍ଞାନିକ ଓ ସାହିତ୍ୟିକ ଭୁବନେଶ୍ୱର ବେହେରା କଳାହାଣ୍ଡିର ମହାରାଜଙ୍କ ଅନୁଗ୍ରହପ୍ରାପ୍ତ ହୋଇ, ଜୀବନକ୍ଷେତ୍ରରେ ସୁଯୋଗ୍ୟ ହୋଇଥିଲେ । ଏହି ପରିପ୍ରେକ୍ଷୀରେ, ମୟୂରଭଞ୍ଜର ଇତିହାସ ସହିତ ମୋ ବଂଶର ଏକ ନିଗୂଢ଼ ଯୋଗାଯୋଗ ରହିଛି । ମୋର ଜେଜେବାପା ପ୍ରଖ୍ୟାତ ଭାଷାକୋଷ ପ୍ରଣେତା, ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜ, ତାଙ୍କ ସୁବୃହତ୍ କୋଶାର୍କକୁ ମୟୂରଭଞ୍ଜର ରାଜା ପୂର୍ଣ୍ଣଚନ୍ଦ୍ର ଭଂଜଦେଓଙ୍କ ନାମରେ ନାମିତ କରିଛନ୍ତି । ରାଜା ପୂର୍ଣ୍ଣଚନ୍ଦ୍ର ଅଳ୍ପାୟୁ ଥିଲେ ହେଁ ବିଦ୍ୟୋତ୍ସାହୀ ଥିଲେ । ସାତଟିଯାକ ବୃହତ୍‌କାୟ ଭାଷାକୋଷ ୧୯୩୧ରୁ ୧୯୪୦ ମଧ୍ୟରେ ପ୍ରକାଶ ଲାଭ କରିଥିଲା । ୧୯୩୦ରେ ମହାରାଜା ସାର୍ ପ୍ରତାପଚନ୍ଦ୍ର ଭଂଜଦେଓ ଭାଷାକୋଷର ୧ମ ଭାଗ ପ୍ରକାଶନ ନିମିତ୍ତ ୮ ହଜାର ଟଙ୍କା ଦାନ କରିଥିଲେ, ସେଥିପାଇଁ ୭ଖଣ୍ଡ ଯାକ ଭାଷାକୋଷରେ ପୂର୍ଣ୍ଣଚନ୍ଦ୍ର ଓ ପ୍ରତାପଚନ୍ଦ୍ରଙ୍କର ଦିବ୍ୟ ଛବି ସ୍ଥାନିତ ହୋଇଛି । ଭାଷାକୋଷ ସଙ୍ଗରେ ଏହି ନାମକରଣ ସମ୍ପର୍କରେ କେତେ ଧାଡ଼ି ଆପଣମାନଙ୍କ ଅବଗତି ନିମନ୍ତେ ଉଦ୍ଧାର କରୁଛି । ପ୍ରହରାଜ ଲେଖୁଛନ୍ତି "ଓ attended the 1st sitting of the Indian oriental conference at Patna, in dec' ୧୯୩୦, as president of Oriya session." ମି. ଏସ୍.ସି. ତ୍ରିପାଠୀ ଆଇ.ଇ.ଏସ୍. ଭାଷାକୋଷର ଅଳ୍ପ କେତେକ ଛପାପୃଷ୍ଠା ଦେଖି ଏହାର ପ୍ରକାଶନ ନିମିତ୍ତ ମହାରାଜା ପ୍ରତାପଚନ୍ଦ୍ରଙ୍କୁ କହିଲେ । ପ୍ରତାପ ଚନ୍ଦ୍ର ୮ ହଜାର ଟଙ୍କା ଦାନକରି In deference to the Maharaja's wish the name of his late brother Maharaja Purna Chandra has been joined to the title of this work. Page-x volume 1. ବହୁ ରାଜା ମହାରାଜାଙ୍କ ସହଯୋଗରେ ସାତଖଣ୍ଡ ଭାଷାକୋଷ ପ୍ରକାଶିତ ହୋଇଥିଲେ ହେଁ ପ୍ରାଥମିକ ସହଯୋଗ ଥିଲା ମୟୂରଭଂଜର । ସେଥିପାଇଁ, ପ୍ରଣେତା ସ୍ୱର୍ଗତ ପ୍ରହରାଜ ତାଙ୍କ ଭାଷାକୋଷରେ, ମୟୂରଭଂଜ ରାଜପରିବାର ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରିଛନ୍ତି । ସେହି ସ୍ମୃତିରେ ସୁଧୀବୃନ୍ଦ, ଆଜି ମୁଁ, ଗୋପାଳ ପ୍ରହରାଜଙ୍କ ପୌତ୍ରୀ, ସେହି ମହାନ୍ ଋଣକୁ ସ୍ୱୀକାର କରିବାସହ ଏହି ବଦାନ୍ୟଭୂମିକୁ ପ୍ରଣିପାତ ଜଣାଉଛି ।

ଏହି ପ୍ରବନ୍ଧରେ ମୁଁ ଐତିହାସିକ-ସାହିତ୍ୟିକ ଡକ୍ଟର ପାଣିଗ୍ରାହୀଙ୍କ କୃତିତ୍ୱ ଅପେକ୍ଷା ବ୍ୟକ୍ତିତ୍ୱର ବିଶ୍ଳେଷଣ କରିବା ଶ୍ରେୟସ୍କର ମନେ କରୁଛି । ଏଇଥିପାଇଁ ଯେ, ବ୍ୟକ୍ତିର ସକଳ କୃତିତ୍ୱଠାରୁ, ତା'ର ବ୍ୟକ୍ତିତ୍ୱ ଅଧିକତର ମହୀୟାନ୍ । ସେହି ମହାନ୍ ବ୍ୟକ୍ତିତ୍ୱଙ୍କର

ଅନ୍ତସ୍ୱରୂପର ଅଛ କେତୋଟି ଦିଗ ଉପରେ ମୁଁ ଆଲୋକପାତ କରୁଛି । ତାଙ୍କ ବ୍ୟକ୍ତିତ୍ୱ ସତେ ଯେପରି ଅନୁନ୍ନତ, ଅଭାବୀ ଓଡ଼ିଶାର ଆତ୍ମାସହ ଜଡ଼ିତ । ସେଥିରୁ ଉଜ୍ଜ୍ୱଳ ପ୍ରେରଣା ଲାଭ କରି ସେ ସତ୍ୟାନୁସନ୍ଧାନରେ ବ୍ରତୀ ହୋଇଛନ୍ତି । ତାଙ୍କର ସାଲିସ୍‌ବିହୀନ ବ୍ୟକ୍ତିତ୍ୱ । ତାହା ବିପୁଳ ଓ ବ୍ୟାପକ । ଯେତେଗୋଟି ରଙ୍ଗରେ ସେହି ବ୍ୟକ୍ତିତ୍ୱକୁ ଚିତ୍ରଣ କରିବାର ପ୍ରୟାସ କଲେ ମଧ୍ୟ ତାହା କେବଳ ଆଂଶିକ ଭାବେ ହିଁ ଚିତ୍ରିତ ହୋଇପାରିବ । ଖିଚିଂ ତାଙ୍କ ମୂଳ ବାସଭୂମି । ସେଠାରେ ଆଦିବାସୀ, ହରିଜନ ଓ ସବର୍ଣ୍ଣଙ୍କର ଏକ ମିଳିତ ସଂସ୍କୃତି ପ୍ରଚଳିତ ଥିବାର ଜଣାଯାଏ-ଖିଚିଂ ମନ୍ଦିରରେ ଉପରୋକ୍ତ ତିନିଜାତି ପ୍ରବେଶାଧିକାର ପାଇଥାନ୍ତି । ହିନ୍ଦୁ ଓ ଆଦିବାସୀ ଧର୍ମ ସଂସ୍କୃତିର ସମନ୍ୱୟ ଘଟିଥାଏ । ଖିଚିଂର ପତ୍ନସମ୍ପଦ ହିଁ ମୟୂରଭଂଜର ଆଦି ଇତିହାସକୁ ପ୍ରଖ୍ୟାପନ କରେ । ୧୦ମ ଓ ୧୧ଶ ଶତାବ୍ଦୀରେ ଖିଚିଂ ଥିଲା ମୟୂରଭଞ୍ଜର ରାଜଧାନୀ । ଡକ୍ଟର ପାଣିଗ୍ରାହୀଙ୍କ କୃତିତ୍ୱ ବିଷୟରେ ଅବଗତ ହୋଇ ରାଜା ପ୍ରତାପ ତାଙ୍କୁ ୧୫୭ ମାଣ ଜମି ଦାନ କରିଥିଲେ । ତାଙ୍କ ଇତିହାସ ସାଧନ ଧାରା ଥିଲା ସତ୍ୟନିଷ୍ଠ ଓ ପ୍ରମାଣଭିତ୍ତିକ । ଜାଲ୍ ଶିଳାଲେଖ ଓ ଜାଲ୍ ତାଳପତ୍ରପୋଥିକୁ ଚିହ୍ନି ଚିହ୍ନାଇବାରେ ସେ ଥିଲେ ଧୁରନ୍ଧର । ତାଙ୍କ ଐତିହାସିକ ବ୍ୟକ୍ତିତ୍ୱ ଓ କୃତିତ୍ୱ, ସତ୍ୟନିଷ୍ଠ, ବହୁଶ୍ରମ, ସମୟ, ଧୈର୍ଯ୍ୟ, ଅନୁସନ୍ଧାନ, ଅନୁଶୀଳନ, ଅଧ୍ୟୟନ, ପରିଭ୍ରମଣ, ଗୁରୁସେବା ଓ ଗବେଷଣା ଦ୍ୱାରା ଥିଲା ପରିପୁଷ୍ଟ । ଭାବପ୍ରବଣତାଜନିତ ସହଜ ଗବେଷଣାକୁ ସେ ଘୃଣା କରୁଥିଲେ । ଭଣ୍ଡ ପାଣ୍ଡିତ୍ୟ ଓ ସତ୍ ପାଣ୍ଡିତ୍ୟକୁ ଚିହ୍ନାଇବା ନିମିତ୍ତ ସେ ଥିଲେ କଷଟିପଥର । ଭଲ ଭେଲ ବାରି ଦେଇପାରୁଥିଲେ । ଭୟଙ୍କର ଯଶୋଲିପ୍‌ସାର ଦିଗମ୍ବରୀ ବେଶ ସାମ୍ନାରେ ସାଧନାକର୍ମର ନିଃସହାୟତା ପ୍ରତି ସେ ଥିଲେ, ଖୁବ୍ ସଚେତନ ଓ ସହାନୁଭୂତିଶୀଳ । ଆଜିର ଉପଭୋକ୍ତା ସମାଜର ଆଶୁଲାଭ ନିମିତ୍ତ, ନିର୍ଲଜ୍ଜ ଆୟୋଜନ ଲକ୍ଷ୍ୟ କରି ସେ ବିଷଣ୍ଣ ହୋଇଥିଲେ । ମିଥ୍ୟାଚାରର ଏହି ପ୍ରାବଲ୍ୟ ମଧ୍ୟରେ ତାଙ୍କର ସ୍ୱାଭାବିକ କେତେକ ଶତ୍ରୁ ଦେଖାଦେଇଥିଲେ । ବୁଦ୍ଧି ବିଚକ୍ଷଣତା, ପ୍ରତିଭା, ଯୁଗେଯୁଗେ ଶତ୍ରୁତାକୁ ଆମନ୍ତ୍ରଣ କରିଥାଏ । ସେହି ନ୍ୟାୟରେ ତାଙ୍କ ପ୍ରତି ଅସହିଷ୍ଣୁ ବ୍ୟକ୍ତି ଅଭାବ ରହିଲେ ନାହିଁ । ସେମାନଙ୍କ ଦାଉରେ ସେ ଆଜୀବନ ପୀଡ଼ା ଭୋଗିଛନ୍ତି ଓ ସାମୟିକ ଭାବେ ଅବସାଦଗ୍ରସ୍ତ ହୋଇ ପଡ଼ିଛନ୍ତି । 'ମୂଢ଼ ସଭା'ରେ 'ମୂକ ଧାର୍ମିକ' ପରି ତାଙ୍କର ଅବସ୍ଥା ହୋଇଛି । ସାଧାରଣରୁ ଅଧିକ 'ପ୍ରତିଭା'କୁ କାଳେକାଳେ ସମାଜ ଓ ସଂସାର ଠିକ୍ ରୂପେ ମୂଲ୍ୟାୟନ କରିପାରେ ନାହିଁ । ସେଦିନ ମହାନ୍ ଚିତ୍ରଶିଳ୍ପୀ ଭାନ୍‌ଗଗ୍‌ଙ୍କୁ ତାଙ୍କ ସମୟର କିଛି ଲୋକ 'ମାନସିକ ଅସୁସ୍ଥ' କହିଥିଲେ ହେଁ, ଭାନ୍‌ଗଗ୍ କାଳଜୟୀ ଚିତ୍ର ସୃଜି ଦେଇଛନ୍ତି । ସେହିପରି, ଡକ୍ଟର ପାଣିଗ୍ରାହୀ ସତ୍ୟସନ୍ଧ ଭାବରେ ଓଡ଼ିଶାର ଇତିହାସକୁ ନୂତନ ଆଲୋକରେ ନିରୀକ୍ଷଣ କରି ଗଢ଼ି ଥୋଇଛନ୍ତି । ତାଙ୍କର ୨ଜଣ ପୂର୍ବସୂରୀ ଐତିହାସିକଙ୍କୁ ସେ ସମ୍ମାନ ଅର୍ପଣ

କରିଛନ୍ତି । ଜଣେ ସ୍ୱର୍ଗତ ରାଖାଲ ଦାସ ବାନାର୍ଜୀ ଓ ଅନ୍ୟଜଣକ ସ୍ୱର୍ଗତ ହରେକୃଷ୍ଣ ମହତାବ, ସେ ନିଜେ ହୋଇଛନ୍ତି ଇତିହାସ ନିର୍ଣ୍ଣୟର ମାର୍ଗ ପ୍ରଦର୍ଶକ । ଅତୀତର ସାହିତ୍ୟ, ଶିଳାଲେଖ, ତାମ୍ରଲେଖ ଓ ପ୍ରତ୍ନସମ୍ପଦ ମଧ୍ୟରୁ ଇତିହାସକୁ ନିର୍ଦ୍ଧାରଣ କରିଛନ୍ତି । ଏତାଦୃଶ ନିରଳସ ଦାୟିକତା ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରିଛି । ମାତ୍ର ଯେ କୌଣସି ଉପାଧି ତାଙ୍କ ବ୍ୟକ୍ତିତ୍ୱର ପରାକାଷ୍ଠା ସମ୍ମୁଖରେ ସାମାନ୍ୟ ପ୍ରତିପାଦିତ ହୋଇଛି । ସେ ଜଣେ ଆତ୍ମସଚେତନ ଓଡ଼ିଆ ।

ସେ ନିଜେ କହିଛନ୍ତି– ଓଡ଼ିଶା ତାଙ୍କର ମାଆ । ସେହି ମାଆର ଦୁଃଖ, ଦୁଃସ୍ଥିତି ପ୍ରତି ସ୍ୱଅନ୍ତରର ଆକୁଳତାକୁ ସେ ନିବେଦନ କରିଛନ୍ତି ବାରିବାହ ସମକ୍ଷରେ । ସେଦିନ ବିରହୀ ଯକ୍ଷ ତା'ର ପ୍ରିୟା ନିକଟକୁ ସନ୍ଦେଶ ପଠାଇଥିଲା 'ମେଘଦୂତ' ମାଧ୍ୟମରେ । ସେହି ମେଘକୁ ଦୂତ କରି ଐତିହାସିକ ପାଣିଗ୍ରାହୀ ତାଙ୍କର ମରୁଡ଼ି ପ୍ରପୀଡ଼ିତା ବିପର୍ଯ୍ୟସ୍ତା ଅଥଚ ଐଶ୍ୱର୍ଯ୍ୟମୟୀ ମାଆ ନିକଟକୁ ପ୍ରେରଣ କରୁଛନ୍ତି । ମୁଁ ଏଠାରେ ତାଙ୍କ ନିଜ ଭାଷାରେ ତାଙ୍କ ଆକୁଳତାକୁ ଉପସ୍ଥାପନ କରୁଛି - ଠିକ୍ ଗଙ୍ଗାଜଳରେ ଗଙ୍ଗାଙ୍କୁ ପୂଜିବା ନ୍ୟାୟରେ- । ତାଙ୍କ ଆଧୁନିକ ପାଟଣାନଗର (ପ୍ରାଚୀନ ପୁଷ୍ପପୁର) ଠାରେ ଆସନ୍ନ ବର୍ଷା ନିକଟରେ ଲେଖକଙ୍କ ଆତ୍ମନିବେଦନ-ମାତୃଭୂମି ପ୍ରୀତିର, ଉତ୍କଳ ପ୍ରୀତି ତଥା ଆରଣ୍ୟଭୂମି ପ୍ରୀତିର ଏକ ଜ୍ୱଳନ୍ତ ନିଦର୍ଶନ । ଏଠାରେ ଆଉ ସ୍ୱର୍ଗତ ପାଣିଗ୍ରାହୀ ଐତିହାସିକ ନୁହନ୍ତି, ସେ ଶତକଡ଼ା ଶହେ ସାହିତ୍ୟିକ-ରମ୍ୟକଥକ ।- "ଜଳଦ ! ଦରିଦ୍ରଠାରେ ହିଁ ବଦାନ୍ୟତାର ମହତ୍ତ୍ୱ ବଢ଼ିଉଠେ । ଏଣୁ, ଦରିଦ୍ର ବନବାସୀମାନଙ୍କୁ ନିରାଶ ନ କରି ତୋର ବଦାନ୍ୟତା ସେମାନଙ୍କଠାରୁ ହିଁ ଆରମ୍ଭ କରିବୁ । ନିଘଞ୍ଚ ବନ ମଧ୍ୟରେ, ଏମାନଙ୍କ ବାସଭୂମି ମଧ୍ୟ ତୁ ସହଜରେ ଖୋଜି ପାଇବୁ ନାହିଁ । ଗୋ-ପଲ୍ଲର ଗଳଘଣ୍ଟି ବା ଗୋପାଳର ବେଣୁସ୍ୱନ ଶୁଣି କିମ୍ବା କୁଟୀରରୁ ଉଦ୍‌ଗତ କୁଣ୍ଡଳୀଭୂତ ଧୂମ ଦେଖି ଗ୍ରାମସୀମା ଜାଣିପାରିବୁ । ଅଥବା, ଯଦି ତୋର ଭାଗ୍ୟରେ ଥାଏ ତେବେ ସଂକୀର୍ଣ୍ଣ ପଥରେ ଶ୍ରେଣୀବଦ୍ଧ ନରନାରୀଙ୍କ ପ୍ରବାହଟିଏ ତୋ ଆଖିରେ ପଡ଼ିଯିବ । ଅଗ୍ରସର ନବଯୁବକମାନଙ୍କ, ବେଣୁସ୍ୱନର ଅନୁକୃତିରେ, ଲଳନାକଣ୍ଠର ଐକତାନିକ ଲଳିତ ସ୍ୱରରେ ବନଭୂମିକୁ ଭସାଇ ଏମାନେ ନିର୍ଝର ପରି ଗତିକରି ଚାଲୁଥିବେ । ବାରିବାହ ! ଏ ସମସ୍ତେ ତୋର ବାନ୍ଧବୀ । ଗୁରୁଗର୍ଜନରେ ଭୀତା ହୋଇ, ଏମାନେ, ଆଲିଙ୍ଗନ ପାଇଁ ପୁରୁଷ ପାଶକୁ ପଳାନ୍ତି ନାହିଁ । ଅବିରତ ବୃଷ୍ଟିପାତ ମଧ୍ୟରେ, ବନସ୍ପତି ପରି ରହି, ଶସ୍ୟକ୍ଷେତ୍ରରେ କର୍ମରତ ରହନ୍ତି । ଜଳଦ ! ତୁ କଅଣ ଜାଣୁ ନାହୁଁ ଯେ, ଏହି ବନବାସୀମାନେ ତୋ ଛଡ଼ା, ଆଉ କାହାରି ଅନୁଗ୍ରହ ଲୋଡ଼ନ୍ତି ନାହିଁ । କିମ୍ବା ନିଅନ୍ତି ନାହିଁ ? ସ୍ୱଅର୍ଜିତ ଧନରେ, ଉଦର ପୋଷଣ, ସୁନ୍ଦର ସ୍ୱାସ୍ଥ୍ୟ ଓ ନିର୍ମଳ ମନ ମାନବ ଜୀବନର ପରମକାମ୍ୟ ନୁହେଁ କି ? ଯଦି, ଜଗତରୁ କେବେ ତସ୍କରତା ଲୋପ ପାଏ, ତେବେ ମାନବିକତା ଶିଖିବାପାଇଁ, ସଭ୍ୟ ସମାଜ ଏମାନଙ୍କ

ପାଖକୁ ଦିନେ ଆସିବ । ଏଣୁ ତୁ, ଏମାନଙ୍କୁ ନିରାଶ ନ କରି ଅବିରତ ବାରିପାତରେ ବନଭୂମିକୁ ଶ୍ୟାମଳ ଓ ଉଜ୍ଜ୍ୱଳ କରିଦେବୁ ।” ‘ପୁଷ୍ପପୁରରେ ବର୍ଷାବରଣ’ରୁ ଉଦ୍ଧୃତ । ଲେଖକଙ୍କ ବକ୍ତବ୍ୟରେ, ଆଦିବାସୀ, ଗିରିଜନଙ୍କ ଅନ୍ତରର ସ୍ୱଚ୍ଛତା ଓ ଉଦାରତା ପ୍ରକୀର୍ତ୍ତିତ । ଏହାପରେ ତାଙ୍କର ଐତିହାସିକ ବ୍ୟକ୍ତିତ୍ୱକୁ ନିରୀକ୍ଷଣ କରାଯାଉ । ଇତିହାସର ଗଣନା ମାଧ୍ୟମରେ ସେ, ସାହିତ୍ୟର ତିଥି ନିର୍ଣ୍ଣୟ କରିଛନ୍ତି । ଏ କ୍ଷେତ୍ରରେ ସେ ଅଦ୍ୱିତୀୟ, “ମହାଭାରତରେ ସାରଳା ଦାସ ଓଡ଼ିଶାର ତତ୍କାଳର ଇତିହାସ ଲେଖିଛନ୍ତି ।” ଏହା ତାଙ୍କର ଗବେଷଣା ପ୍ରସୂତ ଅଭିମତ । ତାଙ୍କର ଆଲୋଚନା, ନବନବ ସତ୍ୟର ଉଦ୍‌ଘାଟନ କରିଛି । ସାହିତ୍ୟିକ ସତ୍ୟର ଆବିଷ୍କାରଦ୍ୱାରା ସେ ସାହିତ୍ୟଜଗତକୁ ବିଭ୍ରାନ୍ତିକର ଚିନ୍ତାରୁ ମୁକ୍ତ କରିଛନ୍ତି । କବି ରାଧାନାଥ, କବି ଭୀମଭୋଇଙ୍କ ରଚନାକୁ ଭିତ୍ତିକରି, ଐତିହାସିକ ନିରୀକ୍ଷଣ ମାଧ୍ୟମରେ ନୂତନ ସତ୍ୟ ପ୍ରଦାନ କରିଛନ୍ତି । ଇତିହାସ ନିଷ୍ଠୁର, ସେ ସତ୍ୟ ପ୍ରକାଶ କରେ, ସତ୍ୟ ଅବିକଳ୍ପ । ସତ୍ୟର ଉତ୍ତର ସହ୍ୟ କରିବା ନିମିତ୍ତ, ଯେଉଁ ଉଦାର ସାହସିକତା ଆବଶ୍ୟକ, ସମାଜ ସେହି ଉଦାରତା ଓ ସାହସିକତାରେ ଐତିହାସିକକୁ ବିଚାର କରିବା ବିଧେୟ । ନିଜ କୃତକର୍ମ ହେତୁ ସେ ଯଥାର୍ଥରେ ଇତିହାସର ବିଧାତା । ସେ ଯେତିକି ସମର୍ଥ ଐତିହାସିକ ସେତିକି ଆବେଗପ୍ରବଣ ପ୍ରକାଶକ୍ଷମ ସାହିତ୍ୟିକ । ସେ ଜୀବନ କାଳରେ ହୁଏତ ଯଥାଯୋଗ୍ୟ ସମ୍ମାନ ପାଇ ନାହାନ୍ତି । ଦୁଃସ୍ଥିତି ପ୍ରତିଭାର ଲଲାଟ ଲିଖନ । ଅନ୍ୟ ଅର୍ଥରେ ଦୁଃସ୍ଥିତିର ଅଗ୍ନିରେ ପ୍ରତିଭାରୂପୀ ସୁବର୍ଣ୍ଣ ଅଧିକ ଉଜ୍ଜ୍ୱଳ ହୋଇଉଠେ । ଏହି ମହାନ୍ ଐତିହାସିକ ପଥିକୃତ୍‌ଙ୍କ ଜୀବନରେ ତାହାହିଁ ପ୍ରତିପାଦିତ ହୋଇଛି ।

ଭଦ୍ର-ମହୋଦୟଗଣ ! ଆପଣମାନେ ଦୀର୍ଘ ସମୟ ଧରି ମୋ ସହିତ, ଡକ୍ଟର ପାଣିଗ୍ରାହୀଙ୍କ ବ୍ୟକ୍ତିତ୍ୱକୁ ସାକ୍ଷାତ କରିପାରିବାର ଧୈର୍ଯ୍ୟ ଅବଲମ୍ବନ କରିଥିବାରୁ ମୋର ଆନ୍ତରିକ କୃତଜ୍ଞତା ଗ୍ରହଣ କରନ୍ତୁ । ଧନ୍ୟବାଦ ।



# ପୁରାକଳ୍ପ, ଲୋକସାହିତ୍ୟ ଓ ଇତିହାସର ସମନ୍ୱୟରେ ସାମ୍ପ୍ରତିକତାର ନିର୍ଯ୍ୟାସ

## [ଇଂ. ଭୁବନେଶ୍ୱର ବେହେରାଙ୍କ 'ଶୁଣପରୀକ୍ଷ']

ରାଜା ପରୀକ୍ଷିତ ଅଭିଶାପଗ୍ରସ୍ତ ହୋଇଛନ୍ତି । ଗଙ୍ଗାନଦୀ କୂଳରେ ମୁନିଋଷି ପରିବେଷ୍ଟିତ ରାଜା ପ୍ରଶ୍ନ କଲେ ଶୁକଦେବଙ୍କୁ, "ମୃତ୍ୟୁମୁଖୀ ମନୁଷ୍ୟର କର୍ତ୍ତବ୍ୟ କ'ଣ ?" ମୃତ୍ୟୁ ସନ୍ନିକଟ । ଶୁକଦେବ ରାଜାଙ୍କୁ ହରିଚରିତ ଶ୍ରବଣ କରିବା ନିମିତ୍ତ ପ୍ରୋତ୍ସାହିତ କଲେ । ସେହିଥିରୁ ହିଁ ଆମ ବିଶିଷ୍ଟ ଅଧ୍ୟାତ୍ମ ଗ୍ରନ୍ଥ 'ଶ୍ରୀମଦ୍ଭାଗବତ'ର ଜନ୍ମ ।

ଏଠାରେ ବିଶିଷ୍ଟ ବୈଜ୍ଞାନିକ, ଶିକ୍ଷାବିତ୍ ସାହିତ୍ୟପ୍ରେମୀ ଓ ଖ୍ୟାତନାମା ସାହିତ୍ୟିକ ଇଂ. ଭୁବନେଶ୍ୱର ବେହେରା 'ଶୁଣପରୀକ୍ଷ' ପୁସ୍ତକଟି ରଚନା କଲେ ଯାହା ଉପରୋକ୍ତ ପୁରାକଳ୍ପକୁ ସ୍ପର୍ଶ କରି ସଂରଚିତ ହୋଇଉଠିଲା । ଲେଖକ ନିଜେ ଅଭିବ୍ୟକ୍ତ କରିଛନ୍ତି ଯେ, ଗୋଟିଏ ପ୍ରବନ୍ଧ ବ୍ୟତୀତ ଅନ୍ୟ ସବୁ ପ୍ରବନ୍ଧ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ସାହିତ୍ୟ ପତ୍ରିକା 'ସପ୍ତର୍ଷି'ର ବିଭିନ୍ନ ସଂଖ୍ୟାମାନଙ୍କରେ ତାଙ୍କ ଦ୍ୱାରା ଲିଖିତ ସମ୍ପାଦକୀୟର ସମଷ୍ଟି । 'ସପ୍ତର୍ଷି' ତାଙ୍କ ମାନସସନ୍ତାନ, ଡଃ ବେହେରା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର୍ ଥିଲାବେଳେ ହିଁ ଉକ୍ତ ପତ୍ରିକାର ଜନ୍ମ ଓ ବିସ୍ତୃତି । ସ୍ୱସାହିତ୍ୟ ଅଭିରୁଚିକୁ ଅଭିବ୍ୟକ୍ତି ପ୍ରଦାନ କରିବା ନିମିତ୍ତ ସେ ପତ୍ରିକାଟିକୁ ସାହିତ୍ୟିକ ମୁଖପତ୍ର ରୂପେ ପ୍ରକାଶିତ କରୁଥିଲେ । ଏହି ସମ୍ପାଦକୀୟଗୁଡ଼ିକରେ ପୁରାକଳ୍ପ, ଲୋକସାହିତ୍ୟ ଓ ଇତିହାସର ଅଭୂତପୂର୍ବ ତଥା ମନୋଜ୍ଞ ସମାବେଶ ଘଟିଅଛି । ଏହା ମାଧ୍ୟମରେ ଲେଖକ ତତ୍କାଳର ଜୀବନ-ଜିଜ୍ଞାସାକୁ ସାରସ୍ୱତ ରୂପ ପ୍ରଦାନ କରିଛନ୍ତି । ପ୍ରଫେସର ବେହେରା ଜଣେ ଯୋଗଜନ୍ମା ବ୍ୟକ୍ତି । ତାଙ୍କ ପ୍ରତିଭା ବହୁମୁଖୀ ଓ ଅକଳ୍ପନୀୟ । ମାତ୍ର ଏଠାରେ ପ୍ରସଙ୍ଗକ୍ରମେ 'ଶୁଣପରୀକ୍ଷ' ପୁସ୍ତକଟିର କିଞ୍ଚିତ୍ ଆଲୋଚନା କରିବାକୁ ମୁଁ ପ୍ରୟାସ କରିଛି । ମହାସିନ୍ଧୁକୁ ମାପିବାର ଯୋଗ୍ୟତା ହୁଏତ ମୋର ନାହିଁ, ମାତ୍ର ଆଗ୍ରହ ରହିଛି ପ୍ରଚୁର । ଆଞ୍ଜୁଳାଏ ପାଣି ଭିତରେ ମହାସିନ୍ଧୁର ଅସ୍ତିତ୍ୱ ମଧ୍ୟ ବିଦ୍ୟମାନ ଥାଏ । ସେହିଭଳି ମୋ ଦ୍ୱାରା ରଚିତ ଏହି ପ୍ରବନ୍ଧଟି ଯଦି ସୁଖପାଠ୍ୟ ଓ ଶ୍ରାବ୍ୟ ହୋଇପାରିଲା, ମୋର ଶ୍ରମ ସାର୍ଥକ ହେବ । ଏହି ପୁସ୍ତକଟି ନିଜସ୍ୱ ଯୋଗ୍ୟତା ବଳରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ୧୯୮୦ ମସିହାରେ ପୁରସ୍କୃତ ହୋଇଥିଲା । ଏହାର ଅପାର କୃତିତ୍ୱ ହେଉଛି ବହୁବର୍ଷ ଧରି ପୁସ୍ତକଟି ମହାବିଦ୍ୟାଳୟମାନଙ୍କର

ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇ ଅସଂଖ୍ୟ ଛାତ୍ରଛାତ୍ରୀଙ୍କୁ ଉଦ୍‌ବୁଦ୍ଧ କରିଛି । ଏହି ପୁସ୍ତକର ପ୍ରତିଟି ପ୍ରସଙ୍ଗରେ ଢଗଢମାଳି, ରୂଢ଼ି ପ୍ରୟୋଗ, ଆପ୍ତବାକ୍ୟ, ଲୋକସାହିତ୍ୟ, ପୁରାଣର ଅନୁଶୀଳନ ଓ ଇତିହାସର ବିଭିନ୍ନ ଚରିତ୍ର ଉଲ୍ଲେଖ ହୋଇ, ଲେଖକଙ୍କ ରଚନା ଶୈଳୀକୁ ଆକର୍ଷଣୀୟ କରିପାରିଛି ।

ପ୍ରଥମ ପ୍ରବନ୍ଧ 'ନାଟର ଗୋବର୍ଦ୍ଧନ' ଉପରୋକ୍ତ ସମୃଦ୍ଧ ଶୈଳୀର ଉଦାହରଣ । ରୂଢ଼ିଟି ପ୍ରାୟତଃ ମନ୍ଦ ଅର୍ଥରେ ବ୍ୟବହୃତ ହୋଇଥାଏ । ଲେଖକ ଅନେକ କାହାଣୀ, କିମ୍ବଦନ୍ତୀ, ଲୋକକଥାକୁ ନେଇ ଗପ ପରେ ଗପ କହିଚାଲନ୍ତି । ଛାତ୍ରମାନଙ୍କୁ ତ ନିଶ୍ଚୟ ଆକୃଷ୍ଟ କରିଥିବ, ମାତ୍ର ବୟସ୍କ ପାଠକମାନେ ମଧ୍ୟ ଏହାର ରସାସ୍ୱାଦନ କରି ମଜ୍ଜିଯାଆନ୍ତି । 'ମନ' ତ ସବୁ ନାଟର ଗୋବର୍ଦ୍ଧନ, ଏହା କିଏ ନ ଜାଣେ ? ଏହି ପୁସ୍ତକରେ ବର୍ଣ୍ଣିତ ଗୋଟି ଗୋଟି କାହାଣୀ ମୁଗ୍ଧକର ହୋଇଥିଲେ ମଧ୍ୟ, ଏହି ଆଲେଖ୍ୟଟିରେ ସବୁଗୁଡ଼ିକର ବ୍ୟାଖ୍ୟା ଦେବାର ଉପାୟ ନାହିଁ । ସେଥିରୁ କେତେକର ଉଲ୍ଲେଖ ଓ ବିଶ୍ଳେଷଣ କରିବାକୁ ହେଉଛି । ଚିତ୍ର, ପ୍ରତୀକ ଓ ରୂପକ ପ୍ରୟୋଗରେ ରଚନାଗୁଡ଼ିକ ସୁସମୃଦ୍ଧ । ଏସବୁର ପ୍ରୟୋଗରେ ଲେଖକ ନିଜ ବକ୍ତବ୍ୟକୁ ଅର୍ଥମୟ ଓ ସରସ କରିପାରିଛନ୍ତି ।

ଜୀବନ ପ୍ରତି ଗଭୀର ଅନୁସନ୍ଧିତ୍ସା, ଇତିହାସ, ପୁରାଣ ଓ ଲୋକସାହିତ୍ୟର ବ୍ୟାପକ ପଠନ ଓ ମନନ ତଥା ଏଗୁଡ଼ିକର ପୁନରୁତ୍‌ଥାନ ଲେଖକଙ୍କ ବହୁପାଠିତାର ନିଦର୍ଶନ । ପୁରାକଳ୍ପ ମାଧ୍ୟମରେ ଲେଖକ ଯୁବକୁଳକୁ ମୁଖ୍ୟତଃ, ଏଠାରେ ଦିଗନ୍ତ ଆଡ଼କୁ ନିର୍ଦ୍ଦେଶ କରି କହିଛନ୍ତି ଯେ, "ଦେଖ, ତୁମେମାନେ କିଏ, କେଉଁଠାରୁ ଆସିଛ ଓ କେଉଁ ଆଡ଼କୁ ଯାଉଛ ।" ଇଞ୍ଜିନିୟରିଂ ପାଠରେ ଧୁରନ୍ଧର ଥିଲେ ବି ଲେଖକ ଉପରୋକ୍ତ ଭିନ୍ନ ବିଷୟଗୁଡ଼ିକରେ ପ୍ରଖର ରୁଚି ରଖନ୍ତି । 'ଭୁଲ୍'କୁ ନେଇ ତାଙ୍କର ମନ୍ତବ୍ୟ – "ସେ ଭୁଲ୍ କରେ ବୋଲି ସେ ମଣିଷ ହୋଇ ରହେ ।" ସତ୍ୟ, ତ୍ରେତା, ଦ୍ୱାପର ସବୁ ଯୁଗରେ ଋଷି, ରାଜା ବିଦ୍ୱାନ୍‌ମାନେ ଭୁଲ୍ କରି ହିଁ ପୁରାଣମାନଙ୍କୁ ଦୀର୍ଘ କଳେବର ପ୍ରଦାନ କରିଥାନ୍ତି । ସାଧାରଣ ମଣିଷ ତ ଛାର । ଉଦାହରଣ ଦେଇ ଲେଖକ କହନ୍ତି, "ନିଜେ ମହାତ୍ମା ଗାନ୍ଧୀ ୧୯୨୧-୨୨ ମସିହାରେ ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହର ଡାକରା ଦେଇ ମସ୍ତବଡ଼ ଭୁଲ୍ କରିଛନ୍ତି ବୋଲି କହିଥିଲେ- ଏହି ଭୁଲ୍‌ର ନାମ ଦେଲେ (ଆଖ୍ୟାୟିତ କଲେ) 'ହିମାଳୟାନ୍ ବ୍ଲଣ୍ଡର୍' । 'ମୁନିନାଞ୍ଚ ମତିଭ୍ରମ' ବୋଲି କିଏ ନ ଜାଣେ ? ଲେଖକଙ୍କ ଦ୍ୱାରା ପ୍ରଦତ୍ତ ଅନେକ ପ୍ରତୀକାତ୍ମକ ଉଦାହରଣ, ମଣିଷକୁ ଭୁଲ୍ ଓ ପଶ୍ଚାତ୍ତାପର ପ୍ରାସଙ୍ଗିକତା ସମ୍ପର୍କରେ ସୂଚାଇ ମଣିଷକୁ ଆଶ୍ୱାସ ଦେଇଥାଏ ।

ପଲ୍ଲୀପ୍ରକୃତିର ଅନନ୍ୟ ବୈଶିଷ୍ଟ୍ୟ ଦର୍ଶାଇ ଲେଖକ ପଲ୍ଲୀକବି ନନ୍ଦକିଶୋର ଓ କବି ମଧୁସୂଦନ ରାଓଙ୍କ କବିତା ଉଦ୍ଧାର କରି ତା'ର ଯଥାର୍ଥତା ପ୍ରତିପାଦନ କରିଛନ୍ତି ।

ପଲ୍ଲୀଗୀତ 'ଡାମରା କାଉରେ ଡାମରା କାଉ/ ଉଚ୍ଚ ପରବତେ ବୋବାଉ ଥାଉ' ଏବଂ 'ଛାଡ଼ି ବନ୍ଧୁ ନଗର ଚହଳ/ ଚାଲ ଯିବା ଯେଉଁ ସ୍ଥାନେ/ ଗୋପାଳ, କୃଷକମାନେ/ ଆନନ୍ଦେ କଟାନ୍ତି ଦିନ ସୁଖେନ୍ଦୁ ବିମଳ/ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।" (ମ. ରାଓ) ଗ୍ରାମ୍ୟ ଜୀବନର ମହତ୍ତ୍ୱ ସମ୍ପର୍କରେ ନିଜସ୍ୱ ଅନୁଭୂତିକୁ ସ୍ମୃତି ଓ ବାସ୍ତବତା ମଧ୍ୟରୁ ସେ ଉଠାଇ ଆଣି ସରଳତା ଓ ବ୍ୟକ୍ତିର ମହତ୍ତ୍ୱକୁ ପ୍ରତିପାଦନ କରିଛନ୍ତି । ତଥାପି, ନବସଭ୍ୟତା, ନଗର ଚହଳ ଅପ୍ରତିରୋଧ୍ୟ, ଯନ୍ତ୍ର ଭିତରେ କାର୍ଯ୍ୟରତ ଶିକ୍ଷାବିତ୍ ଏହା ସ୍ୱୀକାର କରିଛନ୍ତି । ଏହି ପ୍ରସଙ୍ଗରେ ଦାର୍ଶନିକତାର ସଂଯୋଗ କରି ମଣିଷ ଶରୀର ପ୍ରତି ବ୍ୟଙ୍ଗ ପ୍ରକଟ କରିଛନ୍ତି । ପୁନଶ୍ଚ ଅସମ୍ଭବ ପୌରାଣିକ ସତ୍ୟ 'ବିଶ୍ୱରୂପ ଦର୍ଶନ'ର ମହିମା ପ୍ରଖ୍ୟାପନ କରନ୍ତି । ମାତ୍ର ତତ୍କାଳର ଯୁଗୋପଯୋଗିତାକୁ ଗ୍ରହଣ କରିନେବା ଅବଶ୍ୟମ୍ଭାବୀ । ପ୍ରାୟ ସମସ୍ତ ରଚନାରେ ସଂଯୋଜିତ ଢଗଢମାଳି ବକ୍ତବ୍ୟର ଅନ୍ତସ୍ୱରକୁ ରସାଣିତ କରି ପାଠକଙ୍କୁ ବିହ୍ୱଳ କରି ପକାଇବାର ଯୋଗ୍ୟତା ରଖନ୍ତି । ଲେଖକ ଏକ ଜଟିଳ, ଦ୍ୱନ୍ଦ୍ୱାତ୍ମକ ପ୍ରଶ୍ନ ଉତ୍‌ଥାପନ କରନ୍ତି । ତାହା ହେଲା, "ଭଗବାନ୍ ମଣିଷକୁ ସୃଷ୍ଟି କରିଛନ୍ତି ନା ମଣିଷ ଭଗବାନ୍‌ଙ୍କୁ ସୃଷ୍ଟି କରିଛି ?" ମନେହୁଏ ଦୁଇଟିଯାକ ତଥ୍ୟ ସତ୍ୟ ଅଟେ । କୌଣସି ଅଲୌକିକତା ହୁଏତ ମଣିଷକୁ ସୃଷ୍ଟି କରିଛି, ମାତ୍ର ମଣିଷର ଧ୍ୟାନ-ଧାରଣାରେ ଭଗବାନ୍‌ଙ୍କ ପ୍ରତି ଭକ୍ତି ଥିବାରୁ ସେ ପୂଜିତ ହେଉଛନ୍ତି । ବିଂଶ ଶତକର ଶେଷାର୍ଦ୍ଧରେ ବୈଜ୍ଞାନିକ ପ୍ରଗତିକୁ ଲକ୍ଷ୍ୟ କଲେ ଭଗବାନ୍‌ଙ୍କ ସ୍ଥିତି ହୁଏତ ଅବାନ୍ତର ପ୍ରତୀତ ହୋଇପାରେ- ଜୀବନ୍ତ ଓ ଜଡ଼ର ଏହି ଦ୍ୱନ୍ଦ୍ୱ ଭିତରେ ଲେଖକ ମଣିଷ ସ୍ରଷ୍ଟାଙ୍କୁ ସ୍ୱୀକାର କରିଛନ୍ତି- ମାନବାତ୍ମାକୁ ଆଶ୍ୱସ୍ତ କରିବା ଲେଖକଙ୍କର ଲକ୍ଷ୍ୟ ('ମଣିଷ ଓ ତା'ର କାରିଗର'- ପ୍ରବନ୍ଧ) । ସର୍ବଦା ଓ ସର୍ବତ୍ର ପ୍ରାଚୀନ ଭାରତର ସଂସ୍କୃତି ଓ ସଭ୍ୟତାର ଜୟଗାନ କରିଥିଲେ ମଧ୍ୟ ଲେଖକ ସ୍ଥଳବିଶେଷରେ ଏହାର ତ୍ରୁଟି ନିର୍ଦ୍ଦେଶ କରି, ସମାଧାନର ଉପାୟ ସ୍ଥିର କରିଛନ୍ତି । ଲେଖକ ବୁଝିଛନ୍ତି, ଅମୃତର ସନ୍ତାନ, ଏଇ ମଣିଷର ମନତଳେ ପାଗଳାମି ପ୍ରଚୁର । ସାହିତ୍ୟ, ନୃତ୍ୟ ଓ ସଙ୍ଗୀତାଦି କଳାର ବିକାଶ ହେଉଛି ସଭ୍ୟତାର ମାପକାଠି । ତନ୍ମଧ୍ୟରୁ ପ୍ରାପ୍ୟ ଆନନ୍ଦ ଅବଶ୍ୟ ସାଂସାରିକ ଜୀବନରେ 'ଅପ୍ରୟୋଜନ' ମାତ୍ର, ଏହା ମାନବର ଆତ୍ମାର ଖାଦ୍ୟ ଓ ବ୍ୟକ୍ତିର ବିକାଶ ପଥରେ ପ୍ରୟୋଜନ । ନ ହେଲେ ମଣିଷ 'ସାକ୍ଷାତ ପଶୁ ପୁଚ୍ଛ, ବିଷାଣହୀନ' ରୂପେ ତିଷ୍ଠି ରହିଥାନ୍ତା । ଭାରତ ତଥା ଉତ୍କଳ ଇତିହାସକୁ ପର୍ଯ୍ୟାଲୋଚନା କରି ଲେଖକ ବୁଦ୍ଧ, ମହାବୀର, ଖ୍ରୀଷ୍ଟ, ମହମ୍ମଦ, ଶଙ୍କର ଆଦିଙ୍କ ବୈଶିଷ୍ଟ୍ୟ ସହ ପୁରାଣର ବଶିଷ୍ଠ, ବିଶ୍ୱାମିତ୍ର, ଜନକ ଓ ଆଧୁନିକ ଯୁଗର ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧୀ, ଅରବିନ୍ଦଙ୍କ ଜୀବନ ଦର୍ଶନର ପରିଚୟ ଅନେକତ୍ର ପ୍ରଦାନ କରିଛନ୍ତି । ଉପରୋକ୍ତ ସକଳ ବ୍ୟକ୍ତିତ୍ୱଙ୍କ ମହନୀୟତାରେ ଅମୃତର ସନ୍ତାନ ପ୍ରତିଷ୍ଠା ପାଇଛି ।

ଲେଖକଙ୍କ ମତରେ ପଶୁତ୍ୱ ଓ ଦେବତ୍ୱ ବୋଧହୁଏ ଏ ମଣିଷର ଦୁଇଟି ପାର୍ଶ୍ୱ । ଯିଏ ଦସ୍ୟୁ ରତ୍ନାକର, ସେହି ହିଁ ଆଦିକବି ବାଲ୍ମୀକି । ଧର୍ମ ଓ ମିଥ୍ୟାଚାର, ନୀତି ଓ ନୀତିହୀନତା କାଳେ କାଳେ ରହିଥିଲା । ସେହି ମିଥ୍ୟାଚାର ଓ ମିଥ୍ୟାରୋପ ହିଁ ମଣିଷ ସମାଜକୁ କବଳିତ କରୁଛି । ବିଶେଷକରି ରାଜନୀତି, କ୍ଷମତା ଓ ଧନତନ୍ତ୍ରର ପ୍ରଭାବରେ । ଏଠାରେ ଗୋଟିଏ କରୁଣ ଉପାଖ୍ୟାନ ଉଲ୍ଲେଖ ନ କରି ରହିହେଉ ନାହିଁ । ଲେଖକଙ୍କ ପ୍ରଦତ୍ତ ଅନେକ ଗଛ, ଲୋକଗଛ ଆଦି ମଧ୍ୟରୁ ଏହା ମାତ୍ର ଗୋଟିଏ । 'ମେଣ୍ଢାଛୁଆ ଓ ଗଧିଆ' ଉପାଖ୍ୟାନଟି ପ୍ରତୀକାତ୍ମକ । ମିଥ୍ୟାରୋପର ଏକ ଚତୁର ତଥା ହିଂସ୍ର ଉଦାହରଣ । ବିଚାରି ମେଣ୍ଢାଛୁଆଟି ପାଣି ପିଉଛି- ଜଳଧାରର ଶେଷ ଦିଗକୁ । ମାତ୍ର ଉପର ମୁଣ୍ଡରେ ପାଣି ପିଉଥିବା ଗଧିଆର, ଛନଛନ ମେଣ୍ଢାଛୁଆକୁ ଦେଖି ପାଟିରୁ ଲାଳ ବୋହିଲା । ସେ ତାକୁ ଆକ୍ରମଣ କରିବା ପୂର୍ବରୁ ଦୋଷାରୋପ କଲା- "ମୋ ପାଣିକୁ କାହିଁକି ଗୋଳିଆ କଲୁ ?" ମେଣ୍ଢାଛୁଆ କହିଲା- "ମୁଁ ତ ତଳମୁଣ୍ଡରେ ପାଣି ପିଉଛି, ତୁମେ ତ ଉପର ମୁଣ୍ଡରେ । ମୁଁ ଗୋଳିଆ କଲି କେମିତି ?" ଗଧିଆ କହିଲା, "ଏ ବର୍ଷ ନ ହେଲା ନାହିଁ, ଗଲା ବର୍ଷ ତୁ ଗୋଳିଆ କରିଥିଲୁ ।" ମେଣ୍ଢାଛୁଆ ବିନୀତ ଭାବେ କହିଲା, "ମୁଁ ତ ଗଲାବର୍ଷ ଜନ୍ମ ହୋଇ ନ ଥିଲି ।" ଗଧିଆ ଆପଣା ଲୋଭକୁ ସାବ୍ୟସ୍ତ କଲା, "ତୁ ନ କର, ତୋ' ମାଆ ଗଲାବର୍ଷ ଗୋଳିଆ କରିଥିଲା ।" ତା'ପରେ ଆକ୍ରମଣ କଲା । ଲେଖକଙ୍କ ଏହି ଦୃଷ୍ଟିଟି ସମୁଦାୟ ରାଜନୀତି, ଶାସନ ବ୍ୟବସ୍ଥାର ଅତ୍ୟାଚାର, ଅବିଚାରକୁ ବହୁମନ୍ତେ ଦର୍ଶାଇଛି । ଯେ ମାତ୍ର ତନ୍ମଧ୍ୟରୁ ଗୋଟିଏ ଉଦାହରଣ । ଲେଖକ କହନ୍ତି "ଧର୍ମର ଅସ୍ତିତ୍ୱ ଅଛି ସତ୍ୟ, ମାତ୍ର ମତବାଦ ଧର୍ମ ନୁହେଁ ।"

ଶିକ୍ଷାବିତ୍ ଲେଖକଙ୍କର ଶିକ୍ଷା ସମ୍ପର୍କରେ ବହୁ ପ୍ରବନ୍ଧ ଏଥିରେ ସନ୍ନିବିଷ୍ଟ । ଏଗୁଡ଼ିକର ଶୀର୍ଷକ ପ୍ରାୟ ରୂଢ଼ି ଦ୍ୱାରା ନିର୍ଦ୍ଧାରିତ । ଯେପରି 'ଘୋଡ଼ାଦ୍ୱର ଲଗାମ', 'କୁମ୍ଭାରଙ୍କୁ ପଦେ', 'ତିନି ତୁଣ୍ଡରେ' (ଛେଳି କୁକୁର), 'ଭୁଷ୍‌ପଣ୍ଡିତ' ଆଦି ପ୍ରବନ୍ଧ । ଆଜି ଯେତେବେଳେ ଶିକ୍ଷକଗଣ ସେମାନଙ୍କ ମହାନ୍ କର୍ତ୍ତବ୍ୟ ଭୁଲି, ଅହଂକାରୀ କାର୍ଯ୍ୟରେ ମାତିଛନ୍ତି, ଟିଉସନ୍ ମାଧ୍ୟମରେ ଟଙ୍କା ଛାଣୁଛନ୍ତି- ଲେଖକଙ୍କ ଦୃଷ୍ଟି ଆହତ ହୋଇଛି । ପରବର୍ତ୍ତୀ ସମୟରେ, ଆଜି ଯେ ଏହି କୁମ୍ଭାରଙ୍କ ସ୍ୱରୂପ ଆହୁରି ଭୟଙ୍କର ଓ ସ୍ୱାର୍ଥସର୍ବସ୍ୱ ହୋଇପଡ଼ିଛି, ଆମ୍ଭେମାନେ ତାହା ପ୍ରତ୍ୟକ୍ଷ କରୁଛୁ । ପୂର୍ବରୁ ଅଭାବୀ ଛାତ୍ରଟିଏ, ପିଲାଙ୍କୁ ଟିଉସନ୍ କରି, ନିଜ କଲେଜ ପାଠପଢ଼ା ଖର୍ଚ୍ଚ ତୁଲାଉଥିଲା- ମାତ୍ର ଆଜି ସମସ୍ତ ସ୍କୁଲ୍, କଲେଜର ଶିକ୍ଷକ, ଶିକ୍ଷୟିତ୍ରୀ ସେ ସ୍ଥାନ ଆବୋରି ନେଇଛନ୍ତି । ବିଦ୍ୟାଲାଭ ଓ ଉତ୍ତମ ନମ୍ବର ରଖିବା ନିମିତ୍ତ ଛାତ୍ରଛାତ୍ରୀଗଣ ସେମାନଙ୍କୁ ଗୁଡ଼କୁ ପିମ୍ପୁଡ଼ି ଘେରିଲା ଭଳି ଘେରିଛନ୍ତି । ଏହି ଅବସ୍ଥାରେ ଲେଖକ ମର୍ମାହତ । ପୂର୍ବରୁ ଶିକ୍ଷକଙ୍କ ଉଦାହରଣ ଦେଇ କହିଛନ୍ତି ଯେ, କେବେ ବି

ଶିକ୍ଷକଗଣ ଧନାଢ଼୍ୟ ନ ଥିଲେ । କଞ୍ଚା ମାଟିରୁ ହାଣ୍ଡି, ମାଠିଆ ଗଢ଼ିଲା ପରି କୋମଳମତି ଛାତ୍ରଙ୍କୁ ମଣିଷ କରି ଠିଆ କରୁଥିଲେ । ଏବେ ସେସବୁ ଅନ୍ତର୍ହିତ । ଶିକ୍ଷକ ସମାଜର ମେରୁଦଣ୍ଡ ନାହିଁ, ନିଜ ମେରୁଦଣ୍ଡକୁ ଅକାମୀ କରିଦେବା ସହ ଏହି କୁମ୍ଭାରମାନେ ମନୁଷ୍ୟ ଗଠନ କରି, ଛାତ୍ରଙ୍କ ମେରୁଦଣ୍ଡକୁ ମଧ୍ୟ ଅଚଳ କରିଦେଇଛନ୍ତି । ଏହି ବିଦ୍ୟାଦାତା ଗୁରୁଙ୍କ ପ୍ରସଙ୍ଗରେ ଲେଖକ ପୁରାଣକୁ ଆବୋରିଛନ୍ତି । ଗୁରୁଙ୍କ ଭିତରେ କେହି କେହି ନିଷ୍ଠୁରତା ଅବଲମ୍ବନ କରିବାର ଉଦାହରଣ ପ୍ରଦାନ କରିଛନ୍ତି । ଗୁରୁ ଦ୍ରୋଣ ଓ ଗୁରୁ ପର୍ଶୁରାମଙ୍କ ଚରିତ୍ରକୁ ସେ ଉତ୍‌ଥାପନ କରିଛନ୍ତି । ପୁରାଣରେ ଗୋଟିଏ ଗୁରୁପଣର କଳଙ୍କ 'ଗୁରୁ ଦ୍ରୋଣ' । ଜାତିଭେଦର ଦ୍ୱାହିଦେଇ ସେ ଏକଲବ୍ୟକୁ ଶିକ୍ଷାଦାନରୁ ବଞ୍ଚିତ କରିଥିଲେ । ମାତ୍ର ତା'ର ଗୁରୁଭକ୍ତି ଓ ବିଚକ୍ଷଣତାରେ ଆତଙ୍କିତ ହୋଇ ତାକୁ ଚିରଦିନ ଅକର୍ମା କରିଦେଲେ । ଗୁରୁଙ୍କ ସ୍ୱାର୍ଥପରତା ଓ ପକ୍ଷପାତିତାର ଏହା ଏକ ଚିରକାଳୀନ ଦୃଷ୍ଟାନ୍ତ । ଗୁରୁ ପର୍ଶୁରାମ ଏଇ ଜାତିଭେଦ ଦୃଷ୍ଟିରୁ କର୍ଣ୍ଣଙ୍କୁ ମଧ୍ୟ ଦାରୁଣ ଅଭିଶାପ ଦେଇଥିଲେ । କର୍ଣ୍ଣ ତାଙ୍କୁ ମିଥ୍ୟା କହିଥିଲେ ସତ୍ୟ, ମାତ୍ର ତାଙ୍କ ଗୁରୁଭକ୍ତି ଓ ବିଚକ୍ଷଣତାକୁ ବିଚାରକୁ ନ ନେଇ ପର୍ଶୁରାମ ତାଙ୍କୁ ତାଙ୍କର ଆବଶ୍ୟକ ସମୟରେ ଶସ୍ତ୍ର ଶିକ୍ଷାକୁ ବିସ୍ମରି ଯିବେ ବୋଲି ଅଭିଶାପ ଦେଲେ । ଏହି ଦୁଇ ନିଷ୍ଠୁର ଗୁରୁଙ୍କ ସହ ଆଉ ଜଣେ ଗୁରୁଙ୍କ ଉଦାରତା ମଧ୍ୟ ଲେଖକ ପ୍ରକାଶ କରିଛନ୍ତି । ଗୌତମ ମହର୍ଷି ପିତୃ ପରିଚୟହୀନ ସତ୍ୟକାମ ଜାବାଳଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । ଗୁରୁଙ୍କ ଉଦାରତା, ଶ୍ରଦ୍ଧା ହିଁ ଛାତ୍ରର ଦୋଷକୁ କ୍ଷମାକରି ତାକୁ ଉତ୍ତମ ଶିକ୍ଷା ପ୍ରଦାନ କରେ । ମାତ୍ର ଲେଖକଙ୍କ ବ୍ୟାକୁଳତାକୁ 'କୁମ୍ଭାରମାନେ' ବୁଝନ୍ତି ନାହିଁ । ଅବଶ୍ୟ ଲେଖକ ଏକଦେଶଦର୍ଶୀ ନୁହନ୍ତି । ଆଜିର ସମାଜରେ ଶିକ୍ଷକ ତା'ର ମର୍ଯ୍ୟାଦା ପାଉ ନାହିଁ । ଶିକ୍ଷାନୀତି ପ୍ରତି ସରକାରଙ୍କ ଅନାଗ୍ରହ- ଏ ସମସ୍ତ ଶିକ୍ଷାର ଅଧଃପତନ ନିମିତ୍ତ ଦାୟୀ । ଶିକ୍ଷାପଦ୍ଧତିର ସଂସ୍କାର ହେଲେ ହିଁ ଜାତୀୟ ଚରିତ୍ରର ପୁନଃପ୍ରତିଷ୍ଠା ହୋଇପାରିବ ।

ଆମ ଦେଶର ଶିକ୍ଷା ପଦ୍ଧତି ପାଶ୍ଚାତ୍ୟମୁଖୀ ସତ, ତେଣୁ ଏହା ଛାତ୍ରକୁ ଆତ୍ମବିଶ୍ୱାସ ଦେଇପାରୁ ନାହିଁ । ତର୍କରେ ଦକ୍ଷତା ଓ ବୁଦ୍ଧିର ବିଚକ୍ଷଣତା ହିଁ ମଣିଷକୁ ବିଜୟୀ କରେ । ମାତ୍ର ତର୍କ ସିଦ୍ଧ ବିଜୟ ଯଥାର୍ଥ ବିଜୟ ନୁହେଁ । ଅନେକ ଘଟଣା ରହିଛି, ସେସବୁ ତର୍କସିଦ୍ଧ ହୋଇ ନ ପାରେ ମାତ୍ର ହୃଦୟାବେଗ ଉଦ୍ଭୂତ । ମନୁଷ୍ୟ ହୃଦୟକୁ ପରିତ୍ୟାଗ କରିବ କି ? ତେବେ ତ ସେ ଯନ୍ତ୍ରଟିଏ ପାଲଟିବ । ତେଣୁ ଲେଡ଼ିଗୁଡ଼ କହୁଣିକୁ ବୋହିଯିବା ଆଗରୁ ଅର୍ଥାତ୍ ସମୟ ଆଖର ହେବା ଆଗରୁ ପିତା, ମାତା ଓ ଶିକ୍ଷକ, କିଶୋର ତଥା ଯୁବକୁଳକୁ ତର୍କ ସହ ହୃଦୟବତ୍ତାର ମିଶ୍ରଣର ଗୁରୁତ୍ୱକୁ ଅବଗତ କରାଇବା ଆବଶ୍ୟକ । 'ଭୁଷ୍ଟପଣ୍ଡିତ' ଶ୍ଳେଷପୂର୍ବକ ଶବ୍ଦଟିଏ- ଯାହା ମହାମୂର୍ଖର ନାମାନ୍ତର ମାତ୍ର । ଏଠାରେ ଲେଖକ ସେହି ପଣ୍ଡିତମାନଙ୍କୁ ଚେତାବନୀ ଦେଉଛନ୍ତି ଆମ ସଂସ୍କୃତିର ବିଶ୍ୱାସକୁ ନେଇ -

'ନମ୍ରନ୍ତି ଫଳିନୋ ବୃକ୍ଷାଃ, ନମ୍ରନ୍ତି ଗୁଣିନୋ ଜନାଃ', ଗୁଣୀଜନ ନମ୍ରତା ଆଚରଣ କରନ୍ତି । ଜ୍ଞାନର ସମୁଦ୍ର ଯେ କେତେ ପରିବ୍ୟାପ୍ତ ଓ ବିଶାଳ, ତାହା କଳନା କରିଥାଆନ୍ତି । ନିଜେ ବିଦ୍ୟା, ବୁଦ୍ଧି ବିଚାର ଓ ହିତାହିତ ଜ୍ଞାନ ଦ୍ୱାରା ଜାରିତ ହେଲେ ହିଁ ମନୁଷ୍ୟ 'ପଣ୍ଡିତ' ପଦବାଚ୍ୟ ହୋଇପାରିବ । ପୁନଶ୍ଚ ବ୍ୟାବହାରିକ, ପ୍ରୟୋଗାତ୍ମକ ଜ୍ଞାନ ବିନା ପେସାଗତ ବିଦ୍ୟା ଅର୍ଥହୀନ । ଏ ସମ୍ପର୍କରେ ସଂଯୋଜିତ ହୋଇଛି ଲୋକଗଳ୍ପଟିଏ । ଶିକ୍ଷା ବିଷୟକ ପ୍ରବନ୍ଧର ସଂଖ୍ୟା ଏଥିରେ ସର୍ବାଧିକ । ଲେଖକ ଅଙ୍ଗେ ନିଭାଇଥିବା ସତ୍ୟଗୁଡ଼ିକୁ ସୁଧାରିବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ତାହାଦ୍ୱାରା ଯୁବକୁଳକୁ ଦୀକ୍ଷିତ କରିଛନ୍ତି ମଧ୍ୟ । 'ଚାଲି ନ ଜାଣି ଦେଉଳ ଦୋଷ – ଦେଉଳ ଯାଉଛି ଅଢ଼େଇ କୋଶ' । ଏହି ଢଗ ସଂଯୋଗରେ ଶିକ୍ଷା ନିମିତ୍ତ ଆଧ୍ୟାତ୍ମିକତା ଓ ମନନଶୀଳତା ଯେ ଜରୁରୀ, ଏହା ଦର୍ଶାଯାଇଛି । ଇତିହାସର ବୀର ସିରାଜଉଦୌଲା, ଦାରା, ମହମ୍ମଦ ତୋଗଲକଙ୍କୁ ଉଲ୍ଲେଖ କରି ମହମ୍ମଦ ତୋଗଲକଙ୍କୁ ପାଗଳ ଓ ଅଧିକାଂଶ ବୀରଙ୍କୁ ବିଶ୍ୱାସଘାତକ ରୂପେ ଅଭିହିତ କରିଛନ୍ତି । ଏମାନେ ବୀର, ଏହା ସତ୍ୟ ମାତ୍ର ମାନସିକ ସ୍ଥିରତା, ଆଧ୍ୟାତ୍ମିକ ଚେତନା ଏମାନଙ୍କଠାରେ ଅନୁପସ୍ଥିତ । ଭାରତୀୟ ପରମ୍ପରାର ଉପାସକ ଲେଖକ ନିର୍ଣ୍ଣୟ ନିଅନ୍ତି ଯେ, ମାନସିକ, ଶାରୀରିକ ଓ ଆଧ୍ୟାତ୍ମିକ ଶିକ୍ଷା ହିଁ ମହତ୍ । ସ୍ୱଐତିହ୍ୟ, ପରମ୍ପରା ଓ ଚିନ୍ତାଧାରାର ସମ୍ୟକ୍ ଜ୍ଞାନାଭାବ ଯୋଗୁଁ, ପ୍ରଶିକ୍ଷଣର ଅଭାବ ଯୋଗୁଁ ଆମ ଛାତ୍ର ସମାଜ ପ୍ରାଚ୍ୟ ସଭ୍ୟତାର ଉତ୍କର୍ଷକୁ ଭୁଲି-ପାଶ୍ଚାତ୍ୟ ସଭ୍ୟତାର ମୋହରେ ନିପତିତ ହୋଇଛନ୍ତି ।

ଆମର ଗଣତନ୍ତ୍ର ମଧ୍ୟ ଦୁର୍ବଳ । ସାମାଜିକ ବ୍ୟଭିଚାର, କ୍ଷମତାର ଅପପ୍ରୟୋଗ ହେତୁ ଆମ ଦେଶରେ ସୁଶିକ୍ଷିତ, ନାଗରିକ ଅଧିକାର- ସଚେତନ ଜନଗଣ ଭୋଟଦାତା ହେବାର ଅଧିକାରରୁ ଅନେକାଂଶରେ ବଞ୍ଚିତ । ଅଶିକ୍ଷିତ, ଅସଚେତନ, ଭୋଟ୍‌ଦାତାଙ୍କ ପ୍ରାବଲ୍ୟ ହେତୁ ଗଣତନ୍ତ୍ର ସଫଳ ହେବାର ଆଶା ବିଡ଼ମ୍ବନା ମାତ୍ର । 'ରାଜାବିନୁ' ପ୍ରବନ୍ଧରେ 'ଭଲ ରାଜା', 'ଅବୁଝା ରାଜା'ଙ୍କ ସ୍ୱରୂପ ବର୍ଣ୍ଣିତ । ଆଉରଙ୍ଗଜେବ ପିତୃହନ୍ତା, ଭ୍ରାତୃହନ୍ତା ହୋଇ ରାଜ୍ୟ ଶାସନ କଲେ । ଅନ୍ୟପକ୍ଷରେ କଦାପି ସୂର୍ଯ୍ୟାସ୍ତ ହେଉ ନ ଥିବା ବ୍ରିଟିଶ୍ ସାମ୍ରାଜ୍ୟ ସାମ୍ନାରେ ଗାନ୍ଧିଜୀ ଆଣ୍ଠୁ ଲୁଚୁ ନ ଥିବା ଖଣ୍ଡେ ଖଦି, ଖୋଲାଦେହ, ହଳେ ଚପଲ, ଠେଙ୍ଗା, ହାତରେ ମୁଠାଏ ଲୁଣ ଧରିଥିଲେ ଓ ସେ ବିଜୟୀ ହେଲେ । ଯଦିଓ ସ୍ୱାଧୀନ ଭାରତରେ ଗାନ୍ଧିଜୀଙ୍କ ସ୍ୱପ୍ନ ବହୁ ଅଂଶରେ ଅସଫଳ ହେଲା । ସାମ୍ପ୍ରଦାୟିକ ଦଙ୍ଗା, ଦାରିଦ୍ର୍ୟ, ଦାଦନ, ସନ୍ତାନ ବିକ୍ରୟ, ରାଜନୀତିକ ନେତାଙ୍କର ସ୍ୱାର୍ଥପରବଶତା ଏସବୁ ବଢ଼ି ଚାଲିଲା । ତଥାପି ଭାରତ ଅହିଂସା-ଯୁଦ୍ଧରେ ସ୍ୱାଧୀନ ହୋଇପାରିଲା ।

ଅଳ୍ପ କେତେକ ପ୍ରବନ୍ଧରେ ଲେଖକ 'ଭାଷା'ର ପ୍ରଖ୍ୟାପନ କରିଛନ୍ତି । ବୋଧ ହୁଏ, ସକଳ ଭବିଷ୍ୟ ସମସ୍ୟାକୁ ସେ ସ୍ୱଦୂରଦୃଷ୍ଟି ଦ୍ୱାରା ପ୍ରତ୍ୟକ୍ଷ କରିପାରିଥିଲେ ।

ଉଦ୍ଧୃତି 'ପାହିଲାଣି ଏବେ ତାମସୀ ଯାମିନୀ/ ଫୁଟିବ ଉତ୍କଳ ଭାଷା କମଳିନୀ' କବିବର ରାଧାନାଥଙ୍କ ରଚନାରୁ ପଂକ୍ତି ନେଇ ଲେଖକ କ୍ଷୋଭ ପ୍ରକାଶ କରନ୍ତି । ଓଡ଼ିଆ ପିଲାମାନେ ଆଜି ଦେଶ ଓ ଜାତିର, ଓଡ଼ିଶା ଓ ଓଡ଼ିଆ ଭାଷାର ଚିରନମସ୍ୟ ଉତ୍କଳଗୌରବ ମଧୁସୂଦନ, କୃଷ୍ଣଚନ୍ଦ୍ର ଗଜପତି ଆଦି ଐତିହାସିକ ବ୍ୟକ୍ତିଙ୍କୁ ଚିହ୍ନନ୍ତି ନାହିଁ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ବିନ୍ଧାଣି, ଭାଷାଭିତ୍ତିକ ପ୍ରଦେଶ ଗଠନର ମୂଳ ଉତ୍ସକୁ ନ ଚିହ୍ନି, ନିଜ ଭାଷାରେ କଥା ନ କହି, ମାତୃଭାଷାକୁ ନ୍ୟୁନ ଦୃଷ୍ଟିରେ ଦେଖୁଛନ୍ତି । ବଙ୍ଗଳା, ତେଲୁଗୁ, ମରାଠୀ ଆଦି ଭାଷାର ଲୋକେ ଆପଣା ଭାଷାରେ ସର୍ବତ୍ର କଥାଭାଷା କରୁଥିବାବେଳେ, ଓଡ଼ିଆମାନେ ତାହା କରନ୍ତି ନାହିଁ । ମଧୁବାବୁଙ୍କ "ମାଆ ମାଆ ବୋଲି କେତେ ମୁଁ ଖୋଜିଲି / ମାଆକୁ ପାଇଲି ନାହିଁ/ ଭାଇଭାଇ ବୋଲି ଯେତେ ମୁଁ ଡାକିଲି / ନ ଦେଲେ ଉତ୍ତର କେହି ।" ଏହି ଜାତିପ୍ରାଣତା ଓଡ଼ିଆ ହରାଇ ବସିଛି । ଭାଷା, ମାତୃଭାଷା ପାଇଁ ଭାବପ୍ରବଣ ହେଲେ ଚଳିବ ନାହିଁ । ଓଡ଼ିଆ ଭାଷାର ସମୃଦ୍ଧିପାଇଁ ଲେଖକ ତିନି ଗୋଟି ଦିଗ ନିର୍ଦ୍ଦେଶ କରିଛନ୍ତି । ପ୍ରଥମଟି ନୂତନ ଶବ୍ଦର ଆହରଣ, ଦ୍ୱିତୀୟରେ ନୂତନ ଶବ୍ଦ- ସୃଷ୍ଟି, ତୃତୀୟ ବିଜ୍ଞାନ ଓ କାରିଗରୀ ବିଦ୍ୟାର ଭାଷା- ଉପରୋକ୍ତ ତିନିଗୋଟି ଦିଗରୁ ଭାଷାକୁ ସମୃଦ୍ଧ କରିବା ସର୍ବାଦୌ ଆବଶ୍ୟକ । ଭାଷାରେ ବାର୍ତ୍ତାଳାପ ତ ଜରୁରୀ କିନ୍ତୁ ଅନୁବାଦ କରିଆରେ ଶବ୍ଦର ଅଦ୍ଭୁତ ଅନୁବାଦ ହାସ୍ୟକର ଓ ଉଦ୍ଭଟ । ଲେଖକ ଏ ପ୍ରକାର ହିନ୍ଦୀ ଅନୁବାଦ, ଯେପରି ସିମେଣ୍ଟକୁ 'ବଜ୍ରଚୂର୍ଣ୍ଣ', 'ଅକ୍ସିଜେନ୍'କୁ 'ପ୍ରାଣବାୟୁ' ପରି ଅନୁବାଦ ଆଦୌ ଗ୍ରହଣୀୟ ନୁହେଁ । 'ଏରଣ୍ଡୋପି' ପ୍ରବନ୍ଧରେ ସାହିତ୍ୟ ସମାଲୋଚନାକୁ ଉପଜୀବ୍ୟ କରି, ସମାଲୋଚକ ଯେ, ଜଣେ ଶୁଦ୍ଧଚେତା, ନ୍ୟାୟପରାୟଣ, ଗୁଣୀ ଓ ବଣିଆର କଷଟି ପଥର ପରି ଯୋଗ୍ୟତା ରଖିବା ଚାହି- ଏହା ଲେଖକଙ୍କର ମତ । ସାହିତ୍ୟ ଆନନ୍ଦ ପ୍ରଦାନ କରେ - ସତ୍ ସାହିତ୍ୟ ଦୁଃଖର, ଲୁହର ବି ଉପଯୁକ୍ତ ଉପସ୍ଥାପନାରେ ଆନନ୍ଦ ପ୍ରଦାନ କରିପାରେ । ଏହି ଆନନ୍ଦ ପ୍ରଦାନରେ କବି ବା ଲେଖକର ସୁକୃତ ନିହିତ । ଭିକ୍ଷୁ ଆନନ୍ଦ ଓ ଚଣ୍ଡାଳିକାର ଉଦାହରଣ ଦେଇଛନ୍ତି । ତାଙ୍କ ମତରେ ଅତୀତ ଅଧିକ ଆନନ୍ଦଦାୟକ ଥିଲା । ଏ ଯୁଗରେ ସେ ପ୍ରକାର ଗ୍ରହଣଶୀଳତାର ଘୋର ଅଭାବ । 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ / ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' କବିବର ରାଧାନାଥ ରାୟଙ୍କ ରଚନା । ସୁନ୍ଦର ଦୃଶ୍ୟଟିଏ ପୁସ୍ତକ, ଚିତ୍ରକଳା, ସଙ୍ଗୀତ ସବୁ ସୁନ୍ଦରର ବିଶେଷ ଗୁଣ । ମାତ୍ର ମନଟି ଅନ୍ଧାର ଘର । ମନରେ ସୁଖଶାନ୍ତି ନ ଥିଲେ, ମନୁଷ୍ୟ ମାନସିକ ରୋଗରେ ସନ୍ତୁଳିତ ହୁଏ । ଏକଦା ତନ୍ତୁବାୟ ପରିବାରର କବି ଗଙ୍ଗାଧର 'ବିଶ୍ୱ ଦେଖ ମଧୁମୟରେ ଜୀବନ...' ଲେଖିଲା ବେଳେ କେହି ଗୋପବନ୍ଧୁଙ୍କ ପରି ଅପରର ଦୁଃଖରେ ଆକୁଳ । କେହି ବା କବିବର ରାଧାନାଥଙ୍କ ପରି କହନ୍ତି 'ଚିର ହାହାମୟ ଏ ଛାର ଜୀବନ / ଜୀବନ ନୁହଇ ଜୀବନ୍ତ

ମରଣ ।' ଶରୀର ଓ ମନ ଉପରେ ବହିର୍ଜଗତ ଓ ଅନ୍ତର୍ଜଗତର ଘାତ-ପ୍ରତିଘାତ ସୁଖଦୁଃଖ ସୃଷ୍ଟି କରେ । ହସକାନ୍ଦ ସେଥିରୁ ସଂଜାତ । ଗୀତାରେ କୁହାଯାଇଛି - ସୁଖଦୁଃଖରେ ସମଭାବାପନ୍ନ ହୁଅ- 'ଦୁଃଖେଷୁ ନୋଦ୍‌ବିଗ୍ନମନା, ସୁଖେଷୁ ବିଗତ ସ୍ପୃହ' ହେବାକୁ, ଯାହା ଅତ୍ୟନ୍ତ କଠିନ, ମାତ୍ର ଲେଖକ ସେଥିରେ ବିଶ୍ୱାସ ରଖନ୍ତି ।

'ସଭ୍ୟତା ଓ ସଂସ୍କୃତି', 'ସଖା ଶ୍ରୀକୃଷ୍ଣ', 'ଶକ୍ତିଜ୍ଞାନ' ସର୍ବତ୍ର ଭାରତୀୟ ଦର୍ଶନ, ଗୀତାର କର୍ମଯୋଗର ଗୁରୁତ୍ୱ ପ୍ରକଟ କରିବାକୁ ଲେଖକ ସଂକଳ୍ପ କରିଛନ୍ତି । ତେଣୁ ସେ ସମନ୍ୱୟବାଦୀ ଓ ଆଶାବାଦୀ । ସଭ୍ୟତା ଓ ସଂସ୍କୃତି ଏକ ଓ ଅଭିନ୍ନ । ପୁଣି ଗୋଟିଏ ଅପରର ପରିପୂରକ । ସଂସ୍କୃତି ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ବସବାସ କରୁଥିବା ଲୋକଙ୍କ ଜୀବନଧାରା- ଏହା କେବଳ ପୋଷାକ, ପରିଚ୍ଛଦ ନୁହେଁ, ଏହା ମାନବଗୋଷ୍ଠୀର ଆତ୍ମିକମୂଲ୍ୟ, ବିଶ୍ୱାସ ଓ ଚୈତନିକ ମୂଲ୍ୟକୁ ବିଶେଷ କରି ବୁଝାଏ । ପାଶ୍ଚାତ୍ୟ ସଭ୍ୟତାକୁ ଦେଖି ଆମେ ଖାଉଛେ, ପିଉଛେ, ପୋଷାକ ପିନ୍ଧୁଛେ, ମଉଜ ମଜଲିସ୍ କରୁଛେ କିନ୍ତୁ ତାଙ୍କର କର୍ତ୍ତବ୍ୟବୋଧ, ସମୟାନୁବର୍ତ୍ତିତା, ଶୃଙ୍ଖଳା ଜ୍ଞାନ, ପରିଚ୍ଛନ୍ନତା, ଅଧ୍ୟବସାୟକୁ ବୁଝୁ ନାହେଁ, ଆପଣାର କରିପାରୁ ନାହେଁ । ଫଳରେ ନିଜ ସଂସ୍କୃତିଠାରୁ ଦୂରେଇ ଯାଉଛେ । ଲେଖକ ସର୍ବତ୍ର ଭାରତର ଆଦର୍ଶକୁ ପ୍ରଖ୍ୟାପିତ କରିବାରେ ଲାଗିଛନ୍ତି । ଉପନିଷଦ, ବୈଦିକ ଋଷି, ଗୀତା ଓ ସ୍ୱଧର୍ମକୁ ଉପଜୀବ୍ୟ କରି ମଙ୍ଗଳକର ବିଶ୍ୱାସକୁ ଗୁରୁତ୍ୱ ଦେଇଛନ୍ତି ।

ଆଧୁନିକ ବିଜ୍ଞାନ ସହ ଧର୍ମର ସଂଯୋଗ ବ୍ୟକ୍ତ କରିବାକୁ ଯାଇ ଲେଖକ କହୁଛନ୍ତି- ଅଣୁବିତ୍ ବୈଜ୍ଞାନିକ, ପରମାଣୁବୋମାର ଜନକ ଓପେନ୍‌ହେମାର୍ ଆପଣାଦ୍ୱାରା ଆବିଷ୍କୃତ ବୋମାର ପ୍ରଥମ ବିସ୍ଫୋରଣ ଦୂରରୁ ଦେଖିଲେ । ଆକାଶ ପୃଥିବୀ ଝଲସି ଉଠିଲା । ମନେହେଲା ସମଗ୍ର ବିଶ୍ୱ ସେହି ତେଜରେ ଧ୍ୱଂସ ପାଇଯିବ । ଓପେନ୍‌ହେମାର୍ ମନ୍ତ୍ରମୁଗ୍ଧ ପରି ଭଗବଦ୍‌ଗୀତାର ବିଶ୍ୱଦର୍ଶନ ଯୋଗର 'ଦିବି ସୂର୍ଯ୍ୟ ସହସ୍ରସ୍ୟ ଭବେତ୍ ଯୁଗ ପଦଈତା-ଯଦି ଭାବ ସଦୃଶା ସା ସ୍ୟାତ୍‌ଭାସସ୍ତସ୍ୟ ମହାତ୍ମନଃ' ସେ ତାଙ୍କ ମୁଖସ୍ଥ ପଂକ୍ତି ହିଁ କହିଥିଲେ । ବଡ଼ ବଡ଼ ବୈଜ୍ଞାନିକ ଗୀତାରୁ ଦର୍ଶନ ଲାଭ କରିଛନ୍ତି । ମାତ୍ର ଭାରତରେ ଏହି ଗ୍ରନ୍ଥର ଯଥେଷ୍ଟ ଆଦର ନାହିଁ । ଏଠାରେ ଧର୍ମ ବିଭାଜନ ପ୍ରବଳ – ହିନ୍ଦୁ, ଇସଲାମ୍, ଖ୍ରୀଷ୍ଟାନ୍ ତ ଅଛନ୍ତି । ଏହାପରେ ହିନ୍ଦୁଧର୍ମ ମଧ୍ୟ ଶୈବ, ଶାକ୍ତ, ଗାଣପତ୍ୟ ଆଦିରେ ବିଭାଜିତ- ଅଗ୍ନିସ୍ଫୁଲିଙ୍ଗ ଅଗ୍ନିଠାରୁ ଭିନ୍ନ ନୁହେଁ, ବୁନ୍ଦାଏ ଜଳ ସାଗରଠୁ ଭିନ୍ନ ନୁହେଁ, ସେହିପରି ଜୀବ ପରମଠାରୁ ଅଭିନ୍ନ । ତେଣୁ ମାନବ କର୍ମ ବିମୁଖ ହେବା ଅନାବଶ୍ୟକ – ଶ୍ରୀକୃଷ୍ଣ କହିଛନ୍ତି ।

ଶକ୍ତିମାନ୍ କାଳେ କାଳେ ଅଶକ୍ତ ପ୍ରତି ଅତ୍ୟାଚାର କରିଚାଲିଛି । ମଣିଷ ଦୟା, ଅହିଂସା, ପରୋପକାରର ଦ୍ୱାହି ଦେଲେ ହେଁ, ଚିରଦିନ ଦୁର୍ବଳ ଉପରେ ଅତ୍ୟାଚାର କରିଆସିଛି । ଏହାର ଏକ ଉଦାହରଣ- ନିରୀହ ଜୀବ ବେଙ୍ଗଟିଏ ହୋଇପାରେ ।

ଲେଖକ ଆଶା କରନ୍ତି ଦୈବୀ ଶକ୍ତି, ଐଶୀଶକ୍ତି ପ୍ରତି କୃତଜ୍ଞତା ରହୁ, ଶକ୍ତିର ଆହରଣ ଓ ସଞ୍ଚୟ ହେଉ, ପାଶବିକ ଶକ୍ତିରେ ରୂପାନ୍ତରିତ ନ ହେଉ । ପୁରାଣ କାହାଣୀର ଅବତାରଣା କରି ଏ ପ୍ରସଙ୍ଗରେ ଲେଖକ ବଶିଷ୍ଠ, ବିଶ୍ୱାମିତ୍ର ଓ କାମଧେନୁ ପୁରାକଳ୍ପକୁ ଆଣିଛନ୍ତି । ପୁନଶ୍ଚ ଦୃଷ୍ଟାନ୍ତ ସ୍ୱରୂପ ଗାନ୍ଧିଜୀଙ୍କ ଆଚରିତ ଅହିଂସା ସବଳର ଅହିଂସା, ତାହା ଦୁର୍ବଳର ଅହିଂସା ନୁହେଁ, କହିଛନ୍ତି । ଶକ୍ତି ଥାଇ ଜ୍ଞାନ ନ ଥିଲେ ପାଶବିକତା ଦେଖାଦିଏ ଓ ଜ୍ଞାନ ଥାଇ ଶକ୍ତି ନ ଥିଲେ ମଧ ମଣିଷ ଉପହାସର ପାତ୍ର ହୁଏ । ଶକ୍ତି ଓ ଜ୍ଞାନର ସମନ୍ୱୟ ହିଁ ଭାରତୀୟ ପରମ୍ପରାର ଆଦର୍ଶ-ଲେଖକ ବିଶ୍ୱାସ କରନ୍ତି । ଲେଖକଙ୍କ ମତରେ ବହିର୍ଜଗତର ଜ୍ଞାନ ହେଉଛି ବିଜ୍ଞାନ ଓ ଅନ୍ତର୍ଜଗତର ଜ୍ଞାନ ହେଉଛି ଦର୍ଶନ । କେତେକ କହନ୍ତି ଦର୍ଶନ ଅପ୍ରମାଣ୍ୟ- ତେଣୁ ଭ୍ରମପ୍ରମାଦପୂର୍ଣ୍ଣ, ସ୍ୱପ୍ନିଳ । ମାତ୍ର କେବଳ ବୈଷୟିକ ବିକାଶ ଯଥାର୍ଥ ବିକାଶ ନୁହେଁ, ପରିପୂର୍ଣ୍ଣ ମଧ ନୁହେଁ । ଆଇନଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ, ଦର୍ଶନ ଓ ବିଜ୍ଞାନର ପୁନର୍ମିଳନର ସୂତ୍ରପାତ କରିଛି । ଲେଖକ ଆଶାବାଦୀ- ଦିନେ ନିଶ୍ଚୟ ଦର୍ଶନ ତତ୍ତ୍ୱ ଉପସ୍ଥାପନ କରିବ- ବିଜ୍ଞାନ ତାକୁ ପରୀକ୍ଷାଗାରରେ ପ୍ରମାଣ କରି ଦେଖାଇବ ।

"ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା + +
ଯା' ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା + +
ନମସ୍ତସ୍ୟୈ ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋନମଃ ।"

ଚଣ୍ଡୀ ପୁରାଣର ଏହି ଶ୍ଳୋକ ଏଠାରେ ଉଲ୍ଲିଖିତ । କପୋତ ନିରୀହତାର ପ୍ରତୀକ, ଛଞ୍ଚାଣ ହିଂସାର ପ୍ରତୀକ । ଯେ ଉଭୟେ ପକ୍ଷୀ ଜଗତରେ, ପ୍ରାଣୀ ଜଗତରେ ଯେଉଁପରି ମନୁଷ୍ୟ ଜଗତରେ ମଧ ସେହି ରୂପେ ସଂସ୍ଥିତ । ଫରାସୀ ଜାତି ସୌଖୀନ, ଜାପାନୀ ଜାତି କର୍ମଠ । ବିଶ୍ୱବିଜୟୀ ସିକନ୍ଦର (ଆଲେକ୍‌ଜାଣ୍ଡର୍) ବହୁ ହତ୍ୟା, ଲୁଣ୍ଠନ ବିଜୟ ହାସଲ ପରେ ଭେଟିଲେ ଜଣେ ସନ୍ନ୍ୟାସୀଙ୍କୁ- ଭାବିଲେ ଯେ ଜଣେ ଛଦ୍ମବେଶୀ ରାଜା, ବୋଧହୁଏ ପଳାୟନ କରୁଛି । ତାଙ୍କୁ କାରାଗାରରେ ନାନା ନିର୍ଯାତନା ଦେଲେ । ମାତ୍ର ସନ୍ନ୍ୟାସୀ ଅବିଚଳିତ । ତାଙ୍କ ଧୈର୍ଯ୍ୟ, ସାହସ, ସହିଷ୍ଣୁତା ଦେଖି ସିକନ୍ଦର ଚମତ୍କୃତ ହେଲେ, ପୁନଶ୍ଚ ଅଭିଭୂତ ହୋଇପଡ଼ିଲେ । ସେ ଚାହିଲେ, ସନ୍ନ୍ୟାସୀଙ୍କଠାରୁ କିଛି ଶିକ୍ଷା ଗ୍ରହଣ କରିବେ । ସନ୍ନ୍ୟାସୀ ତାଙ୍କୁ ବ୍ରହ୍ମଜ୍ଞାନ ଦେଲେ ନିମ୍ନୋକ୍ତ ରୂପରେ - ଏତେ ବୀରତ୍ୱ, ଐଶ୍ୱର୍ଯ୍ୟ, ସୁଖ ସଂଭୋଗ ମଧରୁ ତାଙ୍କ ପିତା ମୃତ୍ୟୁକାଳରେ କିଛି ହେଲେ ତାଙ୍କ ସଙ୍ଗରେ ନେଇଯାଇଥିଲେ କି ? ତେବେ, ତମେ ବି କ'ଣ ନେଇକି ଯାଇପାରିବ ? ଏକା ଏକା ଶୂନ୍ୟହସ୍ତରେ ଏ ସଂସାରରୁ ପ୍ରତ୍ୟାବର୍ତ୍ତନ କରିବାକୁ ହୋଇଥାଏ । ଏହି ତତ୍ତ୍ୱ ଓ ସତ୍ୟ ଶ୍ରବଣରେ ସିକନ୍ଦର (ଆଲେକ୍‌ଜାଣ୍ଡର୍)ଙ୍କର ହୃଦୟ ବିଚଳିତ ଓ ପରିବର୍ତ୍ତିତ ହୋଇଗଲା । କହିବା ବାହୁଲ୍ୟ, ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପଥରେ ସିକନ୍ଦର ଇହଲୀଳା ସମ୍ବରଣ କରିଥିଲେ ।

ବିଜ୍ଞାନ କହେ ବସ୍ତୁ ଓ ଶକ୍ତି ଏକ – ପରସ୍ପର ପରସ୍ପରର ପରିପୂରକ । କିନ୍ତୁ ଭାରତୀୟ ମୁନିଋଷିମାନେ ଅଜଣା ଶକ୍ତିଠାରେ ବିଶ୍ୱାସ ରଖନ୍ତି । ରହସ୍ୟମୟତାକୁ ସ୍ୱୀକାର କରନ୍ତି । ଏହି ରହସ୍ୟମୟତା ମଣିଷକୁ ଧୈର୍ଯ୍ୟ ଓ ସାହସ ପ୍ରଦାନ କରିଥାଏ । ଏଠାରେ 'ଶୁଣପରୀକ୍ଷ' ପୁସ୍ତକଟିରେ ଲେଖକ ଡଂ. ବେହେରା ବିଜ୍ଞାନ, ଦର୍ଶନ, ଧର୍ମତତ୍ତ୍ୱ, ସାମ୍ପ୍ରତିକ ସମାଜର ଶିକ୍ଷା, ରାଜନୀତି, ମିଥ୍ୟାଚାର ତଥା ପ୍ରାଚୀନ ସଂସ୍କୃତି, ସରଳ ପଲ୍ଲୀଜୀବନ ଓ ବିଶିଷ୍ଟ ବ୍ୟକ୍ତିଙ୍କ ମାନସିକତା ଆଦିକୁ ଅତି ଯତ୍ନରେ ଏକ ସୂତ୍ରରେ ଗ୍ରଥିତ କରି ଏକ ମାଳା ଗୁନ୍ଥିଛନ୍ତି । ସେହି ମାଳାକୁ ସେ ଉତ୍କଳ-ଭାରତୀଙ୍କ କଣ୍ଠରେ ଲମ୍ବାଇ ଦେଇଛନ୍ତି । ଏହି ମାଳାଟି ସୁଗନ୍ଧରେ, ସୌନ୍ଦର୍ଯ୍ୟରେ ତତ୍ତ୍ୱ ଓ ତଥ୍ୟର ଉପସ୍ଥାପନାରେ ଅତ୍ୟନ୍ତ ଉପାଦେୟ ହୋଇପାରିଛି ।

❖❖❖

[ଏହି ପ୍ରବନ୍ଧଟି କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଭୁବନେଶ୍ୱରଠାରେ ଅନୁଷ୍ଠିତ ଏକ ସମ୍ମାନରେ ପଠିତ ଓ ଆଲୋଚିତ ।]

# ସାହିତ୍ୟ-ପୁରୁଷ

## [ ସ୍ୱର୍ଗତ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିବେଦିତ ଭକ୍ତିପୁଷ୍ପ ]

''ମାଟିର ମଣିଷ'' ଉପନ୍ୟାସର ଅଗ୍ରଲେଖ

"ଦୁନିଆ ହାଟରେ କେତେ ହୀରାନୀଳା ମଣିମାଣିକର ତୁଲ
ମାଟିର ପିତୁଳା ଗଢ଼ି ଥୋଇଦେଲି କିଏ ପଚାରିବ ମୂଲ ?"

ସେ ଥିଲେ ସାହିତ୍ୟ-ପୁରୁଷ । ଗଳ୍ପ, କବିତା, ଉପନ୍ୟାସର ରୁଚିମନ୍ତ ସମ୍ଭାର ସୃଷ୍ଟି କରିଥିଲେ । ବସ୍ତୁତଃ, ତାଙ୍କର ଅନ୍ୟ ପରିଚୟ ନ ଥିଲା । 'ସ୍ୱପ୍ନପୁରୀ'ର କବିଙ୍କ ସବୁଜ ଚେତନାର ସ୍ୱପ୍ନପ୍ରବଣତା ଯେପରି ପକ୍ଷ ବିସ୍ତାର କରି ଦିଗବିଦିଗ ସହିତ କଳ୍ପଲୋକକୁ ଛୁଇଁଥିଲା, ଗଳ୍ପ ଥିଲା ସେହିପରି ମାନବିକ ଆବେଦନରେ ସ୍ପନ୍ଦିତ । ଉପନ୍ୟାସ ଥିଲା ଓଡ଼ିଶାର ଗ୍ରାମ୍ୟ ଜୀବନର କରୁଣ କୋମଳ, ଅଥଚ ଦୃଢ଼ ଓ ବୈପ୍ଳବିକ ଚେତନାର ଚିତ୍ରପଟ । 'ପଦ୍ମଭୂଷଣ' ସମ୍ମାନ ମିଳିଥିଲା ତାଙ୍କୁ- କିନ୍ତୁ ତାଙ୍କ ସାହିତ୍ୟିକ ପ୍ରତିଭା ପୁରସ୍କାରର ଚୌହଦୀକୁ ଟପିଯାଇଥିଲା । ସବୁଜ କବିତାର ସଂରଚକ ସେ ସାମ୍ୟବାଦର କଲ୍ୟାଣକର ସ୍ୱପ୍ନ ଦେଖିପାରିଥିଲେ । କେହି କେହି ସମାଲୋଚକ ଅବଶ୍ୟ ମତ ଦିଅନ୍ତି ଯେ ପାଠ୍ୟପୁସ୍ତକ ପ୍ରଣୟନରେ ବ୍ୟାପୃତ ରହି ସେ ନିଜର ପ୍ରଚଣ୍ଡ ସୃଷ୍ଟିଶୀଳତାକୁ ଅବହେଳା କରିଥିଲେ । ମାତ୍ର ମୋ ମତରେ ପାଠ୍ୟପୁସ୍ତକ ରଚନା କରି ଶିଶୁ, କିଶୋର ଓ ଯୁବମାନସରେ ସେ ସାହିତ୍ୟିକ ରୁଚିର ଉଦ୍ରେକ କରିଥିଲେ । ତାହା ଅନନ୍ୟ ସାଧାରଣ । ଉନ୍ନତ ସାହିତ୍ୟିକ ସର୍ଜନାର, ସଂସ୍କାରର ପରିମାର୍ଜନା ଘଟାଇଥିଲେ । ଏହି ସଫଳତା ଓଡ଼ିଆ କିଶୋର ଓ ଯୁବପ୍ରାଣକୁ ଉଦ୍‌ବୁଦ୍ଧ କରି କେତେ ଯେ ଛନ୍ଦ, ଶବ୍ଦର ବିପୁଳ ସମ୍ଭାର ସୃଷ୍ଟି କରିପାରିଥିଲା, ତାହା ଅନ୍ୟ କେହି କରିପାରି ନାହାନ୍ତି ।

ପିଲାଦିନେ ମନେ ଅଛି, ମୁଁ ଓ ମୋର ବଡ଼ଭାଇ କବି କାଳିନ୍ଦୀଚରଣଙ୍କ କବିତା ଆବୃତ୍ତିରେ ମଜ୍ଜିଯାଇଥିଲୁ । ମୁଁ ମାଇନର୍ ଓ ବଡ଼ଭାଇ ହାଇସ୍କୁଲ୍‌ର ଛାତ୍ର । ଆମେ କବିତା ଆବୃତ୍ତି କରୁଥିଲୁ- "ଧ୍ୱଂସର ଡାକ ଭାସିଆସେ ଦଶଦିଶୁ / ରଣଭେରୀ ତୋର ଏ ଭୀମ

ଶବଦେ ମିଶୁ / ମରଣ ତୋହର ମୁକତିରେ ବୀର ଶିଶୁ / ତିନି କାଳ ତୋର ଜୀବନର ଅନୁଯାୟୀ । ପଥ କାହିଁ, ପଥ କାହିଁ ?" ଖେଳଛୁଟିରେ ସମସ୍ତେ ଉଲ୍ଲାସରେ ସମବେତ ହୋଇଥାଉ । ରେଡିଓରୁ କବି ପାଣିଗ୍ରାହୀଙ୍କ କବିତାଟିର 'ଗାନ୍ଧାରୀର ଆଶୀର୍ବାଦ' ଆବୃତ୍ତି ଶୁଭେ । ଅଦ୍ଭୁତ ବିଭୋରତାରେ ସେ କବିତା କବିଙ୍କ ଦାମ୍ଭିକ ସ୍ୱରରେ ଆମ ପ୍ରାଣକୁ ଭେଦ କରିଯାଏ । ପୁନଶ୍ଚ "ଶରତକାଳ, ଜଳଦମାଳ ନୀଳ ଗଗନେ ଭାସେ/ କଦବା ଥରେ ବରଷା ଝରେ ଏବେ ଅଶିଣ ମାସେ / ଦିଶଇ ଶ୍ୟାମ ପ୍ରାନ୍ତର ଗ୍ରାମ/ ଶଇଳ ଧାନକ୍ଷେତ ରଜନୀ ଦିବା ଧରଣୀ କିବା / ଉଡ଼ାଏ ନୀଳନେତ / ମୃଦୁଳ ଅତି, ପବନ ଗତି, ଦୋହଲେ ତରୁଲତା / ବିହଗ ଗୀତ ହରଇ ଚିତ୍ତ/ ତୁଟାଇ ମନୁ ବ୍ୟଥା ।" 'ଗାନ୍ଧାରୀର ଆଶୀର୍ବାଦ'ର ଉଦାର ମାତୃହୃଦୟ ଏବେ ଯାଏ ବି ଆମ ହୃଦୟରେ ଅନୁରଣିତ ।



# ମରଣ ନାହିଁ, ଦୁଃଖ ନାହିଁ
## [ସ୍ୱର୍ଗତ ଗୋପୀନାଥ ମହାନ୍ତିଙ୍କ ସ୍ମୃତିରେ]

"ଜୀବନରେ ସୁଆଦ ଅଛି, ମରଣ ନାହିଁ, ଦୁଃଖ ନାହିଁ"- ଯେ ଥିଲା ତାଙ୍କ ଉପନ୍ୟାସର ନାୟିକା ପୁୟୁର ଅନୁଭବରେ ଉଜ୍ଜୀବିତ କଥା ପଦିଏ । ମୃତ୍ୟୁକୁ ସ୍ୱୀକାର କରୁ ନ ଥିଲେ ସେ, ଜୀବନର ଜୟଗାନରେ ଥିଲେ ମୁଖର - ଜ୍ଞାନପୀଠ ପୁରସ୍କାର ବିଜେତା ପ୍ରଖ୍ୟାତ ଲେଖକ ପଦ୍ମଭୂଷଣ ଡଃ ଗୋପୀନାଥ ମହାନ୍ତି - 'ପରଜା', 'ଅମୃତର ସନ୍ତାନ', 'ଦାନାପାଣି', 'ମାଟିମଟାଳ'ର ଅମର କଥାକାର ।

୨୧ ତାରିଖ ଭୋର୍ ୫ଟାରେ ଫୋନ୍‌ଯୋଗେ ତାଙ୍କ ଦେହାନ୍ତର ଖବର ପାଇଲି, କେମିତି ବିଷଣ୍ଣ ଲାଗିଲା । ବହୁଦିନରୁ ପୀଡ଼ିତ ଥିଲେ ସେ । ଟିକେ ସୁସ୍ଥ ହୋଇଗଲେ, ଅସୁସ୍ଥତାକୁ ଆଦୌ ସ୍ୱୀକାର କରୁ ନ ଥିଲେ । ତାଙ୍କ ପତ୍ନୀ ଓ ପରିବାର ତାଙ୍କୁ ଗୋଡ଼େ ଗୋଡ଼େ ଜଗି ରହିଥିଲେ । ସତେ ଗୋପୀମଉସା ଚାଲିଗଲେ । ବଡ଼ପାଟିରେ ଡାକିବା, ଖୁସିହେବା, ତାଙ୍କ କଥା, ହସ, ତାଙ୍କ ମୁହଁ ଆଖି ଆଗରୁ ଲୁଚିଗଲା । ବିଶ୍ୱାସ ହୁଏନା । ଅଥଚ ନିଜର ଅନୁଭବକୁ, ପ୍ରଜ୍ଞାକୁ, ଜୀବନ ଦୃଷ୍ଟିକୁ ସେ ବାଣ୍ଟିଦେଇ ଯାଇଛନ୍ତି ଶହ ଶହ ଚରିତ୍ର ଭିତରେ । ସେମାନେ ଏବେ ଯେ ଜୀବନ୍ତ, ସାହିତ୍ୟ ରସିକର ହୃଦୟର ଧନ, କଳାସୃଷ୍ଟିର ବିସ୍ମୟ । ମୋ ବାପାଙ୍କର ତାଙ୍କ ସହ ଘନିଷ୍ଠ ପରିଚୟ ଥିଲା । ସେ ବରାବର ବାପାଙ୍କ ଭଲମନ୍ଦ ପଚାରନ୍ତି । କୋରାପୁଟ, କନ୍ଧମାଳରେ ସେ ପ୍ରଶାସକ ଥିଲାବେଳେ ବାପା ସେଠାରେ ଡାକ୍ତର ଥିଲେ । ମୁଁ ତାଙ୍କୁ ପିତୃତୁଲ୍ୟ ଜ୍ଞାନକରେ । କଥା କଥାକେ ସେ ମତେ 'Prodigy' ବୋଲି କହନ୍ତି ।

ତାଙ୍କ ଜୀବନ-ଉତ୍ସର ଶକ୍ତି ଓ ବେଗ ତାଙ୍କ ଆଚରଣରୁ ସ୍ପଷ୍ଟ ହେଉଥିଲା । ଆଦିବାସୀ କନ୍ଧ, ପରଜାଙ୍କୁ ସେ ଭଲ ପାଉଥିଲେ- ନିଜେ ସେଇମାନଙ୍କ ଭିତରୁ ଜଣେ ବୋଲି ଅନୁଭବ କରୁଥିଲେ । କଥାବାର୍ତ୍ତା ବେଳେ ଅନେକ ସମୟରେ ସେମାନଙ୍କ ଜୀବନ ଯନ୍ତ୍ରଣାକୁ ଚିହ୍ନି ସେସବୁର ପ୍ରତିକାର କରିଥିବାର ସ୍ମୃତିରୁ ସେ କହିଥାନ୍ତି । ଦେଖାଣିଆ ଓ ଭିତିରି ଏ ପ୍ରକାର ଭାବକୁ ସେ ଘୃଣା କରୁଥିଲେ । ତାଙ୍କ ରଚନାରେ ପ୍ରକାଶିତ ଭାବଧାରା ଅଥଚ ଆବେଗମୟ ଦିଗଟି ଉପରେ ନିଜ ଅନୁଭବରୁ ସାମାନ୍ୟ ଆଲୋକପାତ ହିଁ କରୁଛି । ତାଙ୍କ ନିକଟକୁ ଗଲେ ୨/୩ ଘଣ୍ଟାରୁ କମ୍‌ରେ ଫେରିହୁଏ ନାହିଁ । ଅଛିଣ୍ଡା ତାଙ୍କର ଗପ, ଅଥଚ ସାରଗର୍ଭକ ।

ଆମେରିକାରୁ ପ୍ରଥମ ଥର ଫେରି ସେହି ଦେଶକୁ ସେ ଖୁବ୍ ପସନ୍ଦ କରୁଥିଲେ । ବିଧିର ନିର୍ଦ୍ଦେଶ ଦେଖ, ସେଇଠାରେ ତାଙ୍କର ଶେଷନିଃଶ୍ୱାସ ତ୍ୟାଗ କରିବାର ହେଲା । ଅବଶ୍ୟ ସାରା ପୃଥିବୀ ଯାହାର ଘର, ଯେ ସାରା ମଣିଷ ଜାତିର ସୁଖଦୁଃଖରେ ଭାଗୀଦାର, ତାଙ୍କ ପାଇଁ ପୁଣି ଦେଶ ବିଦେଶ କ'ଣ ! ଗୋପୀମଉସା ବୋଧେ ଏହାହିଁ ପ୍ରମାଣ କରିବାକୁ ଚାହିଁଲେ ।

ପୂର୍ବରୁ ସେ ବରାବର ମୋ 'ଶବରୀ' କବିତା ବିଷୟରେ ପଚାରୁଥିଲେ ।

ଥରେ ତାଙ୍କୁ କହିଲି – ଯେ ଅନୁଭବ ମତେ କେମିତି ଗୋଟେ ମସ୍ତ ଜଳଭଉଁରୀ ପରି ଲାଗୁଛି, କେଜାଣି ତା' ଭିତରୁ ଉଠିଆସି ପାରିବି କି ନାହିଁ । ସେ କହିଲେ- ଯିଏ ତୁମକୁ ଯେ ଉପଲବ୍ଧିରେ ଠିଆ କରାଇଛନ୍ତି- ସେ ହିଁ ତୁମର ହାତ ଧରି ସେଠାରୁ କଢ଼ାଇନେବେ । ଏଇ ଆଶ୍ୱାସନା ପଦକ ମୋ ପାଇଁ ଆଉ ଆମ ସମସ୍ତଙ୍କ ପାଇଁ କମ୍ ବଡ଼ କଥା ନୁହେଁ । ମୋ ଦ୍ୱାରା ସମ୍ପାଦିତ ରମାଦେବୀ କଲେଜର ପତ୍ରିକାରେ ମୁଁ ତାଙ୍କ ଉକ୍ତି ଉଦ୍ଧାର କରିଥିଲି- "ଜୀବନ ଦୁଃଖର ଏକ ଲୁଣି ସମୁଦ୍ର । ଯେଉଁଠୁ ଆଞ୍ଜୁଳାଏ ଉଠାଇ ଆଣି ଉପରେ ଢାଳିଦେଲେ ଝରଝର ଲୁହ ହୋଇ ବୋହିଯିବ ।"



# ମହାନ୍ କଥାଶିଳ୍ପୀ ୰ଗୋପୀନାଥ ମହାନ୍ତିଙ୍କ ପ୍ରତି ନିବେଦିତ

## [ଗୋତିମୁକ୍ତିର ଦିଶା]

ଆଜିଠାରୁ ୬୦/୭୦ ବର୍ଷ ତଳେ କୋରାପୁଟ ମାଳ ଅଞ୍ଚଳରେ ଅଫିସରଙ୍କୁ ପାଦରେ ଚାଲି ଚାଲି ଗସ୍ତ କରିବାକୁ ପଡୁଥିଲା । ପାହାଡ଼ ଡଙ୍ଗର, ଝରଣା ଟପି, କଣ୍ଟାଝଟା ନ ମାନି ଅଫିସିଆଲ୍ କାମ କରିବାକୁ ବାହାରିବାକୁ ପଡ଼େ । ଅଧିକାଂଶ ଅଫିସର୍ ଦୁର୍ଗମ ଅଞ୍ଚଳକୁ ପାଦ ନ ବଢ଼ାଇ ଅଫିସ୍‌ରେ ଲେଖାଲେଖି କରି କାମ ଚଳାଇଦିଅନ୍ତି, ମିଛେ ମିଛେ । କିନ୍ତୁ ପ୍ରଶାସନିକ ଅଫିସର୍ ଗୋପୀନାଥ ମହାନ୍ତି ପାଦରେ ଚାଲି, କେବେ ସାଙ୍ଗରେ ଚପରାସୀଟିଏ ଧରି, କେବେ ବା ଏକା ଏକା ଗସ୍ତକର୍ମ କରନ୍ତି । ତାଙ୍କ ମୁହଁରୁ ଶୁଣିଥିବା ଦୁଇଗୋଟି ଗସ୍ତକର୍ମର ବିବରଣୀ ମୁଁ ଏଠାରେ ଉଲ୍ଲେଖ କରିବାକୁ ଯାଉଛି । ଗୋପୀବାବୁ ଗସ୍ତକର୍ମରେ ଯାଇଥିଲେ ଲକ୍ଷ୍ମୀପୁର ଜଙ୍ଗଲ ଭିତର ଗ୍ରାମକୁ । ସେଠାରେ ସାହୁକାରର ଘରେ ତାଙ୍କ ରହଣିର ବନ୍ଦୋବସ୍ତ ହୋଇଥିଲା । ସେଦିନ ଉତ୍ତୀର୍ଣ୍ଣ ଅପରାହ୍ଣରେ ଗୋପୀବାବୁ ନିତ୍ୟକର୍ମ ପାଇଁ ବାହାରିଲେ । ସାହୁକାର ତାଙ୍କ ସହିତ ଗୋଟିଏ ନବଯୁବକକୁ ପଠାଇଲେ ।

ଅନତିଦୂର ଝରଣା ଆଡ଼େ ଯାଉ ଯାଉ ସେ ଲକ୍ଷ୍ୟ କଲେ ଯେ, ଯୁବକଟି ବାରମ୍ବାର ନିକଟସ୍ଥ ସର୍ବୋଚ୍ଚ ପାହାଡ଼ ଉପରକୁ ଲକ୍ଷ୍ୟ କରୁଛି ଓ ତତ୍‌କ୍ଷଣାତ୍ ପାଦଦେଶକୁ ଦୃଷ୍ଟି ଫେରାଇ ଆଣୁଛି । ସେ ପ୍ରଶ୍ନ କଲେ "ଏପରି ବାର ବାର ଗୋଟିଏ ପାହାଡ଼କୁ ଅନାଇବାର କାରଣ କ'ଣ ?" ପିଲାଟି କିଛି ଉତ୍ତର ଦେଲା ନାହିଁ । ଏବଂ ପୁନର୍ବାର ସେହିପରି ଚାହିଁବାରେ ଲାଗିଲା । ତାକୁ ବହୁତ ଆଦର କରିବା ପରେ, ସେ ଭୟ ଜଡ଼ସଡ଼ ହୋଇ କହିବ ନ କହିବ ହେଲା । ଗୋପୀବାବୁ ତାକୁ ଅଭୟ ଦେଲେ । ପିଲାଟି ସାହୁକାରକୁ ଡରୁଥିଲା । ବୁଝାଇ ପଚାରିବାରୁ, ସାହସ ପାଇ ମନ ଖୋଲିଲା । ଗତ ୨ ବର୍ଷ ତଳୁ ସେ ସାହୁକାରର ଗୋତି ହୋଇଛି । ତା' ବାପ ସାହୁକାରଠାରୁ କିଛି ଟଙ୍କା ଋଣ ନେଇ କାଗଜ ଲେଖିଦେଇଥିଲା । ଶୁଝିପାରିଲା ନାହିଁ । ତହୁଁ, ସେ ସାହୁକାର ଘରେ ଗୋତି ରହିଲା । ଦୂର ଗାଁରେ ତା'ର ଘର । ଆସିଲାବେଳେ, ତା' ଧାଙ୍ଗଡ଼ୀ ତାକୁ କହିଥିଲା ଯେ, ତା' ପାଇଁ ସେ ୨ ବର୍ଷ ଯାକେ ଅପେକ୍ଷା କରିବ । ନ ହେଲେ ବିଭା ହେଇଯିବ । ତ, ଆଗକୁ ଦୋଳପୁନେଇଁ, ୨ ବର୍ଷ

ପୂରିଯିବ । ତା' ଧାଙ୍ଗଡ଼ୀ ବାହା ହେଇଯିବ । ସାହୁକାର ତ ଗୋତିରୁ ମୁକୁଳାଇବ ନାହିଁ । ତା' ଧାଙ୍ଗଡ଼ୀ ବାହା ହେଇଗଲେ, ସେ ଆଉ କାହିଁକି ବଞ୍ଚି ରହିବ ? ଯା'ରି ଭିତରେ ସେ ମରିବ । ସେ ମାପୁଥିଲା ପାହାଡ଼ର ଉଚ୍ଚତାରୁ ତଳକୁ ଡେଇଁପଡ଼ିଲେ, ସେ ମରିପାରିବ କି ନାହିଁ । ତାକୁ ଲାଗୁଛି ମରିଯିବା ସମ୍ଭବ ହେବ । ସେଥିପାଇଁ ସେ ଅଟକଳ କରୁଥିଲା । ସେ ଯୁବକଟି ଅବଶ୍ୟ ଦେଶିଆ ଭାଷାରେ କହିଥିଲା । ଗୋପୀବାବୁ ମୋତେ ତାଙ୍କ ନିଜ ଭାଷାରେ କହିଥିଲେ ଓ ମୁଁ ମୋ ସ୍ମରଣରୁ କିଛି ନିଜ ଭାଷା ମିଶାଇ ଲେଖୁଛି ।

ଏହାପରେ ଅଫିସର୍ ସାହୁକାରର ଘରକୁ ଫେରିଲେ ସାହୁକାରଠାରୁ ସବୁ କାଗଜପତ୍ର ମଗାଇ ଡିବିରି ଆଲୁଅରେ ଦେଖିଲେ ଯୁବକଟିର ଗୋତିକାଗଜ ଖୋଜି ପାଇଲେ । ସାହୁକାରକୁ କହି, ତାକୁ ତା' ପରଦିନ ସକାଳୁ ମୁକ୍ତି ଦେଲେ । ଗୋତି କାଗଜକୁ ନିଜ ହାତରେ ଟିକିଟିକି କରି ଚିରିଦେଲେ । ପିଲାଟି ସକାଳୁ ମୁକ୍ତ ହୋଇ ନିଜ ଗାଁ ଅଭିମୁଖେ ବିଦା ହୋଇଯିବାର ଚାକ୍ଷୁଷ ସାକ୍ଷୀ ରହିଲେ ନିଜେ ଅଫିସର୍ । ଆଉ ଗୋଟିଏ ଅନୁସନ୍ଧାନର କାର୍ଯ୍ୟକ୍ରମ ତାଙ୍କରି ମୁହଁରୁ ଶୁଣିଥିଲି । ତାଙ୍କ ପାଖକୁ ଅଭିଯୋଗ ଆସିଲା ଯେ, କୋରାପୁଟ ସଦର ହସ୍ପିଟାଲ୍‌ର ଡାକ୍ତର ତାଙ୍କ ଡାକ୍ତରଖାନାର ବେହେରା (ଦେଶିଆ ଲୋକ)ର ସ୍ତ୍ରୀ ସୁନାମଣିକୁ ସ୍ୱାମୀଠାରୁ ଛଡ଼ାଇ ନେଇ ନିଜ ଘରେ ରଖିଛନ୍ତି । ବେହେରା ଦରଖାସ୍ତ ଲେଖିଥିଲା । ଅନୁସନ୍ଧାନରେ ପ୍ରଶାସନିକ ଅଫିସର୍ ଗୋପୀନାଥ ମହାନ୍ତି ହସ୍ପିଟାଲ୍ ଆସିଲେ ଓ ପରେ ଡାକ୍ତରଙ୍କ ସରକାରୀ ବାସଭବନକୁ ଆସିଲେ । ସାଙ୍ଗରେ ଥାଏ ଅଭିଯୋଗକାରୀ । ସ୍ତ୍ରୀ ନିଜ ଭାଷାରେ କହିଲା, "ତା'ର ମର୍ଦ୍ଦ ସବୁଦିନେ ହାଣ୍ଡିଆ ଖାଇ ତାକୁ ମାରଧର କରେ । ଖାଇବାକୁ ଦିଏ ନାହିଁ । ଅନ୍ୟ ମାଇକିନା ପାଖୁ ଯାଏ । ତେଣୁ ସେ ସ୍ୱଇଚ୍ଛାରେ ତାକୁ ଛାଡ଼ିଦେଇଛି । ଡାକ୍ତରବାବୁ ଛଡ଼ାଇ ଆଣି ନାହାନ୍ତି । ସେ ପଳାଇ ଆସିଲା ପରେ, ଡାକ୍ତରଙ୍କ ସ୍ତ୍ରୀ ତାଙ୍କୁ ନିଜ ଛୋଟ ପିଲାଙ୍କ କାମ କରିବାକୁ ଘରେ ରଖିଛନ୍ତି, ଡାକ୍ତର ମଧ ଏଥିରେ ନିଜର ସମ୍ପୃକ୍ତିକୁ ଅସ୍ୱୀକାର କଲେ । ଡାକ୍ତର ଜଣକ ଥିଲେ ଓଡ଼ିଆ ଓ ଗୋପୀବାବୁଙ୍କ ପରିଚିତ । ସେ ଡାକ୍ତରଙ୍କ ପତ୍ନୀଙ୍କୁ ଡାକିଲେ, ପଚାରିଲେ, "ଭାଉଜ, କିଛି ଲୁଚାନ୍ତୁ ନାହିଁ । ସତକଥା କୁହନ୍ତୁ । ଯେ ସ୍ତ୍ରୀଲୋକକୁ ଆପଣଙ୍କ ନିଜେ ଘରକାମ ପାଇଁ ରଖିଛନ୍ତି ।'' ତ କବାଟ କଣରେ ଓଢ଼ଣା ଦେଇ ସୁଁ ସୁଁ ହୋଇ ଡାକ୍ତର ପତ୍ନୀ ଉତ୍ତରିଲେ, "ହଁ ।" ପୁନର୍ବାର ଗୋପୀବାବୁ ପଚାରିଲେ, "ଦେଖନ୍ତୁ ଭାଉଜ, ନିଜ ଗୋଡ଼ରେ କୁରାଢ଼ି ମାରନ୍ତୁ ନାହିଁ । ବେହେରାଟିର ପରିବାର ଭାଙ୍ଗିଛି, ଆପଣଙ୍କ ପରିବାର ଭାଙ୍ଗିଯାଇପାରେ, ମୋତେ ଖୋଲି କହିଦିଅନ୍ତୁ ।" ଏଥର ଡାକ୍ତରଙ୍କ ସ୍ତ୍ରୀ ଦମ୍ଭର ସହ କହିଲେ, "ହଁ, ସୁନାମଣିକୁ ମୁଁ ଘରକାମରେ ସାହାଯ୍ୟ କରିବାପାଇଁ ରଖିଛି ।" ଯଦିଓ ତାଙ୍କ ସ୍ୱର ଥରି ଉଠୁଥିଲା । ଅଫିସର୍ ଜାଣିଥିଲେ, ସତ୍ୟ ଲୁଚି ରହିଲା । ଯେ ଦେଶିଆ ଲୋକଙ୍କ ବିବାହରେ କ'ଣ ବା ଆଇନକାନୁନ୍ ଥିଲା ସେ କାଳରେ ?

ମନଖୁସିରେ ବାହାହୁଅ, ମନ ବିଗିଡ଼ିଲେ ଛାଡ଼ି ପଳାଅ । ବେହେରାଟିକୁ କିଛି ଜାଣିବାଶୁଣିବା ଲୋକ ସାହସ ଦେଇଥିବାରୁ ସେ ଅଭିଯୋଗ କରିଥିଲା । ନ ହେଲେ ଶିକ୍ଷିତ ଲୋକଙ୍କ ସାମ୍ନାରେ ତାଙ୍କର ସାହସ କାହିଁ ? ଗୋପୀବାବୁ ଅନନ୍ୟୋପାୟ ହୋଇ ରହିଲେ । ସୁନାମଣିକୁ ଡାକ୍ତର ଛଡ଼ାଇନେବା ପ୍ରମାଣିତ ହୋଇପାରିଲା ନାହିଁ ।

ଥରେ, ବୋଧହୁଏ ୧୯୮୭ ମସିହା ନଭେମ୍ବର ମାସ । 'ଇସ୍ତାହାର' ପତ୍ରିକାଟିଏ ଦେବା ପାଇଁ ଦିନ ୧୧ଟାରେ ତାଙ୍କ ଘରକୁ ଯାଇଥିଲି । ସେ ଓ ମୁଁ କଥାବାର୍ତ୍ତା ହେଲୁ । ୧୨ଟା ବେଳକୁ ମୁଁ ଫେରିବାକୁ ବାହାରିଲି । ସେ କହିଲେ, 'ତର ତର କାହିଁକି ? ଆଉ କିଛି ସମୟ ରହ ।" ମୁଁ ଜଣାଇଲି ଯେ, ଆଜି ଓଡ଼ିଆ ବିଭାଗ ଛାତ୍ରଛାତ୍ରୀ ପିକ୍‌ନିକ୍ ଯାଉଛନ୍ତି- ନନ୍ଦନକାନନ । ଆମକୁ ଗୋଟାଏ ବେଳେ ସେଠାରେ ପହଞ୍ଚିବାକୁ ହେବ । ଡେରି ହେଲେ ଚଳିବ ନାହିଁ । ସେ ତତ୍‌କ୍ଷଣାତ୍ କହିଲେ, "ମୁଁ ତୁମ ସହିତ ପିକ୍‌ନିକ୍ ଯିବି"- ମାଉସୀଙ୍କୁ ଡାକିଲେ- ''ହଇହୋ ଶୁଣୁଚ, ମୁଁ ଏବେ ପିକ୍‌ନିକ୍ ବାହାରିଲି ।" ମାଉସୀ ବ୍ୟସ୍ତ ହେଲେ, ତାଙ୍କ ଦେହ ଭଲ ନାହିଁ । ଗୁରୁପାକ ଖାଦ୍ୟ ଖାଇବେ ନାହିଁ, ପୁଣି ଖାଇବାର ନିର୍ଦ୍ଦିଷ୍ଟ ବେଳ ଅଛି । ଗୋପୀବାବୁଙ୍କ ଜିଦ୍, ସେ ନିଶ୍ଚେ ଯିବେ । ଅଗତ୍ୟା ମାଉସୀ ରାଜିହେଲେ । "ହଉ, ସେ ଖାଇ ସାରନ୍ତୁ, ଓଷଦ ଖାଆନ୍ତୁ, ତାଙ୍କୁ ଭୋଜିରେ ଖାଇବାକୁ ବାରଣ କରିବ ।"

ଠିକ୍ ଅଛି । ମୁଁ ଘରକୁ ଫେରିଲି ।

ଘଣ୍ଟାଏ ପରେ ଗାଡ଼ି ପଠାଇ ତାଙ୍କୁ ଅଣାଇଲି । ବାଟ ସାରା କେତେ ଗପସପ- ଡଃ ଶତପଥୀ ଗାଡ଼ି ଚଳାଉଥାନ୍ତି, ସାମ୍ନାରେ ଗୋପୀବାବୁ । ପଛସିଟ୍‌ରେ ମୁଁ ଓ ମୋ ସାନଝିଅ । ଆନନ୍ଦରେ ସେ ନିଜ ସ୍ତ୍ରୀ ଓ ଶଶୁର ଘର କଥା କହିଚାଲିଥାନ୍ତି । ବାଟସାରା ଗଛପତ୍ର ଉପରେ ଟିପ୍ପଣୀ କରୁଥାଆନ୍ତି, ଖୁସି ହେଉଥାଆନ୍ତି ।

ଲେଖକ ଗୋପୀନାଥ ମହାନ୍ତିଙ୍କୁ ପାଇ ଛାତ୍ରଛାତ୍ରୀ କୃତକୃତ୍ୟ ହୋଇଗଲେ । ହ୍ରଦକୂଳେ ଗଛଛାଇରେ ବସି ଗପସପ ଚାଲିଲା । ସାହିତ୍ୟ କଥା, ଜୀବନ କଥା ନିଜ ବାଗରେ ସେ ବଖାଣୁଥାଆନ୍ତି । ଖଲିପତ୍ର ପକାଇ କୁକୁଡ଼ା ମାଂସ ସମେତ ସବୁକିଛିକୁ ବେଶ୍ ପରିତୃପ୍ତିରେ ସେ ଖାଇଲେ । ମୁଁ ଭାବୁଥିଲି, ଯେ କ'ଣ ସତରେ ଘରେ ଖାଇକି ଆସିଥିବେ ! କିନ୍ତୁ ତାଙ୍କ ଦେହ ଭଲ ଅଛି ବୋଲି ସେ କହିଲେ । ହ୍ରଦ କଡ଼େ କଡ଼େ ବୁଲିଲାବେଳେ ସେ ବିନା ଚିନିରେ ଚା' ୨/୩ କପ୍ ପିଇଲେ । ଏହିପରି ସେ ଛୋଟ ଛୋଟ ବିଧିନିଷେଧକୁ ଖାତିର୍ କରନ୍ତି ନାହିଁ ।

ମୋତେ ବରାବର 'Prodigy' ବୋଲି କହନ୍ତି । ଯା' ପୂର୍ବରୁ ଉପନ୍ୟାସ ରଚନା ଓ ଲେଖକୀୟ ସମ୍ପୃକ୍ତିକୁ ନେଇ ଥରେ ଥରେ ବହୁତ ଗୁରୁତ୍ୱପୂର୍ଣ୍ଣ କଥା କହନ୍ତି ।

କନ୍ଧ ଘରେ ଅତିଥି ହେବା, ମାଣ୍ଡିଆ ଜାଉ ଖାଇବା, ସାନ୍ତାଳଙ୍କ ଘରକୁ ଯାଇ ଗପସପ କରିବା ଓ ସେମାନେ 'ଗୁପି' 'ଗୁପି' ବୋଲି ହୁରି ପକାଇବା କଥା ତାଙ୍କ ତୁଣ୍ଡରୁ ଶୁଣିବାକୁ ମିଳେ । 'ହରିଜନ' ଉପନ୍ୟାସ ଲେଖିଲାବେଳର କଥା କହିବାକୁ ଯାଇ, ସେ କହୁଥିଲେ, "ଏହା ଲେଖିଲାବେଳେ ମୋତେ ଘୁଅକୁ ପାଦରେ ଚକଟି ଯିବାକୁ ପଡ଼ିଛି । ମେହେନ୍ତରାଣୀର ନାକ ପାଖରୁ ଘୁଅ ଟୋକେଇର ଦୂରତାକୁ ମୁଁ ଅନୁମାନରେ ମାପିନେଇଛି ।"

ବାଣୀବିହାର ଛାତ୍ରମାନଙ୍କ ଦ୍ୱାରା ଗଠିତ 'ଶନିବାର ସୃଜନୀ ସନ୍ଧ୍ୟା'ର ଏକ ବୈଶାଖୀ ଉତ୍ସବକୁ ମୁଁ (ଉପଦେଷ୍ଟା ଥିବାରୁ) ତାଙ୍କୁ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରଣ କରିଥିଲି । ପରମ ଆହ୍ଲାଦରେ ସେ ପିଲାମାନଙ୍କ ସହ ସାହିତ୍ୟିକ ତତ୍ତ୍ୱ ଓ ତଥ୍ୟର ଆଦାନପ୍ରଦାନ କରିଥିଲେ ।

ବହୁ ଦୂରରେ ତାଙ୍କର ଦେହାନ୍ତ ହେଲା । ୨୦୦୩ ମସିହାରେ ମୁଁ OSA (Odisha Society of Americans) ସମ୍ମିଳନୀର କବିତା ସମାରୋହରେ କି-ନୋଟ୍ ବକ୍ତବ୍ୟ ଦେବାକୁ ଆମେରିକା ଯାଇଥିଲି । ସ୍ୱର୍ଗତ ଗୋପୀନାଥ ମହାନ୍ତିଙ୍କ ଝିଅ ଡାକ୍ତର ଅଞ୍ଜଳିକାଙ୍କ ଘରେ ୨/୩ ଦିନ ରହିଥିଲି । ପ୍ରଶାନ୍ତ ମହାସାଗରର 'ମଣ୍ଟେରେ ବିଚ୍'ରେ ଗୋପୀମଉସାଙ୍କ ଦାହକାର୍ଯ୍ୟ ହୋଇଥିଲା ଓ ମୁଁ ସେଠାକୁ ଯାଇଥିଲି । ସେହି ସମୁଦ୍ର ଉପକୂଳରେ ତାଙ୍କ ଉଦ୍ଦେଶ୍ୟରେ ଆଭୂମି ପ୍ରଣତି ଜଣାଇ, ବାଲିକୁ ମସ୍ତକରେ ଛୁଇଁଥିଲି ।



# କାକଜ୍ୟୋସ୍ନା...ଜ୍ୟୋସ୍ନା କ'ଣ ମିଛ ?

## [ଂମହାକବି ଡଃ ସଚ୍ଚିଦାନନ୍ଦ ରାଉତରାୟଙ୍କ ପୁଣ୍ୟ ସ୍ମୃତିରେ]

ଜ୍ୟୋସ୍ନା ମିଛ ନୁହେଁ । କାକଜ୍ୟୋସ୍ନା ମିଛ – ଏହା ପାହି ପାହି ଆସୁଥିବା ଏକ ଜହ୍ନରାତିର ଚିତ୍ରକୁ ଖୋଲିଦିଏ । ଜହ୍ନପ୍ଲାବିତ ରଜନୀ ଭାସିଉଠେ ମନରେ, ଆଖିରେ । ସେଇଥିପାଇଁ କାକଜ୍ୟୋସ୍ନା କେତେ ବାସ୍ତବ, ନିର୍ଭର, ହୃଦୟସ୍ପର୍ଶୀ ! ଯଦିଓ କାକଜ୍ୟୋସ୍ନା ଜ୍ୟୋସ୍ନାର ବିଭ୍ରାନ୍ତି, ସକାଳର ଭ୍ରମ, କିନ୍ତୁ କେଡ଼େ ମଧୁସଞ୍ଚାରି ଭ୍ରମ ! କବିମାନେ ଶେଷ ପର୍ଯ୍ୟନ୍ତ ଏଇ କାକଜ୍ୟୋସ୍ନାରେ ବହୁମନ୍ତେ ଘାରିହୋଇଥାନ୍ତି । ହାଇସ୍କୁଲ୍ ଛାତ୍ରୀ ଥିଲାବେଳେ 'ଭାନୁମତୀର ଦେଶ' କାବ୍ୟଟି ମୋତେ ବିଭୋର କରିଥିଲା । ଉଲ୍ଲସିତ ହୋଇଥିଲି ମୁଁ । ସେହି କାବ୍ୟରେ କବି ସଚ୍ଚିଦାନନ୍ଦ ପ୍ରେମଠାରୁ ଜୀବନ ବଡ଼ ବୋଲି ପ୍ରତିପାଦିତ କରିଥିଲେ । ମୁଁ ବା କ'ଣ ବୁଝିଥିଲି ସେତେବେଳେ ? ମୁଁ ଯେ ମୂଳରୁ ଆବେଗପ୍ରବଣା, ମୂର୍ଖ । ଯାହା ବି ହେଉ ପଲ୍ଲୀଶ୍ରୀଠାରୁ ବାଜି ରାଉତ, କବିତା ୧୯୬୨ ଆଦି କୋଉ ଗୋଟିଏ କବିତା ପୁସ୍ତକ କାବ୍ୟଗୁଣରେ ଊଣା ଯେ, ଗୋଟିକୁ ବାଛି ବସିବି ? ବହୁ ମର୍ମସ୍ପର୍ଶୀ କବିତା, ଇନ୍ଦ୍ରିୟ ସଂବେଦୀ ଚିତ୍ରରଚନା ପାଠକକୁ ମୁଗ୍ଧ କରିବାକୁ ଯଥେଷ୍ଟ, ଯଥା – "ନିମ ଗଛରେ ଫୁଲ ଫୁଟିଚି/ ଆକାଶରେ ଛୋଟ ଛୋଟ ବଉଦର ବୀଚି", ଓ "ଲାବଣ୍ୟବତୀ, ତୁମେ ପରା କହିଥିଲ / ଅଜସ୍ର ତାରାର ରାତି / ହେବ ବୋଲି ତୁମର ଓ ମୋର / ଘଡ଼ିରେ ମୋ ବାରଟା ଅଠର ।" ଆଦି ପଂକ୍ତିଗୁଡ଼ିକ ହୃଦୟର ଧନ ହୋଇ ରହିଥିଲେ । ବାକ୍ ରୀତି କାବ୍ୟିକରୀତି ରୂପେ ଉତ୍ତୀର୍ଣ୍ଣ ହୋଇଥିଲା ।

ପ୍ରଗତି ଚେତନା ସହ ରୋମାଣ୍ଟିକ୍ ଚେତନାର ରାସାୟନିକ ମିଶ୍ରଣରେ ତାଙ୍କ କବିତା ଯେତିକି ଧୀଶକ୍ତିକୁ ଉଚ୍ଚକିତ କରେ, ସେତିକି ମନନଶୀଳ ଆବେଗ ଓ ବୀକ୍ଷଣକୁ ଉଦ୍‌ବୁଦ୍ଧ କରିଥାଏ । କବିଙ୍କ ଶବ୍ଦ ସମ୍ଭାର, ପ୍ରକାଶ ଚାତୁରୀ ଓ ଶବ୍ଦ-ବସାଣ କଳା ଅପୂର୍ବ ମନେହୁଏ । ସେ କେତେ ବଡ଼ କବି ଥିଲେ, ସ୍କୁଲ୍ ଜୀବନରେ ମୁଁ କଳନା କରିବାକୁ ସମର୍ଥ ହୋଇ ନ ଥିଲି । ଅନେକ ତାଙ୍କ ବ୍ୟକ୍ତିଗତ ଅହଂକାରକୁ ନେଇ ଟିପ୍ପଣୀ ଦିଅନ୍ତି । ତାହା ଭିନ୍ନ ପ୍ରସଙ୍ଗ । ପ୍ରଚଣ୍ଡ କବିତ୍ୱର ଅଧିକାରୀ, କିଛିଟା ଅହଂ ତ ରହିଥିବ । ତେବେ, ତାଙ୍କ ସହ ମୋର ସାମାନ୍ୟତମ ବ୍ୟକ୍ତିଗତ ସମ୍ପର୍କ ବିଷୟରେ କିଛି କହିବାକୁ ଯାଉଛି । ଯଦିଓ ତାଙ୍କ ସହିତ ମୋର କଳା-ଗତ ସମ୍ପର୍କ ଅଗାଧ । ତାଙ୍କ କାବ୍ୟକବିତାର ଆଲୋଚନା ଖୁବ୍ ଗଭୀର ଓ ପ୍ରଶସ୍ତ ହେବ । ଏଠାରେ ସେସବୁର ସୁଯୋଗ ନାହିଁ । ମାତ୍ର ତାଙ୍କର ମୋ କବିତା ରଚନା ନିମିତ୍ତ ଉତ୍ସାହବାକ୍ୟ ! ତା'ର ତ ମୂଲ୍ୟ ହିଁ ଅମାପ ।

୧୯୬୪ ମସିହା, ଗୋଟିଏ ସଭାରେ ମୁଁ ବସିଥାଏ, ଭଗ୍ନସ୍ୱାସ୍ଥ୍ୟ, ଭଗ୍ନମନ ନେଇ । ଅଳ୍ପ କେତେଦିନ ପୂର୍ବେ 'ଝଂକାର'ରେ ମୋର କବିତା ପ୍ରକାଶ ପାଇଥାଏ ତା'ର ପ୍ରଥମ ଧାଡ଼ି- "ଏପଟେ ସେକେଣ୍ଡ ଓ୍ୱାର୍ଡ/ ଆରପଟେ ଶାଗୁଆ ରଙ୍ଗର ଟୋପି ପିନ୍ଧି/ ଛୋଟ ଛୋଟ ଅସଂଖ୍ୟ ପାହାଡ଼ ।" ଗୋଟିଏ ହସ୍ପିଟାଲ୍ ଓ୍ୱାର୍ଡ କଥା । ସେତେବେଳେ ମୋ ବୟସର କୋଉ କବି ଅବା ତାଙ୍କ ରଚନା ଦ୍ୱାରା ଅଳ୍ପେ ବହୁତେ ପ୍ରଭାବିତ ନ ହୋଇଛନ୍ତି, ଅନ୍ତତଃ ସେଇ ଆଦ୍ୟ କାଳରେ । କବି ସଚ୍ଚି ରାଉତରା ମୋ ପାଖକୁ ଆସିଲେ, ଟିକିଏ ନଇଁପଡ଼ି ମୋତେ ଅଭିନନ୍ଦନ ଜଣାଇଲେ, ମୋ ବୁଦ୍ଧିକୁ ଦେଖନ୍ତୁ, ମୁଁ ଛିଡ଼ା ହେଲି ନାହିଁ ମଧ୍ୟ । ସେ କହିଲେ, ତୁମର ଯେ କବିତାଟି ଖୁବ୍ ଭଲ ହୋଇଛି- ତୁମେ ଲେଖିଚାଲ, ବହୁତ ଆଗକୁ ଯିବ- ତୁମ କବିତାର ପ୍ରତୀକ ଆଉ ଚିତ୍ରକଳ୍ପ ପ୍ରଭାବଶାଳୀ ।" ବାସ୍- ସେତିକି ମୋ ପାଇଁ କମ୍ ଆଶ୍ୱାସନାର କଥା ନ ଥିଲା ! ତା'ପରେ ବୋଧହୁଏ ସେଇ ୧୯୬୪ ମସିହାରେ ଗୁଜରାଟରୁ ଦଳେ ଚାରଣ କବି ଆସିଥିଲେ । ତାଙ୍କ ସମ୍ବର୍ଦ୍ଧନାର୍ଥେ ସଭାଟିଏ ହୋଇଥିଲା । ସଭାସ୍ଥଳ ଥିଲା, ଗୌରୀଶଙ୍କର ପାର୍କ । ସେଠାରେ ମଞ୍ଚରେ ସଭାପତିତ୍ୱ କରୁଥାନ୍ତି ସଚ୍ଚିବାବୁ । ଖଦଡ଼ ଟ୍ରାଉଜର୍, ପଞ୍ଜାବି ଓ ମୁଣ୍ଡରେ ଟୋପି । ସେହି ସମ୍ବର୍ଦ୍ଧନା ସଭାରେ ଆମେ କେତେ ଜଣ କବି କବିତା ପଢ଼ିଥିଲୁ । ସମସ୍ତେ ପ୍ରବୀଣ ଏକମାତ୍ର ମୁଁ ଜଣେ ତରୁଣୀ । ଚାରଣ କବିମାନେ ସୁନ୍ଦର ଓ ଉଦ୍‌ବୋଧନକାରୀ ଦେଶାତ୍ମବୋଧକ କବିତା ପଢ଼ିଥିଲେ । ସେସବୁ ଥିଲା ଚୀନା ଆକ୍ରମଣ (୧୯୬୨)ର ପ୍ରତିକ୍ରିୟା- ସ୍ୱରୂପ ଦେଶପ୍ରାଣତାର ସ୍ୱର । ଧାଡ଼ିଏ ମନେପଡ଼େ, "ଅପ୍‌ନି ଧରତୀ, ଅପ୍‌ନା ଅମ୍ବର/ ଅପ୍‌ନା ହିନ୍ଦୁସ୍ତାନ..." ଗୀତିକାର ମଧ୍ୟ କେହି କେହି ଆବୃତ୍ତି କରିଥିଲେ । ସେଠାରେ, ସଭା ସରିଲା ପରେ, କବି ରାଉତରାୟ ମୋ ପାଖକୁ ଆସି, ମୋ କବିତାକୁ ପସନ୍ଦ କରିଥିବା ଜଣାଇଥିଲେ । କ'ଣ ବା ଥିଲା ମୋ କବିତାରେ ? ମାତ୍ର 'ଝିଅଟିଏ କବିତାଲେଖା ଜାରି ରଖୁ' ଏହାହିଁ ବୋଧେ ତାଙ୍କର ଉଦ୍ଦେଶ୍ୟ ଥିଲା ।

ପରେ ପରେ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସହ ତାଙ୍କର ମସୀଯୁଦ୍ଧ ଚାଲିଲା - ଜଣେ ସମାଲୋଚକ ଓ ଜଣେ କବି ମଧ୍ୟରେ କହିବା ବାହୁଲ୍ୟ, ଉଭୟେ ଥିଲେ ମସୀଯୁଦ୍ଧରେ ନିପୁଣ । ମୁଁ ଏସବୁରୁ ଯଥାସମ୍ଭବ ଦୂରରେ ରହିଥିଲି । ସେ କଥା ଏଇଠି ଥାଉ । ମୋର ଧ୍ୟେୟ କବିଙ୍କର ସ୍ମୃତିପୂଜା । ଥରେ ରାଜଭବନରେ ତାଙ୍କର ଜୟନ୍ତୀ ଉତ୍ସବ ପାଳନ କରାଯାଇଥିଲା । । କବି ଉପସ୍ଥିତ ଥିଲେ ସେଠାରେ । ଆଖିକୁ ପ୍ରାୟ କିଛି ଦୃଶ୍ୟ ହେଉ ନ ଥିଲା । ମୁଁ ଥିଲି ସେହି ସଭାରେ ମୁଖ୍ୟବକ୍ତା । କ'ଣ କ'ଣ ସବୁ କହିଥିଲି, ଲେଖି ରଖି ନାହିଁ କିଛି ବି । ମନେ ପଡ଼େ କବି ଗୁରୁପ୍ରସାଦଙ୍କର - "ଆକାଶରୁ ଖସିଆସେ ତାରା ଆଉ ସଚ୍ଚି ରାଉତରା"... ଏହି ଉଦ୍ଧୃତି କହିଥିଲି ଅବଶ୍ୟ ।

ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣ ହରାଇଥିଲେ ମଧ୍ୟ, ବକ୍ତବ୍ୟ ପ୍ରଦାନ କରିବାରେ ତାଙ୍କ ସ୍ୱର ଓ ବୁଦ୍ଧିମତ୍ତାର ତୀକ୍ଷ୍ଣତା ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ତାଙ୍କ ଦେହାନ୍ତର ଅଳ୍ପ

କିଛିଦିନ ପୂର୍ବରୁ ସାକ୍ଷାତ ନିମିତ୍ତ ମୁଁ ଓ କବି ହୃଷୀକେଶ ମଲ୍ଲିକ ତାଙ୍କ ବାସଭବନକୁ ଯାଇଥିଲୁ । ମୁଁ ସମ୍ପାଦନା କରୁଥିବା କବିତା ପତ୍ରିକା 'ଉଦ୍‌ଭାସ' ନିମନ୍ତେ ତାଙ୍କଠାରୁ ସାକ୍ଷାତକାର ଆଣିବାର ଥିଲା । ସେ ସମ୍ମତ ହୋଇଥିଲେ ଓ ପତ୍ରିକାର ଉତ୍କର୍ଷ ସମ୍ବନ୍ଧରେ ଅବଗତ ଥିଲେ । ତାଙ୍କ ବାସଭବନରେ ପହଞ୍ଚିଲା ବେଳକୁ ଦିନ ୩ଟା ବାଜିଥାଏ । କାରଣ ଗୋଟିଏ ଦ୍ୱିପ୍ରହର ଭୋଜିରେ ଯୋଗଦେଇ ସାରି ଆମେ ତାଙ୍କ ନିକଟରେ ପହଞ୍ଚିଥିଲୁ, ଖରାଦିନ । ତାଙ୍କର ବୋହୂ କବାଟ ଖୋଲି ନମ୍ର ଭାବରେ କହିଲେ ଯେ, ୪ଟା ପୂର୍ବରୁ ତାଙ୍କୁ ନିଦରୁ ଉଠାଇହେବ ନାହିଁ । ଅତଏବ ଆପଣ ଅପେକ୍ଷା କରନ୍ତୁ । ଖୋଲା ବୈଠକଖାନାରେ ଘଣ୍ଟାଏ କାଳ ବସିରହିବାକୁ ପଡ଼ିବ ତ ! ସ୍ୱଭାବତଃ ଅଳସେଇ ମୁଁ । ପାଖରେ ଗାଡ଼ି ଥିଲେ ବି ଏବେଳରେ କୁଆଡ଼େ ବୁଲିବାକୁ ହେବ ? ହୃଷୀକେଶ କହିଲେ ଯେ, ସେ କବିଙ୍କୁ ସାକ୍ଷାତ କରିସାରି ଫେରିଯିବେ । ମୁଁ ତାଙ୍କୁ ସେଠାରେ ଛାଡ଼ି ଫେରିଆସିଲି । ୪ଟା ବାଜିସାରିଲା, ସେ ଉଠିଲେ । ସାକ୍ଷାତକାରଟି ସମ୍ପୂର୍ଣ୍ଣ ହେଲା । ସେ ଶୁଣିଲେ, ମୁଁ ଏମିତି ଫେରିଆସିଲି, ସେ ଶୁଣିକି ବହୁତ ବ୍ୟସ୍ତ ହେଲେ । କହିଲେ, "ମୋର ପ୍ରତିଭାଙ୍କ ସହିତ ଦେଖା କରିବାର ଇଚ୍ଛା ଥିଲା, ମତେ ହେଲେ ଏମାନେ ୩ଟା ବେଳେ ଉଠାଇ ଦେଇଥାନ୍ତେ ।" ଆମର ଅତ୍ୟନ୍ତ ଉପାଦେୟ, ଅର୍ଥବହ ପ୍ରଶ୍ନଗୁଡ଼ିକୁ ସେ ଉପଯୁକ୍ତ ମତେ ଉତ୍ତର ଦେଇଥିଲେ । କିନ୍ତୁ ସେ ବ୍ୟସ୍ତ ହେବା କଥା ଶୁଣି, ମୁଁ ନିଜକୁ ଦୋଷୀ ମଣିଲି । ନିଜକୁ ଧିକ୍‌କାରିଲି । କାହିଁକି ଘଣ୍ଟାଏ ସେଠି ନ ରହିଲି ! ଦେବଦର୍ଶନ ପାଇଁ ଲୋକେ କେତେ ଅପେକ୍ଷା ନ କରନ୍ତି ! ଭାବିଥିଲି, ନିଶ୍ଚୟ ଯା' ଭିତରେ ଦେଖା କରି ଆସିବି । ମାତ୍ର ଭାଗ୍ୟରେ ନ ଥିଲା । ଅଳ୍ପଦିନ ପରେ ତାଙ୍କ ଦେହାନ୍ତ ଖବର ପାଇଲି । ଭକ୍ତିପୂତ ପ୍ରଣାମ ଜଣାଇଲି । ସେ ତ ସ୍ମୃତି ହୋଇଯାଇଥିଲେ । ତଥାପି ମୋ ପାଇଁ ଜୀବନ୍ତ-ଅତୀତ । ଏବେ ବି ତାଙ୍କର କାବ୍ୟିକ ଆତ୍ମାର ଉପସ୍ଥିତି ମୁଁ ଅନୁଭବ କରିପାରେ । ମୁଁ ହିଁ ପ୍ରଥମ କରି 'ଉଦ୍‌ଭାସ' ପତ୍ରିକାର ସେହି ସାକ୍ଷାତକାରରେ ତାଙ୍କୁ 'ମହାକବି' ରୂପେ ଅଭିହିତ କରିଥିଲି । ମହାକବିମାନେ ଅମର ନୁହନ୍ତି କି ? ନୁହନ୍ତି କି ଚିରଞ୍ଜୀବୀ ? କାକଜ୍ୟୋତ୍ସ୍ନା-ପ୍ଳାବିତ ରଜନୀରେ ଏବେ ବି ସେ ମନେପଡ଼ନ୍ତି ।

❖❖❖

# ଜୀବନ-ରସିକ ବାହୁଡ଼ିଲେ

## [ ଲୋକରତ୍ନ କୁଞ୍ଜବିହାରୀ ଦାଶଙ୍କ ସ୍ମୃତି ପ୍ରତି ନିବେଦିତ ]

ସବୁଥିରେ ଆନନ୍ଦ । ହସ ଗଦ୍‌ଗଦ । ଆବେଗ ଉତ୍ସାହ ଭରପୂର ସେଇ ସବୁକୁ ବାଣ୍ଟି ଚାଲିଗଲେ ସେ । ଛନ୍ଦକପଟ ନାହିଁ । ପାଟିରେ କଥାଏ, ପେଟରେ କଥାଏ ନାହିଁ । ତା'ହେଲେ, ସତରେ କ'ଣ ଜୀବନରେ ଦୁଃଖ, ଦୁର୍ଭାଗ୍ୟ ନାହିଁ ? ଅଛି, ତାଙ୍କ ପାଇଁ ଯଥେଷ୍ଟ ପ୍ରତିକୂଳତା ଆସିଛି । ପିଲାଟି ଦିନୁଁ ସଂଗ୍ରାମ କରି, ଦାରିଦ୍ର୍ୟ ସହ ଟକ୍କର୍ ଦେଇ ସେ ଆତ୍ମପ୍ରତ୍ୟୟର ସହ ଚାଲିଛନ୍ତି । ଗୋଟାଏ ଗୋଡ଼ରେ ବଳା, ଅଣ ଓସାର ଖଦୀ ପିନ୍ଧା ସେ ବପୁବନ୍ତ 'କୁଞ୍ଜୁରି'-ଓଡ଼ିଆ ସାହିତ୍ୟର ବରେଣ୍ୟ ପୁରୁଷ ଭାବେ ଦଣ୍ଡାୟମାନ ହୋଇଛନ୍ତି ଡଃ କୁଞ୍ଜବିହାରୀ ଦାଶ । ସେଇ ଆତ୍ମବିଶ୍ୱାସ ହେତୁ ଜୀବନର ଅନ୍ଧକାର ଦିଗକୁ ସେ ସ୍ୱୀକାର କରି ନାହାନ୍ତି ।

ମଜା ମଜା କଥା କୁହନ୍ତି ସେ, ତଥାପି ଗାମ୍ଭୀର୍ଯ୍ୟ ଭିତରେ ନିନ୍ଦୁକମାନଙ୍କ ପ୍ରତିକ୍ରିୟାକୁ ଚାପି ଦିଅନ୍ତି । ତାଙ୍କର ନିନ୍ଦୁକ ଅଳ୍ପ ଥିଲେ । ମାତ୍ର ସେମାନଙ୍କ ପ୍ରତି ପଦୁଟିଏ ଅଶାଳୀନ ଓ କ୍ରୁଦ୍ଧ ମନ୍ତବ୍ୟ ତାଙ୍କଠାରୁ ଶୁଣିବାକୁ ମିଳୁ ନ ଥିଲା । ନିଜ ହୃଦୟକୁ ଈର୍ଷା, ଅସୂୟା, କପଟାଚାରରୁ ଦୂରେଇ ରଖିଥିଲେ ବୋଲି ହିଁ ବିପୁଳ ସାହିତ୍ୟ ସର୍ଜନା ଓ ଅସଂଖ୍ୟ ବନ୍ଧୁସ୍ନେହ ସେ ଲାଭ କରିଥିଲେ । ସାର୍‌ଙ୍କ ସୁଦୀର୍ଘ, ସୁଠାମ ଶରୀର କାଳର ପ୍ରଭାବରେ ଶୀର୍ଣ୍ଣ, ନିସ୍ତେଜ ହୋଇଆସିଥିଲା । ପୁଷ୍ପଶୋଭିତ ଜୀର୍ଣ୍ଣ ନିଷ୍ପ୍ରାଣ ଶରୀର ଉପରେ ସେଦିନ ବ୍ୟାକୁଳ ହୋଇ ପତ୍ନୀ ତାଙ୍କର ଲୋଟି ପଡ଼ିଥିଲେ - "ଏ ଜୀବନରେ ଏଇ ଶେଷ ଦେଖା - ମୋତେ ୧୩ ବର୍ଷ ଦିନଠାରୁ ସାଙ୍ଗ କରିଥିଲ - ଆଜି କୁଆଡ଼େ ଛାଡ଼ିଗଲ -" ତାଙ୍କୁ ପ୍ରବୋଧନା ଦେବାକୁ କାହାରି ପାଖରେ ଭାଷା ନ ଥିଲା ।

କେତେ ବାହୁନା, କାନ୍ଦଣା, କେତେ ଝିଅବୋହୂଙ୍କ ମର୍ମଗୀତି, ହଳିଆ, ମୂଲିଆଙ୍କ ଉଲ୍ଲାସ ଓ ବେଦନାର ଉଚ୍ଚାରଣ, ପୁଣି କଳ୍ପନା ଓ ଅଙ୍ଗେନିଭା ଅନୁଭୂତିର କାହାଣୀ ତାଙ୍କ ମନନଶୀଳତାର ସ୍ପର୍ଶରେ ଅମର ହୋଇ ରହିଗଲେ । ଲୋକପ୍ରାଣର ସ୍ପନ୍ଦନର ଯଥାର୍ଥ ଗ୍ରାହକ ସେ - 'ଲୋକରତ୍ନ' । ଆପଣାର ଅନ୍ତରାତ୍ମା ପ୍ରତି ସଚ୍ଚୋଟ ହେବା ଗୋଟିଏ ସାହିତ୍ୟିକ ବ୍ୟକ୍ତିତ୍ୱର ସର୍ବପ୍ରଧାନ ଗୁଣ । ତାଙ୍କ ଆତ୍ମଚରିତ 'ମୋ କାହାଣୀ'ରେ ସେ ଠାଏ ଖୁବ୍ ଭାଙ୍ଗି ପଡ଼ିଛନ୍ତି । "ଯେତେ ବିଦେଶ ଗଲେ, ଯେତେ ଯାହା କଲେ, ଇଂରାଜୀରେ ତ ମୋର ଯଥେଷ୍ଟ ବ୍ୟୁତ୍ପତ୍ତି ହେଲା ନାହିଁ - ମୁଁ ଆଉ କି ସାହିତ୍ୟିକ ହେବି ?" ଏଇ ତାଙ୍କର ଅବସୋସ ସେ ପ୍ରକାଶ କରିଥିଲେ । ଏହି ବହିଟିକୁ କେହି ଆଡ଼େଇ ଯାଇପାରିବ ନାହିଁ । ଲେଖକଙ୍କ ଅନ୍ତର୍ଲୋକର ସତ୍ୟାଶ୍ରୟୀ କଳାତ୍ମକତା ପାଠକମାନଙ୍କୁ ନିଶ୍ଚୟ ଅଭିଭୂତ କରିବ । ଏକଥା ସାର୍‌ଙ୍କୁ ମୁଁ ସେତେବେଳେ କହିଥିଲି । ଏକ ସମୟରେ ଆମେ ଯେଉଁମାନେ ଜୀବିତ, ଆମ ବ୍ୟକ୍ତିଗତ ଭାବପ୍ରବଣତାର ଛାପ ନିଶ୍ଚୟ ପଡ଼ିବ, ଆମେ ଯେତେ ନୈର୍ବ୍ୟକ୍ତିକ ହେବାକୁ ଚେଷ୍ଟା କଲେ ବି । ମୋ ବଡ଼ଝିଅର ମାସିକିଆକୁ ନିମନ୍ତ୍ରିତ ହୋଇ ସେ ଆସିଥିଲେ ।

ମୁଁ ଝିଅଟିକୁ ଧରିଥାଏ - ଅତିଥିଙ୍କ ମେଳରୁ ସେ ଝୁଙ୍କିପଡ଼ି ଅନାଇ କହିଲେ - "ଦେଖିବା ତ, ପ୍ରତିଭା ସଂସାରକୁ କ'ଣ ଦାନ ଦେଇଛନ୍ତି ?"

ଯେତେବେଳେ ମୋର ବିଶ୍ୱବିଦ୍ୟାଳୟ ନିବନ୍ଧ (ଥେସିସ୍) ପ୍ରକାଶ ପାଇଲା, ମୁଁ ତାଙ୍କୁ ଖଣ୍ଡିଏ ଭେଟି ଦେଇଥିଲି । ସେ ଥିଲେ ଜଣେ ମର୍ମଜ୍ଞ କବି - 'ମାର୍ଗଶୀର୍ଷର ଜନନୀ ଆସିବେ ଶିଶିର ଧବଳ ଭୂଷାରେ' ଆଦି ରସାଳ କବିତା, ଭ୍ରମଣ କାହାଣୀ, ଅନୁସନ୍ଧିତ୍ସା-ମୂଳକ ସମାଲୋଚନା ଗ୍ରନ୍ଥ, ତିନୋଟି ଉପନ୍ୟାସ ଇତ୍ୟାଦି ବହୁ ଗ୍ରନ୍ଥ ଭିତରେ ତାଙ୍କର ନିଜସ୍ୱ ସର୍ଜନଶୀଳତା ଫୁଟି ଉଠିଥିଲା । କୌଣସି ଅର୍ବାଚୀନ ନଗଣ୍ୟ ଲେଖକଟିଏ ହେଉ ପଛେ, ତାଙ୍କର ଉତ୍ସାହବାକ୍ୟରେ କୃତାର୍ଥ ହୋଇଯାଉଥିଲା । ମୋ କବିତା ରଚନାର ପ୍ରାରମ୍ଭିକ କାଳରେ ଉତ୍ସାହପ୍ରଦ ମନ୍ତବ୍ୟ ଦେଇ ସେ ମୋତେ ଅନୁଗୃହୀତ କରିଛନ୍ତି । ଯଦି ସାରସ୍ୱତ ନିଆଁଝୁଲଟିଏ ଥିବାର କୋଉଠି ହେଲେ ସେ ସନ୍ଧାନ ପାଆନ୍ତି, ତାକୁ ଜଳାଇ ରଖିବା ନିମନ୍ତେ ପ୍ରଯତ୍ନ କରିବା ତାଙ୍କର କର୍ତ୍ତବ୍ୟ - ଏହା ସେ ସ୍ୱୀକାର କରିନେଉଥିଲେ । ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନର ମୁଁ ଛାତ୍ରୀ ଥିଲାବେଳେ ସେ ଅଙ୍କ କେତେଦିନ ମୋର ଟ୍ୟୁଟୋରିଆଲ୍ କ୍ଲାସ୍ ନେଇଥିଲେ । ମୋର ପ୍ରଥମ କବିତା ପୁସ୍ତକର ମୁଖବନ୍ଧ ସେ ହିଁ ଲେଖିଥିଲେ । ମୋର 'କବିତା-ସାଧନା ପୁଷ୍ପାଶ୍ରିତ ହେଉ' ଏହି ଆଶୀର୍ବାଦ କରିଥିଲେ । ସେ ଓ ତାଙ୍କ ଧର୍ମପତ୍ନୀ ଏପରି ଅତିଥିପରାୟଣ ଯେ କେହି ତାଙ୍କ ଘରୁ କିଛି ନ ଖାଇ ନ ପିଇ ଫେରୁ ନ ଥିଲେ । ଉଭୟେ ପତିପତ୍ନୀ ଥିଲେ ବନ୍ଧୁବତ୍ସଳ । ତାଙ୍କ ପତ୍ନୀ ପ୍ରେମଲତା (ଆମ ନିଶା ନାନୀ) ନିଜେ ସାହିତ୍ୟରସିକା, ଲେଖିକା । ସେ ନିଜେ ଖୁବ୍ ସୁସ୍ଥ ନ ଥିଲେ ବି ଶେଷ ପର୍ଯ୍ୟନ୍ତ ସାର୍‌ଙ୍କର ଅଶେଷ ଯତ୍ନ ନେଇଛନ୍ତି । ସାର୍ ଏହି ସଂସାରର ସକଳ ଶଠତା ବିଷୟରେ ଅବଗତ ଥିଲେ । ମାତ୍ର ଆତ୍ମସମୀକ୍ଷା କାଳରେ ସତ୍ୟ ସ୍ୱୀକାର କରିବାକୁ ପଶ୍ଚାତ୍‌ପଦ ହେଉ ନ ଥିଲେ କଦାପି । ସେହି ସତ୍ୟଭିତ୍ତିକ ଜୀବନୀ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ପ୍ରଥମରୁ ସେ ବହିଟିକୁ ପଢ଼ି ମୁଁ ନିଶ୍ଚିତ ହୋଇଥିଲି ଯେ, ଯେ ବହିଟିକୁ କେହି ଆଡ଼େଇ ଯାଇପାରିବେ ନାହିଁ ।

ମୋର ନିବନ୍ଧ ଗ୍ରନ୍ଥ 'କଳ୍ପନାର ଅଭିଷେକ' ଖଣ୍ଡିକ ମୁଁ ତାଙ୍କୁ ଭେଟି ଦେଇଥିଲି । ପ୍ରାୟ ୨/୩ ମାସ ପରେ ପୁଣି ଦେଖା ହେବାରୁ ସେ କହିଲେ, "କେତେ ବାକ୍‌ସଂଯମ ରଖି ଲେଖିଚ । ଯେତିକି ଦରକାର ସେତିକି – ଶବ୍ଦଟିଏ ବି ଅଧିକା ନାହିଁ । ଧାଡ଼ିଟିଏ ହେଲେ ଏଥିରୁ କେହି କାଟି ଦେଇପାରିବେ ନାହିଁ ।" ସେଦିନ ସାର୍‌ଙ୍କର ସେଇ ସାର୍ଟିଫିକେଟ୍‌ଟି ଭାରି ମୂଲ୍ୟବାନ୍ ମନେହେଲା । କେହି ବହିଟିଏ ଭେଟିଦେଲେ ସେ ଏତେ ଆନ୍ତରିକତା ସହ ପଢ଼ନ୍ତି, ଯେ ତା'ର ଏକ ନମୁନା ।

ସମୟକ୍ରମେ ତାଙ୍କ ପ୍ରାଣଶକ୍ତି କ୍ଷୀଣ ହୋଇଆସିଥିଲା । ଏବେ ଅମୋଘ ମୃତ୍ୟୁ ତାଙ୍କ ଶରୀରକୁ କବଳିତ କଲା । କିନ୍ତୁ ମାନବର ମରଣଶୀଳ ଅଂଶ ବାହାରେ ଯେଉଁ ଅମରତ୍ୱ ବିଦ୍ୟମାନ, ସେହି ଅମରତ୍ୱ ବଳରେ ସେ ଏବେ ବି ବିଦ୍ୟମାନ । ତାଙ୍କ ଚିନ୍ତା, ଆବେଗ, ଶ୍ରମ ଓ ସାଧନା ସବୁ ରହିଛି । ତାଙ୍କରି ଭଳି ଅମାୟିକ, ସ୍ନେହାବେଗପ୍ରବଣ, ସୃଜନଶୀଳ ବ୍ୟକ୍ତିତ୍ୱଟିଏ ଏଇ ମାଟିରେ ଜନ୍ମ ନେବ – ଏହି ସମ୍ଭାବନାକୁ ମୁଁ ପ୍ରଣିପାତ ଜଣାଉଛି ।



# ମହୀୟସୀଙ୍କ ମହାପ୍ରସ୍ଥାନ

## [ସ୍ୱର୍ଗତା ଅନ୍ନପୂର୍ଣ୍ଣା ମହାରଣାଙ୍କ ଏକାଦଶାହ ଉପଲକ୍ଷେ]

ତ୍ୟାଗ ଓ ଆତ୍ମୋତ୍ସର୍ଗର ଗୋଟିଏ ଶତାବ୍ଦୀ ପ୍ରାୟ ପୂରିଗଲା । ଚୂନିଅପା ଚାଲିଗଲେ । ବିଂଶ ଶତାବ୍ଦୀ- ଭାରତର ସ୍ୱାଧୀନତା ପ୍ରାପ୍ତି ଓ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ମର୍ଯ୍ୟାଦା ପ୍ରାପ୍ତିର ଏକ ବିଶେଷ ଶତାବ୍ଦୀ । ଏହି ଶତାବ୍ଦୀର ପ୍ରଥମ ପାଦରୁ ହିଁ ଆମ ରାଜ୍ୟରେ ନାରୀର ଗୁରୁତ୍ୱ ଉପଲବ୍ଧ ହେଲା । ଚୂନିଅପା ଜଣେ ନିଷ୍ଠାପର କର୍ମୀ । ତାଙ୍କର ନିଷ୍ଠା ଆଜିର ଅନେକ ଦେଶସେବୀଙ୍କ ମଧ୍ୟରେ ବିରଳ । ଆପଣା ସଂକଳ୍ପରେ ଅଟଳ ଓ ଦୃଢ଼ ରହି, ସଂଭ୍ରାନ୍ତ-ବଂଶଜା, ଯୋଗଜନ୍ମା ସ୍ୱର୍ଗତା ଅନ୍ନପୂର୍ଣ୍ଣା ମହାରଣା ପାଖାପାଖି ଗୋଟିଏ ଶତାବ୍ଦୀ ବିତାଇଦେଲେ । ତାଙ୍କ ସହିତ ମୋର ନିକଟତା ଆରମ୍ଭ ହୁଏ ରାୟଗଡ଼ାଠାରେ ସର୍ବୋଦୟ ଭବନରେ । ମୋର ବଡ଼ଭାଇ ପେପର୍ ମିଲ୍‌ରେ ଥାଆନ୍ତି, ତାଙ୍କ ସଙ୍ଗରେ ମୁଁ ଯାଇଥାଏ । ବୟସରେ ମୁଁ କେତେ ସାନ, ପୁଣି ତାଙ୍କ ଜୀବନାଦର୍ଶର ଧାରାଠାରୁ ବହୁତ ଦୂରରେ, ଅଥଚ, କେଡ଼େ ଆଦରରେ ମୋତେ ସେ କୋଳେଇ ନେଲେ । "ତୁ ଧରମାମୁ ଝିଅ, ରହ, ମୁଁ ତୋତେ ମାମୁଙ୍କ ଫଟୋ ଦେଖାଇବି ।" କୋଉଠୁ କାଢ଼ିଲେ କଳାଧଳା ପୁରୁଣା ଫଟୋ । ଗାନ୍ଧିଜୀଙ୍କ କଟକକୁ ପ୍ରଥମ ଆଗମନର ଫଟୋ । ବହୁଗ୍ରାମଠାରେ ଗାନ୍ଧିଜୀ କର୍ତନ୍ ଭିତରେ ଥାଆନ୍ତି, କର୍ତନ୍ କରିଥିବା ଲୋକଙ୍କ ଭିତରେ ଆଗଧାଡ଼ିରେ ମୋ ବାପା । ସେ ମୋତେ ଚିହ୍ନାଇଦେଲେ । ସତ୍ୟଭାମାପୁର ତାଙ୍କ ମାମୁଙ୍କ ଗାଆଁ- ଅଜା ୰ଗୋପାଳ ବଲ୍ଲଭ ଦାସ, ବଡ଼ଅଜା ୰ମଧୁସୂଦନ ଦାସ ଓ ମାମୁ ଉପେନ୍ଦ୍ର କିଶୋର ଦାସ, ତାଙ୍କରି ସାଙ୍ଗ ମୋ ବାପା ଚକ୍ରଧର ଶତପଥୀ । କେଡ଼େ ଖୁସିରେ କହନ୍ତି, ତୋ ବାପଘର ଗାଆଁ ମୋ ମାମୁଘର ।

ମୋ ବୋଉର ଦେହାନ୍ତ ପରେ ସତ୍ୟଭାମାପୁରରେ ଅବସ୍ଥିତ କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର ଓ ଅନାଥାଶ୍ରମରେ ସେ ବର୍ଷ ମୁଁ ବୋଉର ଦ୍ୱିତୀୟ ଶ୍ରାଦ୍ଧବାର୍ଷିକୀ ପାଳନ କରୁଥାଏ । ଚୂନିଅପା ଓ ସୁମିତ୍ରା ଭାଉଜଙ୍କୁ ବାଖରାବାଦରୁ ସାଙ୍ଗରେ ନେଇଯାଇଥାଏ, ୨୦୦୦ ମସିହା । ଖୁସି ହେଇ କହୁଥାଆନ୍ତି, "ଗାଁରେ ତୋର ବେଶି ହକ୍ ନା, ମୁଁ ତ ଗାଁର ଭାଣିଜୀ । ଏହି ମାତୃମଙ୍ଗଳ କେନ୍ଦ୍ରର ଓ ଅନାଥାଶ୍ରମର ତଥା ସର୍ବୋଦୟର ଜଣେ ଅନନ୍ୟ ନେତ୍ରୀ ଭାବେ, ସେ କେତେଥର ମୋ ସହ କଥା ହେଇଛନ୍ତି । କେବେ କେବେ ସେହି ଅନୁଷ୍ଠାନକୁ ସାମାନ୍ୟ ଆର୍ଥିକ ସାହାଯ୍ୟ ଦେବା ବ୍ୟତୀତ ମୁଁ ଭିନ୍ନ କିଛି କରିପାରି ନାହିଁ ।

ଚୂନିଅପା ବାଲ୍ୟକାଳରୁ ବିପ୍ଳବିଣୀ, ବାନର ସେନା ସାଜି ସେ ଇଂରେଜଙ୍କ ସହ ଲଢ଼ିଛନ୍ତି, କାରାବରଣ କରିଛନ୍ତି ବହୁବାର । ଦେଶ ସ୍ୱାଧୀନ ହେବା ପରେ ମଧ ସର୍ବଜନସେବା ସର୍ବୋଦୟ ଇତ୍ୟାଦି ମହତ୍ କାର୍ଯ୍ୟରେ ଏହି ମହୀୟସୀ ମହିଳା ନିଜକୁ ନିୟୋଜିତ କରି ରଖିଲେ । ପୁଅ ଦୁହେଁ ବିଶିଷ୍ଟ ବୈଜ୍ଞାନିକ । ଜାତୀୟ ସ୍ତରରେ ପୁରସ୍କୃତ ହୋଇଥିଲେ ମଧ ତାଙ୍କ ନିବାସ ଥିଲା ସେହି ବାଖରାବାଦ ଘର- ଜେଜେବାପାଙ୍କ ମୁଖ୍ୟ ଘରର ରୋଷଶାଳ ଅଞ୍ଚଳ । ଓଡ଼ିଶାର ଅଗମ୍ୟ ପାର୍ବତ୍ୟାଞ୍ଚଳ, ମାଳଭୂମିକୁ ଅନବରତ ଗସ୍ତରେ ଯାଆନ୍ତି । ଯାଆନ୍ତି ବସ୍‌ରେ, ବସ୍ ନ ଥିବା ଜାଗାକୁ ଚାଲି ଚାଲି ।

କାଲିପରି ମନେ ପଡୁଚି- ପ୍ରାୟ ପନ୍ଦର ବର୍ଷ ତଳର କଥା । ଖରାଦିନ ୧୧ଟା ହେବ, ମୁଁ ଡ୍ରାଇଭ୍ କରି ରମାଦେବୀ କଲେଜ ଯାଉଥାଏ । କଲେଜ ସାମ୍ନାରେ ଚୂନିଅପା ଚାଲିକି ଯାଉଥାନ୍ତି, ବାଣୀବିହାର ଛକରୁ, ବସ୍‌ରୁ ଓହ୍ଲାଇ । ମୁଁ ରୋଡ୍ ଡିଭାଇଡର୍‌ରେ ଗାଡ଼ି ବୁଲାଇ ତାଙ୍କ ପଛେ ପଛେ ଛୁଟିଲି । ଉଦ୍ଦେଶ୍ୟ, ଏତେ ଖରାରେ ତାଙ୍କୁ ବରଂ ଗାଡ଼ିରେ ନେଇ ତାଙ୍କ ଗନ୍ତବ୍ୟରେ ଛାଡ଼ିଦେବି । ମାତ୍ର କି ପଦବ୍ରଜରେ ସେ ଚାଲି ! ମୁଁ ରୁପାଲି ଛକ ଦେଇ ଭିତରକୁ ପଶିଲି, ଶହୀଦନଗରରେ ତାଙ୍କୁ ଧରିଲି । "ଆସନ୍ତୁ, ଛାଡ଼ିଦେବି ।" ସେ ନାସ୍ତି କଲେ, କହିଲେ, "ମୋ ଗନ୍ତବ୍ୟ ଏଇ ନିକଟରେ, ତୁ ଫେରିଯା । ମୁଁ ଚାଲିକି ଯିବି ।" ମୁଁ ମଝିରେ ମଝିରେ ବାଖରାବାଦ ଘରକୁ ଯାଏ । ରମାଦେବୀ ମହିଳା କଲେଜରେ ୰ରମାଦେବୀଙ୍କ ବ୍ୟବହାର୍ଯ୍ୟ ଜିନିଷର ଛୋଟ ଗୋଟେ ଆଲମିରା ଥାଏ । ସେଠାକୁ କିଛି ଆଣିବାପାଇଁ ଯୋଗାଯୋଗ କରି ଯାଇଥିଲି । ପରେ ଖବର ପାଏ ଚୂନିଅପା ଅସୁସ୍ଥ ହୁଅନ୍ତି । ପୁଣି ଉଠିପଡ଼ି କାମରେ ବାହାରନ୍ତି । ଗତ କେତେ ବର୍ଷ ହେବ ସେ ଅସୁସ୍ଥ ଥିଲେ । ମୁଁ ଦୁଇ ଥର ଯାଇ ଦେଖା କରିଥିଲି । କଥାବାର୍ତ୍ତା ବି କରୁଥିଲେ । ବ୍ୟସ୍ତତାର କଷ୍ଟ ବ୍ୟକ୍ତ କରୁ ନ ଥିଲେ । ସୁସ୍ଥ ଥିଲା ବେଳେ କହୁଥିଲେ, ସକାଳୁ ଚୁଡ଼ାଦହି ଓ ରାତିରେ ସଜ ପଖାଳ ଓ ସନ୍ତୁଳା ଖାଉଥିଲେ । ସେତେବେଳେ ସୁମିତ୍ରା ଭାଉଜ କହୁଥିଲେ ଖିରି ଭଳି ପତଳା ଜିନିଷ ଖାଉଛନ୍ତି । ଦି'ଖଣ୍ଡ ହାଡ଼ ଥିଲା ଦେହରେ, ତଥାପି ଥିଲେ ତେଜୋଦୀପ୍ତା । ବାସ୍ତବରେ ସେ ଅଗ୍ନିକନ୍ୟା ।

ତାଙ୍କ ଜୀବନଗାଥା 'ଅମୃତ ଅନୁଭବ' (ଇମ୍ପା ଗୋଷ୍ଠୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ) ଖୁବ୍ ହୃଦ୍ୟଭାଷା ଓ ଅଭିନବ ଶୈଳୀରେ ସେ ରଚନା କରିଯାଇଛନ୍ତି । ବିଂଶ ଶତକର ଏକ ବାଳିକା, ଯୁବତୀ ଓ ପ୍ରୌଢ଼ାଙ୍କ ଜୀବନ ଚଳଣିର ବିଶିଷ୍ଟତା ସେ ପୁସ୍ତକଟି ପାଠ କଲେ ଅନୁଭବ କରିହୁଏ । ଭାଇ, ଭଉଣୀ ଦୁହେଁ କାଳଜୟୀ ସୃଜନଶକ୍ତିର ଅଧିକାରୀ ଅଜାଙ୍କ ଯୋଗ୍ୟ ପୌତ୍ରପୌତ୍ରୀ । ସେହି ପୁସ୍ତକରେ କନ୍ୟାସନ୍ତାନଟିଏ, ଯେ ଜନ୍ମରୁ କେତେ଼ ବଞ୍ଚିତ ଓ ଅବହେଳିତ, ତାହା ସେ ଦର୍ଶାଇଛନ୍ତି । ଯଦିଓ ଏକ ପ୍ରଗତିଶୀଳ ପରିବାରରେ ତାଙ୍କର ଜନ୍ମ ଏବଂ ନିଜ ଜୀବନରେ ଝିଅ ଭାବରେ ବାଛବିଚାର ସେ ଭୋଗି ନାହାନ୍ତି, ତଥାପି ସେ

କାଳର ସମାଜ ଓ ପରିବାରକୁ ଦୃଷ୍ଟିରେ ରଖି ପ୍ରତିବାଦର ସ୍ୱର ଉତ୍ତୋଳନ କରିଛନ୍ତି । ବହୁ ଘଟଣାର ଦୃଷ୍ଟାନ୍ତ ଦେବା ଭିତରେ ସେ କହିଛନ୍ତି, "ଛୋଟ ଝିଅଟିକୁ ଗେଲ କରୁ କରୁ ତା' ମାଆ ଯୋଉ ଗୀତଟି ଗାଆନ୍ତି, ସେ ଝିଅକୁ ୧/୨ ବର୍ଷ ବୟସ ବେଳୁ ତାଲିମ୍ ଦେଇଦିଅନ୍ତି, ତା'ର ଜୀବନ ଧାରାର ମାର୍ଗରେ ଯିବା ପାଇଁ ।" ଗୀତଟି ଏଇଭଳି, "ମୋ କୁନିକୁ ମାଇଲେ ଶାଶୂ / ମୁଁ ଦେଇ ପଠେଇବି ଡୋଲା ଗଉଡ଼ ଲୋ / କୁନି ମୋର ବାଡ଼ି ବାଟେ ବାଟେ ଆସୁ ।"

କିମ୍ୱା

"ମୋ କୁନିକୁ ମାରିବ ନାହିଁ
ତା'ର ଯଦି କାହିଁ କାଇଲି ହୋଇବ
ତା' ବାପା ତ ବୁଝିବେ ଯାଇ ।"

କେତେ ଅସହାୟା ଏ ମାଆ – ଯିଏ ତା'ର ଶିଶୁକନ୍ୟାର ନିଷ୍ଠୁର ଭବିଷ୍ୟତ ପ୍ରତି ଇଙ୍ଗିତ କରୁଛି । ଏପରି ଗୀତ ଓ ଏପରି ଭବିଷ୍ୟ ନିର୍ଦ୍ଦେଶକୁ ଲେଖିବାରେ ଅନ୍ନପୂର୍ଣ୍ଣା ଶ୍ଳେଷଭରା ସ୍ୱରରେ ପ୍ରତିବାଦ କରିଛନ୍ତି ।

ତାଙ୍କ ଶେଷ ଦର୍ଶନ ଲାଭ କରିବାର ସୁଯୋଗ ମୁଁ ପାଇଲି ନାହିଁ । ତା' ମୋ ଭାଗ୍ୟରେ ନ ଥିଲା । ମାତ୍ର ମୋର ଆନ୍ତରିକ ଶ୍ରଦ୍ଧାଞ୍ଜାପନକୁ ସେ ଗ୍ରହଣ କରିବେ ନିଶ୍ଚୟ । ତାଙ୍କର ସାରା ପରିବାର ମୋର ପ୍ରିୟ ପରିଚିତ । ଓଡ଼ିଶାରେ ଜନ୍ମଗ୍ରହଣ କରି ସେ ଏ ମାଟିକୁ ଧନ୍ୟ କରିଛନ୍ତି । ନୂତନ ଓ ଉନ୍ନତ ମାର୍ଗ ପ୍ରଦର୍ଶନ କରିଛନ୍ତି । ତାଙ୍କର ତ୍ୟାଗପୂତ ଆତ୍ମା ମା' ଭଗବତୀଙ୍କ ନିକଟରେ ସ୍ଥାନ ପାଇଥିବ ବୋଲି ମୋର ବିଶ୍ୱାସ । ତାଙ୍କ ପରି ଅଗ୍ନିକନ୍ୟା ଏ ମାଟିରେ ଥରକୁ ଥର ଜନ୍ମ ଲଭନ୍ତୁ – ଈଶ୍ୱରଙ୍କୁ ପ୍ରାର୍ଥନା । ଶେଷରେ ଚୂନିଅପାଙ୍କ ପବିତ୍ର ସ୍ମୃତି ପ୍ରତି ସଭକ୍ତି ପ୍ରଣାମ ଜଣାଉଛି ।

❖❖❖

# ମୋ ସ୍ମୃତିରେ ସାର୍

## [ ୰ପ୍ରଫେସର ଡଃ କୃଷ୍ଣଚରଣ ସାହୁଙ୍କ ପ୍ରତି ଅର୍ଘ୍ୟ ]

ଏ ମୁହୂର୍ତ୍ତର ସତ୍ୟ, ପର ମୁହୂର୍ତ୍ତର ସ୍ମୃତି । ଠିକ୍ ଆଜିକୁ ୭ ଦିନ ତଳେ ଗୁରୁବାର ୩ ତାରିଖରେ ସାର୍‌ଙ୍କୁ ଭେଟିଥିଲି କଟକର ଲିଙ୍କ୍‌ରୋଡ୍ ନର୍ସିଂହୋମ୍‌ରେ । ପୂର୍ବରୁ ଶୁଣିଥିଲି, ତାଙ୍କର ଅପରେସନ୍ ହୋଇଛି ଓ ଡାକ୍ତର କିଛି ନ କାଟି ସିଲେଇ କରିଦେଇଛନ୍ତି । ତାହାର ଅର୍ଥ, ଗୁରୁତର ନିଶ୍ଚୟ- ହୁଏତ ଆଉ ସାର୍ ସୁସ୍ଥ ହୋଇ ନ ପାରନ୍ତି । ହୁଏତ ସାର୍‌ଙ୍କ ସହିତ ଯେ ଶେଷ ଦେଖା । ଏତେ ଶୀଘ୍ର ଶେଷ ଆସିଯାଏ ! ଶୁଣିଲି ୬ ତାରିଖ ସକାଳେ ପ୍ରାଧାପିକା ଡକ୍ଟର ସଂଘମିତ୍ରାଙ୍କଠାରୁ ଟେଲିଫୋନ୍‌ରେ । ସାର୍ ଚାଲିଗଲେ । ଭାରି କଷ୍ଟ ଭୋଗୁଥିଲେ ସତରେ !

ଅଧା ବୁଜିଥିବା ଆଖିକୁ କଷ୍ଟରେ ଟେକି ସେ ଦୁଇ ଥର ମୋ ଆଡ଼େ ଅନେଇଁଥିଲେ- ମୋ ପାଖରେ ପ୍ରଫେସର ଶତପଥୀ ବି ଠିଆ ହେଇଥାନ୍ତି । ମତେ ଲାଗୁଥାଏ ସାର୍ ବର୍ତ୍ତମାନ ଏ ଜଗତରେ ଶରୀର ନେଇ ଅଛନ୍ତି ସତ, ପ୍ରାଣଟା ଅଧା ଏଇ ଜଗତରେ, ଅଧା ଅନ୍ୟ ଏକ ଜଗତରେ । ୨ଟା ସାଲାଇନ୍ ଛୁଞ୍ଚି, ଅକ୍ସିଜେନ୍, ପୁଣି ରକ୍ତ ଦିଆଚାଲିଥାଏ । ନାକର ନଳୀଦେଇ ଆଭ୍ୟନ୍ତରୀଣ ଦୂଷିତ ରକ୍ତ ବାହାରୁଥାଏ । ଶୀତ କରୁଥାଏ ବୋଲି ଅସ୍ପଷ୍ଟ ସ୍ୱରରେ ସେ ଜଣାଇଲେ । ପଙ୍ଖା ବନ୍ଦ କରାହେଲା । ପାଖରେ ପୁଅ, ବଡ଼ ଝିଅ ଓ ଜଣେ ଜ୍ୱାଇଁ ଥାଆନ୍ତି । ଅଧାଶୁଆ ଅବସ୍ଥାରେ ଆଉଜି ରହି ସାର୍ ଖାଲି ମୁଣ୍ଡ ଗଡ଼ାଉଥାଆନ୍ତି । ସାଲାଇନ୍ ଲଗା ହାତଟା ଟେକି ମୁଣ୍ଡ ଆଉଁସୁଥାନ୍ତି । କିଛି ସମୟ ପରେ ଫେରିଲୁ । କେତେ କଷ୍ଟ ଭୋଗୁଛନ୍ତି - କେତେଦିନ ଆହୁରି ଭୋଗିବେ ମନ ବଡ଼ କରୁଣ ଓ ଓଦାଓଦା ହୋଇ ଆସୁଥାଏ ।

ସାର୍‌ଙ୍କ ସହ ମୋର ପ୍ରତ୍ୟକ୍ଷ ସମ୍ପର୍କ ମୋର ଗବେଷଣା କାଳରୁ, ୧୯୭୭ ମସିହାରୁ । ସାର୍ ମୋର ଗାଇଡ୍ ଥିଲେ । ତାଙ୍କର ଉତ୍ସାହ ପ୍ରଦାନ ଶକ୍ତି ପ୍ରଚୁର – ତାଙ୍କର ସୁପରାମର୍ଶ ଓ ସାହାଯ୍ୟ ହେତୁ ମୋର ଗବେଷଣା କର୍ମ ସହଜ ହୋଇଥିଲା । ପିଏଚ୍.ଡି. ପ୍ରାପ୍ତି ପରେ ମୋର ଅଧ୍ୟାପକ ବନ୍ଧୁ-ବାନ୍ଧବୀମାନଙ୍କଠାରୁ ଶୁଣିଲି, ସାର୍ କହୁଥିଲେ, "ପ୍ରତିଭା ତ ଇଣ୍ଟରଭ୍ୟୁ ବୋର୍ଡରେ ପରୀକ୍ଷକଙ୍କ ଭୁଲ୍ ବାଛି ଦେଲେ ।" ସାର୍‌ଙ୍କର ମତେ ନେଇ ସେତକ ଆତ୍ମସନ୍ତୋଷ ଥିଲା- ମୋ ପାଇଁ ସେ ଖୁବ୍ ବଡ଼ କଥା ।

ଏମିତିରେ ସାର୍‌ଙ୍କ ସହ ମୋର ଖୁବ୍ ବେଶି ଯୋଗାଯୋଗ ନ ଥିଲା । ମୁଁ ମୋର ସଂସାର, ଚାକିରି ଓ ଲେଖାଲେଖିରେ ବ୍ୟସ୍ତ ରହୁଥିଲି । ସାର୍ ବି ନିଜ ଉଚ୍ଚତର ଗବେଷଣା, ଗ୍ରନ୍ଥରଚନା ଓ ଗବେଷଣାର ଗାଇଡ୍ ଭାବରେ କାମରେ ଲାଗିଥାନ୍ତି । ତା' ଭିତରେ ଅବସର ଗ୍ରହଣ କଲେ । ରହନ୍ତି ବହୁତ ଦୂରରେ । ଖୁବ୍ ବେଶି ଥର ମୁଁ ତାଙ୍କ ପାଖକୁ ଯାଇପାରି ନାହିଁ । ତଥାପି, ମୋ ଭିତରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ସବୁବେଳେ ରହିଥିଲା- ତାଙ୍କର ମଧ୍ୟ ମୋ ପ୍ରତି ସ୍ନେହ-ଶ୍ରଦ୍ଧା ରହିଥିବାର ମୁଁ ବୁଝିପାରୁଥିଲି । କେତେଦିନ ତଳେ ସାର୍‌ଙ୍କୁ ଦେଖିଥିଲି- ୰କୃଷ୍ଣପ୍ରସାଦ ମିଶ୍ରଙ୍କ ଶ୍ରାଦ୍ଧସଭାରେ ମୁଖ୍ୟ ଅତିଥି ଥିଲେ । ସେ କେମିତି କ୍ଳାନ୍ତ, ମ୍ରିୟମାଣ ଦିଶୁଥିଲେ- ବୋଧେ ବାର୍ଦ୍ଧକ୍ୟ ହେତୁ, ହୋଇଥିବ ବୋଲି ଭାବିଲି । ସାର୍ ମଞ୍ଚ ଉପରେ, ମୋର ପୁଣି ତୁରନ୍ତ ଯିବାର ଥିଲା ଅନ୍ୟ ଗୋଟେ କାର୍ଯ୍ୟକ୍ରମରେ । ତଥାପି, ଅପେକ୍ଷା କଲି, ସାର୍‌ଙ୍କୁ ଦେଖା କରିବି, ଯିବି । ସଚେତନ ଅବସ୍ଥାରେ ତାଙ୍କ ସହିତ ସେ ମୋର ଶେଷ ଦେଖା । ସାର୍ ନାହାନ୍ତି – ତାଙ୍କର ଧୀଶକ୍ତି, ପ୍ରେରଣା, ଗବେଷଣା-ମନସ୍କତା ଓ ସଂରଚନାଶୀଳତା ସ୍ମରଣୀୟ ହୋଇ ରହିବ । ସାର୍ ବଞ୍ଚିରହିବେ ତାଙ୍କ କୃତି ମାଧ୍ୟମରେ, ଯଶୋଦେହରେ ।

ତଥାପି ମୁଁ ଆଜି ଆନ୍ତରିକ ଭାବେ ଆଶା କରୁଛି ଯେ, ସାର୍‌ଙ୍କ ପରି ବିଦ୍ୟୋତ୍ସାହୀ, ସ୍ନେହୀ ଓ ସାହିତ୍ୟପ୍ରେମୀ ଅଧ୍ୟାପକ ଓ ଲେଖକ ଏଇ ଓଡ଼ିଆ ମାଟିରେ ପୁଣି ଜନ୍ମ ନିଅନ୍ତୁ । ତାଙ୍କ ସ୍ମୃତି ପ୍ରତି ସଭକ୍ତି ପ୍ରଣତି ଜଣାଇ, ମୁଁ ଆଶା ପୋଷଣ କରୁଛି ଯେ ସାର୍ ପୁଣି ନୂଆ ଦେହ ଧରି ଏଇ ଭୂମିକୁ ଫେରିଆସନ୍ତୁ ।



## 'ଅମଡ଼ାବାଟ' ଓ 'ଅଲିଭାଚିତା'ର ନାୟିକା ସ୍ୱର୍ଗତା ବସନ୍ତକୁମାରୀଙ୍କୁ ନିବେଦିତ

### [ ୰ ସ୍ୱର୍ଗତା ବସନ୍ତକୁମାରୀଙ୍କ ପ୍ରତି ଅର୍ଘ୍ୟ ]

ଯେଉଁ ବାଟରେ ଚାଲିବା ସହଜ ନୁହେଁ, ଯେଉଁ ଚିତା ଲିଭିବା ସମ୍ଭବ ନୁହେଁ, ଏହି ଦୁଇଟି ପୁସ୍ତକର ଶୀର୍ଷକ 'ଅ'ରୁ ଆରମ୍ଭ । ବସନ୍ତକୁମାରୀଙ୍କ ରଚନା ଓ ଜୀବନସାଧନା ଏହିଭଳି ଏକ ଅସହଜତାର ପକ୍ଷ ସମର୍ଥନ କରେ ।

ତାଙ୍କ ରଚିତ 'ଅମଡ଼ାବାଟ'ର କାବେରୀ ଭାଉଜ ଗୋଟିଏ ଆଦିରୂପ ପାଲଟିଗଲା । ବିଶେଷକରି ୧୯୬୪ରେ ସିନେମାଟି ରିଲିଜ୍ ହେଲା ପରେ ପରେ, ଗାଁଗହଳିରୁ ଲୋକ ଛୁଟିଲେ, ଦେଖିବେ କାବେରୀ ଭାଉଜ, ମାୟା ନଣନ୍ଦ । ସ୍ପଷ୍ଟ ଭାବରେ, କୌଣସି ଆଡ଼ୁଆଳ ନ ରଖି, ଗୌରଚନ୍ଦ୍ରିକା ନ ଦେଇ, ଲେଖିକା କାବେରୀ ଚରିତ୍ର ମଧ୍ୟରେ ବିଂଶ ଶତକର ପ୍ରଥମାର୍ଦ୍ଧରେ ପରିବାର ଭିତରେ ବଢ଼ିଚାଲିଥିବା ବିଭଙ୍ଗତାକୁ ଚିତ୍ରଣ କଲେ । ମାୟା ରୋକ୍‌ଠୋକ୍, କପଟହୀନା, ହୃଦୟବତୀ, ସ୍ନେହୀ । କାବେରୀ ସ୍ୱାର୍ଥପର, ପତିସୁହାଗିନୀ, ଲୋଭୀ । ୧୯୬୪ ପୂର୍ବରୁ ପ୍ରାୟ ପ୍ରତ୍ୟେକ ପରିବାରରେ ବୋହୂ ଆସିଲେ ପୁଅକୁ କାନିରେ ବାନ୍ଧି, ବାପାମାଆ, ଭାଇଭଉଣୀଙ୍କଠାରୁ ଦୂରେଇ ନିଏ । ସ୍ୱାମୀର ଆୟ ଉପରେ ପୂରା ଅଧିକାର ବସାଇଦିଏ । ଗାଁଗହଳର ଅଧିକାଂଶ ନଣନ୍ଦ, ଦିଅର, ଭାଉଜଙ୍କୁ ଗୋଟିଏ ବାକ୍ୟରେ ଆଙ୍କି ଥୁଅନ୍ତି- 'ମୋ ଭାଉଜ ନାଁ କାବେରୀ ଭାଉଜ ।' ବାସ୍ତବରେ, ଉପନ୍ୟାସମାନଙ୍କରେ ଏପରି ସାର୍ଥକ ଓ କଳାତ୍ମକ ସାମାଜିକ ପ୍ରତିଫଳନ କ୍ୱଚିତ୍ ଦେଖାଯାଏ । ଉପନ୍ୟାସଟି ତୀକ୍ଷ୍ଣ, ଆବେଗସିକ୍ତ ଓ କର୍ତ୍ତବ୍ୟର ଦୋମୁହାଣିରେ ଠିଆ କରାଇଦିଏ ନାୟିକା ମାୟାକୁ । ମାୟାର ପ୍ରଥମ ସନ୍ତାନ ହୁଏ ଅନ୍ଧ - କାହିଁକି ? ସହୃଦୟ ମଣିଷକୁ ଦୁଃଖ ଭୋଗିବାକୁ, ନିଆଁରେ ଜଳିବାକୁ ପଡ଼େ ବୋଲି ଲେଖିକା ଏପରି ସତ୍ୟକୁ ରୂପାୟିତ କରିଥାଆନ୍ତି କି ?

୧୯୨୩ରେ ଜନ୍ମିତା, ଅର୍ଥନୀତିରେ ଏମ.ଏ. ସଂଭ୍ରାନ୍ତ ପରିବାରର କନ୍ୟା, ସୁନ୍ଦରୀ ବସନ୍ତକୁମାରୀଙ୍କୁ ଅନେକବାର ସାକ୍ଷାତ କରିଛି । ୧୯୬୫-୧୯୭୫ ଯାଏ ବହୁବାର ତାଙ୍କ କାଠଯୋଡ଼ି କୂଳର କୋଠାକୁ ଯାଇଛି । ଭେଟିଛି ବିଶିଷ୍ଟ ଲେଖକ ରାଜକିଶୋର ପଟ୍ଟନାୟକଙ୍କୁ, ତାଙ୍କ ପତ୍ନୀ ଆଇନଜୀବୀ ଶୈଳବାଳାଙ୍କୁ । ବସନ୍ତକୁମାରୀଙ୍କ ଡାକ ନାମ 'ବସୁ' । ଖୁବ୍ ଶାନ୍ତ, ସ୍ନେହଶୀଳ ଲାଗନ୍ତି । ସେ ଓ ତାଙ୍କ ଭାଉଜ ନିଶ୍ଚୟ କିଛି ଖୁଆନ୍ତି ।

କେତେ ବର୍ଷ ପୂର୍ବରୁ ତାଙ୍କର ଅତିବଡ଼ୀ ପୁରସ୍କାର ଗ୍ରହଣ ଅବସରରେ ତାଙ୍କୁ ପ୍ରଣାମ କରିଥିଲି । ସେ ବଡ଼ ଅପ୍ରସ୍ତୁତ ହୋଇ ବ୍ୟସ୍ତ ହଉଥିଲେ- ଏ ପୁରସ୍କାର ପ୍ରଦାନ ଅନୁଚିତ ଓ ଏହାର ପ୍ରାପ୍ତି ଏକ ମସ୍ତ ବିଡ଼ମ୍ବନା । ଅଥଚ, ଆଜି ଏକବିଂଶ ଶତାବ୍ଦୀରେ କେଉଁ ଲେଖକ ବିଶ୍ୱାସ କରିବ ଯେ, ଏମିତି ରଚନାକାର ଥାଆନ୍ତି, ଉନ୍ନତମାନର ସୃଜନଶୀଳତାର ଅଧିକାରିଣୀ, ପାଠକ ହୃଦୟରେ ଅଲିଭାଗାର କାଟି ଦେଇପାରନ୍ତି, କିନ୍ତୁ ପୁରସ୍କାର ବିମୁଖ ହୋଇ ରହିଥାନ୍ତି । ଅସାଧାରଣ ତାଙ୍କ ଜୀବନାଭିବ୍ୟକ୍ତି, ତାଙ୍କ ବିଚାର ଓ ତାଙ୍କର ଲେଖକୀୟ ବାସ୍ତବତା । କବି ଓ କଳାକାରର ସୁକୃତକୁ ସେ ଯଥାର୍ଥରେ ବୁଝିଥିଲେ ଓ ଗ୍ରହଣ କରିଥିଲେ ବୋଲି ଅନୁଭବ କରିହୁଏ ।

ଶ୍ମଶାନର ଅଗ୍ନିକୁ ଚିତା କୁହାଯାଏ । ଏହାକୁ ସମ୍ପର୍କିତ କରି ତାଙ୍କ ଗଦ୍ୟ ଓ ପଦ୍ୟ ରଚନା 'ଅଲିଭାଚିତା', 'ଚିତାନଳ' । 'ଅଲିଭାଚିତା' ପ୍ରେମିକାର ପତ୍ରାବଳୀର ସମାହାର । ଏହି ପ୍ରେମିକାଟି ଖୁବ୍ ସଚେତନ, ଅନୁଭବୀ ଓ ବ୍ୟାକୁଳ । ସେ ନାୟିକା, ପ୍ରେମିକା 'ଲୋରା' । ଲୋରା ଭିତରେ ଲେଖିକାଙ୍କ ସ୍ଥିତି ଥାଇପାରେ, ନ ଥାଇପାରେ । ମାତ୍ର ଗୋଟିଏ ନିଷ୍ପାପର, ତ୍ୟାଗମୟୀ ପ୍ରେମିକାର ଛବି ଏଥିରେ ଉତ୍‌କୀର୍ଣ୍ଣ । ପ୍ରେମ 'ଅନଳ' ନୁହେଁ ତ ଆଉ କ'ଣ ? ପ୍ରେମ ସଫଳ ନ ହେଲେ ସତ୍‌ପ୍ରେମର ପାତ୍ର ପାତ୍ରୀ ଜଳିପୋଡ଼ି ଯାଆନ୍ତି ନାହିଁକି ? ଏକଦା ସମୟ ଥିଲା, ମନୋମତ ପୁରୁଷକୁ ନ ପାଇଲେ ନାରୀଏ ଅବିବାହିତା ରହିଯାଉଥିଲେ । ଏହି ପରିପ୍ରେକ୍ଷୀରେ ଆମେ '୩୬, ଚୌରଙ୍ଗୀ ଲେନ୍' ସିନେମାକୁ ସ୍ମରଣ କରିପାରିବା । ଯଦି ବି ଲେଖିକା ନିଜେ ଏହି ପ୍ରେମିକା ହୋଇ ନ ଥାନ୍ତି, ତଥାପି ପ୍ରେମିକା ଲୋରାର କାୟା ପ୍ରବେଶ କରି ସେ ପ୍ରେମାନୁଭବର ଏକାତ୍ମତା ଲାଭ କରିଛନ୍ତି ।

'ଅଲିଭାଚିତା'ରେ ତିନି ଜଣ ଜଳିଛନ୍ତି । ଦୁଇ ପ୍ରେମିକ-ଜଣେ ପ୍ରେମିକା । ଏହା ଲେଖିକାଙ୍କ ଉତ୍ସର୍ଗପତ୍ରରେ ରହିଛି । ନିବିଡ଼ ଆବେଶ ଅଚରିତାର୍ଥ ହେଲେ ପାତ୍ରପାତ୍ରୀଙ୍କ ଜୀବନକୁ କିପରି ଛାରଖାର କରିଦିଏ, ବହୁ ସତର୍କତାର ସହ ଲେଖିକା ଏହା ପ୍ରକଟ କରିଛନ୍ତି । ଦୁଇ ଭାରତୀୟ ପ୍ରେମିକ-ଜଣେ ବିଦେଶିନୀ ପ୍ରେମିକା । ଲୋରାର ପ୍ରେମିକ ସୁବ୍ରମଣ୍ୟମ୍ ନାୟାର୍ ଓ ପତି ହୋମିପାଲଖିୱାଲା । ପତିଙ୍କ ନିକଟରେ ରହି ଲୋରା ପ୍ରେମିକ ନିକଟକୁ ଅନେକ ପତ୍ର ଲେଖନ୍ତି, ପତି ଜାଣନ୍ତି, ମାତ୍ର ପତ୍ନୀଙ୍କ ପ୍ରତି ତାଙ୍କର ପ୍ରବଳ ଅନୁରାଗ, ପ୍ରଥମ ଚିଠି ମାର୍ଚ୍ଚ ୧୯୪୯ ଓ ଶେଷ ଚିଠି ୨୩ ନଭେମ୍ବର ୧୯୪୯- ମାତ୍ର ଏଇ ୮/୯ ମାସର ବିଚ୍ଛେଦରେ ପ୍ରେମିକାର ଅନ୍ତର୍ଦାହ ଓ ଭାବାବେଗ ମୁଖର ଓ ଜୀବନ୍ତ ହୋଇଉଠିଛି । ଅହୋରାତ୍ର ଛଟପଟ ବିବାହିତା ପ୍ରେମିକା ପ୍ରତ୍ୟେକଟି ଚିଠିରେ ପ୍ରେମିକ ପ୍ରତି ହୁଏତ ଆବେଗ ଓ ସମର୍ପଣର ପୁନଃପୁନଃ ପ୍ରକାଶ ଘଟାଇଛି, ମାତ୍ର ଅନୁଭବର ନୂତନତା, ତା'ର ସତ୍‌ପ୍ରେମର ଉଜ୍ଜ୍ୱଳତାକୁ ଆଙ୍କି ଦେଇଛି । ପତି ସହିତ ବାସକରି ପ୍ରେମିକକୁ ଝୁରୁଥିବା ଲୋରା କ୍ରମଶଃ ବାସ୍ତବ-ସଚେତନ ହୋଇଛି ଓ ତା'ପରେ

ସୁବ୍ରମଣ୍ୟମ୍‌କୁ କହିଛି- 'ତୁମ ସାଙ୍ଗରେ ମୋର ଯେଉଁ ସମ୍ପର୍କ ଥିଲା - ସବୁକଥା ଖୋଲି ମୋର ସ୍ୱାମୀଙ୍କୁ କହିଦେଇଛି- କାରଣ ମୁଁ ତାଙ୍କୁ (ସ୍ୱାମୀଙ୍କୁ) ଭଲ ପାଏ । ବାସ୍ତବରେ 'ଭଲ ପାଇବା ସାମ୍ନାରେ ସତ୍ୟ ହିଁ ପ୍ରକଟ ହେବା ଶ୍ଳାଘ୍ୟ' ଏହା ପ୍ରେମିକା ଲୋରାର ହୃଦ୍‌ବୋଧ ହୋଇଛି । ଶେଷ ଚିଠିରେ ଲୋରା ଲେଖିଛି- 'ତଥାପି ଜୀବନ ଥିବା ଯାଏଁ ସେ ପ୍ରେମିକକୁ ଭଲ ପାଉଥିବ ଓ ତା'ଠାରୁ ପ୍ରେମ ପାଇବାକୁ ଆଶାୟୀ ହୋଇ ରହିଥିବ ।' ସୁବ୍ରମଣ୍ୟମ୍ ଏହି ଚିଠି ସବୁକୁ ସାଇତିଛନ୍ତି ସାରା ଜୀବନ । ତାଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ହିଁ ଏସବୁ ପଢ଼ିବାକୁ ପାଇଛି, ଗୋଟିଏ ଗୋପନୀୟ ନିବୁଜ ବାକ୍ସ ଭିତରୁ । ଜୀବନକୁ ଜୀଇଁବାକୁ ହେଲେ କଣ୍ଟାଶେଯରେ ଶୋଇବାକୁ ହୁଏ । ଭଲ ପାଇଲେ, ଯନ୍ତ୍ରଣାଭୋଗି ସେ ଭଲ ପାଇବାର ମୂଲ୍ୟ ଦେବାକୁ ପଡ଼ିଥାଏ । କାରଣ, ପ୍ରେମ ସହ ବ୍ୟକ୍ତିର ମୂଳସର୍ତ୍ତ ହେଉଛି 'ନିଃସ୍ୱାର୍ଥପରତା' । ଏହି ଚିଠିଗୁଡ଼ିକ ନିଃସର୍ତ୍ତ ପ୍ରେମର ସନ୍ତକରୂପେ ଚିରକାଳ ସ୍ୱୀକୃତ ହେବ ।'

ଲେଖିକା ବସନ୍ତକୁମାରୀଙ୍କ ନିରାସକ୍ତ ଜୀବନ ଏକ ଉତ୍ତରଣ ପଥରେ ସମାହିତ ହୋଇଛି । ଏହି ମହତ୍ ଲେଖିକାଙ୍କ ବ୍ୟକ୍ତିଗତ ଚରିତ୍ରକୁ ଏକ ବ୍ୟତିକ୍ରମ ଭାବେ ସସମ୍ମାନ ଗ୍ରହଣ କରିନେଇ, ଆମେ, ଓଡ଼ିଆମାନେ ତାଙ୍କ ସାରସ୍ୱତ ଅବଦାନର ଋଣସ୍ୱୀକାର କରିବା ସ୍ୱାଭାବିକ । ସ୍ୱର୍ଗତା ବସନ୍ତକୁମାରୀ ମାୟା ଭିତରେ ଅଛନ୍ତି, ଲୋରା ଭିତରେ ବି ଅଛନ୍ତି- ରହିଛି ସାଲିସ୍‌ବିହୀନ କର୍ତ୍ତବ୍ୟନିଷ୍ଠା ଓ ତ୍ୟାଗପୂତ ପ୍ରେମ ସହ ତାଙ୍କର ଏକାତ୍ମତା ।



# ଆମରି ଗାଁ ଝିଅ

## [ ସ୍ୱର୍ଗତା ରମାଦେବୀଙ୍କ ପ୍ରତି ଶ୍ରଦ୍ଧାସୁମନ ]

ପ୍ରଖ୍ୟାତ ସାହିତ୍ୟିକ, 'ଭୀମା ଭୂୟାଁ' ଉପନ୍ୟାସର ରଚୟିତା, ଓଡ଼ିଆ ସାହିତ୍ୟର ପ୍ରଥମ ସନେଟ୍‌କାର୍ ସ୍ୱର୍ଗତ ଗୋପାଳବଲ୍ଲଭ ଦାସଙ୍କ କନ୍ୟା ସେ, ଡାକ ନାମ 'ବେଲୁ', 'ବେଲ' । ବାପା ତାଙ୍କର ପ୍ରଶାସନିକ ଅଫିସର୍ । ତେଣୁ ସେ କାଳର ଝିଅ ହୋଇ ମଧ୍ୟ ସେ ପାଠ ଦି' ଅକ୍ଷର ଭଲ ଭାବେ ପଢ଼ିଥିଲେ । ପନ୍ଦର ବର୍ଷରେ ବିବାହ- ଆଜିକାଲି ବଡ଼ଘରର ୧୫ ବର୍ଷର ଝିଅ ଭଲ କରି ଚାଲି ଶିଖୁ ନାହାନ୍ତି । ଅଥଚ ସେ ବୋହୂ ହୋଇଯାଇଥିଲେ । ସହରରେ ବି ବଢ଼ିଥିଲେ । କିନ୍ତୁ ଶାଶୂଘରେ ଚୁଲି ନିଆଁ ଆଗରେ ବସି ଡିବିରି ଜାଳି ତାଙ୍କର ଖବରକାଗଜ ପଢ଼ା- ସ୍ୱାମୀଙ୍କଠାରୁ ସ୍ୱାଧୀନତା ଆନ୍ଦୋଳନ ବିଷୟରେ ତାଜା ଖବର ଶୁଣିବା ଓ ସେ ଚିନ୍ତାଧାରାରେ ଦୀକ୍ଷିତ ତାଙ୍କ ଲକ୍ଷ୍ୟ ନିରୂପଣର ଭିତ୍ତିଭୂମି ହେବା ଥିଲା ତାଙ୍କର ସାଧନା । ପ୍ରଥମ ଓଡ଼ିଆ ଘରର ଝିଅ ଓ ବୋହୂ ଯେ କି ଆଭିଜାତ୍ୟକୁ ଜଳାଞ୍ଜଳି ଦେଇ ସାଧାରଣ ରାସ୍ତାକୁ ଓହ୍ଲାଇଆସିଲେ । ତାଙ୍କର ସନ୍ତାନଦ୍ୱୟ ମଧ ସମାଜସେବା ଓ ଉତ୍ତମ ଆଚରଣ ବିଧି ତଥା ସାହିତ୍ୟ ସୃଷ୍ଟିରେ ଜଣାଶୁଣା । ଅଥଚ ସତ୍ୟଭାମାପୁରର ଊନବିଂଶ ଶତକର ଅସ୍ତରାଗରେ ଜନ୍ମ ନେଇଥିବା ସେ ଝିଅଙ୍କ ପରିଚୟ କେବଳ ସେତିକି ନୁହେଁ । ସେ ପରିବାର, ଗାଁ, ରାଜ୍ୟଠୁ ବାହାରି ଯାଇ ବ୍ୟାପିଛନ୍ତି ସାରା ଭାରତର ମାନବଜାତିରେ । ସେ ସମାଜସେବାରେ ଅଦ୍ୱିତୀୟ ହେଇ 'ଯମୁନାଲାଲ୍ ବଜାଜ୍ ପୁରସ୍କାର'ରେ ଭୂଷିତା ହୋଇଛନ୍ତି ।

ଘଟଣାକ୍ରମେ ମୋର ସେଇ ଗାଁରେ ଜନ୍ମ । ପ୍ରଚଣ୍ଡ ପ୍ରତିଭାଧର ସାହିତ୍ୟପୁରୁଷ ୰ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭ୍ରାତୁଷ୍ପୁତ୍ର ହୋଇଥିଲେ ମଧ ମୋ ବାପା ସତ୍ୟଭାମାପୁର ଆସନ୍ତି ପୋଷ୍ୟପୁତ୍ର ହୋଇ ଓ ସେଠାରେ ସ୍ୱର୍ଗତା ରମାଦେବୀ ଓ ତାଙ୍କ ଭାଇ ଉପେନ୍ଦ୍ରବାବୁଙ୍କ ସହ ମୋ ବାପାଙ୍କର ପ୍ରଗାଢ଼ ବନ୍ଧୁତା । ବାପା ଥିଲେ ସ୍ୱାଧୀନତା ସଙ୍ଗ୍ରାମୀ, ବିଦେଶୀବସ୍ତ୍ର ପୋଡ଼ି ଜେଲ୍ ଯାଇଥିଲେ । ପୁଣି ଗାନ୍ଧିଜୀଙ୍କ ଦ୍ୱିତୀୟ ପର୍ଯ୍ୟାୟ ପଦଯାତ୍ରା (୧୯୪୩ ମେ' ୨୨ରୁ ଜୁନ୍ ୨ ତାରିଖ ଯାଏ)ରେ ବହୁକୁଦ (ବହୁଗ୍ରାମ), ଭେଡ଼ା ପ୍ରଭୃତି ସ୍ଥାନରେ ମୋ ବାପା ଯୋଗ ଦେଇଥିଲେ । ୰ରମାଦେବୀ ତାଙ୍କର ଅତି ଆଦରର ବେଲଅପା, ବୁଲୁଭାଇ ଓ ଚୁନିଅପାଙ୍କର ସେ 'ଧର' ମାମୁ । ଏମିତି ସମ୍ପର୍କରେ ସୁମିତ୍ରା ଭାଉଜଙ୍କ ଚିଠି ଓ

ଚାହିଦା, ଆଦେଶ ଆସିଲା- 'ସତ୍ୟଭାମାପୁରର ଜଣେ ସ୍ୱନାମଧନ୍ୟା କନ୍ୟା, ଆଉ ଜଣେ ସ୍ୱନାମଧନ୍ୟା କନ୍ୟାଙ୍କ ବିଷୟରେ ଲେଖିବେ ।' କି ତୁଳନା ତାଙ୍କର ଦେଖନ୍ତୁ ! ନକ୍ଷତ୍ର ସଙ୍ଗେ ଜ୍ୟୋତିରିଙ୍ଗଣର । ସତେତ ! ଜୁଲୁଜୁଲିଆ ପୋକର ସଂଭ୍ରମ ନେଇ ମୁଁ ତଥାପି କିଛି କହିବି ତାଙ୍କ ବିଷୟରେ । ଯେଉଁ ବ୍ୟକ୍ତିତ୍ୱ ପ୍ରତି ବାଲ୍ୟକାଳରୁ ମୋର ଶ୍ରଦ୍ଧା ରହିଛି, ଯାହାଙ୍କ ଜୀବନ-ସାଧନାର ପ୍ରତ୍ୟକ୍ଷ ସମ୍ପର୍କରେ ମୁଁ ଅଳ୍ପ କିଛି ଆସିଛି, କଳ୍ପନାରେ ତାଙ୍କୁ ଦେଖିଛି, ଅନୁଭବିଛି, ବହୁଭାବରେ, ତାଙ୍କ ବିଷୟରେ ମୁଁ ଯାହା କହିବି, ତାହାହେବ ତାଙ୍କର ବିପୁଳ କର୍ମମୟ ଜୀବନର ସାମାନ୍ୟ ଅଂଶ ମାତ୍ର !

ଆଣ୍ଠୁ ତଳ ଯାଏ ଖଦି ପିନ୍ଧିଥିବା ତାଙ୍କୁ ମୁଁ ବାଲ୍ୟକାଳରୁ ଦେଖିଛି । ଗାଁକୁ ସେ କେବେ କେମିତି ଆସନ୍ତି- କସ୍ତୁରବା ମାତୃମଙ୍ଗଳ କେନ୍ଦ୍ରଟିଏ ପ୍ରତିଷ୍ଠା କରାଇଥାଆନ୍ତି, ଗ୍ରାମବାସୀ ତାଙ୍କୁ ଖୁବ୍ ସମ୍ମାନ କରନ୍ତି । ତାଙ୍କ ଉଦ୍ଦେଶ୍ୟରେ ଆବାହନୀ ମୁଁ ଗାଇଛି 'ବନ୍ଦାଇ ଦିଅ ଲୋ ଆମ ଗାଁର ଝିଅଙ୍କୁ / ବନ୍ଦାପନା ଥାଳି ଧରି ପୁଷ୍ପମାଲ୍ୟେ ତାଙ୍କୁ/ ସହୀ ସଙ୍ଗାତୁଣୀ ମେଳା... ।' ତାଙ୍କର ନିତାନ୍ତ ସାଦାସିଧା ଖାଦ୍ୟପେୟ । କୋମଳ, ଧୀର ବିଚାରବନ୍ତ କଥା । ସେଇ ବୟସରେ ତାଙ୍କ ବ୍ୟକ୍ତିତ୍ୱକୁ କଳିବାପାଇଁ ମୋର ଶକ୍ତି ହିଁ ନ ଥିଲା । ତଥାପି ସମସ୍ତଙ୍କ ଦେଖାଦେଖି ମୁଁ ବି ତାଙ୍କୁ ସମ୍ମାନ କରିବା ଶିଖିଥିଲି । ସେଇ ଗାଁର ଜଣେ ସ୍ଥାନୀୟ ଶିକ୍ଷକ ମୋର ସମ୍ପର୍କରେ ଜେଜେ, ସ୍ୱର୍ଗତ ମଧୁସୂଦନ ଶତପଥୀ ଗୀତଟିଏ ଲେଖିଥିଲେ- ଗାଁ ସ୍କୁଲ୍‌ରେ ପଢ଼ିଲାବେଳେ ମୁଁ ପୁରସ୍କାର ବିତରଣୀରେ ସମବେତ କଣ୍ଠରେ ତାକୁ ଗାଇଥିଲି । ଆଜି ବି ତା'ର ଉତ୍ସାହୋଦ୍ଦୀପକ ଧାଡ଼ିଗୁଡ଼ିକ ମୋର ମନେ ଅଛି । କାରଣ ବେଳେବେଳେ ମୋ ଗାଁ ଭୂଇଁକୁ ଅଣ୍ଡାଳିଲାବେଳେ, ଛୁଇଁଲାବେଳେ ମୁଁ ସେଗୁଡ଼ିକୁ ଗାଇଛି । ସେ ସଙ୍ଗୀତର ସ୍ୱର ସଂଯୋଜନା କରିଥିଲେ, ଗ୍ରାମର ଶିକ୍ଷୟିତ୍ରୀ ଶାନ୍ତି ଦେଈ ଓ ଟୁଇଁ ଭାଇ । ଗୀତଟି ଏହିପରି ।

"ମଧୁମାଟି ଆମ ଗାଆଁଟି ତୀର୍ଥ ଗୋଟିଏ ସତ୍ୟଭାମାପୁର
ମର୍ତ୍ତ୍ୟଧାମ ସ୍ୱର୍ଗସମ ମଣୁଁ ଆମ ନିତ୍ୟ ମଧୁପୁର
ଜାତିର ଗୋଷ୍ଠୀ ଶିଳ୍ପକୃଷ୍ଟିଯୁଗର ସୃଷ୍ଟି କରିଲା ଯେଉଁ ପୁଅ
ଉତ୍କଳ ଯଶ ଡିଣ୍ଡିମ ଘୋଷ ଗାଇଲା ଦେଶ ଆମେ ସେଇ ଗାଁ ଝିଅ
ଯେ ରସକୁଣ୍ଡ ପୀୟୂଷଭାଣ୍ଡ ଜାତବ୍ରହ୍ମାଣ୍ଡ ଶୋଭା ରମାସୁନ୍ଦରୀ
ଉତ୍କଳରମା ସେବାର ସୀମା କିବା ଉପମା ସ୍ୱର୍ଗେ ଇନ୍ଦିରା ସରି ।"

ଏହି ଗୀତ ଗାଇଲାବେଳେ ଗର୍ବରେ ଛାତି କୁଣ୍ଢେମୋଟ ହୋଇଯାଏ- ଏଇ ଗାଁ ଖାଲି ଆମର ନୁହେଁ, ମଧୁବାବୁ, ଗୋପାଳବଲ୍ଲଭ, ରମାଦେବୀ ଓ ଉପବାବୁ (ମଲାଜହ୍ନର ଲେଖକ)ଙ୍କ ଗାଁ, ଏହିଭଳି ଏକ ପରିବେଶରେ ଶିକ୍ଷାଦୀକ୍ଷା ପ୍ରାପ୍ତ ହେବା ମୋର ସୌଭାଗ୍ୟ ।

ଏଇ ଗାଁ ତାଙ୍କର ଜନ୍ମଭୂମି । ମାତ୍ର ତାଙ୍କର କର୍ମଭୂମି ଥିଲା ସାରା ଭାରତ ଓ ହୃଦୟବତ୍ତାରେ ସେ ଥିଲେ ବିଶ୍ୱମୁଖୀ । (ମୁଁ ତାଙ୍କ ପାଖକୁ ଥରେ ଅଧେ ଚିଠି ଲେଖିଚି, ଗ୍ରାମର କିଛି ସମସ୍ୟା ନେଇ । ସେ ଉଦାରତା ସହ ସମାଧାନ ଜଣାଇଛନ୍ତି । ଶେଷକୁ ଲେଖନ୍ତି- "ରମାଦେବୀର ଆଶୀର୍ବାଦ)" ।

ମୁଁ ସେଇ ଗାଁର ଝିଅ, ପୁଣି ରମାଦେବୀ କଲେଜର ପ୍ରାଧାପିକା ହୋଇଥିବାରୁ ରମାଦେବୀଙ୍କ ଜୟନ୍ତୀ ଉତ୍ସବରେ, ଶ୍ରାଦ୍ଧ ସଭାରେ ମଝିରେ ମଝିରେ ମତେ ତାଙ୍କ ସମ୍ପର୍କରେ ଛାତ୍ରୀମାନଙ୍କୁ କିଛି କିଛି କହିବାକୁ ହୋଇଥାଏ । ସ୍ୱାଧୀନତା ଆନ୍ଦୋଳନ, କାରାବରଣ, ନାରୀ ଜାଗରଣ, ଭୂଦାନ, ଗ୍ରାମଦାନ, ପଦଯାତ୍ରା, ମୌଳିକ ଶିକ୍ଷା- ଯେ ସବୁଥିରେ ସେ କର୍ମମୁଖର ହୋଇଥିଲେ । ଅଙ୍ଗ ଆଭରଣ ଅପେକ୍ଷା ଆତ୍ମାର ସୌଷ୍ଠବ ପ୍ରତି ଧ୍ୟାନ ଦେବାକୁ ନାରୀମାନଙ୍କ ପ୍ରତି ଥିଲା ତାଙ୍କର ଉପଦେଶ । ଯେତେବେଳେ କଟକରେ ପ୍ରବଳ ଛାତ୍ର ଆନ୍ଦୋଳନ ହେଲା, ଆନ୍ଦୋଳନକାରୀ ଛାତ୍ରଙ୍କ ଆଡ଼କୁ ସେ ଆଗେଇ ଯାଇଥିଲେ ସମାଧାନର ବାର୍ତ୍ତା ନେଇ । ବାଙ୍ଗ୍ଲାଦେଶର ଜନ୍ମକାଳରେ ଧ୍ୱସ୍ତବିଧ୍ୱସ୍ତ ଭୂମି ଉପରେ ଓହ୍ଲାଇଯାଇଥିଲେ ସେ କରୁଣାକ୍ତ ହୃଦୟରେ । ତାଙ୍କ ମାତୃମୂର୍ତ୍ତିର ମହିମା ଥିଲା ମନ୍ତ୍ରବତ୍ କ୍ରିୟାଶୀଳ । ଓଡ଼ିଶାର ଲକ୍ଷ ଲକ୍ଷ ଅବହେଳିତ, ଦରିଦ୍ର, ଅଶିକ୍ଷିତ ମହିଳା ଓ ଶିଶୁଙ୍କର ସେ ଥିଲେ ଯଥାର୍ଥରେ ମାତାସ୍ୱରୂପିଣୀ । ମୁଁ ଜଣେ କବି – କିଛି ସତ ଓ କିଛି କଳ୍ପନାକୁ ଫେଣ୍ଟି ଦି' ଧାଡ଼ି କବିତା ଲେଖିପକାଏ । ଯାହା ବାସ୍ତବରେ କରିପାରେନା, କଳ୍ପନା ମାଧ୍ୟମରେ କହିବସେ । ଯେମିତି ମୁଁ କବିତାରେ ଲେଖେ-

'ରାସ୍ତାକଡ଼େ ଦେଖିଥିବା
ମୃତା ଭିକାରୁଣୀଟିର
ଛୋଟ ପୁଅ
ପାଖକୁ ଆଗେଇ ଆସେ
ମୁଁ ତାକୁ ଆଉଁସେ
ପିଠି, ମୁଣ୍ଡ ବେକ ତଳ
ଦି' ହାତରେ ତା' ବିକ୍ଷଣ୍ଡ
ମୁହଁଟିକୁ ଟୋଳି ଧରି କହେ
କ୍ଷମାକର' (ଚନ୍ଦ୍ର, ସୂର୍ଯ୍ୟ ଓ ମୁଁ)
ଯା' ବୋଲି ମୁଁ କ'ଣ ତାଙ୍କ ସହିତ ତୁଳନା ହୋଇପାରିବି ?

ଉପରୋକ୍ତ ସ୍ଥଳରେ ମୁଁ କିଛି ପ୍ରତିକାର କରି ନ ପାରି ଶିଶୁଟି ପାଖରେ ନିଜର କିଂକର୍ତ୍ତବ୍ୟପଣ ପାଇଁ କ୍ଷମା ମାଗେ । କିନ୍ତୁ ସେ ବାସ୍ତବ ଭୂମିରେ ଦଣ୍ଡାୟମାନ ହୋଇ ଏକ

ଛୋଟପୁଅର ମାଆ ପାଲଟିଯାଆନ୍ତି- ତାକୁ ମଣିଷ କରି ଠିଆ କରିବାର ସଂକଳ୍ପ ନିଅନ୍ତି । ତାଙ୍କ ସମ୍ବେଦନଶୀଳତା କ୍ରିୟାଶୀଳ ଓ ସାର୍ଥକ ଏବଂ ମୋ କାବ୍ୟିକ ସମ୍ବେଦନାଠାରୁ ଅଧିକ ଶ୍ରେୟ ବୋଲି ମୁଁ ମନେ କରେ । ସେ ମୋ ପୂର୍ବଜା ସତ, କିନ୍ତୁ ଚିନ୍ତା ଓ କର୍ମରେ ମୋ'ଠାରୁ ଅଧିକ ସକ୍ରିୟ ଓ ଅଗ୍ରଣୀ । ମାନବିକତାର ମହାନ୍ ଯାତ୍ରା ପଥରେ ତାଙ୍କ ଜୀବନ ସାଧନାର, ତାଙ୍କ ଅବଦାନର ତୁଳନା ନାହିଁ । ଆଜିର ମିଥ୍ୟାଚାର ଗର୍ଭିତ ସମାଜ ସେବାର ଉଚ୍ଚରୋଳ ଭିତରେ ସ୍ତବ୍ଧ ପ୍ରାୟ ହୋଇଥିବା ଭବିଷ୍ୟତର ନାଗରିକ ହୁଏତ ବିଶ୍ୱାସ କରିପାରିବ ନାହିଁ ଯେ ତାଙ୍କ ଭଳି ଜଣେ ନାରୀ ଏଇ ମାଟିରେ ଜନ୍ମ ହୋଇ, ତ୍ୟାଗଶିଖାରେ ଜଳି, ଚତୁର୍ଦ୍ଦିଗ ଆଲୋକିତ କରିଚାଲିଯାଇଛନ୍ତି । ନିଜର ଅସାଧାରଣ ଜୀବନବ୍ରତ ହେତୁ ସେ କିମ୍ବଦନ୍ତୀ ହୋଇଯିବା ଅସମ୍ଭବ ନୁହେଁ ।

ତାଙ୍କୁ ଯଦି କେହି କିମ୍ବଦନ୍ତୀ କହିବ, ତେବେ ତା'ର ଦୋଷ ନାହିଁ । ମାତ୍ର ମୁଁ ଯେ ତାଙ୍କର ରକ୍ତମାଂସର ଶରୀରକୁ ଦେଖିଚି, ତାଙ୍କ ତୁଣ୍ଡରୁ କଥା ଶୁଣିଚି, ତାଙ୍କ ପାଖରେ ବସିଚି, ତାଙ୍କ ପରିଚୟ ଦେବାକୁ ଗଲାବେଳେ ତେଣୁ ମୋର ଭାବ ଓ ଭାଷା କିଛି ହେଲେ ଯଥେଷ୍ଟ ନୁହେଁ ବୋଲି ଜାଣିଛି ।



# ମୋ ଅଞ୍ଚଳର ସାଧକ

## [ ୰ ଲେଖକ ସୁରେନ୍ଦ୍ର ମହାନ୍ତିଙ୍କୁ ଭକ୍ତିଅର୍ଘ୍ୟ ]

ନିର୍ବାଣ ନୁହେଁ, ମହାନିର୍ବାଣ । 'ମହାନିର୍ବାଣ'ର ସାଧକ, ମୋ ଗ୍ରାମର ସନ୍ନିକଟ ବିଶିଷ୍ଟ ଲେଖକ, ରାଜନୀତିଜ୍ଞ, ସାମ୍ବାଦିକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ବ୍ୟକ୍ତିସତ୍ତା ମୋ ସାମ୍ନାରେ ଉଭା ହୋଇଯାଏ । ତାଙ୍କର କନିଷ୍ଠଭ୍ରାତା ୰ ଶ୍ରୀ ବୀରକିଶୋର ମହାନ୍ତି ମୋର ଶିକ୍ଷକ ଥିଲେ । ସାଧାରଣ ଅର୍ଥରେ ଶିକ୍ଷକ ନୁହନ୍ତି, ବରଂ ଭାଷା ସଂସ୍କୃତି କ୍ଷେତ୍ରରେ ମୋର କିଶୋରୀ ମାନସିକତାକୁ ବହୁମତେ ଶିକ୍ଷିତ ଓ ଦୀକ୍ଷିତ କରାଇଥିବା ଶିକ୍ଷକ । ଅକାଳ ମୃତ୍ୟୁ କବଳିତ ହୋଇଥିଲେ ସେ । ହାଇସ୍କୁଲ୍‌ରେ ନବମ ଶ୍ରେଣୀର ଛାତ୍ରୀ ମୁଁ । ଆମ ସ୍କୁଲ୍‌ରେ ଜଣେ ଶିକ୍ଷକ ଥା'ନ୍ତି ଶ୍ରୀ ସୂର୍ଯ୍ୟନାରାୟଣ ମିଶ୍ର । ସେ ନିଜେ ସୁନ୍ଦର ଗୀତ ଗାଆନ୍ତି ଓ କବିତା ପ୍ରିୟ ମଧ୍ୟ । ସ୍କୁଲ୍‌ରେ ସେ ହିଁ ଉତ୍ସାହ ଦିଅନ୍ତି କବିତା ପ୍ରତିଯୋଗିତା କରିବାପାଇଁ । କେବେ ଗଣେଶ ପୂଜା, କେବେ ବିବେକାନନ୍ଦଙ୍କ ଜନ୍ମୋତ୍ସବ ଅବସରରେ କବିତା ପ୍ରତିଯୋଗିତା ହୁଏ । ମୋ କବିତା ପ୍ରଥମ ହୁଏ । ଯେକୌଣସି ଉତ୍ସବରେ ମଧ୍ୟ ମୁଁ ଓଡ଼ିଶୀ ନୃତ୍ୟ ବା ନାଟକରେ ଅଭିନୟ କରିଥାଏ । ଅବଶ୍ୟ ଏସବୁ ନୃତ୍ୟ ଅଭିନୟ ପାଇଁ ଆଜିଠାରୁ ୫୦ ବର୍ଷ ତଳେ ଆଜିକାଲିକା ଭଳି ଝିଅମାନଙ୍କୁ ଉତ୍ସାହ, ଅଭିନନ୍ଦନ ମିଳୁ ନ ଥିଲା । ଏମିତି କି କବିତାପାଇଁ ବି । ବରଂ ନୃତ୍ୟ, ଅଭିନୟ ପାଇଁ ମୋତେ ସମାଲୋଚିତ ହେବାକୁ ହୋଇଥିଲା । ଯେତେ ହେଲେ ତ ମଫସଲ ଗାଁ । ମୋର ସ୍କୁଲ୍ ସ୍ଥାନ ଟିକିଏ Advanced- ଆଗୁଆ ମନୋବୃତ୍ତିର, କାରଣ - ଗ୍ରାମଟିରେ ବହୁ ବଙ୍ଗାଳୀ ଜମିଦାର ଓ ସମ୍ଭ୍ରାନ୍ତ, ଉଦାରଚେତା ଓଡ଼ିଆ ମଧ୍ୟ କିଛି ବାସ କରନ୍ତି । ତଥାପି ଝିଅ ତ, ପୁଣି ବୁଦ୍ଧିମତୀ, ଦେଖିବାକୁ ଭଲ ହୋଇଥିବ, ଆଉ ତା'ର ଜୋର୍‌ଦାର ମୁରବି ନ ଥିବେ ଘରେ, ଅବସ୍ଥା ଯାହା ହେବା କଥା ସେୟା ।

ସ୍କୁଲ୍‌ର ପ୍ରତ୍ୟେକ ଉତ୍ସବରେ ମୋ ନାମ ଶୁଣାଯାଏ । ସେ ଦିନ ଥାଏ ବିବେକାନନ୍ଦଙ୍କ ଜନ୍ମୋତ୍ସବ, ସଭାର ମୁଖ୍ୟ ଅତିଥି ଥାନ୍ତି ଶ୍ରୀ ସୁରେନ୍ଦ୍ର ମହାନ୍ତି । ସ୍କୁଲ୍ ସରଗରମ । ଏବେ ଯାଏ ବି ସ୍କୁଲ୍‌ରେ ସେଇ ଐତିହ୍ୟ, ଶିକ୍ଷକମାନଙ୍କର ଉତ୍ସର୍ଗୀକୃତ ସେବା ଛାତ୍ରମାନଙ୍କର ନିଷ୍ଠା କେତେକାଂଶରେ ବଜାୟ ରହିଛି । ଅନେକଟା ବ୍ୟାହତ ହୋଇଛି ଅବଶ୍ୟ । ତେବେ ଶ୍ରୀ ମହାନ୍ତି ପହଞ୍ଚିଲେ ପତ୍ନୀଙ୍କ ସହ । ପତ୍ନୀଙ୍କୁ ପ୍ରଥମେ ନିଆଗଲା ହଷ୍ଟେଲ୍‌ରେ

ଥିବା ବୀରବାବୁଙ୍କ ରୁମ୍‌କୁ । ସେଠାକୁ କାହିଁକି ଗଲେ, ସୁରେନ୍ଦ୍ରବାବୁଙ୍କ ସହ କାହିଁକି ଯେ ହେଡ୍‌ମାଷ୍ଟ୍ରଙ୍କ ରୁମ୍‌କୁ ସେ ନ ଗଲେ, ମୋର ଠିକ୍ ମନେ ନାହିଁ । ତଳ ସପ ଉପରେ ସେ ବସିଲେ ଓ ତାଙ୍କୁ ସାହଚର୍ଯ୍ୟ ଦେବା ପାଇଁ ମୁଁ ଏବଂ ମୋର ଦୁଇ ସାଙ୍ଗ ମୁକ୍ତା ଓ ଝିନିଅାଁନୀ ଯାଇଥିଲୁ । ସେ ତଳେ ବସିଥା'ନ୍ତି, ଖୁବ୍ ସ୍ୱାସ୍ଥ୍ୟବତୀ, ଅଳକୁଞ୍ଚିତ ଗାଢ଼ କଳା ବାଳ, ବେଣୀ ପାରିଥାନ୍ତି, ମୁଣ୍ଡରେ ଲୁଗା ଦେଇଥାନ୍ତି । ଆଉ ବାଳରେ କାନ ଉପରେ ଦି'ଟା ଲାଲ୍ କ୍ଲିପ୍ । ସୁନ୍ଦର, ନେତାଙ୍କ ପତ୍ନୀ, ବଡ଼ ଘରର ଝିଅ, ବୟସରେ ମୁଁ ତାଙ୍କର ଝିଅ ଭଳି । ତାଙ୍କର ବଡ଼ ଝିଅ ଛବି ମୋର ଦୁଇଟି କ୍ଲାସ୍ ତଳେ ପଢୁଥିଲା । ତଥାପି କେତେ ସସ୍ନେହ କୋମଳତାରେ ସେ ଆମ ସହ କଥାବାର୍ତ୍ତା ହେଲେ । ମୁଁ ପୁଣି ପଚାରିଲି, ୧୪ ବର୍ଷର ଝିଅ ମୁଁ, ମୋ ସାହସ ଦେଖ, ତାଙ୍କ ନାଆଁ ପଚାରିଲି । ସେ କହିଲେ 'ରେଣୁକା' । କେତେ ସମୟ ଗପସପ ହେଲୁ । ତା'ପରେ ସଭାକୁ ଡାକରା ଆସିଲା । ସଭାରେ ଦେଖିଲି ସେଇ ଆୟତ ଚକ୍ଷୁ ଗୌରବର୍ଣ୍ଣ ଶାଣିତ ବ୍ୟକ୍ତିତ୍ୱ ସୁରେନ୍ଦ୍ର ମହାନ୍ତିଙ୍କୁ । ଫିନ୍ ଫିନ୍ ଧଳା ପଞ୍ଜାବି, ଧୋତି — ଗମ୍ଭୀର ସ୍ୱରରେ ତାଙ୍କର ବକ୍ତୃତା । କ'ଣ ସେ କହୁଥିଲେ ମୋର ଆଉ ମନେ ନାହିଁ । ମନେ ରହିଚି ତାଙ୍କରି ଚିତ୍ରଟି । କିନ୍ତୁ ସେଥର ପ୍ରତିଯୋଗିତାରେ ପ୍ରଥମ ହୋଇଥିବା ମୋ କବିତା ଥିଲା ବିବେକାନନ୍ଦଙ୍କୁ ନେଇ । କବିତାଟିକୁ ସେ ପସନ୍ଦ କରିଥିଲେ । କବିତାଟି ଅବଶ୍ୟ କେଉଁଠି ହଜିଯାଇଛି । ପରବର୍ତ୍ତୀକାଳରେ ମୋର ପ୍ରଥମ କବିତା ସଂକଳନ 'ଅସ୍ତଜହ୍ନର ଏଲିଜି'ର ମୁଖବନ୍ଧ ସେ ଲେଖିଥିଲେ- ଦୁଇଟି ପୃଷ୍ଠା ଖୁବ୍ ଆନ୍ତରିକତା ସହକାରେ । ତାଙ୍କର ଭାବ-ସାବଲୀଳ, ଭାଷା ଯେ ଅବିସ୍ମରଣୀୟ, ଯିଏ ତାଙ୍କ ସାହିତ୍ୟ ପଢ଼ିଛି, ସେ ନିଶ୍ଚୟ ଏକମତ ହେବ । ରଚନା କଲେ 'ଶତାବ୍ଦୀର ସୂର୍ଯ୍ୟ' ଓ 'କୂଳବୃଦ୍ଧ', ଦୁଇଟି ଗ୍ରନ୍ଥ, ଯାହା ଅନେକ ଐତିହାସିକ ସତ୍ୟତା ନେଇ ପ୍ରକାଶିତ ।

ସର୍ବସ୍ୱ ହରାଇ, ଦେବାଳିଆ ହୋଇ ମୃତ୍ୟୁବରଣ କରିଥିବା ମୋର ଜାତିର ନମସ୍ୟ, ଅଗ୍ରଗଣ୍ୟ ବ୍ୟକ୍ତିତ୍ୱ ମଧୁସୂଦନ ଦାସଙ୍କୁ ନେଇ ଗ୍ରନ୍ଥ ଦୁଇଟି । ତାହା ରଚନା କରି ହୁଏତ ସେ ଜନ୍ମସ୍ଥାନ ପୁରୁଷୋତ୍ତମପୁର ଗ୍ରାମର ଋଣ ଶୁଝି ଦେଇଛନ୍ତି । ସେ ଗ୍ରାମଟି ଓ ମୋ ଗ୍ରାମ ସତ୍ୟଭାମାପୁରର ମଝିରେ ବାଲିବନ୍ତଘେରା ବିରାଟ ଏକ ପୁଷ୍କରିଣୀ, ନାଆଁ- 'ବାଲିପୋଖରୀ' । ତା'ର ତଟ ଦେଶରେ ମଧୁସୂଦନଙ୍କ କୋଠାଘର, ଖ୍ରୀଷ୍ଟିୟାନ୍ ହେବାରୁ ଗ୍ରାମଘରେ ରହିବା ତାଙ୍କ ପକ୍ଷେ ସହଜ ନ ଥିଲା । ଗ୍ରାମର ଶେଷମୁଣ୍ଡରେ ସେଇଥିପାଇଁ ସେ କୋଠା ତୋଳାଇଥିଲେ । ଲେଖକ ସୁରେନ୍ଦ୍ର ମହାନ୍ତି ସେଇ ମହାନ୍ ବ୍ୟକ୍ତିତ୍ୱଙ୍କର ଅନ୍ଧକାରର ଘେରରେ ରହିଥିବା ଜୀବନ ଓ କୃତି ଉପରେ ଆଲୋକପାତ କରି ନିଜର କର୍ତ୍ତବ୍ୟ ପୂରଣ କଲେ । ମାତ୍ର ମୁଁ? ମୁଁ କ'ଣ କରିପାରିଲି ? ('ବାଲିପୋଖରୀ'କୁ ନେଇ ଅବଶ୍ୟ ୩ଟି କବିତା ଲେଖିଛି ।)

'ମହାନିର୍ବାଣ' ଗଳ୍ପଟି ପଢ଼ି ମୁଁ ଅଭିଭୂତ ହୋଇଥିଲି । ସେଇ ଗଳ୍ପର ନାୟିକା 'ମଧୁବ୍ରତା' ମୋର ଦ୍ୱିତୀୟ ଝିଅର ନାମକରଣ କରିଥିଲି । ଶତପଥୀବାବୁ ତାଙ୍କୁ ଏକଥା

ଜଣାଇବାରୁ ସେ ଖୁବ୍ ଆନନ୍ଦ ପ୍ରକାଶ କରିଥିଲେ । ଆମ ସ୍କୁଲ୍‌କୁ ସେ ଯେଉଁ ଉତ୍ସବରେ ପଦାର୍ପଣ କରିଥିଲେ ସେହି ଉତ୍ସବ ଏବେ ମଧ୍ୟ ସ୍କୁଲ୍‌ରେ ପାଳିତ ହେଉଛି । ସେଠାରେ ପୁରାତନ ଛାତ୍ର ସଂସଦ ଖୁବ୍ ସକ୍ରିୟ । ମୋ ମାଆଙ୍କ ସ୍ମୃତିରେ ମୁଁ ଏହି ଛାତ୍ର ସଂସଦ ଆନୁକୂଲ୍ୟରେ ପ୍ରତିବର୍ଷ ପ୍ରବନ୍ଧ ପ୍ରତିଯୋଗିତା କରାଉଛି । (ଏଥିରେ ୪ ବର୍ଷରେ ୪ ଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ପ୍ରବନ୍ଧ ଓ ଗଳ୍ପ ପ୍ରତିଯୋଗିତା ହେଉଛି । ସେହି ୪ ଜଣଙ୍କ ମଧ୍ୟରୁ ଜଣେ ଦିବଙ୍ଗତ ସୁରେନ୍ଦ୍ର ମହାନ୍ତି, ରମାଦେବୀ, ଗୋପାଳଚନ୍ଦ୍ର ପ୍ରହରାଜଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ବିଷୟବସ୍ତୁ ରୂପରେ କ୍ରମଶଃ ପ୍ରତିଯୋଗିତା ବିଷୟରୂପେ ଚୟିତ ହେଉଅଛି ।) ତେବେ, ଆମ ସ୍କୁଲ୍‌କୁ ଆସିବା ପରେ ପ୍ରାୟ ୧୯୬୦ ମସିହା ବେଳକୁ ସେ 'କଳିଙ୍ଗ' (୰ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ରରେ ସମ୍ପାଦକ ଥିଲେ । 'ଯୁଗମାନବୀ' ନାମକ ନାରୀ ବିଭାଗରେ ସମ୍ପାଦକ ଥିଲେ ୰ସୁବୋଧ ଦାସ (ନାଟ୍ୟକାର ୰ ବିଶ୍ୱଜିତ୍ ଦାସଙ୍କ ପିତା) 'ଯୁଗମାନବୀ'ରେ ମୋର କବିତା ଗୁରୁତ୍ୱ ପାଇଥିଲା ପ୍ରଚୁର । ନିୟମିତ ପ୍ରକାଶ ପାଉଥିଲା ।

ମୁଁ ଦଶମ ଶ୍ରେଣୀରେ ପଢୁଥାଏ । ଛବିକୁ (ତାଙ୍କ ଝିଅ ଲୋପାମୁଦ୍ରା ଯେ କି ଅର୍ଥନୀତିରେ ଅଧ୍ୟାପିକା ହେଲା ଓ ତା'ପରେ ରାଜ୍ୟ ମହିଳା କମିଶନ୍ ଅଧ୍ୟକ୍ଷା ହୋଇଥିଲା) ମୁଁ ପ୍ରଥମେ ଦେଖେ । ସେ ଆସିଥାଏ ସ୍କୁଲ୍‌କୁ ତା'ର ଦାଦାଙ୍କ ପାଖକୁ । ମୋତେ ସାର୍ ଡାକିଦେଲେ ତା' ସହ କଥା ହେବାକୁ, ଛବି ବେଶ୍ ସୁନ୍ଦରୀ ଥିଲା । ସୁସ୍ଥ ସବଳ, ସହରୀ ଢାଞ୍ଚାରେ ପୋଷାକ ପିନ୍ଧିଥିଲା ଓ ମୁଣ୍ଡ ବାନ୍ଧିଥିଲା । ଗପସପ ହେଲୁ, ପଢ଼ାପଢ଼ି କଥା, ଘର କଥା । ତା'ପରେ ବହୁ ବର୍ଷ ପରେ ଅଧ୍ୟାପିକା ଛବି ମୋର ରେଭେନ୍ସା କଲେଜରେ ଦେଖାହୁଏ ସହକର୍ମିଣୀ ଭାବେ । ସେବେଠାରୁ ମଝିରେ ମଝିରେ ସାହିତ୍ୟ ସଂସ୍କୃତିର ସମ୍ମେଳନରେ ଛବି ସହିତ ସାକ୍ଷାତ ଘଟିଥାଏ ।

ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କ ସହ ମୋର ଭାବଗତ ସମ୍ପର୍କ ଥିଲା ଅତୁଟ, ମୋର ପରିବାରର ସମ୍ପର୍କ ମଧ୍ୟ ନିବିଡ଼ ଥିଲା । ମୋର ସାନଝିଅ 'ଈପ୍‌ସିତା' ଯିଏ କି ଛୋଟ ଥିବା ବେଳେ ମୁଁ ଯୁଆଡ଼େ ଗଲେ ମୋ ସହିତ ବାହାରେ, ତାଙ୍କ ପାଖକୁ ମଧ୍ୟ କେତେଥର ଯାଇଛି । ଖୁବ୍ ଶ୍ରଦ୍ଧାର ସହ ସେ ନିକଟକୁ ଡାକନ୍ତି । ସେତେବେଳକୁ ତାଙ୍କର ଅଙ୍ଗପ୍ରତ୍ୟଙ୍ଗର ଅବସ୍ଥା ତ ଭଲ ନ ଥାଏ । ତଥାପି କହନ୍ତି- 'ମୁଁ ତୋ'ର ସତ୍ୟଭାମାପୁରର ଅଜା, ବୁଝିଲୁ ତ ?'

ତାଙ୍କର ଦେହାନ୍ତ ପରେ ମୁଁ ସମ୍ବାଦପତ୍ରରେ 'ସ୍ମୃତିଚାରଣ ଶ୍ରଦ୍ଧାଞ୍ଜଳି' ଭଳି ଲେଖାଟିଏ ଲେଖିଥିଲି । ତାହା ରେଣୁକା ମାଉସୀ ଓ ଛବିଙ୍କୁ ଭଲ ଲାଗିଥିଲା ବୋଲି ଛବି ମୋତେ କହିଥିଲା । ତଥାପି ମୋର ମନେ ହୁଏ, ତାଙ୍କ ପାଇଁ ମୋର ଆହୁରି କିଛି କରିବାର କଥା । କରିପାରି ନାହିଁ ।



# ପ୍ରବାଦ ପୁରୁଷଙ୍କ ମହାପ୍ରୟାଣ

## [ ସ୍ୱର୍ଗତ ମହାପାତ୍ର ନୀଳମଣି ସାହୁଙ୍କ ପ୍ରତି ସ୍ମୃତିଅର୍ଘ୍ୟ ]

ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଜଣେ ପ୍ରବାଦ-ପୁରୁଷଙ୍କୁ ହରାଇଲା । ଆପଣାର ଆୟୁଷ୍କାଳ ମଧ୍ୟରେ ସ୍ୱସୃଜନଶୀଳତା, ଆଧ୍ୟାତ୍ମିକ ଚେତନା, ସମ୍ପାଦକତ୍ୱ, ସଭାପତିତ୍ୱ- ଏ ସମସ୍ତ କିଛି ସହିତ ଅପ୍ରମିତ ସ୍ନେହ, ପ୍ରେମ ଓ ଉଦାରତା ବାଣ୍ଟି ବାଣ୍ଟି 'ମହାଧନୀ' ଭାବେ ସେ ଇହଜଗତରୁ ପ୍ରସ୍ଥାନ କଲେ । ଓଡ଼ିଆ କବି ଲେଖକଗଣ କିଏବା ତାଙ୍କଠାରୁ ସଦୁପଦେଶ ଓ ଉତ୍ସାହ ପ୍ରାପ୍ତ ହୋଇ ନାହାନ୍ତି ! ବାସ୍ନାଫୁଲ ଚିହ୍ନି ଭ୍ରମର ଧାଇଁଲା ଭଳି ଏହି ରସିକ ଗୁଣଗ୍ରାହୀ ଗୁଣୀଜନଙ୍କ ସମ୍ପର୍କ ଲୋଡ଼ିଥାଆନ୍ତି । ସାଧାରଣ ବ୍ୟକ୍ତିଗତ ସ୍ମୃତି ତ ମୋର ଅନେକ ରହିଛି । ସେ ଥିଲେ ମୋର ପିତୃତୁଲ୍ୟ । ତାଙ୍କ ସ୍ନେହାଶୀର୍ବାଦରେ ମୁଁ ଧନ୍ୟ ହୋଇଛି । ମୋ ରଚିତ କାବ୍ୟ ନାମ ଧରି ସେ ମୋତେ 'ଶବରୀ' ବୋଲି ଡାକୁଥିଲେ । କେତେକ ନୂଆବର୍ଷର ଜାନୁଆରୀ ୧ ତାରିଖରେ ଆମେ ପୁରୀ ଯାଇଛୁ । ଡକ୍ଟର ଶତପଥୀ, ପାପାନାନୀ ଓ ସେ- ଅଧାବାଟରୁ ଆରମ୍ଭ ହୋଇଯାଏ ତାଙ୍କର ଭଜନ ଓ ପ୍ରାର୍ଥନା ଗାନ । ସେ ଥିଲେ ଜଣେ ଉତ୍ତମ ସଙ୍ଗୀତ ଗାୟକ । ଯିଏ ଶୁଣିଛି, ସେ ଅବଶ୍ୟ ସ୍ୱୀକାର କରିବ । ମୋ ପରିବାର ଓ ତାଙ୍କ ପରିବାର ଯାଇଥିଲୁ ଗୁଜୁରାଟ । ତାଙ୍କ ସାନପୁଅ ବାବୁଲି ଘରେ ଅତିଥି ହୋଇଥିଲୁ । ସାଙ୍ଗ ହୋଇ ଆମେ ମହାତ୍ମା ଗାନ୍ଧୀଙ୍କ ଅନ୍ତେବାସୀଶାଳଠାରୁ ସୋମନାଥ ମନ୍ଦିର, ଦ୍ୱାରକାନାଥଜୀଙ୍କୁ ଦର୍ଶନ କରିଥିଲୁ । ଆମ ସହିତ ଥିଲେ ମହାବିଦ୍ୱାନ୍ ୰ପ୍ରଫେସର ହୃଦାନନ୍ଦ ରାୟ । କବି ରବୀନ୍ଦ୍ରଙ୍କ 'ସଞ୍ଚୟିତା' କାବ୍ୟ ଅନେକାଂଶରେ ନୀଳମଣିବାବୁଙ୍କର ମୁଖସ୍ଥ ଥାଏ । ସେ ଆବୃତ୍ତି କରନ୍ତି । ସେଦିନ, ତାଙ୍କ ଶବାଧାର ନିକଟରେ ଟିଭିର ଆଲୋକ ସମ୍ମୁଖରେ ମୁଁ ଗାଇଥିଲି ତାଙ୍କ ପ୍ରିୟ ଗୀତ ପଦିକ 'ସଞ୍ଚୟିତା'ରୁ - "ମା' ଗୋ ରାଜାର୍ କୁମାର ଚଲେ ଯାବେ ମୋର୍ ଘରେର୍ ସୁମୁଖ୍ ପଥେ" - କିଶୋରୀଟିଏ ତା' ମାଆକୁ ପଚାରୁଛି- 'ମାଆ, ମୁଁ ତାଙ୍କୁ କଅଣ ଦେଇପାରିବି ?" ଏମିତି କେତେ କବିତା, ଗୀତ, ଗଦ୍ୟ, ତା'ର ତୁଳନା ନାହିଁ । ଅନେକ ବଡ଼ ବଡ଼ ଲୋକ ଅଛନ୍ତି । କିନ୍ତୁ ତାଙ୍କ ଭଳି ବ୍ୟକ୍ତିତ୍ୱ, ଆତ୍ମୀୟତା ବାଣ୍ଟିବାର, ଈର୍ଷାଠାରୁ ଲୋଭରୁ ନିଜକୁ ଦୂରେଇ ରଖିବାର ବ୍ୟକ୍ତିତ୍ୱ ବିରଳ । ସକଳ ସଦ୍‌ଗୁଣର ଆଧାର, ସ୍ନେହ, ପ୍ରେମର ଅସରନ୍ତି ଖଣି, ସେ ଚାଲିଗଲେ । କଷ୍ଟ ତ ପାଉଥିଲେ । କିନ୍ତୁ ମୋତେ ଦେଖିଲେ କିଛି କିଛି ଗୀତ ବା କବିତାର ଧାଡ଼ି ସେ ଗାଉଥିଲେ ।

କେଉଁ ଭାଷାରେ ଜଣାଇବି ବିଦାୟ ? ଶବ୍ଦ ଖୋଜି ପାଉ ନାହିଁ । ଈଶ୍ୱରଙ୍କଠାରୁ ଅମାପ ଶକ୍ତି ନେଇ ସେ ଆସିଥିଲେ । ତହିଁରେ ଲୀନ ହୋଇଗଲେ । ଈଶ୍ୱରଙ୍କ କୃପାରୁ ହିଁ ତାଙ୍କ ସାନ୍ନିଧ୍ୟ ମୋତେ ମିଳିଥିଲା । ଅନ୍ତିମ ପ୍ରଣିପାତ ସହ ପୁଷ୍ପମାଲ୍ୟ ଅର୍ପଣ କରିବା ତ ସାମାନ୍ୟ । ମାତ୍ର, ମୋ ପାଖରେ ଅସାମାନ୍ୟ ବା କ'ଣ ଅଛି ? ତାଙ୍କ ପାଦ ତଳେ ଅଶ୍ରୁ ଅର୍ଘ୍ୟ ନିବେଦନ କରୁଛି । ସେ ବାରମ୍ବାର ଏଇ ମାଟିରେ ଜନ୍ମ ଲଭନ୍ତୁ ।

❖❖❖

# କଥକ ଓ କଥାଶିଳ୍ପୀ

## [ 'ମହାପାତ୍ର ନୀଳମଣି ସାହୁ' ଏହି ରଚନାଟି ବେଳକୁ ଜୀବିତ ଥିଲେ । ଏବେ ସେ ସ୍ମୃତି ]

ମହାପାତ୍ର ନୀଳମଣି ସାହୁ ଜଣେ ଯଶସ୍ୱୀ କଥାଶିଳ୍ପୀ । ଏପରି କୌଣସି ଗଦ୍ୟରୂପ ନାହିଁ, ଯେଉଁଥିରେ ସେ ପାରଙ୍ଗମ ନୁହନ୍ତି । ଉପନ୍ୟାସ, ଗଳ୍ପ, ରମ୍ୟରଚନା, ପ୍ରବନ୍ଧ, ଧର୍ମବିଚାର, ଅରବିନ୍ଦ ଦର୍ଶନର ବ୍ୟାଖ୍ୟା – ସବୁଥିରେ ତାଙ୍କର କୃତିତ୍ୱ ସୁସ୍ପଷ୍ଟ । କିନ୍ତୁ ତାଙ୍କ ବାକ୍‌ପଟୁତା, ପ୍ରକାଶଦକ୍ଷତାର ଆଉ ଗୋଟିଏ ଦିଗ ତାଙ୍କର କଥକପଣ । ଅବଶ୍ୟ, କଥାଶିଳ୍ପରେ କଥକପଣର ବୈଶିଷ୍ଟ୍ୟ ତ ରହିଛି, ମାତ୍ର ସାହିତ୍ୟିକ ସଂରଚନା ବାହାରେ, ତାଙ୍କ ସହ ଯେ କେହି ଆଳାପ କରିଛି, ଏହି ବାକ୍‌ପଟୁତା ଦ୍ୱାରା ସେ ଅଭିଭୂତ ହୋଇଛି । ଏପରିକି ଭିନ୍ନମତ ପୋଷଣ କରୁଥିବା (ମନ୍ଦ ଅଭିପ୍ରାୟ ବ୍ୟକ୍ତି ନ ହେଲେ) ବ୍ୟକ୍ତିଙ୍କୁ ସେ ନିଜ ମତାମତ ଦ୍ୱାରା ନାନା ଦିଗରୁ ପ୍ରଭାବିତ କରିପାରନ୍ତି । ନିହାତି ବିରୁଦ୍ଧମତ ଦୃଢ଼ତର ଥିଲେ, ସେ ତାଙ୍କର ବିଶିଷ୍ଟ କଥକପଣକୁ କ୍ରିୟାଶୀଳ କରାଇଥା'ନ୍ତି । କଥା ସହିତ ମିଶେ ଆତ୍ମୀୟତାର ଅନୁଯୋଗ । ଯେତେବେଳେ କି ଅପରପକ୍ଷ ତାଙ୍କ ମତକୁ ଆଉ ବିରୋଧ କରିପାରେ ନାହିଁ । ଏହି ବିଶିଷ୍ଟ କଥକପଣର ପୃଷ୍ଠପଟରେ ରହିଛି ତାଙ୍କର ରାଜନୀତିକ ସଚେତନତା । ସେଥିପାଇଁ ସେ ଶାସକର ରୋଷର ଶିକାର ହୋଇ କଷ୍ଟ ଭୋଗ କରିଛନ୍ତି । ତଥାପି, ଆବେଗକୁ ଗୁରୁତ୍ୱ ଦିଅନ୍ତି । କୌଣସି ଘଟଣାରେ ଯଦି ଯୁକ୍ତି ଓ ଆବେଗର ଦ୍ୱନ୍ଦ୍ୱ ଉପୁଜେ, ସେ ଆବେଗକୁ ଯୁକ୍ତିଠାରୁ ଶ୍ରେୟ ଭାବେ ଗ୍ରହଣ କରିନିଅନ୍ତି । ତାଙ୍କ ସରସ ଗମ୍ଭୀର ରଚନା ଓ ସ୍ନେହୀ ବ୍ୟକ୍ତିତ୍ୱ ଦ୍ୱାରା ସେ ବହୁ ସମ୍ମାନ, ପୁରସ୍କାର ଓ ସ୍ନେହ-ଭକ୍ତିର ଯଥାଯୋଗ୍ୟ ଅଧିକାରୀ ହୋଇପାରିଛନ୍ତି ।

ମୁଁ ଯଦି କିଛି ଲେଖିବାକୁ ଯାଉଛି, ଭୟହୁଏ, କାଳେ ଖୁବ୍ ବ୍ୟକ୍ତିଗତ ହୋଇଯିବ । କିନ୍ତୁ ଅତି ପାଖରୁ ମୁଁ ତାଙ୍କୁ ଲକ୍ଷ୍ୟ କରିଛି ଓ ତାଙ୍କ ନିଃସର୍ତ୍ତ ଶ୍ରଦ୍ଧାର ପାତ୍ରୀ ହୋଇଛି । ଏକଥା ସତ, ଏହି ସୌଭାଗ୍ୟ ମୁଁ ବିନା ଯାଚନାରେ ପ୍ରାପ୍ତ ହୋଇଛି । ଏହି ବିଶିଷ୍ଟ ଗଦ୍ୟଶିଳ୍ପୀ, ଦରଦୀ ସ୍ରଷ୍ଟାଙ୍କୁ ମୁଁ ପ୍ରଥମେ ଦେଖେ ୧୯୬୯ ମସିହାର ପ୍ରାରମ୍ଭ କାଳରେ । ମୋର ଚାକିରି ଆରମ୍ଭ, ପୁରୀ ମହିଳା କଲେଜରେ ଯୋଗଦେଇ ରହିଥାଏ କନ୍‌ଭେଣ୍ଟ୍ ସ୍କୁଲ୍ ପାଖ ଏକ ଭଡ଼ାଘରେ । ଯାଆଁଳା ଭଡ଼ାଘର, ଗୋଟିକରେ ମୁଁ, ଅନ୍ୟଟିରେ ସ୍ୱର୍ଗତ ଜୀବନାନନ୍ଦ ପାଣିଙ୍କ ପରିବାର । ନୀଳମଣିବାବୁ ତାଙ୍କ ଘରକୁ ପ୍ରାୟ ଯାଆନ୍ତି- ଜୀବନବାବୁଙ୍କ ପତ୍ନୀ ରେବା ନାନୀ କହନ୍ତି – "ନୀଳମଣିବାବୁ ଆମର ବଡ଼ ଉପକାରୀ ବନ୍ଧୁ ।" ତେଣୁ ସେ ଘରକୁ ଆସିଲେ ତାଙ୍କର ଧୁମ୍‌ଧାମ୍ ହୁଏ । ମୁଁ ସେବେ ତାଙ୍କ ସହ

ପରିଚିତା ହୋଇ ନ ଥିଲି । ଦୂରରୁ ଦେଖୁଛି ଅଳ୍ପ ଉଚା, ଚେକ୍ ହାଓ୍ୱାଇ ଶାର୍ଟ ପିନ୍ଧିଥିବା ଜଣେ ମଧ୍ୟବୟସ୍କ ବ୍ୟକ୍ତି । ସେ 'ଝଙ୍କାର'ର ସମ୍ପାଦକ ଥାଆନ୍ତି । ତାଙ୍କ ସମ୍ପାଦନା କାଳରେ ମୋର ଗୋଟେ ବି କବିତା ସେ 'ଝଙ୍କାର'ରେ ଛାପି ନାହାନ୍ତି । ଏକଥା ସତ, ମୋର ମଧ୍ୟ ସେତେବେଳେ କବିତା ଲେଖା ଧିମେଇଁ ଯାଇଥିଲା । ନୂଆ ଚାକିରି, ଛୋଟଛୁଆ, ସ୍ୱାମୀ ଥାଆନ୍ତି କଟକରେ । ଏସବୁ ଭିତରେ ଧନ୍ଦିହୋଇ ଚଳୁଥାଏ ମୁଁ । ପାଖରେ ମୋ ବୋଉ ଏବଂ ମୋ ଶଶୁର । ଲେଖିବାର ସୁଯୋଗ ଓ ମାନସିକତା ଆହରଣ କରିପାରୁ ନ ଥାଏ ।

ଏହା ପରବର୍ଷ ମୋର ରେଭେନ୍‌ସା କଲେଜରେ ଚାକିରି । ତାଙ୍କର ସେଇଠି ପୋଷ୍ଟିଂ ହେଲା । ଭୁବନେଶ୍ୱରରୁ ସେ ଯିବାଆସିବା କରନ୍ତି । ପ୍ରାୟ ୩ଟା ବେଳକୁ କମନ୍ ରୁମ୍‌ର ଆରାମଚୌକିରେ ବସି ଗୋଡ଼ ହଲାଇ ହଲାଇ ଘରୁ ଆଣିଥିବା ଜଳଖିଆ ଖାଆନ୍ତି । ଏସବୁ ଆଜି ଚିତ୍ରଭଳି ଦିଶିଯାଉଛି । ବୋଧହୁଏ ୭୩/୭୪ ମସିହା କଥା । କ୍ରମଶଃ ତାଙ୍କ ସହ ନିକଟ ପରିଚୟ ହୁଏ, ମୋର କେତୋଟି କବିତା ପଢ଼ି ସେ ମୁଗ୍ଧ ହୁଅନ୍ତି ଓ ଅନେକ ବାର, କେତେ କେଜାଣି ଲୋକଙ୍କ ସାମ୍ନାରେ ମୋ କବିତାର ପ୍ରଭାବ ସମ୍ପର୍କରେ କହିଚାଲନ୍ତି । ସତ କହିବାକୁ ଗଲେ, ସେଯାବତ୍, କେହି ମୋର କବିତାକୁ ନିର୍ଦ୍ଦିଷ୍ଟଭାବେ, ଶୃଙ୍ଖଳାର ସହ ଆଦର କରି ନ ଥିଲେ । ମୋ ସ୍ୱାମୀ କେବେ କେମିତି ତର୍ଜମା କରନ୍ତି ତ କେହି ପାଠକ କହିଦିଅନ୍ତି 'ଭଲ ଲାଗିଲା' । ବାସ୍ ପ୍ରଥମେ, ଲେଖକ ମହାପାତ୍ର ନୀଳମଣି ସାହୁ ନିଜଠାରୁ ବହୁ କନିଷ୍ଠ ଜଣେ କବିର କବିତାକୁ ବିଭିନ୍ନ ଦୃଷ୍ଟିରୁ ଆଲୋଚନା କରି ତାରିଫ୍ କରିବାକୁ ଲାଗିଲେ ।

ମୋ ବ୍ୟକ୍ତିଗତ ଜୀବନ ତାଙ୍କ ସାମ୍ନାରେ ଗୋଟିଏ ଖୋଲାପୃଷ୍ଠା ସତେକି । ମୋ ବାପା, ମୋତେ ୫ ବର୍ଷ ନ ପୂରୁଣୁ, ଗାଁରେ ଆମକୁ ଛାଡ଼ିଦେଇଗଲେ । ସେଇ ଯେ ଗଲେ, କ୍ୱଚିତ ଆସନ୍ତି ଦେଖିବାକୁ । ଯଦିଓ ଆମ ଭାଇଭଉଣୀଙ୍କ ପଢ଼ାପଢ଼ି ଓ ବିଭାଘରର ସମସ୍ତ ଖର୍ଚ୍ଚ ନିୟମିତ ଯୋଗାନ୍ତି । ଯାହାହେଉ ବି ବାପାଙ୍କ ପ୍ରତି ମନରେ ଆକୁଳତା ଓ କଠିନ ଅଭିମାନ ଧରି ମୁଁ ବସିଥାଏ । ଏହି ଅବସ୍ଥାରେ ସାର୍ ମୋତେ ଉପଦେଶ ଦିଅନ୍ତି ଓ ମନକୁ ଅଧିକ ଉଦାର କରିବା ନିମିତ୍ତ ପରାମର୍ଶ ଦେଇଥା'ନ୍ତି । ତାଙ୍କରି କଥା ଅନୁସାରେ ମୁଁ ବାପାଙ୍କ ସହ ଆତ୍ମିକ ଯୋଗାଯୋଗ ପ୍ରତିଷ୍ଠା କରେ । ୧୯୭୭ରେ ସେ ମୋ ଘର ବାଣୀବିହାର଼ରେ ପହଞ୍ଚନ୍ତି, ରହନ୍ତି । ସାର୍‌ଙ୍କର ପଦେ କଥା ସଦ୍ୟ ଶୁଣିଲା ପରି ଲାଗେ, 'ପ୍ରତିଭା, ବାପାକୁ ଗ୍ଲାନିରେ ମରିବାକୁ ଦିଅନା ।" କାହିଁକି ? ଜଣେ ଲୋକ ପିଲାଙ୍କୁ ଅଣଦେଖା କଲା, ସେ ପିଲାଙ୍କଠାରୁ ହତାଦର ପାଇବା ନିମିତ୍ତ ହକ୍‌ଦାର ନୁହେଁ କି ? ସାର୍ କହିବେ, "ଏକଥା ଠିକ୍ ନୁହେଁ, ପ୍ରଶସ୍ତ ହୁଅ ।"

ମୋ ବିଚାରର କଷଟିରେ ସାର୍‌ଙ୍କ ବ୍ୟକ୍ତିତ୍ୱର ଗାର ସୁଦୀର୍ଘ ଓ ଉଜ୍ଜ୍ୱଳ, କହିଲେ ସରିବ ନାହିଁ । ଅଥଚ ଏଠାରେ ସଂକ୍ଷିପ୍ତ ଭାବେ ମୁଁ ଏହି ଆନ୍ତରିକତାକୁ ମୂଲ୍ୟାୟିତ କରିବି । 'ଅଭିଶପ୍ତ ଗନ୍ଧର୍ବ' ପୁସ୍ତକଟି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ହେବା

ଅବସରରେ ମୁଁ 'ଇସ୍ତାହାର' ପତ୍ରିକାରେ ତାଙ୍କ ରଚନାର ବିଶେଷତ୍ୱ ସମ୍ପର୍କରେ ଏକ ଆଲୋଚନା କରିଥିଲି । କିନ୍ତୁ ଏଠାରେ, ଆଜି ସାହିତ୍ୟ ରଚନା ଦିଗରେ କିଛି ପ୍ରାୟ ନ କହି, କହିବି ତାଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱ ସମ୍ପର୍କରେ । ରେଭେନ୍‌ସା କଲେଜରେ ସାର୍ ପୁଣି କେନାଲ୍ କୂଳ କ୍ୱାର୍ଟର୍ସ ପାଇ କଟକରେ ରହିଲେ । ଆମେ ୨/୩ ଜଣ ଅଧ୍ୟାପିକା ମିଶି ତାଙ୍କ ଘରକୁ ଯାଉ । ତାଙ୍କ ପତ୍ନୀ ପାପାନାନୀ ଆମକୁ ଆହ୍ଲାଦ କରନ୍ତି । ଯାହା ଘରେ ଥାଏ ଖୁଆନ୍ତି ଓ ପାନଭାଙ୍ଗି ଦିଅନ୍ତି । ୧୯୭୬ରେ ତାଙ୍କ ସହ ମୁଁ ଓ ନିତ୍ୟାନନ୍ଦବାବୁ ବଲାଙ୍ଗୀର ହରିଶଙ୍କର ଯାଉ । ସେ ଥାଆନ୍ତି Home P. R., 'ଉତ୍କଳ ପ୍ରସଙ୍ଗ'ର ରେ ସମ୍ପାଦକ । ପାଖରେ ଗାଡ଼ି ଖଣ୍ଡେ ଥାଏ । ବଲାଙ୍ଗୀର ସାହିତ୍ୟ ସଭାକୁ ତାଙ୍କସହ ପାପାନାନୀ, ସାନପୁଅ ଗୁରୁ, କବି ପ୍ରମୋଦ ମହାନ୍ତି, ଗାଳ୍ପିକ ନିମାଇଁ ପଟ୍ଟନାୟକ ଓ ଆମେ ଯାଇଥାଉ । ସାର୍ ଓ ପାପାନାନୀଙ୍କଠାରୁ ସାହସ ପାଇ ମୁଁ ହରିଶଙ୍କର ପ୍ରପାତ ଝରଣାରେ ମନଇଚ୍ଛା ଗାଧୋଇଲି, ଜୀବନରେ ପ୍ରଥମ ଥର ପାଇଁ । ଝରଣା ପାଣିର ଉଚ୍ଛଳ ଧାରାରେ ଶିଉଳିଲଗା ପଥର କାନ୍ଥିରେ ଥରକୁଥର ତଳକୁ ଖସି, ତଳେ ଥିବା ଝରଣା ପାଣିର ତଡ଼ାଗ ଆକୃତିରେ ଗାଧୋଇବା କେଡ଼େ ମଜାଦାୟକ ନ ଥିଲା ! ଅବଶ୍ୟ, ମୁଁ ଏକା ନୁହେଁ, ଆମେ ସମସ୍ତେ ମିଶି ଗାଧୋଇଥିଲୁ ସେଠାରେ । ସେତକ ଦିନ, ପ୍ରକୃତିକୁ ଏକ ଧ୍ୟାନରେ ନିରୀକ୍ଷଣ କରିବାକୁ ସେ ଚେତାଇ ଦେଉଥିଲେ । ମୂଳକଥା, ସବୁକିଛି ଆନ୍ତରିକ ଅନୁଭବକୁ ନିବିଡ଼ତର କରିବା ଦିଗରେ ସେ ପ୍ରେରଣା ଯୋଗାଇ ଥାଆନ୍ତି, ତେଣୁ ମୁଁ ତାଙ୍କୁ ଯଥାର୍ଥରେ ଗୁରୁ ରୂପେ ମାନିଥାଏ ।

ତାଙ୍କ ସମଗ୍ର ପରିବାର ମୋ ପରିବାରକୁ ଆପଣେଇ ନେଇଥାଆନ୍ତି । ତଥାପି, ସଂସାରର ପଥର ଚକି ଭିତରେ ପେଷିହୋଇ ମୁଁ କେତେବେଳେ ତ୍ରାହି ତ୍ରାହି ଡାକିଉଠେ, ସମୟ ବିଶେଷରେ ତାଙ୍କ ପରାମର୍ଶ ମଧ୍ୟ ଲୋଡ଼ିଥାଏ । ତାଙ୍କର ଏକମାତ୍ର ପରାମର୍ଶ 'ସଂସାରକୁ ସହିଯିବାକୁ ହେବ' । ସହିଷ୍ଣୁତାର ଭିତ୍ତିରେ ଠିଆହୋଇଥିବା ମୋ'ଭଳି ସ୍ତ୍ରୀଲୋକଟେ ପାଇଁ ସେହି କଥାପଦକ ଯନ୍ତ୍ରଣାନିବାରକ ଔଷଧ ପରି କାମକରେ । ମୋ କବିତା ପ୍ରତି ତାଙ୍କର ଅଗାଧ ଶ୍ରଦ୍ଧା । ତଥାପି କୋଉଠି କୋଉଟା 'ଖଟ୍‌କା' ଲାଗୁଛି ସେ ବାଛନ୍ତି, ମୁଁ ହୁଏତ ତାଙ୍କ ପସନ୍ଦ ଅପସନ୍ଦକୁ ନେଇ ଯୁକ୍ତିକରେ । ତେବେ, ସେସବୁ ଯୁକ୍ତି ଗଠନମୂଳକ । ତାଙ୍କ ରଚନାଗୁଡ଼ିକ ସମ୍ପର୍କରେ ମୋର ଯଦି କିଛି ବକ୍ତବ୍ୟ ଥାଏ, ମୁଁ ମଧ୍ୟ ତାଙ୍କୁ ରୋକ୍‌ଠୋକ୍ କହିଦିଏ, ସେ ବହୁଭାବରେ ବୁଝାଇଦିଅନ୍ତି । ତାଙ୍କ କହିବାର ବାଗଟି ଏପରି ମୋହକ ଯେ, ସମୁଦାୟ ବୁଝି ନ ଗଲେ ବି ତୁମର ପ୍ରତିବାଦ କରିବାର ମାନସିକତାଟି ହଜିଯିବ ।

'ଅଭିଶପ୍ତ ଗନ୍ଧର୍ବ' ଓ ତାଙ୍କ ରଚନାଗୁଡ଼ିକ ସମ୍ପର୍କରେ ମୁଁ ଲେଖିଥିଲି, ତାଙ୍କ ଗଳ୍ପଜଗତର ରାସ୍ତାଗୁଡ଼ିକ କିପରି ଦୀର୍ଘ, ପରିଚ୍ଛନ୍ନ ଓ ବାସ୍ନାମୟ, ପୁଣି ସହଯାତ୍ରୀ ପାଠକ କିପରି ଗାଳ୍ପିକଙ୍କ ଅନ୍ତରଙ୍ଗତାରେ ଟାଣିହୋଇ ଆଗକୁ ଆଗକୁ ଚାଲିଥିବ - ସେ ଯେ ଗୁଡ଼ାଏ ରାସ୍ତା ପାରିହୋଇ ଆସିଲାଣି- ସେ କ୍ଳାନ୍ତିକୁ ଭୁଲିଯାଇଥିବ । ଏସବୁ ଥିଲା ମୋର ସେ ପ୍ରବନ୍ଧର ପ୍ରତିପାଦ୍ୟ । ତାଙ୍କ ଗଳ୍ପଗୁଡ଼ିକରେ ନାରୀ ଚରିତ୍ର ଚିତ୍ରଣ ବିଶିଷ୍ଟତା

ଦାବି କରେ । ତାଙ୍କ ଗଳ୍ପ ଉପନ୍ୟାସରେ 'ରାନୁଅପା'ଠାରୁ ସୁମିତ୍ରା', 'ବୁରୁନ୍ଦାବେଧ', 'ସୁନ୍ଦରୀନାନୀ' ଓ 'ପିଙ୍ଗଳା' ପର୍ଯ୍ୟନ୍ତ ଅସଂଖ୍ୟ ନାରୀ ଚରିତ୍ର ଏକୁଆରେକ ସ୍ୱଭାବତଃ ଭିନ୍ନ ପୁଣି ଠାଣିରେ ଅପୂର୍ବ । ସକଳ ତଥାକଥିତ ଅସାମାଜିକତାକୁ ଆଡ଼େଇ ଦେଇ, ଲେଖକଙ୍କ କରୁଣାପ୍ଲୁତ ହୃଦୟ ସେମାନଙ୍କ ନାରୀତ୍ୱର ପୀଡ଼ା ପ୍ରତି ସମ୍ମାନ ପ୍ରଦାନ କରେ । ଭାଷାର ବିବିଧ ସମ୍ଭାବନାକୁ ଆବିଷ୍କାର କରିବା ଦିଗରେ ଲେଖକ ପାରଦର୍ଶୀ । 'ଅଭିଶପ୍ତ ଗନ୍ଧର୍ବ' ପୁସ୍ତକରେ ଓଡ଼ିଆ ଜନଜୀବନର ଗଭୀର ଅନୁଶୀଳନ ସହ ଗ୍ରାମୀଣ ସଂସ୍କୃତିର ଚିତ୍ରଣ ତାଙ୍କ ସୃଜନର ଚିରକାଳୀନତାକୁ ପ୍ରମାଣ କରିଥାଏ ।

ଏହି ଲେଖକଙ୍କ ବ୍ୟକ୍ତିତ୍ୱର ଭୂମିକା ମୋ ଜୀବନକ୍ଷେତ୍ରରେ ଯଥେଷ୍ଟ କଲ୍ୟାଣ କର । ନିକଟ ଅତୀତରେ ତାଙ୍କ ସମ୍ମୁଖରେ ମୁଁ ଏକ ପ୍ରଶ୍ନ ଉତ୍‌ଥାପନ କରିଥିଲି । ପ୍ରଶ୍ନଟି ଏହିପରି – "ମୁଁ କାହିଁକି ଆଜି ଏଡ଼େ ଏକୁଟିଆ ହୋଇଗଲି ? ମୋର ବହୁବିଧ ଭୂମିକା ସତ୍ତ୍ୱେ ମୁଁ ଯେ ବନ୍ଧୁ ପରିଜନ, ସ୍ୱଜନ କାହାରି ପ୍ରତି ଅବହେଳା କରି ନାହିଁ । ଶ୍ରଦ୍ଧା କରିଛି, ସ୍ୱାର୍ଥତ୍ୟାଗ ବି କରିଛି ?" ସେ କ୍ଷଣେ ନୀରବ ରହିଲେ । ହୁଏତ ମୋର ଏପରି ଏକ ଅନୁଯୋଗର ସତ୍ୟତାକୁ ସେ ଉପଲବ୍ଧିରେ ଆଣୁଥିଲେ । ତା'ପରେ କହିଲେ, "ସମସ୍ତଙ୍କୁ ତୁମ ପାଖରୁ ସେ ନେଇଗଲେ । କାହିଁକି ଜାଣ ? ତୁମକୁ ଏକୁଟିଆ କରିଦେଲେ ସେ ନିଜେ ତୁମ ପାଖକୁ ଆସିବେ ।"

ଏପରି ଏକ ସାନ୍ତ୍ୱନାର କିଛି ବିରୁଦ୍ଧ ବକ୍ତବ୍ୟ ଥାଏ କି ? ମୋତେ ତ ଜଣା ନାହିଁ । ସେ ଆସିବେ କି ନାହିଁ, ଆସିଲେ କେବେ ଆସିବେ ଓ ମୁଁ କୃତାର୍ଥ ହୋଇଯିବି କି ନାହିଁ, ଏସବୁ ଏଠାରେ ଅପ୍ରାସଙ୍ଗିକ ହୋଇପଡ଼େ । ସାର୍ (ଲେଖକ ନୀଳମଣିବାବୁ) ହୁଏତ ଜାଣିଥିବେ, ଯାହାଙ୍କୁ ଇଙ୍ଗିତ କରି 'ସେ' କହିଲେ, କେବେ ବି ମୋ ତୁଚ୍ଛତା, ଅସୁନ୍ଦରପଣ ଓ ନଗଣ୍ୟତାର ନିକଟକୁ ଆସିବେ ନାହିଁ । କିନ୍ତୁ ମୋର ଅନ୍ତଃକରଣର କ୍ଷତକୁ କିଛିଟା ଉପଶମ କରିବା ନିମିତ୍ତ ଏତକ ସାନ୍ତ୍ୱନା ଯଥେଷ୍ଟ ବୋଲି ମୁଁ ମନେ କରେ ।

ତାଙ୍କର ସୃଜନ ଓ ମନ ବହୁମୁଖୀ । ସେ ପ୍ରଚୁର ପାଠକୀୟ ପ୍ରିୟତା ଲାଭ କରିଛନ୍ତି । ବ୍ୟକ୍ତିତ୍ୱ ତାଙ୍କର ଅନନ୍ୟ । ମଣିଷ ମାତ୍ରେ ତାଙ୍କ ଶ୍ରଦ୍ଧାର ପାତ୍ର, କ୍ଷମାର ପାତ୍ର । ଏହିଭଳି ମହାନ୍ ବ୍ୟକ୍ତିଙ୍କର ସାମାନ୍ୟ ଅଂଶଟିଏ ମାତ୍ର ଯଦି ମୁଁ ଏଠାରେ ଆଙ୍କିପାରିଥିବି, ତେବେ ମୋର କାବ୍ୟସତ୍ତା ଓ ନାରୀସତ୍ତାର ସ୍ୱଚ୍ଛ ସାମର୍ଥ୍ୟରେ ମୁଁ ଆଶ୍ୱସ୍ତ ହେବି ନିଶ୍ଚୟ ।



# ଜୀବନର ମହାରୂପକାର

## [ ୰ ପଦ୍ମଶ୍ରୀ ଚନ୍ଦ୍ରଶେଖର ରଥଙ୍କୁ ନିବେଦିତ ]

ଏକା ଏକା ଆଖିବୁଜି ବସିଥିଲେ କେଉଁ ଚେତନାଲୋକରେ ଥାଏ ତାଙ୍କ ସମାଧିସ୍ଥ ସ୍ମୃତି । ଜାଗ୍ରତରେ ଥିଲେ ହାତରେ ଥାଏ କେବେ ଅମୃତସ୍ରାବୀ କଲମ ତ କେବେ ନିହଣ ବା ତୂଳୀ । କେତେ ଯେ ନିଷ୍ପ୍ରାଣ ପଥର ଜୀବନ୍ୟାସ ପାଆନ୍ତି ତାଙ୍କ ନିହଣ ମୁନରେ, କେତେ ସାଦା କାନ୍‌ଭାସ୍ କଥା କହିଉଠନ୍ତି ତାଙ୍କ ତୂଳୀ ସ୍ପର୍ଶରେ, ପୁଣି କେତେ ଯେ ନିରର୍ଥକ ଜୀବନ ଅର୍ଥମୟ ହୋଇଉଠେ ତାଙ୍କ କଲମ ଛୁଆଁରେ - ତା'ର ହିସାବ ନାହିଁ । ନିହଣ, ତୂଳୀ ଓ କଲମର କଳାକାର ପଦ୍ମଶ୍ରୀ ଚନ୍ଦ୍ରଶେଖର ରଥ । ଜନ୍ମ ବଲାଙ୍ଗୀରରେ ୧୭ ଅକ୍ଟୋବର ୧୯୨୯ରେ । ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟରୁ ଇଂଲିଶ୍ ଭାଷାରେ ସ୍ନାତକୋତ୍ତର ପରେ ଓଡ଼ିଶା ଶିକ୍ଷା ସେବାରେ ଇଂଲିଶ୍ ଅଧ୍ୟାପକ ଭାବେ ବୃତ୍ତି ଜୀବନର ଆରମ୍ଭ ଓ ସେବାନିର୍ବୃତ୍ତି ୧୯୮୭ରେ । ବିଳମ୍ବରେ କଲମ ଧରିଥିଲେ ବି ଲେଖକ ଜୀବନର ଆରମ୍ଭରୁ ତାଙ୍କ ପ୍ରତିଭାର ଅନନ୍ୟତା ବାରି ହୋଇଯାଏ ।

ଚନ୍ଦ୍ରଶେଖରଙ୍କ ରଚିତ ଗ୍ରନ୍ଥ ସାହିତ୍ୟର ନାନା ଦିଗକୁ ନେଇ ଗତିଶୀଳ । ଲେଖିଛନ୍ତି 'ଯନ୍ତ୍ରାରୂଢ଼' ଓ 'ଅସୂର୍ଯ୍ୟ ଉପନିବେଶ' ପରି ବିରଳ ଉପନ୍ୟାସ । 'ଅଶ୍ରୁତ ସ୍ୱର', 'ମୁଁ ସତ୍ୟଧର୍ମା କହୁଛି', 'ଦୃଷ୍ଟି ଓ ଦର୍ଶନ' ପରି ନିବନ୍ଧଗ୍ରନ୍ଥ, 'ସମ୍ରାଟ୍ ଓ ଅନ୍ୟମାନେ' ଏବଂ 'ସବୁଠାରୁ ଦୀର୍ଘରାତି' ପରି ଗଳ୍ପଗ୍ରନ୍ଥ । 'ତୁମ ପାଇଁ ପକ୍ଷୀଗାନ' ଓ 'ଆଗକୁ ବନସ୍ତ' ପରି କବିତା ପୁସ୍ତକ । 'ରଥ ସପ୍ତକ' ପରି ଦାର୍ଶନିକ କୃତି ପାଇଁ ଓଡ଼ିଶାର ପ୍ରାନ୍ତିକ ଓ ଅଭିଜାତ ପାଠକ ମହଲରେ ସେ ପରାମାରାଧ୍ୟ । ୮୯ ବର୍ଷ ବୟସରେ, ଯେତେବେଳେ ଓଡ଼ିଆ ଜାତି ଓ ସାହିତ୍ୟ ଲୋଡ଼ୁଥିଲା ତାଙ୍କ ବହୁଦର୍ଶୀ ଉପଦେଶ, ଠିକ୍ ସେତିକିବେଳେ ସେ ଆମ ଗହଣରୁ ବିଦାୟ ନେଇଗଲେ ଏଇ ଫେବୃୟାରୀ ୯ ତାରିଖ ସାୟାହ୍ନରେ । ଶୁକ୍ଳପକ୍ଷ ନେଇ ଅବତରିଥିଲେ ଓଡ଼ିଶା ମାଟିକୁ, ଆଃ, କୃଷ୍ଣପକ୍ଷ ରଖି ଚାଲିଗଲେ ଅମୃତଲୋକକୁ ।

ତାଙ୍କ ବିୟୋଗରେ ଓଡ଼ିଆ ସାହିତ୍ୟ ଜଣେ ଯୁଗପୁରୁଷଙ୍କୁ ହରାଇଲା । ଦରିଦ୍ର ହୋଇଗଲା । ଯେତେ ବିଶାଳ ବପୁଷ୍ମାନ୍, ସେତିକି ବିଶାଳ ହୃଦୟର ଅଧିକାରୀ ଥିଲେ ସେ । ତାଙ୍କ ଅସ୍ତିତ୍ୱ ଓ ଚେତନାରେ ବିନ୍ଦୁ ବିନ୍ଦୁ କଳାତ୍ମକତା ଭରିରହିଥିଲା । ତାଙ୍କ କୃତିତ୍ୱ ସ୍ମରଣ କରିବାକୁ, ତାଙ୍କ ସ୍ମୃତିକୁ ପୂଜା କରିବାକୁ ଅଜସ୍ର ଓଡ଼ିଆ ଅପେକ୍ଷାରେ ଥିବେ । 'ହଚ୍ କ୍ରସ୍ ୱାର୍ଡ ବୁକ୍ ଆୱାର୍ଡ'ଠାରୁ ଆରମ୍ଭ କରି 'କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର',

'ଶାରଳା ପୁରସ୍କାର', 'ସାହିତ୍ୟ ଭାରତୀ ସମ୍ମାନ' ଓ ଦୁଇ ଦୁଇ ଥର 'ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର' ଆଦି ବହୁ ପୁରସ୍କାରରେ ତାଙ୍କ ଦୀପ୍ତ ପ୍ରତିଭା ବିମଣ୍ଡିତ । ବାକ୍‌ପଟୁ, ପଣ୍ଡିତ ଓ ବିବେକାନନ୍ଦଙ୍କ ଏବଂ ଶ୍ରୀଅରବିନ୍ଦଙ୍କ ଦର୍ଶନ ପ୍ରତି ଆଜୀବନ ଉତ୍ସର୍ଗୀକୃତ ଥିଲେ ଏଇ ମହାମନୀଷୀ ।

ଏଠାରେ ସେସବୁ ଅବତାରଣା କରିବାର ଅବକାଶ ନାହିଁ । ତାଙ୍କର ମୁଁ ଜଣେ କନିଷ୍ଠ ପରିଚିତା, ଯାହାକୁ ସେ 'ସରସ୍ୱତୀ' ବୋଲି ସମ୍ବୋଧନ କରନ୍ତି । ତାଙ୍କୁ ନେଇ ଜୀବନର କେତେ ସ୍ମୃତି । ଆଜି ତାଙ୍କ ଅବର୍ତ୍ତମାନରେ ସେସବୁ ସ୍ମୃତି ଅଜାଡ଼ି ହୋଇ ପଡୁଛି ଏକାବେଳକେ । କାହାକୁ କହିବି, କାହାକୁ ବା ଛାଡ଼ିଯିବି ? ମନୁଷ୍ୟ ମାତ୍ରେ ମୃତ୍ୟୁର ଅଧୀନ । ମାତ୍ର ତାଙ୍କ ଭଳି ଜଣେ ଜଣେ ବ୍ୟକ୍ତି ମୃତ୍ୟୁକୁ ଜୟ କରିଯାଆନ୍ତି । ତାଙ୍କର ଗୋଟିଏ ଯୋଡ଼ିଏ ଉଦ୍‌ବୋଧନ ମୁଁ ଏଠାରେ ଦେଉଛି । ସେ କହନ୍ତି- "କଳାକାରର ହୃଦୟ ଯେବେ ନିଘଞ୍ଚ ବୃକ୍ଷ ପରି ଦଣ୍ଡାୟମାନ ହେବ, ସାହିତ୍ୟର ଶୁକପକ୍ଷୀ ତା'ର ଡାଳକୁ ସେବେ ଯାଇ ଅବତରଣ କରିବ । ମୋର ଏ ବେଦବାକ୍ୟ ।' ପୁଣି କହନ୍ତି - "କବି ଲେଖକର ଧର୍ମ ହେଲା କଣ୍ଟାବାଡ଼ରେ ମାଡୁଥିବା ଲତାର ଧର୍ମ । କଣ୍ଟାର ଆଘାତ ସହି ସହି ମଝିରେ ମଝିରେ ଫୁଲଟିମାନ ସେ ଫୁଟାଇ ଯାଉଥିବ ।" କେଡ଼େ ଉଦ୍‌ବୋଧକ ନୁହେଁ ଏ ବାକ୍ୟ ! ବାକ୍ୟ ନୁହେଁ ତ ମହାବାକ୍ୟ । ତାଙ୍କ ସହ କଥା ହେଲେ ଚିତ୍ରକଳା, ମୂର୍ତ୍ତି, କବିତା, ଗଳ୍ପ ଏସବୁର ଆଲୋଚନାରେ ସମୟ କେତେବେଳେ ବିତିଯାଏ, ଜଣାପଡ଼େ ନାହିଁ । ସାରସ୍ୱତ ପ୍ରୟୋଜନ ବେଳେ ବୟସରେ, ବିଦ୍ୟାରେ ବଡ଼ ହୋଇ ବି ସେ ମୋର ପରାମର୍ଶ ନିଅନ୍ତି । ଆଉ କାହା କାହାର ବି ନେଉଥିବେ । ଏ କ'ଣ କମ୍ ଉଦାରତା ! କାହିଁ ଆଜି ଆମ କେତେଜଣଙ୍କ ଭିତରେ ଅଛି ପରସ୍ପରକୁ ସୁଖଦୁଃଖରେ ଏ ଲୋଡ଼ିବାପଣ ?

ସେ ଅସୁସ୍ଥ ହେବା ଦିନୁ ମୁଁ ପ୍ରାର୍ଥନା କରୁଥାଏ । ସରକାରଙ୍କ ଉଦାସୀନତା- ସେ ଏଭଳି ଯୁଗପୁରୁଷଙ୍କୁ ବିଳମ୍ବରେ ପଦ୍ମଶ୍ରୀ ଉପାଧି ପାଇଁ ଚୟନ କଲେ । ମୋ ପରି ଚନ୍ଦ୍ରଶେଖର ଅନୁରାଗୀ ଅନେକ ସାହିତ୍ୟିକ ଏ ନେଇ ଆଘାତ ପାଇଥିବେ ନିଶ୍ଚୟ । ଦୀର୍ଘଦିନରୁ ତାଙ୍କ ସହ ମୋ ପରିବାରର ପରିଚୟ, ଆତ୍ମୀୟତା । ଆଜି ସେହି କଳା-ପୁରୁଷ ଆମଠାରୁ ଅପସରି ଗଲେ । ସାରା ବିଶ୍ୱରେ ଆଧ୍ୟାତ୍ମିକ ବକ୍ତବ୍ୟ ରଖି ସେ ବହୁ ସ୍ଥାନରେ ସମ୍ମାନିତ ହୋଇଛନ୍ତି । ତାଙ୍କ ଭଳି ସାରସ୍ୱତ-ବ୍ୟକ୍ତିତ୍ୱ ବିରଳ । ସେଭଳି ବ୍ୟକ୍ତିତ୍ୱ ପୁନର୍ବାର ଜନ୍ମଗ୍ରହଣ କରି ଏ ଓଡ଼ିଶା ମାଟିକୁ ଧନ୍ୟ କରନ୍ତୁ । ପଦ୍ମଶ୍ରୀ ଚନ୍ଦ୍ରଶେଖରଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବାର ଭାଷା ମୁଁ ପାଉ ନାହିଁ । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ କେବଳ ଭକ୍ତିପୂତ ପ୍ରଣାମ ନିବେଦନ କରୁଛି । ଏ ପ୍ରଣାମ ମୋର, ତାଙ୍କରି ପ୍ରିୟ ଖବରକାଗଜ 'ଧରିତ୍ରୀ'ର, ଓଡ଼ିଆ ଜାତିର ଓ ସମଗ୍ର ଭାରତବର୍ଷର ।



# ଗଙ୍ଗା ଜଳରେ କବି

## [ ଦିବଙ୍ଗତ କବି ସୌରୀନ୍ଦ୍ର ବାରିକଙ୍କ ସ୍ମୃତିରେ ]

ବହୁତ ଦୂରରେ ଥିଲେ । ତଥାପି, ଥିଲେ ତ ! ମୁଁ କିଟ୍ ପାଖରେ, ପଟିଆରେ । ସେ ପୁନାମା ଗେଟ୍‌ରେ । କ୍ୱଚିତ୍ ଦେଖାହୁଏ । ସଭାସମିତିରେ ମଧ୍ୟ କଦବା ସାକ୍ଷାତ । ସଭାକକ୍ଷମାନ ପ୍ରାୟ ଭୁବନେଶ୍ୱରର ମଧ୍ୟଭାଗରେ ଅବସ୍ଥିତ । ଅତଏବ ଦୂରର କବିମାନେ ଆସିପାରନ୍ତି ନାହିଁ । ତଥାପି ସୌରୀ ସାର୍‌ଙ୍କ ପ୍ରିୟବନ୍ଧୁମାନେ ତାଙ୍କୁ ସଭାସ୍ଥଳକୁ ନେଇଆସିଥାଆନ୍ତି । ଶେଷ ସାକ୍ଷାତ ହୋଇଥିଲା, ତାଙ୍କ ସମ୍ବର୍ଦ୍ଧନା ସଭାରେ । ଲାଲ୍ ଗୋଲାପର ତୋଡ଼ାଟିଏ ନେଇ ମଞ୍ଚ ଉପରେ ତାଙ୍କ ପାଦଛୁଇଁ ପ୍ରଣାମ କରିଥିଲି । କେତେ ଶୁଖିଲା ଆଉ ଧଳା ଦିଶୁଥିଲେ ସେ । ମନ ଛଟପଟ ହେଲା ମୋର । ଲେଖକ ଡଃ ବିଜୟ ମହାନ୍ତି, ଚିତ୍ରଶିଳ୍ପୀ, ଲେଖକ ଦୀନନାଥ ବାବୁ ଏମିତି କେତେ ତାଙ୍କର ପ୍ରିୟବନ୍ଧୁ, ପ୍ରକୃତ ବନ୍ଧୁ । ପାଖାପାଖି ରହୁଥିଲେ । ସତ୍ ବନ୍ଧୁମାନଙ୍କ ନିକଟରେ ବାସ କରିବା ଭାଗ୍ୟର କଥା । ସେ ସରକାରୀ ଘରେ ରହୁଥିଲାବେଳେ ମୁଁ କେଇଥର ଯାଇଛି । ମୋ ଥେସିସ୍ ଛପା ହେଲା, କବିତା ବହିଟିଏ ଛପା ହେଲା, ମୁଁ ନେଇ ତାଙ୍କୁ ଅର୍ପଣ କରେ । ଝିଅ ଓ ପୁଅ ଉଭୟଙ୍କ ବିଭାଘରରେ ପହଞ୍ଚିଛି । ମୋର ସୌଭାଗ୍ୟ ଯେ ପ୍ରିୟ ଛାତ୍ର ବିଜୟଙ୍କଠାରୁ ଦେହାନ୍ତର ଖବରଟି ପାଇଲି । ଅଥଚ, ହଠାତ୍ ଯିବାକୁ ସୁବିଧା ନ ଥିଲା । ଡଃ ସଂଘମିତ୍ରାଙ୍କୁ ଫୋନ୍ କଲି । ବାଟ ମନେ ନାହିଁ- ଅନ୍ତତଃ ତାଙ୍କୁ ସାଙ୍ଗରେ ନେଇ ଯାଇପାରନ୍ତି - ସେ କିନ୍ତୁ ବହୁ ଦୂରକୁ ଯାଇଥିଲେ । ଫେରିବା ବାଟରେ ସାର୍‌ଙ୍କ ଘରକୁ ଗଲେ । ମୁଁ ଖାଲି ଆଶାରେ ହିଁ ରହିଗଲି ।

ବଡ଼ ଝିଅ ତା' କଟକ ଅଫିସ୍‌ରୁ ଫେରିଲା ଓ ଫେରିବା ବାଟରେ ମୋତେ ଏଠାରୁ ନେଇ ସୌରୀସାର୍‌ଙ୍କ ଘରକୁ ଗଲା । ମୋ ବଡ଼ ଝିଅକୁ 'ମୋ ଝିଅ' ବୋଲି କହୁଥିଲେ । ତା'ର ଯେଉଁ ଗଳ୍ପ ପୁସ୍ତକ 'ବିରଳ ରୂପକ' ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା, ପୂର୍ବରୁ ବହି ଖଣ୍ଡିଏ ସେ ସାର୍‌ଙ୍କୁ ଦେଇଥିଲା । ସାର୍ ନିଜ ମନକୁ ସେ ବହିର ଆଲୋଚନାଟିଏ ଲେଖି 'କାହାଣୀ'ରେ ଛପାଇ ଥିଲେ । ଆମେ କେହି ତାଙ୍କୁ ଅନୁରୋଧ କରି ନ ଥିଲୁ । ତାଙ୍କର କଥା- ବହିଟି ଭଲ ଲାଗିଲା, ତେଣୁ ଲେଖିଲି ।

ତାଙ୍କ ସୃଜନଶୀଳ ମନ ସର୍ବଦା କିଛି ନା କିଛି ଶବ୍ଦ-ସୃଷ୍ଟିରେ ମାତିଥାଏ । ଚିତ୍ରକଳା ସେ ଭଲ ପାଉଥିଲେ । ଥରେ ମୋତେ ଚିତ୍ର ବହିଟିଏ ଦେଖାଇଥିଲେ ମଧ୍ୟ । ମୋର ନିବନ୍ଧ

ଗ୍ରନ୍ଥଟି ତୁଳନାତ୍ମକ ସାହିତ୍ୟ 'ରୋମାଣ୍ଟିସିଜମ୍' ଉପରେ ଲିଖିତ, ତେଣୁ ରଚନାକାଳରେ ମଧ୍ୟ ସାରଙ୍କଠାରୁ କିଛି ସାହାଯ୍ୟ ନେଇଥିଲି । ଇଂରାଜୀ ପ୍ରଫେସର ଓ ଖ୍ୟାତନାମା ଇଂରାଜୀ (ଇଣ୍ଡୋ-ଆଙ୍ଗ୍ଲିଆନ୍ ଓ ଓଡ଼ିଆ କବିତା) କବି ମୋର ପ୍ରିୟ ସାନ ଭାଇ ବିଭୁ ପାଢ଼ୀ ତାଙ୍କ ବିଷୟରେ ଏବେ କହୁଥିଲେ । କାରଣ ସେ ତାଙ୍କ ସହ ବିଜେବି କଲେଜରେ କାମ କରୁଥିଲେ । "ସାର୍ ଥଙ୍ଗାଳିଆ ଲୋକ- କହନ୍ତି, ମୁଁ ତ ଭଣ୍ଡାରି ଲୋକ, ମୋ ଦ୍ୱାରା ପାଠ କୋଉଠୁ ହବ ? ବଡ଼ ସାଧୁ ଚରିତ୍ର ସେ, ଭଲ କବି ।" ଅବଶ୍ୟ ସୌରୀ ସାର୍ କେବେ କାହାକୁ ନିଜକୁ ଭଣ୍ଡାରି କହି ହସାଉଥିବେ, ମାତ୍ର ମୋ ସାମ୍ନାରେ କେବେ କହି ନାହାନ୍ତି । ବର୍ତ୍ତମାନର ଅଧ୍ୟାପିକା, ସମ୍ପାଦିକା, ଲେଖିକା ଡଃ କବିତା ବାରିକଙ୍କୁ ସେ ବରାବର କହୁଥିଲେ - "ଯେ ହେଲା ଭଣ୍ଡାରି କୁଳଚନ୍ଦ୍ରମା ।"

ସାର୍ ଥିଲେ ନିରଭିମାନ । ଅଳ୍ପଦିନ ତଳେ ମୁଁ ବିଜୟଙ୍କ ସହ ତାଙ୍କ ଘରକୁ ଯାଇଥିଲାବେଳେ, ମୋତେ ସେ ତାଙ୍କ ରଚିତ ସଦ୍ୟ କବିତା ସଂକଳନ 'ମୋ ଭିତରେ ଗଙ୍ଗା ଓ ଗଙ୍ଗା ଭିତରେ ମୁଁ' ଦେଇଥିଲେ । ମୁଁ ପଢ଼ିସାରି ତାଙ୍କ ସହିତ ବହିଟି ବିଷୟରେ କଥା ହେଇଥିଲି । ତାଙ୍କର ଗଙ୍ଗା ଦର୍ଶନ ଯୋଗ ଥିଲା, ଗଙ୍ଗା ଜଳରେ ବୁଡ଼ିବିଯିବା ପୂର୍ବରୁ । ଦାମ୍ପତ୍ୟପ୍ରେମର ମଧୁରତା ଓ ବିଶାଳତା ତାଙ୍କ 'ଆକାଶ ପରି ନିବିଡ଼' (କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ସଂକଳନ)ର ମୁଖ୍ୟ ସ୍ୱର । ତାଙ୍କ କବିତା ଓ ପ୍ରବନ୍ଧ ସମସ୍ତର ନାମକରଣ ସେ ଖୁବ୍ କଳାତ୍ମକ ଭାବେ ସମ୍ପନ୍ନ କରୁଥିଲେ । ମୋ କବିତା ବିଷୟରେ ଲେଖିଥିବା ଆଲୋଚନାର ଶୀର୍ଷକ 'ଚିତ୍ରିତ ତନ୍ମୟତା: ଅଧା ଜହ୍ନ ଅଧା ଧୂଳି । ତାଙ୍କ ଦାମ୍ପତ୍ୟ ପ୍ରେମର ରହସ୍ୟ, ବିସ୍ମୟ, ଶ୍ରଦ୍ଧା ଓ ଗଭୀରତା ତଥା ବିହ୍ୱଳତାକୁ ଅଭିବ୍ୟଞ୍ଜିତ କରିଥିଲେ ସେ - "ତୁମେ କିଏ ?/ ଡାଆଣୀ, ଚିରଗୁଣୀ ନା ପିତାଶୁଣୀ / ମାଲୁଣୀ ବୁଢ଼ୀ ବା କେଉଁ ଅସୁରୁଣୀ ? ତୁମେ ଆସିବା ଦିନୁ ମୋର ଯେମିତି କ'ଣ ହୋଇଗଲା / ସବୁ ବଦଳିଗଲା ।" (ଉଦ୍ଧୃତି- 'କେବେ ତ କିଛି ଦେଇପାରିନି', 'ଉତ୍ତର ଆଧୁନିକ ଓଡ଼ିଆ କବିତାଲୋଚନା' ପୁସ୍ତକ ପୃ.୨୧- ଲେଖିକା ଡଃ ପ୍ରତିଭା ଶତପଥୀ) ।

ରମାଦେବୀ କଲେଜରେ କାମ କଲାବେଳେ ତାଙ୍କ ଅମାୟିକ ବ୍ୟବହାରରେ ସେ କନିଷ୍ଠ ଅଧ୍ୟାପକ, ଅଧ୍ୟାପିକାମାନଙ୍କର ମଧ୍ୟ ପ୍ରିୟତା ଲାଭ କରିଥିଲେ । ଭୁବନେଶ୍ୱର ପୁସ୍ତକ ମେଳାର ସେ ଥିଲେ କାର୍ଯ୍ୟନିର୍ବାହୀ ସଦସ୍ୟ । ମାତ୍ର ଥରେ ଥରେ ଛଟପଟ ହୋଇ ବୁଲନ୍ତି, କହନ୍ତି - "ପାଇଲ୍ସଟା ବାହାରିଛି ଯେ, ବେଶି କାଳ ବସିପାରୁ ନାହିଁ ।" ଯେବେ ବି ମୁଁ ଫୋନ୍ କରେ ମାଡାମଙ୍କ ସ୍ୱାସ୍ଥ୍ୟ ଭଲ ନାହିଁ, କହି ବ୍ୟସ୍ତ ହୁଅନ୍ତି । ଭଲ ବୋହୂଟିଏ ପାଇଲେ ଓ ତାକୁ ବି ଲେଖିକା ବନାଇଦେଲେ । ସତ୍ କଳାକାରଙ୍କ ଚରିତ୍ର ପ୍ରକୃତରେ ଏହିପରି ।

ସ୍ୱର୍ଣ୍ଣମଣି ସଦୃଶ । ପ୍ରାୟ ୨୦୧୧ ଫେବୃୟାରୀ ଶେଷକାଳ, ମୋ କବିତାର ଆବୃତ୍ତି ସି.ଡି. ଓ ଇଂରାଜୀ କବିତା ସଂକଳନଟିଏ ଲୋକାର୍ପଣ ଉତ୍ସବକୁ ସାର୍ ଆସିଥାଆନ୍ତି । ମୁଁ ସେତେବେଳେ ୨/୩ ମାସ ଧରି ଅସୁସ୍ଥତା ଭୋଗୁଥାଏ । ଏଭଳି ସମାରୋହଟିଏ ହେଉ ବୋଲି ମୋର ଆଗ୍ରହ ତ ନ ଥିଲା । ମାତ୍ର ବଡ଼ ଝିଅର ଜିଦ୍ । ଘରକୁ ଫେରିବା ପରେ, ସାର୍ ବୋଧେ ପରଦିନ ମୋତେ ଫୋନ୍ କଲେ । "କ'ଣ ହେଲା ଆପଣଙ୍କର ? ଏତେ ରୋଗା ଦିଶୁଥିଲେ, ହାତର ଶିରାଗୁଡ଼ାକ ଗଣି ହେଉଯାଉଥିଲା ।" ମତେ ଲାଗିଲା, ମୋ ବଡ଼ଭାଇ କି ଯେ ? ହଁ, ତ ।

ସେ ଆଜି ନାହାନ୍ତି - ଓଡ଼ିଆ ସାହିତ୍ୟାକାଶରୁ ଜଣେ ସତ୍‌ସାହିତ୍ୟ-ନକ୍ଷତ୍ର ଖସି ପଡ଼ିଲେ, ଗଙ୍ଗା ଭିତରେ । ତାଙ୍କ ଅମର-ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଉଛି । ତାଙ୍କ ଭଳି ମହତ୍ କବି ଓ ବ୍ୟକ୍ତି ଏ ପୃଥ୍ୱୀକୁ ବାରମ୍ବାର ଆସନ୍ତୁ– ଈଶ୍ୱରଙ୍କଠାରେ ପ୍ରାର୍ଥନା ।



# ଆମ ବେବିଭାଇନା

## [ ୰ଚୌଧୁରୀ ଡଃ ହେମକାନ୍ତ ମିଶ୍ରଙ୍କ ସ୍ମୃତିରେ ]

'ବେବି ନାଆଁଟି ଝିଅର ହୋଇଥାଏ ସଚରାଚର । ଗୋଟେ ପୁଅ ପାଇଁ ଏଇ ନାଆଁ କ'ଣ ଠିକ୍ ହେବ ? ଅବଶ୍ୟ ଇଂରାଜୀରେ ଏହି ଶବ୍ଦ ଲିଙ୍ଗବାଚକ ନୁହଁ । କିନ୍ତୁ ଆମ ଓଡ଼ିଆ 'ବେବି' ପ୍ରାୟ ଝିଅ ନାମକୁ ରଖିଥାଉ । ହେଲେ, ତାଙ୍କର ଗେହ୍ଲା ନାଆଁଟି ବେବି ଯଦିଓ ନିଜସ୍ୱ ନାମଟି ଚୌଧୁରୀ ହେମକାନ୍ତ ମିଶ୍ର । ସବା ବଡ଼ଭାଇ ରମାନାଥ, ମଝିଆଁ ଭାଇ ଉମାକାନ୍ତ । ପିତାଙ୍କ ନାମ ଚୌଧୁରୀ ରାଧାନାଥ ମିଶ୍ର, ସେ ହେଉଛନ୍ତି ମୋର ପିତା ଚକ୍ରଧର ଶତପଥୀଙ୍କର ପିଉସୀ ପୁଅ ଭାଇ । ପ୍ରଜନ୍ମ ବିତିଗଲାଣି । ମୋର ଏକମାତ୍ର ଭାଇର ଜନ୍ମକାଳକୁ ମୋ ବୋଉ ଆସି ଦଦେଇ ଚୌଧୁରୀ ରାଧାନାଥ ମିଶ୍ରଙ୍କ କଟକ ଘରେ ରହିଥିଲା । ବାପା ଥିଲେ କୋରାପୁଟରେ ଡାକ୍ତର । ସତ୍ୟଭାମାପୁରକୁ ମୋ ବାପା ଯେ ପାଳିତପୁତ୍ର ହୋଇ ଆସିଥିଲେ, ନିଜ ମଉସାଙ୍କ ଘରକୁ, ସେଇ ପାଳକପିତା ଦିବାକର ଶତପଥୀଙ୍କ ଭଉଣୀ ଗୋଦାବରୀ ଦେବୀ ହେମକାନ୍ତଙ୍କ ଜେଜେମାଆ । ତେଣୁ ଗ୍ରନ୍ଥିଟି ଗହନ, ତେବେ ସେ ଯୁଗରେ ବେଶ୍ ଦୃଢ଼ ଥିଲା, ମୁଁ ଏତେ ବେଶି ଗୌରଚନ୍ଦ୍ରିକା ଦେଲି । କାରଣ, 'ବେବିଭାଇନା' ବହୁ ପିଲାଦିନରୁ ମୋର ପରିଚିତ । ପରେ ସେ ଜଣେ ବିଶିଷ୍ଟ ଲେଖକ ଚୌଧୁରୀ ହେମକାନ୍ତ ବୋଲି ଚିହ୍ନିଲି ।

ମୋତେ ୮/୯ ବର୍ଷ ହୋଇଥିବ, ବେବିଭାଇନା ଆମ ଘରକୁ ଆସିଥିଲେ । ବେଶ୍ ସୁସ୍ଥ, ଦୀର୍ଘକାୟ, ଗୌରବର୍ଣ୍ଣର ତରୁଣ । ଜମିଦାର ଘର ଗେହ୍ଲାପୁଅ - ଧନଧାନ୍ୟରେ ପରିପୂର୍ଣ୍ଣ ଓ ମର୍ଯ୍ୟାଦାରେ କାହିଁ ଉଚ୍ଚରେ ରାଧାନାଥ ଦଦେଇଙ୍କ ସ୍ଥିତି । ସେତେବେଳକୁ ଭେଡ଼ାରୁ ସେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥାନ୍ତି । କୋଉ ଦଳରୁ ମୋର ମନେ ନାହିଁ । ତାଙ୍କ ପୁଅମାନେ ପ୍ରଚାରରେ ଲାଗିଥାନ୍ତି । ଭେଡ଼ା ଗ୍ରାମରେ ଏହି ପରିବାରଟି ବେଶ୍ ସମୃଦ୍ଧ ଓ ଓଡ଼ିଶା ପ୍ରସିଦ୍ଧ । 'ଭେଡ଼ା ଚୌଧୁରୀ' କହିଲେ ଲୋକେ ବୁଝିଯାଆନ୍ତି- ଏକଥା ପିଲାଦିନରୁ ଶୁଣିଛି । 'ବେବିଭାଇନା' ଆସିଥିଲେ, ମୋ ବୋଉକୁ ଦେଖାକରି ଗଲେ । ମୋତେ କ'ଣ ପଦେ ଅଧେ ପଚାରିଥିଲେ ଆଉ ମନେ ନାହିଁ । ତେବେ ଏହା ମଧ୍ୟରେ ତାଙ୍କର ପରିବାରର ନିକଟତର ହୁଏ ମୁଁ, କଟକର ପିଠାପୁରରେ ଭଡ଼ାଘରେ ରହୁଥିଲାବେଳେ । ମୋର ବିବାହ ସରିଥାଏ । ସେହି ପିଠାପୁରରେ ନିଜ ଘରେ ରହୁଥାନ୍ତି ତାଙ୍କ ଭାଇ ଉମାକାନ୍ତ ଭାଇନା ।

ସେହି ଘରକୁ ଥରେ ଆସିଥିଲେ ବେବିଭାଇନା, ତାଙ୍କ ପତ୍ନୀ ଜ୍ୟୋତ୍ସ୍ନାଭାଉଜ ଓ ଶିଶୁକନ୍ୟା 'ସାହାନା' । ଉମାଭାଇନାଙ୍କ ସ୍ତ୍ରୀ ତିଳୋତ୍ତମା ଭାଉଜ ମୋତେ ଭଲ ପାଆନ୍ତି ଓ ମୁଁ ସମୟ ମିଳିଲେ ପ୍ରାୟ ତାଙ୍କ ଘରକୁ ଯାଏ । କବିତା ଅଳ୍ପ ଅଳ୍ପ ଲେଖୁଥାଏ । ବେବିଭାଇନା ଲେଖକ ବୋଲି ଶୁଣିଥାଏ । ପ୍ରାୟ ତାଙ୍କ ଲେଖା କିଛି ବି ପଢ଼ି ନ ଥାଏ । କିନ୍ତୁ ତାଙ୍କ କଥାବାର୍ତ୍ତାରୁ ଉନ୍ନତ ରୁଚି ଓ ସାହିତ୍ୟିକ ସ୍ୱାଭିମାନ ବାରି ହୋଇପଡ଼େ ।

ଥରେ କଲିକତାଠାରେ ଗୋଟିଏ ସାହିତ୍ୟ ସଭା, କବି ସମ୍ମିଳନୀକୁ ମୁଁ ଯାଇଥାଏ । ସଭାସ୍ଥଳ ବାହାରେ ବେବିଭାଇନା କେତେକଙ୍କ ସହିତ ଗପ କରୁଥାଆନ୍ତି । ମୁଁ ଗାଡ଼ିରୁ ଓହ୍ଲାଇଲା ପରେ ତାଙ୍କୁ ନମସ୍କାର କଲି । ସେ ମୋ ପାଖକୁ ଚାଲିଆସି ସ୍ୱଭାବସୁଲଭ ହସ ହସି କହିଲେ, 'ଆଲୋ, ତୋର ସିନ୍ଦୂର ନେସି ହୋଇଯାଇଚି । ଶୀଘ୍ର ସଜାଡ଼ି ଦେ । ବଙ୍ଗାଳୁଣୀମାନେ ଦେଖିଲେ କହିବେ ଏଇ ଓଡ଼ିଆଣୀଗୁଡ଼ା ଆଲୁରି, ସିନ୍ଦୂର ଲଗାଇ ଜାଣନ୍ତି ନାହିଁ ।' କହିବା ପ୍ରାସଙ୍ଗିକ ଯେ, ସେ ବଙ୍ଗାଳୀ ଭଦ୍ରମହିଳାଙ୍କୁ ବିବାହ କରିଥିଲେ । ଘଟଣାକ୍ରମେ ବିଶେଷ ଓଡ଼ିଶାକୁ ଆସିପାରୁ ନ ଥିଲେ । ଓଡ଼ିଶା ବାହାରେ ନିଜ ବୃତ୍ତିରେ ରହିଥିଲେ । ମୁଁ ଯେ ସିନ୍ଦୂର ନେସି ସଭାସ୍ଥଳକୁ ଯାଉଥିଲି, ମୁଁ ପ୍ରକୃତରେ ଆଲୁରି । ସେତେବେଳେ ବିନ୍ଦି ପ୍ୟାକେଟ୍‌ର ପ୍ରଚଳନ ନ ଥିଲା । ସିନ୍ଦୂର ପିନ୍ଧିବି ଏବଂ ୧୦ଥର ମୁହଁ ପୋଛିବି । ଯାହା ହବା କଥା । ତେବେ, ଜଣେ ବଙ୍ଗାଳୁଣୀ ହିଁ ମୋ କପାଳରେ ସିନ୍ଦୂରକୁ ସଜାଡ଼ି ଦେଇଥିଲେ ।

ଭାଇନା କେତେ ଥର ଆମ ଘରକୁ ବାଣୀବିହାର ଆସିଛନ୍ତି । କଥାକଥାକେ ଥଟ୍ଟାମଜା । ସାହିତ୍ୟ ଓ ପୁରସ୍କାର କଥା ପକେଇ ସେ କହନ୍ତି-ଆମର ଲେଖକମାନେ ତ ମୁହଁ ଶୁଖାଇ କହିବେ, 'ମୋର ହେଲା ନାଇଁ', ନ ହେଲେ 'ମତେ ଦେଲେ ନାଇଁ' । ଦେ, ହସ ଚାଲିବ ଯେ କହନା । ଥରେ ତାଙ୍କ ଭେଡ଼ା ଗାଁର ଗୋଟେ ମଧ୍ୟବୟସ୍କା ସ୍ତ୍ରୀଲୋକ ପ୍ରଥମେ କଲିକତା ଗଲା, ତା' ପୁଅ ପାଖକୁ । ସାଙ୍ଗରେ ତା' ସ୍ୱାମୀ ମଧ୍ୟ ଯାଇଥିଲା । ସେ କାଳେ କହୁଥିଲା (ବେବିଭାଇନା ଶୁଣିଛନ୍ତି) 'ମୁଁ ଯେମିତି କରି ହାବୁଡ଼ାରେ ଓହ୍ଲେଇଚି, ମୋ କାନେରେ ତ ଗୋଟା ଭାଁ ପଶିଗଲା ।' ବେବିଭାଇନା କାନରେ ଗୋଟେ ପାପୁଲି ଚାପିଥିବେ । ହସି ହସି ବେଦମ୍ ହଉ ଆମେ । ସେ ନିଜେ ବି ହସି ହସି କହୁଥାନ୍ତି । ମୋ ଭାଇ ଯେବେ ଦିଲ୍ଲୀରେ ଚାକିରି କରୁଥିଲେ, ବରାବର ତାଙ୍କ ସହ ଯିବାଆସିବା ଥିଲା । କଲେଜର ପ୍ରଥମ ବର୍ଷ ହିଁ ତାଙ୍କର ଲେଖାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ହେବାକୁ ଲାଗିଲା । ସେ ରଚନାଗୁଡ଼ିକର ସାବଲୀଳତା, ଭାଷାଚାତୁରୀ ତଥା ସରସ ବ୍ୟଞ୍ଜନା ସେତେବେଳେ ଖୁବ୍ ଆଦୃତ ହୋଇଥିଲା । ସମ୍ପାଦକମାନେ ତାଙ୍କଠାରୁ ଲେଖାମାନ ପାଇବାପାଇଁ କେତେ ଅଳି ଅର୍ଦ୍ଦଳି ଓ କଟାଳ କରୁଥିଲେ । କଟକରେ ଥିଲାବେଳେ ସେ 'ତରଙ୍ଗ' ନାମକ ପତ୍ରିକାର ସମ୍ପାଦନା ମଧ୍ୟ କରୁଥିଲେ । ଛାତ୍ରଛାତ୍ରୀଙ୍କ ଅନୁରୋଧରେ ଏକାଙ୍କିକା କିଛି ଲେଖିଛନ୍ତି ।

ଏବେ, ତାଙ୍କ ସ୍ମୃତିଚାରଣରେ ନାଟ୍ୟକାର ଡାକ୍ତର ବିଜୟ କୁମାର ନନ୍ଦ ଲେଖିଥିଲେ ଯେ 'ବେବିଭାଇନା' କାଳେ ଖୁବ୍ ଭଲ ବଂଶୀ ବଜାଉଥିଲେ । ଛାତ୍ରାବସ୍ଥାରେ ବଂଶୀ ବଜାଇ ସେ ମନ ମୋହିପାରୁଥିଲେ । ଓଡ଼ିଶାଠାରୁ ଦୂରରେ ରହିବା ସତ୍ତ୍ୱେ ବହୁ ଉପାଦେୟ, ଆକର୍ଷଣୀୟ, ମନନଶୀଳ ସୃଜନରେ ସେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ତାଙ୍କ ପ୍ରକାଶିତ ରଚନା ମଧ୍ୟରେ 'ଭଲ୍ଲୁକର ପୂରାପ୍ୟାଣ୍ଟ୍ ଓ ଅନ୍ୟାନ୍ୟ ମଜାଗଳ୍ପ', 'ତେରେଛା ଗପ', 'କୁରୁଳିଆ ଗଳ୍ପ', 'ଅଘଟଣ', 'ହେମକାନ୍ତଙ୍କ ହସଗୋଲା', 'ହେମକାନ୍ତଙ୍କ ଶ୍ରେଷ୍ଠ ଗଳ୍ପ' ବିଶେଷଭାବେ ଉଲ୍ଲେଖନୀୟ । ଅନୁବାଦରେ ତାଙ୍କର ଅସାମାନ୍ୟ କୃତିତ୍ୱ, ପ୍ରକଟ କରେ ଉପନ୍ୟାସ 'ତାସ୍‌ଘର', 'କବି', 'ବାରବୁଲା ଦେବଦୂତ' ଓ "କନ୍ନଡ଼ କଥାମାଳା', 'ତାମିଲ୍ କଥାମାଳା', ଜୀବନୀ ମଧ୍ୟ ଲେଖିଛନ୍ତି 'ହାସ୍ୟସମ୍ରାଟ୍ ଫତୁରାନନ୍ଦ'ଙ୍କର ।

ମୁଁ ତାଙ୍କର ଗଳ୍ପ କିଛି ପଢ଼ିଥିଲି । କିନ୍ତୁ ପ୍ରଥମେ ମୁଗ୍ଧ ହେଲି, ଯେବେ ପଢ଼ିଲି ତାଙ୍କର ଅନୁବାଦ ପୁସ୍ତକ 'କବି' । ଜାତୀୟ ପୁସ୍ତକନ୍ୟାସ କର୍ତ୍ତୃକ ପ୍ରକାଶିତ ସେହି ଉପନ୍ୟାସଟି ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କର । ଅନୁବାଦକଙ୍କର ଭାଷା ଗଭୀର ଓ ଗମ୍ଭୀର, ଶୈଳୀ ଓ ଠାଣି ଖୁବ୍ ବିଶିଷ୍ଟ । ତାଙ୍କ ଭାଷା ଆଜିକାର ଲେଖକଙ୍କର ରଚନାରେ କଦବା କ୍ୱଚିତ୍ ମିଳୁଛି । ସେଇ ଅନୁବାଦର ଗୀତଟି ତାଙ୍କର "କଳା ଯେବେ ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ? କଳା କେଶେ ଦେଖିଛ କି ରଙ୍ଗଫୁଲ କିମିଆଁ-" ପୁଣି ଏବେ 'ବାରବୁଲା ଦେବଦୂତ' । ମୌଳିକ ସୃଜନ ଓ ସୃଜନାତ୍ମକ ଅନୁବାଦ ଉଭୟରେ ଲେଖକ ହେମକାନ୍ତଙ୍କର ଅସାଧାରଣ ଦକ୍ଷତା ଦେଖିବାକୁ ମିଳେ । ତାଙ୍କ ଲେଖାର ପାଠକ ନିଶ୍ଚୟ ତାଙ୍କୁ ମନେ ରଖିବ । କେନ୍ଦ୍ର ସାହିତ୍ୟ ଏକାଡେମୀର ଅନୁବାଦ ପୁରସ୍କାର ତାଙ୍କ ପୁସ୍ତକକୁ ପ୍ରାପ୍ତ ହୋଇଛି ଶୁଣି ଆନନ୍ଦ ବିଭୋର ହୋଇଯାଇଥିଲି ମୁଁ । ସେ ବାଙ୍ଗାଲୋର୍‌ରେ ରହିବା, ଅସୁସ୍ଥ ହୋଇ ପଡ଼ିବା ଖବର ମୁଁ ରଖିଥିଲି । ତାଙ୍କ ଅସୁସ୍ଥତା ମତେ ଆଘାତ ଦେଇଥିଲା । କାରଣ, ମୁଁ ତାଙ୍କୁ ଶେଷଥର ଦେଖିଥିଲି ଦିଲ୍ଲୀରେ, ୨୦୦୨ ଫେବୃଆରୀରେ- ଯେତେବେଳେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଉତ୍ସବ ଅନୁଷ୍ଠିତ ହେଉଥାଏ । ଉତ୍ସବର ଅବ୍ୟବହିତ ପୂର୍ବରୁ ଥାଏ ବନ୍ଧୁମିଳନ । ସେଠାକୁ ପଶିଗଲା ବେଳକୁ ମୁଁ, ଆଖିରେ ପଡ଼ନ୍ତି ବେବିଭାଇନା । ସେ ଅବଶ୍ୟ ପ୍ରବେଶଦ୍ୱାରକୁ ପିଠି କରି ଠିଆ ହୋଇ କାହା ସହ କଥା ହେଉଥାନ୍ତି । ବାଳ କମିଯାଇଥାଏ ମୁଣ୍ଡରେ, କିଛିଟା କେଶ ପାଚିଥାଏ । ସ୍ୱାସ୍ଥ୍ୟ କିଛିଟା କମି ଆସିଥାଏ । ପୂର୍ବର ସେହି ବିଶାଳ ମୁଣ୍ଡ ଓ ମୁହଁ ଶୁଖି ଆସିଥାଏ । ମୋତେ ଦେଖି ଖୁସି ହେଲେ ଓ କହିଲେ "ମୁଁ ଆଜିକାଲି ସାହିତ୍ୟ ଆସରକୁ ପ୍ରାୟ ଯାଏ ନାହିଁ । ଆଜି ମୋତେ ଏଠି ଦେଖି ମୋର ବନ୍ଧୁମାନେ ସେଇକଥା ପଚାରୁଛନ୍ତି- କେମିତି ଆଜି ମୁଁ ଏଇଠି ? ଆରେ, ଆଉ କୋଉଠିକୁ ଆସୁ ନାହିଁ ସିନା, ମୋ ଭଉଣୀଟା ପୁରସ୍କାର ପାଇଛି, ମୁଁ ନ ଆସନ୍ତି କେମିତି ।" ପୁଣି ସେଇ ପୂର୍ବ ପରିଚିତ ହସ । ସେଇ ଦେଖାର ପ୍ରାୟ ବର୍ଷକ ପରେ ଶୁଣେ ତାଙ୍କ ଅସୁସ୍ଥତା ଓ ଏବେ ତାଙ୍କର ମୃତ୍ୟୁବାର୍ତ୍ତା ।

ଭାଇନା ଚଞ୍ଚଳ ଚାଲିଗଲେ । ଅବଶ୍ୟ ଅସୁସ୍ଥତା ଭୋଗି ଆଉ କାହିଁକି ବା ରହିଥାନ୍ତେ ? ତାଙ୍କର ଦୁଇ ଜଣ ବଡ଼ଭାଇ ନିଶ୍ଚେ ଝୁରି ହେଉଥିବେ – ଜଣେ ଭେଡ଼ାରେ, ଜଣେ ଭୁବନେଶ୍ୱରରେ । ସବା ବଡ଼ଭାଇ ରମୁ ଭାଇନା (ଚୌଧୁରୀ ରମାନାଥ ମିଶ୍ର) ଆମକୁ ବହୁତ ଶ୍ରଦ୍ଧା କରନ୍ତି । ମୋ ଭାଇକୁ, ମୋତେ, ମୋ ସ୍ୱାମୀଙ୍କୁ କେତେଥର କଟକରୁ ସତ୍ୟଭାମାପୁରକୁ ତାଙ୍କ କାର୍‌ରେ ନିଆଆଣା କରିଛନ୍ତି । ତାଙ୍କର ଥାଏ ଆମ୍ବାସାଡର୍ କାର୍, ନିଜେ ଡ୍ରାଇଭ୍ କରନ୍ତି । କେତେଥର ଯେ ମୋତେ ନିମନ୍ତ୍ରଣ କରିଛନ୍ତି । ତାଙ୍କ ଘରକୁ, ତାଙ୍କର ୧୮/୨୦ ବଖରା ଘର । ସବୁ ବଖରାର ନିର୍ଦ୍ଦିଷ୍ଟ ନମ୍ବର ଥାଏ । ମୁଁ ଯାଇପାରି ନାହିଁ । ପସ୍ତେଇଚି ଯଦିଓ । ସ୍ନେହ ଶ୍ରଦ୍ଧାକୁ ଗ୍ରହଣ କଲାଭଳି ଯୋଗ୍ୟତା ସମସ୍ତଙ୍କର ଥିଲେ ତ !

ଭାଇନାଙ୍କ ପୁସ୍ତକ 'ଭଲ୍ଲୁକର ପୂରାପ୍ୟାଣ୍ଟ୍ ଓ ଅନ୍ୟାନ୍ୟ ମଜାଗଳ୍ପ', 'କୁରୁଳିଆଗପ' ଇତ୍ୟାଦି ହାସ୍ୟମୁଖର ହେଲେ ମଧ୍ୟ, ଏଥିରେ ନିହିତ ଥାଏ ଏକ ଗଭୀର ସାମାଜିକ ତାତ୍ପର୍ଯ୍ୟ । ସେ ଅନେକ ସାର୍ଥକ ରୂପକ ଗଳ୍ପ ରଚନା କରିଛନ୍ତି । ପ୍ରାୟ ସମୟ ଓଡ଼ିଶା ବାହାରେ ରହୁଥିବାରୁ ସେ ନିଜେ ସଶରୀର ଆମର ପାଠକମାନଙ୍କର ନିକଟବର୍ତ୍ତୀ ହୋଇପାରି ନାହାନ୍ତି । କିନ୍ତୁ ତାଙ୍କ ସୃଜନଶୀଳତା ଆମ ଆତ୍ମଚେତନାରେ ଉଜ୍ଜୀବିତ ରହିଛି । ଭାଇନାଙ୍କ ପବିତ୍ର ସ୍ମୃତି ପ୍ରତି ମୋର ଭକ୍ତିପୂତ ପ୍ରଣାମ ଜଣାଉଛି ।

# ସରଳ ସାଧକଙ୍କୁ ବିଦାୟ

## [ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ସ୍ମୃତିରେ ]

'ଜୀବନ ଅତି ସରଳ - ଆମେ ତାକୁ ଜଟିଳ କରି ପକାଉଛୁ । ସରଳ ଜୀବନ ବଞ୍ଚିବା କଷ୍ଟକର... ।' ସେହି କଷ୍ଟକର ଜୀବନର ସାଧକ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କର ପ୍ରୟାଣ ଘଟିଲା । ତାଙ୍କ ବିଷୟରେ ବେଶ୍ ଦୀର୍ଘ ହୋଇଯିବ ଲେଖିଲେ । ଯଦିଓ ଗୋଟିଏ ଫ୍ଲାଟ୍‌ରେ ବାଣୀବିହାର କ୍ୟାମ୍ପସ୍‌ରେ ଆମେ ରହୁଥିଲୁ, ଉପର ମହଲାରେ ଆମେ – ତଳ ମହଲାରେ ପ୍ରଫେସର ମିଶ୍ରଙ୍କ ପରିବାର, କିନ୍ତୁ ମୁଁ ତାଙ୍କ ସହ ପ୍ରାୟ କଥାବାର୍ତ୍ତା କରେ ନାହିଁ । ତା' ପୂର୍ବରୁ ପଢ଼ିଥିଲି ତାଙ୍କ ଦ୍ୱାରା ଅନୂଦିତ 'ଜାହାନ୍ନାରା ଆତ୍ମକାହାଣୀ', ମୁଗ୍ଧ ହୋଇଥିଲି । ସେ ବହିଟି କାହିଁକି ଆଉଥରେ ଛପା ହେଉ ନାହିଁ । ନିକଟ ଅତୀତରେ ତାଙ୍କର କେତେଗୁଡ଼ିଏ ପୁସ୍ତକ ପ୍ରକାଶ ପାଇଛି, ସବୁଗୁଡ଼ିକ ବଡ଼ ଆକର୍ଷଣୀୟ । ସେ ପ୍ରଫେସର ଲାଇନ୍‌ରେ ଘର ପାଇଲେ ଓ ତାଙ୍କ ବଗିଚାରେ ରୀତିମତ ସାହିତ୍ୟ ଆସର ଚାଲିଥିଲା । ସେହି ଆସରରେ ମୁଁ କେତେଥର ଯୋଗଦେଇଛି । ତାଙ୍କ ଦ୍ୱାରା 'ସତୀର୍ଥ' ଓ ମୋର ସମ୍ପାଦନାର 'ଉଦ୍‌ଭାସ' ଆମେ ବରାବର ପରସ୍ପରକୁ ଦେଇଛୁ ।

ଗଣେଶ୍ୱରବାବୁଙ୍କ ସଂରଚନାଗୁଡ଼ିକୁ ମୁଁ ଭଲ ପାଏ ଏବଂ ସେ ମୋର ଗଦ୍ୟରଚନା, ପ୍ରବନ୍ଧ, ଫିଚର୍‌କୁ ପସନ୍ଦ କରିବା ମୁଁ ଜାଣେ । ସେ ନିଜେ ମୋତେ ନ କହିଲେ ବି ମୁଁ ପରୋକ୍ଷ ଭାବେ ଶୁଣିବାକୁ ପାଏ । (୧୯୯୫-୯୬ରେ ମୋର ୨ ଜଣ ଲେଖକ, ଲେଖିକା ବନ୍ଧୁ, ବିଭିନ୍ନ ସମୟରେ ବାଣୀବିହାର ଆସିଥିଲେ । ଜଣେ ପ୍ରଫେସର ବିଜୟ ବାହାଦୁର ସିଂହ (ପୂର୍ବତନ ଭାରତୀୟ ଭାଷା ପରିଷଦର ନିର୍ଦ୍ଦେଶକ) ଅନ୍ୟ ଜଣକ ବାଙ୍ଗାଲୋର୍‌ର କବି ଡଃ ବିଜୟା ଡାବ୍‌ବେ । ମୁଁ ଗଣେଶ୍ୱର ସାର୍‌ଙ୍କୁ କହିଥିଲି- 'ଏମାନଙ୍କପାଇଁ ଆପଣଙ୍କ ଇଂରାଜୀ ବିଭାଗ ହଲ୍‌ରେ ଗୋଟିଏ ବନ୍ଧୁମିଳନ କରନ୍ତେ ନାହିଁ ?" ସେ ତତ୍‌କ୍ଷଣାତ୍ ରାଜି ହେଲେ ଓ ୨ଥରଯାକ ନିର୍ଦ୍ଧାରିତ ସମୟରେ ସାହିତ୍ୟ ଆସର ଅନୁଷ୍ଠିତ ହୋଇଥିଲା । କେତେକ ପ୍ରଫେସର, ଲେଖକ, ଛାତ୍ରଛାତ୍ରୀ ଯୋଗ ଦେଇଥିଲେ । ମୋର ୩ ଗୋଟି କବିତା ଗଣେଶ୍ୱରବାବୁ ଅନୁବାଦ କରିଥିଲେ ନିଜ ଇଚ୍ଛାରେ, ଛପାଇଥିଲେ ମଧ୍ୟ । ମୁଁ ତାଙ୍କର ଖୁବ୍ ସଫଳ କବିତା 'ମାଣିକ ଗଉଡୁଣୀ'କୁ 'ଉଦ୍‌ଭାସ' ପତ୍ରିକାରେ ୨ୟ ବାର ପ୍ରକାଶ କରିଥିଲି- ଏହା ପ୍ରଥମ ଥର 'ଝଙ୍କାର'ରେ ପ୍ରକାଶ ପାଇଥିଲା । ସାହିତ୍ୟର

ଯେଉଁ ବିଭାଗରେ ସେ ହାତ ଦେଇଛନ୍ତି, ସେଠୁ ଝରିଆସିଛି ଅମୃତ । ପିଲାଦିନୁ ଓଡ଼ିଆ ସାହିତ୍ୟ ପ୍ରତି ଅନୁରକ୍ତ ଅଥଚ ପ୍ରଚାରବିମୁଖ ଲେଖକ କେତେ ଜଣ ବା ଅଛନ୍ତି ? ଇଂରାଜୀ ଓ ଓଡ଼ିଆ ଉଭୟ ଭାଷାରେ ସର୍ଜନଶୀଳ ଓ ଧୁରୀଣ ବ୍ୟକ୍ତି କେତେ ଜଣ ବା ଥିବେ ! ଆଜି ମୁଁ ଅନୁଭବ କରୁଛି, ଜଣେ ସରଳ, ସତ୍ ମଣିଷ ତଥା ସାହିତ୍ୟିକଙ୍କ ବିୟୋଗରେ ଆମ ଓଡ଼ିଆ ସାହିତ୍ୟ ଦରିଦ୍ର ହୋଇଗଲା ।

ନିଜ ଦ୍ୱିତଳପ୍ରାସାଦର ଉପର ମହଲାଟିରେ ସାହିତ୍ୟ ଆସର ପାଇଁ ଉପଯୁକ୍ତ ସ୍ଥାନଟିଏ ନିର୍ମାଣି ଥିଲେ । ତା' ଆଉ କେତେଦିନ ବା ଘଟିପାରିଲା ? ଥରେ ସେଠାରେ ଆମେ ଲେଖକ ଲେଖିକା ଏକତ୍ରିତ ହୋଇଥିଲୁ । ବିଶିଷ୍ଟ କବି ଜଗନ୍ନାଥ ପ୍ରସାଦଙ୍କ କବିତା ସଂକଳନର ଉନ୍ମୋଚନ ଉତ୍ସବରେ । 'ପ୍ରମେୟ'ର ସମ୍ପାଦନା କାଳରେ 'ଅମଡ଼ାବାଟ'ର ଲେଖିକା ୰ବସନ୍ତ କୁମାରୀଙ୍କୁ ଶ୍ରଦ୍ଧାଞ୍ଜଳି ପ୍ରଦାନ ନିମିତ୍ତ ଲେଖାଟିଏ ପଠାଇଥିଲି । ସେହି ସଂକ୍ରାନ୍ତରେ କଥା ହେଉ ହେଉ ସେ କହିଲେ, "ମୁଁ ଆଜୀବନ ଔଷଧ ସେବନ କରି ନାହିଁ । ଆଦୌ ନୁହେଁ ।" ମୁଁ ଆଶ୍ଚର୍ଯ୍ୟ ହେଲି । ଔଷଧ-ଲାଳିତ ମୋ ପରି ଏଇ ଆୟୁଷ ଭୋଗୁଥିବା ଲୋକଟେ ଆଶ୍ଚର୍ଯ୍ୟ ହବା କଥା । ଠିକ୍ ଅଳ୍ପଦିନ ପରେ ତାଙ୍କ ଅସୁସ୍ଥତାର ଖବର ପାଇଲି । ବୋହୂ ପ୍ରାଚୀକୁ କଦବା ପଚାରିଥାଏ । ରୋଗ ଚିହ୍ନଟ ହେଲା ଦିନୁ ପ୍ରତିଦିନ ମୁଁ ତାଙ୍କ ଆରୋଗ୍ୟ ପାଇଁ ପ୍ରାର୍ଥନା କରୁଥିଲି । ପୂର୍ବେ 'ଧରିତ୍ରୀ'ରୁ ହୃଷୀକେଶଙ୍କ ସମ୍ପାଦିତ 'ସାମୁଦ୍ରିକ' ଉପନ୍ୟାସ ସମ୍ପର୍କରେ ପଢ଼ିଲି । କଥା ହେବାକୁ ଇଚ୍ଛା ହେଲା । ବି.ଏ. ପଢ଼ିଲା ବେଳକୁ ଏଡ଼େ ଶକ୍ତିଶାଳୀ ମନମତାଣିଆ ଉପନ୍ୟାସ ତାଙ୍କର । କହିଲି, "ସାର୍, ବେଶି ଲେଖିବା ତ ଆଉ ସମ୍ଭବ ନୁହଁ । ତଥାପି ଗୋଟେ ଗୋଟେ ଛୋଟ ପାରାଗ୍ରାଫ୍ ଲେଖିପାରନ୍ତେ ତ ।" ଖୁବ୍ ସ୍ଥିର, ଅବିଚଳିତ ସ୍ୱରରେ ସେ କହିଲେ, "ଏଠି ସେଠି ତ ହଉଚି, ଯେ ଅବସ୍ଥାରେ ଲେଖିବା ଆଉ କ'ଣ ?" ଅଥଚ, ଶୁଣିଲି, ସେତେବେଳକୁ ସେ ଖୁବ୍ ଯନ୍ତ୍ରଣା ଭୋଗୁଥାଆନ୍ତି । କେମିତି ବା ଜାଣିବି - ଚିକିତ୍ସାରେ କେହି କେହି ତ ରହିଯାଆନ୍ତି ଅଧିକ କାଳ । କହିଲି, 'ମୋର ହିନ୍ଦୀ ବହି କଥା, ଡଃ ନାମୱର୍ ସିଂଜୀଙ୍କ କଥା ।' ସେ ଉତ୍ତର ଦେଲେ - "ନାମୱର୍ ସିଂ ଜଣେ ବିଶିଷ୍ଟ ବ୍ୟକ୍ତି- ଏକମାତ୍ର ସେ ହିଁ ନିଜ ରଚନା ବା ବକ୍ତବ୍ୟରେ ଗୋଟିଏ ହେଲେ ଇଂରାଜୀ କି ଅନ୍ୟ ଭାଷାର ଶବ୍ଦ ବ୍ୟବହାର କରନ୍ତି ନାହିଁ । କେବଳ ବିଶୁଦ୍ଧ ହିନ୍ଦୀ ।" କିଏ ଜାଣିଥିଲା, ଏଡ଼େ ବିଚାରବନ୍ତ ଭାବେ କଥା କହୁଥିବା ସାହିତ୍ୟ ରଥୀଟି ଯେ ଯନ୍ତ୍ରଣାଦଗ୍ଧ ହେଉଥିବ ଓ ଅକସ୍ମାତ୍ ବାହୁଡ଼ିଯିବ ।

କେତେ ସ୍ମୃତି ରହିଚି - ବିଶେଷକରି ତାଙ୍କ ପତ୍ନୀ ସୁରଙ୍ଗିଣୀଙ୍କଠାରୁ ଶୁଣାକଥା । ଆମେ ରମାଦେବୀ କଲେଜରେ ଏକାଠି ଥାଉ । ଯିବା ଆସିବା ବେଳରେ ସେ ବହୁତ ଗପନ୍ତି । ଗପର ମୂଳଉତ୍ସ ତାଙ୍କ ସ୍ୱାମୀ । ଅବଶ୍ୟ, ସେ ପାରିବାରିକ ବ୍ୟକ୍ତିଗତ କଥାରେ କ୍ରୋଧ ନ ଥାଏ, ଥାଏ କେବେକେବେ ଶ୍ରଦ୍ଧା "ନିଜ ପୈତୃକ ଗ୍ରାମକୁ ଗଣେଶ୍ୱରବାବୁ

ଗଲାବେଳେ ତାଙ୍କ ସ୍ତ୍ରୀ କହିଥାନ୍ତି, କିଛି ନଡ଼ିଆ, ଚାଉଳ ପ୍ରଭୃତି ଆଣିବାପାଇଁ । ବାପାଙ୍କ ଭାଗ ତ !" କକେଇ ଖୁଡ଼ୀ ତାଙ୍କୁ 'ଆମ ଗଣିଆଁଟା ଭଲ ପିଲା' କହି ପଖାଳ କଂସାଏ ବାଢ଼ି ଦିଅନ୍ତି । ତା'ପରେ ତ ସେ ଖାଲି ହାତରେ ସହରକୁ ଫେରିଆସନ୍ତି ।

ଓଡ଼ିଶାରେ କେତେ ଜାତିର ଶାଗ, ସେଗୁଡ଼ିକ ସମ୍ପର୍କରେ ଭାବିହବାକୁ ଭଲା ଆଉ କିଏ ରହିଲା ? ସକଳ ଜ୍ଞାନ-ଗରିମା, ସର୍ଜନଶୀଳ ଉତ୍କର୍ଷ ସହ ସରଳ ଜୀବନଟିଏ ବଞ୍ଚି ଆମରି ଆଗରେ ବିଦାୟ ନେଲେ ଗଣେଶ୍ୱରବାବୁ । ଦୁର୍ଭାଗ୍ୟ, ମୁଁ, ତାଙ୍କ ଶବାଧାର ଦର୍ଶନ କରିପାରିଲି ନାହିଁ । ବିଳମ୍ବରେ ଜାଣିଲି, ଗଲାବେଳକୁ ଶବାଧାର ଭୁବନେଶ୍ୱର ଅତିକ୍ରମ କରିଯିବା ଉପରେ । ଅଗତ୍ୟା ନେଇଥିବା ଫୁଲମାଳଟି ତାଙ୍କ ଫଟୋରେ ଅର୍ପଣ କଲୁ ଓ ତାଙ୍କ ଫଟୋକୁ ପ୍ରଣାମ ଜଣାଇଲୁ ମୁଁ ଓ ମୋର ସାନଝିଅ ଇପ୍‌ସିତା । ସୁରଙ୍ଗିଣୀଙ୍କୁ ସାକ୍ଷାତ କଲୁ । ଏକଦା ଅତୀବ ସୁନ୍ଦରୀ, ସୁଛାତ୍ରୀ ସେ ଏବେ ଶଯ୍ୟାଶାୟିନୀ । ଈଶ୍ୱରଙ୍କ କୃପାରୁ, ପ୍ରଫେସର ମିଶ୍ରଙ୍କ ପତ୍ନୀ ଓ ସନ୍ତାନସନ୍ତତି ଧୈର୍ଯ୍ୟ ଧରି ରହିବେ ତ ନିଶ୍ଚୟ ।

ଗୁଣୀଜନମାନେ ଏମିତି ବୋଧେ ଚୁପ୍‌ଚାପ୍ ବାହୁଡ଼ି ଯାଆନ୍ତି । ଅଥଚ, ଦଇବ ତାଙ୍କୁ ଯନ୍ତ୍ରଣାରୁ ସାମାନ୍ୟ ରିହାତି ବି ଦିଏ ନାହିଁ । ତାଙ୍କ ପରି ସରଳ ଜୀବନ ସାଧକ ଆମ ମାଟିରେ ଅଧିକ ଅଧିକ ସଂଖ୍ୟାରେ ଜନ୍ମ ନିଅନ୍ତେ କି ! ତାଙ୍କର ସ୍ୱର୍ଗତ ଆତ୍ମା ପ୍ରତି ଭକ୍ତିପୁଷ୍ପ ଅର୍ପଣ କରୁଛି ।



# ବାଲେଶ୍ୱର-ସୀମାନ୍ତ ପ୍ରହରୀ

## [ କବି ବ୍ରଜନାଥ ରଥଙ୍କ ସ୍ମୃତିପ୍ରତି ଶ୍ରଦ୍ଧାସୁମନ ]

ଫେସ୍‌ବୁକ୍‌ରୁ ପାଇଲି, ତାଙ୍କ ଦେହାନ୍ତର ଖବର । କବି କୃଷ୍ଣକୁମାର ମହାନ୍ତି ଖବରଟିକୁ ରଖିଥିଲେ । ଫଟୋ ବି ଥିଲା । ମୁଁ ସେତେବେଳକୁ ଟେକ୍ସାସ୍‌ରେ । ପ୍ରାୟ ଚାରି ମାସ ତଳେ ତାଙ୍କ ଘରକୁ ଯାଇ ତାଙ୍କୁ ଭେଟିଥିଲି । ଜାନୁଆରୀରେ ବ୍ୟାସକବି ଫକିରମୋହନଙ୍କ ଜୟନ୍ତୀ ଅବସରରେ ମୁଁ କବିତା ଅଧିବେଶନର ସଭାପତି- ସକାଳେ ଥିବା ପ୍ରଥମ ଅଧିବେଶନଟି ମୁଁ ପହଞ୍ଚିଲା ବେଳକୁ ଶେଷ ହୋଇଯାଇଥାଏ । ମୋ ସହଯାତ୍ରୀ ଥିଲେ ଅତିଥି କବି ଶତ୍ରୁଘ୍ନ ପାଣ୍ଡବ । ସର୍କିଟ୍ ହାଉସ୍‌ରୁ ସଭାକକ୍ଷ । ଶୁଣିଥିଲି କବି ବ୍ରଜନାଥ ଗୁରୁତର ଅସୁସ୍ଥ । ଯେମିତି ହେଉ ତାଙ୍କୁ ସାକ୍ଷାତ କରିବାକୁ ନିଶ୍ଚିତ କରିଥିଲି । କିନ୍ତୁ, ସଭାସ୍ଥଳରେ ପହଞ୍ଚି ଜାଣିଲି, ସେ ପ୍ରଥମ ଅଧିବେଶନକୁ ଆସିଥିଲେ, ବୋଧେ ହ୍ୱିଲ୍‌ଚେୟାର୍‌ରେ । ଫେରିଯାଇଛନ୍ତି, ଆଉ ଯେ ଅଧିବେଶନକୁ ସେ ଆସିବେ ନାହିଁ । ତେଣୁ ତାଙ୍କ ଘରକୁ ତ ଯିବାକୁ ହେବ । କବିତା ଅଧିବେଶନ ସରିଲା, କବିତା-ପାଠ, ପୁସ୍ତକ ଉନ୍ମୋଚନ ଇତ୍ୟାଦି ତ ହେଲା । ମୁଁ ଟାକ୍ସିରେ ଯାଇଥିଲି । ମାତ୍ର ଡ୍ରାଇଭର୍ ବାଟ ଜାଣି ନ ଥିଲା । ଶୀତଋତୁ, ପ୍ରଲମ୍ବିତ ସନ୍ଧ୍ୟା । କବି ପ୍ରମିଳା ଶତପଥୀଙ୍କୁ କହିଲି, ସେଠାରେ ସେ କବିତା ପାଠ କରିଥିଲେ, ତାଙ୍କୁ ଜଣାଇଲି – କେମିତି ଯିବି ? ସେ ତତ୍‌କ୍ଷଣାତ୍ ନିଜ ଗାଡ଼ିରେ ନେଇଯିବାକୁ ଆଗ୍ରହ ପ୍ରକାଶ କଲେ ।

ମୁଁ ବହୁ ପୂର୍ବରୁ ବାଲେଶ୍ୱର ଯାଇଥିଲି । ଜଳାଶୟ-ଭର୍ତ୍ତି ସହର – ଏବେ କିନ୍ତୁ ବହୁତ ବଦଳିଯାଇଛି । ତାଙ୍କ ଘର ଅଭିମୁଖେ ଚାଲିଛୁ – ପ୍ରାୟ ୧ କି.ମି. ଦୂରରୁ ରାସ୍ତା ଖରାପ । ରାସ୍ତାରେ ପାଣି ଚାଲିଛି, ଗାଡ଼ି ତ ଯାଇପାରିବ ନାହିଁ । ପୁଣି ରାସ୍ତାରେ ବଡ଼ ଖାଲ, ପଥର ଢିମା, ଶୀତ ସନ୍ଧ୍ୟାର ଅନ୍ଧାର । ସହର ହେଲେ ବି ବିଶେଷ ଚାକଚକ୍ୟ ନ ଥାଏ । ଅନ୍ଧାରୁଆ ଖାଲରାସ୍ତା । ଖୁବ୍ ସାବଧାନରେ ଜଣେ ମଣିଷ ଚାଲିକି ଯାଇପାରିବ । ପ୍ରମିଳା କହିଲେ, "ଆପଣ ଚାଲିପାରିବେ ନାହିଁ ।" ଭଲ ତ, ଗୋଟେ ସଂକଳ୍ପକୁ ଯିବି । ମତେ ପୁଣି କାଲି ସକାଳବେଳା ଫେରିବାକୁ ହବ ଭୁବନେଶ୍ୱର । ଆଉ ବେଳ କାହିଁ ? "ନାଇଁ ଚାଲ-ପ୍ରମିଳା", ତାଙ୍କ ଝିଅ ଓ ମୁଁ ଗାଡ଼ିରୁ ଓହ୍ଲାଇ ଧୀରେ ଧୀରେ ଆଗେଇଲୁ । ମୋ ହାତରେ ବିସ୍କୁଟ୍ ଓ ଫଳର ଥଳିଟିଏ । ମନେ ପଡୁନି, କେବେ ମୁଁ ବା ପ୍ରମିଳା ତାଙ୍କୁ ପୂର୍ବରୁ ଫୋନ୍ କରିଥିଲୁ । ଘର ଭିତରେ ପ୍ରଥମ କକ୍ଷରେ ବ୍ରଜବାବୁ ଚୌକି ଉପରେ, ଦେହରେ ଚଦର,

ପାଦ ଦୁଇଟିରେ ଫୁଲା । ପାଖ ଖଟରେ ବସିଥାନ୍ତି, ତାଙ୍କର ସୁନ୍ଦର ସ୍ୱାସ୍ଥ୍ୟବତୀ ପତ୍ନୀ । ପାଖର ଅନ୍ୟ ଖଟଟିରେ ଆମେ ବସିଲୁ । ତାଙ୍କ କଥା ଧୀର ଓ ସଂଯତ, ଏବେ ଆହୁରି ସଂକ୍ଷିପ୍ତ । ମୁଁ ଆପଣଙ୍କ ଅସୁସ୍ଥତା କଥା ଜାଣିଲା ଦିନୁଁ, ମୁଁ ଆପଣଙ୍କ ଆରୋଗ୍ୟ କାମନା କରୁଛି ।" ଏବେ ସେ ସାମାନ୍ୟ ସୁସ୍ଥ ଥିବାର କହିଲେ । ଶୃଙ୍ଖଳା ଦିଶୁଥାନ୍ତି । ସବୁକାଳେ ତ ଧଡ଼ିଆ ଚେହେରା । ଖୁବ୍ ରୋଚକ କିଛି ସାହିତ୍ୟ ପ୍ରସଙ୍ଗ ତଥାପି ପକାଉଥାନ୍ତି ।

ତାଙ୍କ ବିଷୟରେ ମୁଁ ପ୍ରଥମ ଜାଣିଥିଲି, ମୋର ସହପାଠିନୀ କଳାଛାତ୍ରୀ ପ୍ରମିଳା ରଥଙ୍କଠାରୁ । ଆମେ ହଷ୍ଟେଲ୍‌ରେ ଥାଉ । ୧୯୬୧ ମସିହା କଥା । ରେଭେନ୍‌ସା କଲେଜର ନୂଆ ମହିଳା ହଷ୍ଟେଲ୍‌ଟି ସରୁ ସରୁ ଆମେ ରହିଥାଉ । ହଷ୍ଟେଲ୍‌ର ନାମକରଣ ସେ ଯାଏ ହୋଇ ନ ଥାଏ । ପତ୍ରିକା (ମୁଖପତ୍ର) 'ଅୟସ୍କାନ୍ତ'ର ସମ୍ଭାବନା ଆହୁରି ଦୂରବର୍ତ୍ତୀ । ଆମେ/ଛାତ୍ରୀ ନିବାସର ଅନ୍ତେବାସିନୀ, ଅଗଷ୍ଟି ମହାନ୍ତି, ପ୍ରତିଭା ଦାସ (ପରେ ରାୟ), ସତ୍ୟଭାମା ମିଶ୍ର, ପ୍ରମିଳା ରଥ ମଝିରେ ମଝିରେ କବିତା ଲେଖୁଥାଉ ଓ ତାହା ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଉଥାଏ । ପ୍ରମିଳା ଥରେ ମୋତେ ଗୋଟେ ଚିଠି ଦେଖାଇଲେ । ଲେଖିଥାନ୍ତି ବ୍ରଜନାଥ ରଥ, କବି । ତା' କବିତାକୁ ପ୍ରଶଂସା କରି, ଉତ୍ସାହ ଦେଇ ଲେଖିଥାନ୍ତି ଓ ପ୍ରମିଳାର ଗୌରବବୋଧ କହିଲେ ନ ସରେ । ତା'ଠାରୁ ମୁଁ ବ୍ରଜବାବୁଙ୍କ କଥା ଜାଣିଲି, ଯଦିଓ ସେଯାବତ୍ ତାଙ୍କର ବିଶେଷ କିଛି କବିତା ପଢ଼ି ନ ଥିଲି । ପ୍ରମିଳା ପରବର୍ଷ ହଷ୍ଟେଲ୍ ଛାଡ଼ିଲା- ପାଠ ସାରି ବିଦେଶ ଗଲା- ଖବର ପାଇଥିଲି । ମୁଁ କହିଲି, ବ୍ରଜବାବୁଙ୍କ କବିତା ପଢ଼ି ନ ଥିଲି, ତା'ର କାରଣ ହଷ୍ଟେଲ୍‌କୁ ପତ୍ରପତ୍ରିକା ତ ଆସୁ ନ ଥିଲା- ଦୈନିକ ସମାଜ, ପ୍ରଜାତନ୍ତ୍ର, କଳିଙ୍ଗ- ସେଥିରେ ସାପ୍ତାହିକ ସାହିତ୍ୟ ପତ୍ର ଯେତିକି, ଆମକୁ ଆଉ କିବା ପତ୍ରିକା ମିଳୁଥିଲା, ଆହୁରି ଗାଁରେ, ସତ୍ୟଭାମାପୁରରେ କିଛି ପତ୍ରିକା ପାଉଥିଲି । ଯା'ହଉ, ସେବେଠୁଁ ମୁଁ ବ୍ରଜବାବୁଙ୍କ କବିତା ପଢ଼ିଲି । ତା'ପରେ ବି ଆମେ ବିଜ୍ଞାନ ଶ୍ରେଣୀ ଛାତ୍ରୀ- ପାଠପଢ଼ାରେ ଅଧିକ ଧ୍ୟାନ ଦେବାକୁ ପଡୁଥିଲା । ସେତେବେଳକୁ ବହୁ କବିଙ୍କୁ ମୁଁ ପଢ଼ି ନ ଥିଲି । ମୋର ବିବାହ ବର୍ଷେ ଭିତରେ ହୋଇଗଲା । କଟକରେ ରହୁଥିବା ବ୍ରଜବାବୁଙ୍କୁ ରେଡିଓ, ଟେଲିଭିଜନ୍‌ରେ ତ ବରାବର ଭେଟିଥାଏ । ବିଷୁବ ମିଳନ, ବେତାର କେନ୍ଦ୍ର ଆଦିର କବିତା ସମାରୋହରେ ନିୟମିତ ତାଙ୍କ ସହ ସାକ୍ଷାତ ହୁଏ । ପ୍ରାୟ ରାଜ୍ୟସ୍ତରୀୟ ସବୁ ସାହିତ୍ୟ /କବିତା ସମାରୋହରେ ସେ ନିୟମିତ ଯୋଗ ଦିଅନ୍ତି । ୧୯୮୦ ମସିହା ବେଳକୁ ଆମ ବାଣୀବିହାର ବାସଭବନକୁ ସେ ପ୍ରାୟ ୪/୫ ଥର ଆସିଥିବେ । ମଧ୍ୟାହ୍ନଭୋଜନ ବି କରିଥିବେ । କିନ୍ତୁ ତାଙ୍କ ସହ ମୋର କଥାବାର୍ତ୍ତା ସଂକ୍ଷିପ୍ତ । ନିଜ ଆଡୁ କେମିତି କ'ଣ ଯୋଡ଼ିବି, ଜାଣିପାରେ ନାହିଁ, ଅତଏବ ଶତପଥୀବାବୁଙ୍କ ସହ ତାଙ୍କର ଯାହା କିଛି ଆଳାପ ଜମେ । 'ଇସ୍ତାହାର'ରେ ସେ ନିୟମିତ କବିତା ଲେଖନ୍ତି ।

୨୦୦୭ ମସିହାରେ ସର୍ବଭାରତୀୟ ଏକ ହିନ୍ଦୀ ସମାରୋହ ଅନୁଷ୍ଠିତ ହେଉଥାଏ- ଭାରତୀୟ ହିନ୍ଦୀ ସଂସ୍ଥାନ ଓ ରୂପାମ୍ବରା ପତ୍ରିକା, କଲିକତା ଏବଂ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ବିଭାଗର ମିଳିତ ଆନୁକୂଲ୍ୟରେ ଏହି ସମାରୋହ ଦୁଇ ଦିନ ଧରି ଚାଲିଥାଏ । ସେହି ଉତ୍ସବରେ ମୋତେ 'କବି ସୁଭଦ୍ରା କୁମାରୀ ଚୌହାନ୍ କବିତା ପୁରସ୍କାର' ପ୍ରଦାନ କରାଯାଉଥାଏ । ସେଥିରେ ଯୋଗଦେବାକୁ ମୁଁ ଆଉ ଜଣେ ବିଶିଷ୍ଟ ସାହିତ୍ୟିକଙ୍କ ସହିତ ଗୋପାଳପୁର ଯାଉଥାଏ । ବାଟରେ ବ୍ରଜବାବୁଙ୍କ ସହ ବେଶ୍ କିଛି ଆଳାପ ହୋଇଥିଲା । ଆଳାପ ଯେତେ ସଂକ୍ଷିପ୍ତ ହେଉ, ବ୍ରଜବାବୁଙ୍କ କବିତ୍ୱ ଓ ବ୍ୟକ୍ତିତ୍ୱ ପ୍ରତି ମୋର ଏକ ସମ୍ମାନଜନକ ଆସ୍ଥା ଥିଲା । ମୁଁ ଏଥିପୂର୍ବରୁ ତାଙ୍କୁ ଗ୍ରହଣ କରିନେଇଥିଲି ଯେ, ସେ ବାଲେଶ୍ୱର ସୀମାନ୍ତର ସାହିତ୍ୟ ଓ ସଂସ୍କୃତିର ଏକ ସଜାଗ ପ୍ରହରୀ । ବାଲେଶ୍ୱର, ଯେଉଁଠି ଉନବିଂଶ ଶତକରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିପୁଳ ଉଦ୍‌ବର୍ତ୍ତନ ଫଳରେ ଏସବୁ ମୂଳତଃ ଦୃଢ଼ତର ହୋଇଥିଲା । ସେହି ସ୍ଥାନର ଜଣେ ସର୍ବବାଦିସମ୍ମତ ପୁଣି ସଂସ୍କୃତିପ୍ରେମୀ ବ୍ୟକ୍ତି ହେଉଛନ୍ତି ସ୍ୱର୍ଗତ ବ୍ରଜନାଥ ରଥ । ଧୋତି ଓ କମିଜ୍ ତାଙ୍କର ପରିଧାନ । ଆଡ଼ମ୍ବର ବା ଅହଂକାର ତ ନ ଥାଏ । କିନ୍ତୁ ମତ ପ୍ରକାଶରେ ଥାଏ ଗୋଟାଏ ଟାଣପଣ, ସ୍ୱରରେ ତୀବ୍ରତା, ବୃତ୍ତି ଭାବରେ ପ୍ରେସ୍‌ଟିଏ ତାଙ୍କର ଥିବା ମୁଁ ଶୁଣିଥିଲି, ଶୁଣିଥିଲି ସେ ଖୁବ୍ ଅତିଥିପରାୟଣ । ବଡ଼ ଲାଇବ୍ରେରୀଟିଏ ସେ ତିଆରି ଥିବାର ପତ୍ରିକାରୁ ପଢ଼ିଥିଲି । ସେଦିନ ସେ ଲାଇବ୍ରେରୀଟି ମୁଁ ଦେଖିଯିବାର ଆଗ୍ରହ ସେ ପ୍ରକାଶ କରିଥିଲେ । ନିଜେ ତ ସାଙ୍ଗରେ ଯାଇପାରି ନ ଥିଲେ । ତାଙ୍କ ପୁଅ ଓ ନାତୁଣୀଙ୍କ ସହ ମୁଁ ଯାଇ ଦେଖିଥିଲି । ଏକ ସାଧୁକର୍ମ, ବ୍ୟକ୍ତିଗତ ପ୍ରଚେଷ୍ଟାରେ ଏକ ବୃହତ୍ ଗ୍ରନ୍ଥାଗାର ପ୍ରତିଷ୍ଠା କରିବା ସହଜ ନୁହେଁ । ବ୍ରଜବାବୁ ଏକ ଭାଗବତ ଗାଦୀ ପ୍ରତିଷ୍ଠା କରିଯାଇଛନ୍ତି- ଏହାକୁ ସସମ୍ମାନ ଆମକୁ ସ୍ୱୀକାର କରିବାକୁ ହେଉଛି । ସମାଜ ସଚେତନ, ଶକ୍ତିଶାଳୀ କବିତା ସେ ଲେଖନ୍ତି । ସାହିତ୍ୟ-ସୌଦାଗରଙ୍କ ପ୍ରଲୋଭନ ଏଡ଼ାଇ ଯାଆନ୍ତି ବହୁବାର, ଏହା ମୋର ହୃଦ୍‌ବୋଧ ହୋଇଛି । ତାଙ୍କ ପ୍ରତିଷ୍ଠିତ ଗ୍ରନ୍ଥାଗାର ହେତୁ ଓଡ଼ିଆ ଭାଷା ସାହିତ୍ୟର ଏକ ବଡ଼ ଅଭାବ ପୂରଣ ହୋଇଛି । ମାତ୍ର ବ୍ରଜବାବୁଙ୍କ ତିରୋଧାନରେ ଜଣେ ଦୃଢ଼ମନା, ସତ୍‌ଭାଷୀ ମରମୀ ସାହିତ୍ୟିକଙ୍କର ଅଭାବ ସବୁକାଳେ ଅନୁଭୂତ ହେଉଥିବ ।

ବ୍ରଜବାବୁ ଏତେ ଶୀଘ୍ର ବିଦାୟ ନେଲେ- ଅବଶ୍ୟ ୩/୪ ବର୍ଷ ପୂର୍ବରୁ ତାଙ୍କର ଅସୁସ୍ଥତା ଖବର ମିଳିଥିଲା । ଶୂଦ୍ରମୁନି ସାହିତ୍ୟ ପୁରସ୍କାର ପାଇଥିଲେ ସେ । ଏହି ପୁରସ୍କାରପ୍ରାପ୍ତି ସମ୍ବାଦର ଉତ୍ସାହ ମଉଳିଯିବା ଆଗରୁ ତାଙ୍କର ଅସୁସ୍ଥତାର ଖବର ଆମମାନଙ୍କୁ ପୀଡ଼ା ଦେଇଥିଲା । ଭୁବନେଶ୍ୱରରୁ ବମ୍ବେ ବାଲେଶ୍ୱର, କେତେ ଯେ ଦୌଡ଼ିଲେ, ରୋଗମୁକ୍ତ ହେଲେ । ମାତ୍ର ପୁନର୍ବାର ଆକ୍ରାନ୍ତ ହେଲେ, ସହଜରେ ଚାଲବୁଲ କରିପାରିଲେ ନାହିଁ । ଯେଉଁ ବ୍ୟକ୍ତି ସାହିତ୍ୟ ସମାରୋହରେ ଯୋଗଦେଇ ବାଲେଶ୍ୱରରୁ

କଟକ, ଭୁବନେଶ୍ୱରର ଦୂରତାକୁ ଚାଲେଞ୍ଜ୍ କରିଥିଲେ, ସେ ଦୁଇପାଦ ଚାଲିପାରିଲେ ନାହିଁ । ତାହା ସମୟର ଅଲଂଘନୀୟ ପ୍ରଭାବ । କେତେବେଳେ କାହାକୁ କେଉଁଭଳି କବଳିତ କରିନିଏ, ଆମକୁ କିଂକର୍ତ୍ତବ୍ୟ କରି । ବିଗତ ଫକୀରମୋହନ ସାହିତ୍ୟ ପରିଷଦର ବାର୍ଷିକୋତ୍ସବରେ ପ୍ରଥମ ଅଧିବେଶନରେ ସେ ସମ୍ବର୍ଦ୍ଧିତ ହୋଇଥିଲେ । ଓଡ଼ିଶାର ବିଦ୍ୱାନ୍‌ମଣ୍ଡଳୀଙ୍କ ମଧ୍ୟରେ ତାଙ୍କ କବିତ୍ୱ ଓ ବ୍ୟକ୍ତିତ୍ୱ ନିର୍ବିବାଦ ସ୍ୱୀକୃତି ଲାଭ କରିଥିଲା । ତାଙ୍କର କବିତାବୃତ୍ତିର ସ୍ୱର ଗମ୍ଭୀର ଓ ମାର୍ମିକ । ସମାଜର ଭେଦଭାବ ତଥା ନାରୀ ସଚେତନତା ନେଇ ସେ ଅନେକ କବିତା ରଚନା କରି ଓଡ଼ିଆ ସାହିତ୍ୟରେ ନିଜର ସ୍ୱାତନ୍ତ୍ର୍ୟ ନିରୂପିତ କରିଛନ୍ତି । ମୁଁ ଯଦି, ସେଦିନର ଶୀତ ସନ୍ଧ୍ୟାରେ, ଭଙ୍ଗା, ଅନ୍ଧାରୁଆ ରାସ୍ତାରେ ଯାଇ ତାଙ୍କୁ ସାକ୍ଷାତ କରି ନ ଥାନ୍ତି, ନିଜକୁ କ୍ଷମା ଦେଇପାରି ନ ଥାନ୍ତି କଦାପି । ଆଜି, ତାଙ୍କ ତିରୋଧାନ ପରେ ତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ମୁଁ ମୋର ଶ୍ରଦ୍ଧା ଓ ସମ୍ମାନସୂଚକ ପ୍ରଣିପାତ ଜଣାଉଛି ।

❖❖❖

# ସେ ଏକ ଦୁରନ୍ତ ଝଡ଼

## [ ଡାକ୍ତର କେନାମଣି ନରେନ୍ଦ୍ର କୁମାରଙ୍କ ସ୍ମୃତିରେ ]

'ପ୍ରଜାତନ୍ତ୍ର' ଖଣ୍ଡିଏ ପଢ଼ିବାର ସୁଯୋଗ ମିଳେ । ସେତେବେଳେ ୧୯୬୦ ମସିହା । ପ୍ରଜାତନ୍ତ୍ରର ସାପ୍ତାହିକ ସାହିତ୍ୟ ପୃଷ୍ଠାରେ ତାଙ୍କର ଗଳ୍ପ-ଖୁବ୍ ମର୍ମସ୍ପର୍ଶୀ- ଶୈଳୀରେ ନୂତନତା, କେତେ ସମ୍ଭାବନାମୟ । ତାଙ୍କ ସମସାମୟିକ ସାହିତ୍ୟ-ଶିଳ୍ପୀଗଣ ସେକଥା ମୋଠାରୁ ବେଶି ଜାଣିଥିବେ । ତାଙ୍କ ଗପ ସହ ମୋର ପ୍ରଥମ ପରିଚୟ ବେଳକୁ ମୁଁ ନବମ / ଦଶମ ଶ୍ରେଣୀର ଛାତ୍ରୀ । ଗୋଟିଏ ଗପ ମନେ ଅଛି- ନାୟିକାର ନାମ 'ରତନ' । ଶୁଣିଥିଲି ପ୍ରଖର ବୁଦ୍ଧିମାନ୍ - ତୀବ୍ର ସୃଜନଶୀଳତାରେ ଆନ୍ଦୋଳିତ, ଜଣେ ହୃଦୟବାନ୍ ବ୍ୟକ୍ତି ଏହି ନରେନ୍ଦ୍ର କୁମାର । ପୁଣି ବୃତ୍ତିରେ ଡାକ୍ତର, ଶୁଣିଥିଲି ତାଙ୍କ ଅସୁସ୍ଥତା ବିଷୟ- ତାଙ୍କର କିମ୍ବଦନ୍ତୀୟ ବିବାହ ସମ୍ପର୍କରେ ସାରା ଓଡ଼ିଶା ଜାଣିଥିଲା । ତାଙ୍କର ବିବାହ ଏକ ଆଦର୍ଶ ସ୍ଥାନ ଗ୍ରହଣ କରିଥିଲା । ବେଶ୍ ଏକ ଚିତ୍ର ଅଙ୍କିତ ରହିଥିଲା ମୋ ମନର ପର୍ଦ୍ଦା ଉପରେ । କଳାକାର, ଆଦର୍ଶ ବ୍ୟକ୍ତି, ଖିଆଲି ପ୍ରେମିକ ଆଉ କ'ଣ- କିଶୋରୀ ମନରେ ଶ୍ରଦ୍ଧା, ଭକ୍ତି ଉଦ୍ରେକ କରିବାପାଇଁ ଏତକ ଯଥେଷ୍ଟ ଥିଲା ।

ପରେ ପରେ ହୁଏ ଚାକ୍ଷୁଷ ପରିଚୟ । ମୋ ଦେଢ଼ଶୁରଙ୍କର ସେ ବନ୍ଧୁ- ତାଙ୍କ ଘର ନିକଟରେ ମୁଁ ଭଡ଼ାଘରଟିରେ ରହୁଥାଏ । ପିଠାପୁରରେ ତାଙ୍କର କ୍ଲିନିକ୍ । ଦେହମୁଣ୍ଡ ହେଲେ ଆମେ ତାଙ୍କୁ ହିଁ ଆଶ୍ରା କରିଥାଉ । ଏକଥା ବି ବେଳେବେଳେ ମନେ ପଡୁଚି । ଜଣେ ରୋଗୀ ପ୍ରାପ୍ୟଠାରୁ ଅଧିକ ଟଙ୍କା ଦେଇ ଯାଇଥିବାର ଓ ନରେନ୍ଦ୍ର ଭାଇ ତାଙ୍କ ପଛେ ପଛେ ଡାକି ଡାକି ରାସ୍ତାକୁ ଦଉଡ଼ି ଦଉଡ଼ି ଆସି ତାଙ୍କୁ ପଇସାତକ ଫେରାଇ ଦେଇଥିବାର, ଏମିତିରେ ବିନା ଫିସ୍‌ରେ ରୋଗୀ ବି ଥାଆନ୍ତି । ପରିବାର ସହ ବନ୍ଧୁତା ହୁଏ । ମୁଁ ପୁଣି ବି.ଏ. ପଢୁଥାଏ । ମାଳତୀ ନୂଆବୋଉଙ୍କ ସାଙ୍ଗରେ ଦୁଃଖସୁଖ । ଭାରି ସ୍ନେହୀ, ଅମାୟିକ ମହିଳା, ଶ୍ୱାସରୋଗୀ ଅଥଚ ସବୁ ସମୟରେ ହସ ହସ । ନିଜ ଅଙ୍ଗେନିଭା କାହାଣୀ ଗପନ୍ତି । ମୁଁ ମୋର ଛୋଟ ଝିଅଟିକୁ ଧରି ପାଠପଢ଼ା ଓ ନିଅଣ୍ଟ ସଂସାର ଭିତରେ ଘାଣ୍ଟି ହେଉଥିଲାବେଳେ, ତାଙ୍କ ସହୃଦୟତା ମତେ କେତେ ଆଶ୍ୱାସନା ଦେଇଚି । ଅଥଚ, ଆଜି ନରେନ୍ଦ୍ର ଭାଇଙ୍କ ତିରୋଧାନ ସମ୍ବାଦରେ ମଧ୍ୟ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇପାରି ନାହିଁ । ମୋର ସାନଝିଅର ଗୁରୁତର ଅସୁସ୍ଥତା ହେତୁ, ତା'ର ପରିଚର୍ଯ୍ୟାର ଦାୟିତ୍ୱ ନେଇ ଅଟକି ରହିଛି । ନିକଟ ଭବିଷ୍ୟତରେ ମୁଁ ମାଳତୀ ନୂଆବୋଉଙ୍କୁ ଦେଖା କରିବାକୁ ଯିବି ନିଶ୍ଚୟ ।

ନରେନ୍ଦ୍ର ଭାଇଙ୍କ ଖାମଖିଆଲୀ ସଂସାର ଓ ଡାକ୍ତରୀ ବୃତ୍ତି ଭିତରକୁ ପଶିଆସେ ରାଜନୀତି । ବୃତ୍ତି ଓ ସାହିତ୍ୟ ସୃଷ୍ଟି ତଥା ପେସା ଓ ନିଶା ଭିତରେ ସେ ଜୀବନକୁ ବାହି ନେଲାବେଳେ, କାହିଁକି କେଜାଣି ରାଜନୀତି, ସମାଜସେବା ପ୍ରତି ଝୁଙ୍କ୍ ରଖନ୍ତି । ରାଜନୀତିରେ ସେ ସଫଳତା ପାଇ ନାହାନ୍ତି । ଅଥଚ ବୃତ୍ତି ତାଙ୍କର ହୋଇଛି ବିପର୍ଯ୍ୟସ୍ତ । ପ୍ରକୃତ କଳାକାର ଭଳି ତାଙ୍କର ଜୀବନ - ଗଡ଼ିଯାଇଛି ହିସାବ ବହିର୍ଭୂତ ଏକ ରାସ୍ତା ଉପରେ । ଲାଭ କ୍ଷତି, ସୁବିଧା ଅସୁବିଧା ପ୍ରତି ଖାତିର ନ କରି ନିଜର ଆଗ୍ରହକୁ ସେ ସର୍ବାଦୌ ମୂଲ୍ୟ ଦେଇଛନ୍ତି ।

ଏଇଠି ତାଙ୍କ ଗପ କବିତା ଉପରେ ଦି' ପଦ ନ କହିଲେ ଠିକ୍ ହେବ ନାହିଁ, ଭାବୁଛି । 'ବିବର୍ତ୍ତିତ ଝଡ଼ର ସଙ୍ଗୀତ' ଏକ ସାର୍ଥକ ଗଳ୍ପ ସଂକଳନ । ତରୁଣ ପ୍ରବୀଣ, ସବୁ ପ୍ରକାର ପାଠକଙ୍କର ଆପଣାର ପୁସ୍ତକଟି, ତାଙ୍କ ପ୍ରକାଶଭଙ୍ଗୀ ଓ ବକ୍ତବ୍ୟ ଖୁବ୍ ଆଧୁନିକ ଓ କଳାତ୍ମକ । ଅଥଚ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେ ଉପଯୁକ୍ତ ଭାବେ ସ୍ଥାନିତ ହୋଇ ନାହାନ୍ତି । କାରଣ, ତାଙ୍କର ସେ ଦିଗରେ ଉଦ୍‌ଯୋଗ ନାହିଁ । ଏ ଯୁଗର ରୀତି ଉଦ୍‌ଯୋଗ-ମୁଖାପେକ୍ଷୀ । ଆଉ ତାଙ୍କର କବିତା ଯାହା ସମ୍ପର୍କରେ ସେ ମତେ କେତେଥର ପଚାରିଛନ୍ତି-ମତାମତ ଲୋଡ଼ିଛନ୍ତି, ସେଇ କବିତାରୁ ଦି' ଧାଡ଼ି ମନେ ଅଛି - "ଉପରକୁ ଟେକା ହାତେ ଶୂନ୍ୟ ଉଲୁସିଲା"... ଏବଂ "ଅନ୍ଧାର ଭଲ ପାଇ / ଏତିକି ପାଇଲି ସାଥୀ ପାଇଲି ମୁଁ ଏତିକି / ଆଲୋକ ଦେଖିଲି ନାହିଁ ।" ଶେଷୋକ୍ତ କବିତା ଧାଡ଼ି କେତୋଟି ତାଙ୍କର ନିଜ ଜୀବନର ପ୍ରତିଲିପି ବୋଧହୁଏ । ହୃଦୟ ବୃତ୍ତିକୁ ପ୍ରାଧାନ୍ୟ ଦେବାକୁ ଯାଇ ସେ ଅର୍ଥକରୀ ଦିଗଟିକୁ, ସାଫଲ୍ୟର ଦିଗଟିକୁ ଗୌଣ କରିଦେଇଛନ୍ତି । କେତେ ବୁଦ୍ଧିମାନ୍, ହୃଦୟବାନ୍, ଅନୁଭବପ୍ରବଣ ବ୍ୟକ୍ତି । 'ଝଙ୍କାର'ର ସମ୍ପାଦନାରେ ତାଙ୍କର କୃତିତ୍ୱ କିଛି କମ୍ ନୁହେଁ । ଅଥଚ ନିଜକୁ ଜାହିର୍ କରିବାର ଅଭିଳାଷ ପୋଷଣ କରି ନାହାନ୍ତି କେଉଁଠି ।

ବେଳେବେଳେ ମନକୁ ଆସେ - ସେ କ'ଣ ଏକ ଦୁରନ୍ତ ଝଡ଼ ? ତୀବ୍ର ବେଗରେ ମାଡ଼ି ଯାଇଛନ୍ତି, ଭାଙ୍ଗିପଡ଼ିଛି ଘର, ଗଛ, ବୃଛ, ଛିନ୍ନ ଭିନ୍ନ ହୋଇଛି କୁଳାୟ । ଇତସ୍ତତଃ ହୋଇପଡ଼ିଚି ସଂସାର ? ତାଙ୍କ ଶେଷ ସାକ୍ଷାତ ମିଳିଥିଲା ଏପ୍ରିଲ୍ ୧୪ ତାରିଖ, ବିଷୁବ ପ୍ରାଙ୍ଗଣରେ, କେବେଠାରୁ ସେ ଦୁର୍ବଳ ଦିଶୁଥିଲେ- ଏଥର ଦିଶୁଥିଲେ ଦୁର୍ବଳତର । ଦୁରନ୍ତ ଝଡ଼ର ବି ଶେଷ ଅଛି, ଅନ୍ତ ଅଛି, ବିଳୟ ଅଛି । ଅଶୋକ, ସ୍ୱାଗତା ଓ ପୁଅ ଝିଅମାନେ ସମସ୍ତେ ସ୍ନେହୀ ଓ ସରଳ ପ୍ରକୃତିର । ସେମାନଙ୍କୁ ତାଙ୍କର ପିତୃଶୋକରେ, ମାଳତୀ ନୂଆବୋଉଙ୍କୁ ତାଙ୍କ ଖିଆଲୀ ପତିଙ୍କର ବିୟୋଗରେ ମୋର ଆନ୍ତରିକ ସମ୍ବେଦନା ଜଣାଉଛି । ଶେଷରେ ମୋର ପ୍ରିୟ ନରେନ୍ଦ୍ରଭାଇ, ଯାହାଙ୍କ ଶ୍ରଦ୍ଧାକୁ ମୋର କୌଣସି ଯୋଗ୍ୟତା ନ ଥାଇ ସୁଦ୍ଧା ମୁଁ ଭାଗ୍ୟ ବଳରେ ଲାଭ କରିଥିଲି - ତାଙ୍କ ଅମର ଆତ୍ମା ପ୍ରତି ବିନମ୍ର ପ୍ରଣିପାତ ଓ ଶ୍ରଦ୍ଧା ନିବେଦନ କରୁଛି ।



# ମନିକା ନ ଥିଲେ...

## [ ଡଃ ପ୍ରସନ୍ନ କୁମାର ମିଶ୍ରଙ୍କ ସ୍ମୃତିପୂଜା ]

ସମ୍ବାଦ ପଢ଼ିଥିଲି ଡେରିରେ । ତା' ପୂର୍ବରୁ ମୋବାଇଲ୍ ଡାକ ବି ହୁଡ଼ିଥିଲି । ସକାଳେ ବିଳମ୍ବିତ ଶଯ୍ୟାତ୍ୟାଗ ଓ ବଗିଚାବୁଲିବା ଯୋଗୁଁ । ସକାଳ ୧୦ଟା ବେଳେ ଇଙ୍ଗା ଶାରଳା ପୁରସ୍କାରର ଶ୍ରୀ ଅଶୋକ ପଣ୍ଡା ଡାକିଥିଲେ ଫୋନ୍‌ରେ, 'ସତୀଚଉରା' ଯିବାର ଥିଲା । ପ୍ରସନ୍ନବାବୁଙ୍କର ଦାହକାର୍ଯ୍ୟ । ତାଙ୍କ ଶେଷ ଦର୍ଶନ କରିବା ମୋ ଭାଗ୍ୟରେ ନ ଥିଲା । ସୁଯୋଗ ହରାଇଥିଲି । ପଢ଼ିଲି ପେପର୍‌ରୁ ତାଙ୍କର ଦେହାନ୍ତ ହୋଇଛି ପୂର୍ବଦିନ ସନ୍ଧ୍ୟାରୁ । ଅଳ୍ପଦିନ ପୂର୍ବରୁ ପ୍ରସିଦ୍ଧ ଲେଖିକା ବୀଣାପାଣି ମହାନ୍ତିଙ୍କଠାରୁ ଶୁଣିଥିଲି, ସେ ଥିଲେ ଆଇସିୟୁରେ । ୧୨ ତାରିଖରେ କବିଙ୍କର ମହାପ୍ରୟାଣ । କଥାହେବି ଭାବୁଭାବୁ ଫୋନ୍ ଆସିଲା ପ୍ରାଚୀଠାରୁ - ସ୍ମରଣିକା ପ୍ରକାଶ ପାଇବ । ଲେଖିବି କ'ଣ, ଆଖି ଆଗରେ ଦିଶିଯାଉଛି, ସେ ହସି ହସି ସାହିତ୍ୟସଭାରେ ପ୍ରବେଶ କରୁଛନ୍ତି- ପାନ ଚୋବାଇବା ଜାରି ରହିଛି ।

ଶାରଳା ପୁରସ୍କାରପ୍ରାପ୍ତ ହେଲେ ସେ, ଯେଉଁ ବର୍ଷ ମୁଁ ବିଚାରକ ମଣ୍ଡଳୀରେ ଯୋଗଦେଲି । ତାଙ୍କ କବିତା 'ଖରାରେ ବାଙ୍ଗରା ଲୋକ' ଆମ ସମସ୍ତଙ୍କୁ ଭଲ ଲାଗିଥିଲା । ନିରହଂକାର ଅଥଚ ଆତ୍ମସଚେତନ ସାଧାରଣ ବ୍ୟକ୍ତିତ୍ୱ । ରାଜଧାନୀର କୁଟିଳ ଥାଟି ଭିତରେ କିପରି ଚଳେ, ତା'ର ଅସୁବିଧା କେଉଁଭଳି ଗ୍ରାହ୍ୟ ବା ଅଗ୍ରାହ୍ୟ ହୁଏ - କବି ମାର୍ମିକ ଭାବେ ପ୍ରକଟିତ କରିଥିଲେ । ପ୍ରକୃତରେ ତାହା ହିଁ ପ୍ରସନ୍ନବାବୁଙ୍କ ନିତ୍ୟନୈମିତ୍ତିକ ଜୀବନର ପ୍ରତିଲିପି । ସାହିତ୍ୟିକ ଅଛନ୍ତି, ସତ୍ୟକୁ ଲୁଚାଇ ଆତ୍ମପ୍ରୌଢ଼ିରେ ନିଜ ଐଶ୍ୱର୍ଯ୍ୟକୁ ଚିତ୍ରି ବସନ୍ତି । ମାତ୍ର ପ୍ରସନ୍ନବାବୁ ତାଙ୍କ କବିତା ପ୍ରତି ବିଶ୍ୱସ୍ତ । ପ୍ରାୟ ୩୦/୩୫ ବର୍ଷ ତଳେ ଓୟୁଏଟିରେ ଛାତ୍ର ସମାଜ ଦ୍ୱାରା ଅଭିନୀତ ଡ୍ରାମାଟିଏ ଦେଖିଥିଲି, ପ୍ରସନ୍ନବାବୁଙ୍କ ଲେଖା-ନାଟକର ଦୃଶ୍ୟ କିଛି ମନେ ଥିଲେ ବି ନାମଟି ମନେ ନାହିଁ । ଯଦି ଜାଣିଥାଆନ୍ତି ଯେ ଏମିତି ମତେ ଦିନେ ତାଙ୍କ ପାଇଁ ଲେଖିବାକୁ ପଡ଼ିବ, ସେ ନ ଥିବେ, ନିଶ୍ଚେ ନାଟକଟିର ନାମ ମନେ ରଖିଥାଆନ୍ତି । ତାଙ୍କ ରଚିତ ଆବେଗମୟ ପ୍ରେମ କବିତାର ନାୟିକା 'ମନିକା' ପାଠକଙ୍କର ଅତୀବ ପ୍ରିୟ । ସେ ରକ୍ତ-ମାଂସଧାରିଣୀ ହୋଇ, ହୋଇପାରେ କଳ୍ପଲୋକର ସଙ୍ଗିନୀ ବା ଉତ୍ତରିତ ଏକ ଅସ୍ତିତ୍ୱ । ଏମିତି ବି ହେଇପାରେ, ତା'ର ଆଦୌ କୌଣସି ଅସ୍ତିତ୍ୱ ନ ଥାଇପାରେ, ମାତ୍ର ପ୍ରସନ୍ନବାବୁଙ୍କ ଜୀବନର ଉଲ୍ଲାସ, ଉତ୍ସାହ, ବିଷାଦ ତା' ସହିତ

ଅନୁବନ୍ଧିତ, ସେହି ଗୌରବରେ ସେ ସକଳ ଜାଗତିକ ଦୁଃସ୍ଥିତିର ସାମ୍ନା କରୁଥିଲେ । ସର୍ବଦା ହସହସ, ଦୁର୍ଦ୍ଦଶାର ଖାତିର କରୁ ନ ଥିଲେ ।

ଥରେ ତାଙ୍କ ସମ୍ପୃକ୍ତି ସୁଲେଖକ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ସହ ସେ ଯାଇଥିଲେ ଗ୍ରନ୍ଥମନ୍ଦିର । ମୋର ଗୋଟିଏ ପ୍ରବନ୍ଧ ବହି 'ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ନୂଆ ବାହାରିଥାଏ । ଦୁଇ ସମ୍ପୃକ୍ତି ବହିଟିକୁ ଦେଖି 'ଯେ ଖଣ୍ଡିଏ ଖୁବ୍ ଭଲ ପ୍ରବନ୍ଧ ପୁସ୍ତକ' ବୋଲି ପସନ୍ଦ କରିଥିବାର ପ୍ରକାଶକଙ୍କଠାରୁ ଶୁଣିଥିଲି । ୨୦୧୨ ମସିହାରେ ତାଙ୍କ ସହ କେତେଥର କଥାବାର୍ତ୍ତା ହୋଇଛି । ସ୍ୱାସ୍ଥ୍ୟ ବିଷୟରେ । ଗଣେଶ୍ୱରବାବୁଙ୍କୁ ପଚାରିବାକୁ ମାଡ଼ିପଡ଼େ, ତେଣୁ ତାଙ୍କୁ ପଚାରେ । ଜ୍ୱାଇଁର ଏକାଦଶାହରେ ଲୁହକୋହ ରୁନ୍ଧି ହେଇ ତାଙ୍କ ମୁହଁ ଫୁଲି ଉଠୁଥାଏ । ଆଉ ତ ପ୍ରାୟ କୋଉଠି ସାକ୍ଷାତ ହୋଇ ନାହିଁ । କେବେ ବି ବ୍ୟକ୍ତିଗତ ବା ପାରିବାରିକ ସ୍ତରରେ ତାଙ୍କ ସହ ମୋର ଆଳାପ ହୋଇ ନାହିଁ । ପ୍ରାଚୀ ସାନ ଝିଅ, ମୋ ଦ୍ୱିତୀୟ ଝିଅ ଦକ୍ଷ ଅର୍ଥନୀତି ଅଧ୍ୟାପିକା ମଧୁବ୍ରତାର ଅନର୍ସ ଛାତ୍ରୀ, ଖୁବ୍ ବୁଦ୍ଧିମତୀ, ବହୁ ସମୟରେ ପାଠ୍ୟ ବିଷୟରେ ମୋ ଝିଅ ସହ ଯୋଗାଯୋଗ ରଖିଥାଏ । ଝିଅଠାରୁ ଶୁଣିଥିଲି ପ୍ରାୟ ୨୦/୨୨ ବର୍ଷ ତଳେ । ପ୍ରାଚୀ ଏବେ ଫୋନ୍ କଲେ, ଭାବିଲି କ'ଣ ଲେଖିବି ସତରେ ! ଯୋଗାଯୋଗ ଏତେ କମ୍ । ତଥାପି କବିତା ମଧ୍ୟ ଯୋଗାଯୋଗର ଏକ ବଳିଷ୍ଠ ମାଧ୍ୟମ ହୋଇଛି । ପ୍ରସନ୍ନବାବୁ ଜଣେ ସତ୍‌କବି, ନାଟ୍ୟକାର । ଜୀବନର ବିଡ଼ମ୍ବନାକୁ ରୂପାୟିତ କରିବାରେ ଖୁବ୍ ସମର୍ଥ ।

ନିଜ ହୃଦୟବତ୍ତାକୁ ସେ ସ୍ୱତନ୍ତ୍ରଭାବେ ଚିହ୍ନିପାରିଛନ୍ତି । ତାଙ୍କ କଲମରୁ ଉଚ୍ଚାରିତ "ଏକା ପ୍ରକାରର/ଏକା ପଞ୍ଜାବି ପିନ୍ଧିଥିଲେ ବି ଦରଦ ମିଶିବନି... ତଫାତ୍‌ଟା ଜାଣିପାରିବନି / ଡାକ୍ତର / କାହିଁକି, କେଉଁ ଛାତିକୁ କୁହାଯିବ ପ୍ରସନ୍ନ ମିଶ୍ରର ।"

(ସଂ. 'ଖରାରେ ବାଙ୍ଗରା ଲୋକ'ରୁ ଉଦ୍ଧୃତ) ।

ତଥାକଥିତ ସମ୍ବେଦନାମାନଙ୍କୁ ସେ ଜୀବନବ୍ୟାପୀ ଭୋଗିସାରିଛନ୍ତି- କପଟୀ ବନ୍ଧୁଙ୍କୁ ବି ସାକ୍ଷାତ କରିଛନ୍ତି । ସାହିତ୍ୟିକ ଡକ୍ଟର ଗଣେଶ୍ୱର ମିଶ୍ର (ସମ୍ପୃକ୍ତି)ଙ୍କ ସହ ତାଙ୍କର ଆତ୍ମୀୟତା ଥିଲା ଅତୁଟ । ଦୁହେଁ ମିଶି ସୁଖ ଓ ଦୁଃଖ ଉଭୟକୁ ଭୋଗିଥିଲେ ।

ସେ ଆଉ ନାହାନ୍ତି । ଶରୀରଧାରୀ ମାତ୍ରେ ଶରୀରତ୍ୟାଗୀ ହୋଇଥାନ୍ତି - ଥରେ ଗଲେ ଆଉ ଲୋକ ଆସନ୍ତି ନାହିଁ, ସେହି ରୂପରେ, ନାମରେ । ପ୍ରସନ୍ନବାବୁଙ୍କ କବିତାରେ- "ପ୍ରସନ୍ନ ମିଶ୍ରଟା ଅମାବାସ୍ୟାର ଚନ୍ଦ୍ର / ହେଇନି ଯେ ଥରେ ନିଶ୍ଚିହ୍ନ ହେବାପରେ / ପରବର୍ତ୍ତୀ ପୁନେଇଁରେ ପୁଣି / ପୂର୍ଣ୍ଣ ହେଇ ଝଲମଲ ହେବ ।" ପ୍ରକାଶ କରିସାରିଛନ୍ତି । ପ୍ରସନ୍ନବାବୁଙ୍କର ଶ୍ରଦ୍ଧାଶୀଳ ଆତ୍ମୀୟତା ତାଙ୍କ ପରିଚିତ ପ୍ରିୟ ପାଠକମାନଙ୍କର ମନେ ରହିବ । ମନେ ରହିବ ମନିକା । ତାଙ୍କ ଅମର କବି ଆତ୍ମା ପ୍ରତି ମୁଁ ଅନ୍ତରର ଶ୍ରଦ୍ଧାଞ୍ଜଳି ଓ ସମ୍ମାନ ନିବେଦନ କରୁଛି ।



# ତୂଳୀ ଓ କଲମର କାରିଗର

## [ସ୍ୱର୍ଗତ ଦିନନାଥ ପାଠୀଙ୍କୁ ପ୍ରଣାମ ସହ]

'ଦିଗ ଦିଶୁ ନାହିଁ ଦିଗପହଣ୍ଡି ଦିବସ ଅନ୍ଧାର ।'

ତୋପ ସଲାମି ଭିତରେ ସେ ବିଦାୟ ନେଲେ । ମଟରସାଇକେଲ୍‌ରେ ଅସଂଖ୍ୟ ଛାତ୍ରଙ୍କ ଶୋଭାଯାତ୍ରା । ଯେ ରାଜକୀୟ ବିଦାୟ । ଦିବସ ଅନ୍ଧାରରେ ଜନ୍ମ ହୋଇଥିଲେ ସିନା, ଆଲୋକ-ରୋଶଣିରେ ଗଲେ । ତାଙ୍କ ସହ ପ୍ରଥମରୁ ମୋର ବିଶେଷ ପରିଚୟ ନ ଥିଲା । କିନ୍ତୁ ତାଙ୍କ ବକ୍ତୃତା ଦେବାର ଶୈଳୀ ମୋତେ ନୂଆ ଲାଗୁଥିଲା । ମୁଁ ୯ ନମ୍ବର ଫ୍ଲାଟ୍‌ରେ ଥିଲାବେଳେ ସେ ନିମନ୍ତ୍ରଣ କାର୍ଡ ଦବାକୁ କେଇଥର ଆସିଥିଲେ । ସାଙ୍ଗରେ କେହି ନା କେହି ଥାଆନ୍ତି । ଆଜି ଅଚାନକ ସକାଳୁ ଫୋନ୍– ମୋର ଲେଖକ ଛାତ୍ର ଡଃ ବିଜୟ ମହାନ୍ତିଙ୍କଠାରୁ ସ୍ତବ୍ଧ ହୋଇଗଲି । ଅତି ଚଞ୍ଚଳ, ତରବର ଚାଲି, ଠିକ୍ ପ୍ରଜାପତିଟେ ଉଡ଼ିଲା ଭଳି । ସେ ପୂର୍ବରୁ ହାର୍ଟକୁ ନେଇ ଅସୁସ୍ଥ ଥିଲେ । କିନ୍ତୁ ଏବେ ତ ସେ ଚଳଚଞ୍ଚଳ ।

ମୁଁ ତାଙ୍କ ପ୍ରଥମ ବହି 'ସାୟୋନାରା'ର ଉଦ୍‌ଘାଟନରେ ଅତିଥି ହୋଇ ଯାଇଥିଲି । ତାଙ୍କର ପରବର୍ତ୍ତୀ ଯେତେ ପୁସ୍ତକ ଓ ଚିତ୍ରଶାଳାର ଉଦ୍‌ଘାଟନରେ ମୋତେ ଓ ପାରମିତାକୁ ନିମନ୍ତ୍ରଣ ଥାଏ । ଯଦିଓ ମୁଁ ତାଙ୍କୁ କହିଥାଏ ଯେ, "ଦେଖନ୍ତୁ, ଚିତ୍ରକଳାର ସୂକ୍ଷ୍ମତା ଗ୍ରହଣ କରିବାରେ ମୁଁ ଧୁରୀଣ ନୁହେଁ । ଥରେ, ୨୦୦୧ରେ ମୁଁ ୟୁଜିସି ତରଫରୁ ଦିଲ୍ଲୀ ଯାଇଥାଏ । ମୋର ଗୋଟିଏ ଇଂରାଜୀ କବିତା ସଂକଳନ 'A Time of Rising' ଅନୁବାଦକ ପଦ୍ମଶ୍ରୀ ଜୟନ୍ତ ମହାପାତ୍ରଙ୍କର ଏବଂ ମୁଁ ପ୍ରଚ୍ଛଦ ଚିତ୍ର ଖୋଜାରେ ବ୍ୟସ୍ତ ଥାଇ ଲଳିତ କଳା ଏକାଡେମୀର ଶ୍ରୀ ତ୍ରିପାଠୀଙ୍କ ପାଖକୁ ଯାଇଥାଏ । ହଠାତ୍ ଜାଣିବାକୁ ପାଇଲି, ଦିନନାଥବାବୁ ଦିଲ୍ଲୀରେ ଓ ଶ୍ରୀ ତ୍ରିପାଠୀଙ୍କ ସହ କଥା ହୋଇ ମୋତେ ପ୍ରଚ୍ଛଦଚିତ୍ରଟି ଦିଆ କରାଇଲେ । ଅତି ଚମକପ୍ରଦ, ଆକର୍ଷଣୀୟ ଚିତ୍ରଟିଏ । ଏତେ ବଡ଼ ଶିଳ୍ପୀ, ମୋତେ ଟିକେ ଅପ୍ରସ୍ତୁତ ଲାଗୁଥାଏ । ଯାହାହେଉ, ପୁସ୍ତକଟି ଅତି ସୁନ୍ଦର ପ୍ରଚ୍ଛଦ ନେଇ ପାଠୀବାବୁଙ୍କ ଅଯାଚିତ ଦାନରେ ପ୍ରକାଶ ପାଇଲା । ତାଙ୍କ ବଦାନ୍ୟତା ମୋତେ ମୁଗ୍ଧ କଲା । ଏହାପରେ ମୋର କବିତା ପତ୍ରିକା 'ଉଦ୍‌ଭାସ' ପାଇଁ ସେ ଏକାଧିକ ପ୍ରଚ୍ଛଦଚିତ୍ର ଦେଇ ପତ୍ରିକାଟିକୁ ମନୋହର କରିପାରିଛନ୍ତି ।

ଏହା ମଧ୍ୟରେ ମୋର ଗୋଟେ ଅନର୍ସ ଛାତ୍ରୀ- (ପୂର୍ବରୁ ବି.ଏ. ଅନର୍ସ ପାଇଁ ବି ଥେସିସ୍ ଲେଖିବା ଦରକାର ପଡୁଥିଲା ।) ମୋ ପାଖରେ ୪/୫ଟି ଛାତ୍ରୀଙ୍କ ଦାୟିତ୍ୱ ଥିଲା । ମୁଁ ଭାବିଲି, ଥେସିସ୍ ତ ସବୁବେଳେ ସାହିତ୍ୟିକଙ୍କୁ ନେଇ ଲେଖାଯାଉଛି । ଏଥର ଜଣେ ଚିତ୍ରଶିଳ୍ପୀ ଓ ସାହିତ୍ୟିକ – ଏହି ଉଭୟ ବ୍ୟକ୍ତିତ୍ୱଙ୍କୁ ନେଇ ଲେଖାଯାଉ । ପାଠୀବାବୁଙ୍କୁ ପଚାରିଲି । ସେ ସାଗ୍ରହ ସମ୍ମତି ଦେଲେ ଓ ଛାତ୍ରୀଟିକୁ ସାହାଯ୍ୟ କଲେ । ତେଣୁ ତା'ର ସେହି ଥେସିସ୍‌ଟି ଭଲ ଉତୁରିଲା ଓ ପ୍ରଥମ ଶ୍ରେଣୀରେ ଅନର୍ସ ପାସ୍ କଲା ।

ଅବଶ୍ୟ, ନଅ ନମ୍ବର ଘରେ ମୁଁ ତାଙ୍କ ସହ ଅବନ୍ତୀ ଦେବୀଙ୍କ କଥା କିଛି ଉଠାଇଥିଲି । ସେ କହିଲେ, "ସେ ଶିକ୍ଷୟିତ୍ରୀ ଥିଲେ, ଦୂରରେ ରହୁଥିଲେ ଓ ପ୍ରତି ରବିବାର ଆସୁଥିଲେ । ଆମ ପାଇଁ ଭଲ ସଜଦହି ଓ ଠେକିରେ ଜିଅନ୍ତା ମାଛ କିଛି ଠେକିର ମୁହଁବାନ୍ଧି ଆଣୁଥିଲେ । ସବୁ ଭଲ ଥିଲା । ଝିଅଟି ମୋର ଅସୁସ୍ଥ ହେଲା ।" ବାକି ଆଉ ମୁଁ କିଛି କଥା ବଢ଼ାଇଲି ନାହିଁ । ମହାନ୍ ବ୍ୟକ୍ତିଗଣ ଏହି ପ୍ରକାର ନିଃସଙ୍ଗ ଜୀବନ ଯାପନ କରନ୍ତି । ତେବେ ପାଠୀବାବୁ ବଡ଼ ବିଚକ୍ଷଣ ବ୍ୟକ୍ତିତ୍ୱ ଥିଲେ । ବ୍ୟକ୍ତିଗତ ଅଭାବକୁ ପଛକୁ ରଖି ନିଜ କଳାକୃତିକୁ ପ୍ରାଧାନ୍ୟ ଦେଉଥିଲେ । ଓଡ଼ିଶାର ଚିତ୍ରକଳାକୁ ବିଶ୍ୱ ଦରବାରରେ ପ୍ରାଧାନ୍ୟ ଦେଇପାରିଥିଲେ, ସେଥିରେ କେତେ କେଜାଣି ଉପନ୍ୟାସ ପୁସ୍ତକ ଇତ୍ୟାଦିର ଉତ୍ତମ ରଚୟିତା । ଗୋଟିକୁ ଗୋଟି ବଳି ସାର୍ଥକ । ସେ ଅଦ୍ଭୁତକର୍ମା । ନିଜ ଆତ୍ମବଳରେ ସେ ଥିଲେ ବଳୀୟାନ୍ । ବହୁ ପୂର୍ବରୁ ତାଙ୍କ ପାଇଁ ମୁଁ ଲେଖିଥିବା 'ତୂଳୀ ଓ କଲମର କାରିଗର' ଆଜି ଆଉ ମନେ ପଡୁ ନାହିଁ, କେଉଁଠି ପ୍ରକାଶ ପାଇଥିଲା । ସେଇଟିକୁ ବାଦ୍ ଦେଇ, ମୁଁ ଏବେ ଏଇ ଦୁଇ ଧାଡ଼ି ତାଙ୍କ ପାଇଁ ଲେଖିଲି ।

ମୁଁ ପ୍ରାୟ କିଟ୍ ପାଖରେ ରହିଲା ଦିନୁ ତାଙ୍କ ସଭାସମିତିଗୁଡ଼ିକରେ ନିୟମିତ ଯୋଗ ଦେଇପାରେ ନାହିଁ । ତାଙ୍କୁ ଦୋଷ ମାଗିନିଏ । ସେ ବି ବୋଧେ ବୁଝିଯାଆନ୍ତି । ତାଙ୍କ କଳାକୁଶଳତାର ଭକ୍ତ ଅନେକ ଅନେକ ଛାତ୍ର କଳାକାରଙ୍କୁ ସେ ଥଇଥାନ କରାଇବା ମୁଁ ଛାତ୍ରମାନଙ୍କ ମୁହଁରୁ ଶୁଣିଛି । ଅତି ସାଦାସିଧା, ଖାଦ୍ୟ ବି କମ୍ । କେବେ କେମିତି ୯ ନମ୍ବରରେ ସେ କ୍ଷୀର ଟିକେ ପିଅନ୍ତି ନ ହେଲେ ସାମାନ୍ୟ କ'ଣ ଫଳ । ନଚେତ୍ ସେ କିଛି ଖାଆନ୍ତି ନାହିଁ । ଚା', କଫି ତ ନୁହେଁ ।

ଆଜି ତାଙ୍କର ଅକାଳ ଦେହାନ୍ତରେ ମର୍ମାହତ ମୁଁ ତାଙ୍କ ପାଦରେ ଭକ୍ତି ଶ୍ରଦ୍ଧା ଅର୍ପଣ କରୁଛି । ଓଡ଼ିଶାରେ ଏଭଳି କରିତ୍‌କର୍ମା ବରପୁତ୍ର ଜନ୍ମ ନିଅନ୍ତୁ - ଈଶ୍ୱରଙ୍କୁ ପ୍ରାର୍ଥନା ଜଣାଉଛି ।



# ମୃତ୍ୟୁହୀନ ସେ ସତ୍ତା... ପ୍ରତି ନିବେଦିତ

## [ ଏ କବି ଗୁରୁପ୍ରସାଦ ମହାନ୍ତି ]

ସେ ଆଲୋକାଭିଳାଷୀ- ଦେହର ବିଭୋରପଣ, କାମନାର ବିକାର ଓ କ୍ଷୟଶୀଳତାକୁ ସେ ଶରୀରର ଓ ଆତ୍ମାର ପ୍ରତିଟି ଅଣୁରେ ତୀବ୍ର ଭାବେ ଅନୁଭବ କରିଛନ୍ତି । କବି ଗୁରୁପ୍ରସାଦ ଯେତିକି ନିବିଡ଼ରେ ବୁଝିଛନ୍ତି ଅଲଂଘ୍ୟ କାମନାକୁ, ଅମୋଘ ମୃତ୍ୟୁକୁ ବୁଝିଛନ୍ତି ସେତିକି ନିବିଡ଼ରେ । ତାଙ୍କର 'ଭଲ ପାଇବା' - ଦେହର ସଂଭାର ତା'ର ମୂଳଭୂମି, ଅଥଚ ଦେହର ନଷ୍ଟଶୀଳତା ଓ ହ୍ରସ୍ୱପଣରୁ ସେ କାତର ହୋଇ ମୁକ୍ତି ଖୋଜନ୍ତି - "ମହାପ୍ରଭୁ ମୁକ୍ତିଦିଅ... ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ..."

ଏହି 'ଭଲ ପାଇବା'ର ସାଧନାରେ ତାଙ୍କର କବିତ୍ୱ, ବ୍ୟକ୍ତିତ୍ୱ ଏକ ଓ ଅବିଚ୍ଛେଦ୍ୟ ହୋଇପଡ଼ିଛି । ସ୍ୱଆବେଗ ସପକ୍ଷରେ ସେ ସ୍ପର୍ଦ୍ଧାରେ ଛିଡ଼ା ହୋଇଛନ୍ତି । ଆବେଗକୁ ମୂଲ୍ୟ ଦେବା ପାଇଁ ସେ କମ୍ ବିଡ଼ମ୍ବନା ସହ୍ୟ କରି ନାହାନ୍ତି । ନିଜକୁ ପ୍ରେମାବେଗର ଭୂମି ରୂପେ ପ୍ରସ୍ତୁତ କରିଛନ୍ତି ଅଥଚ ତାଙ୍କ ଅନ୍ତର୍ମନର ପ୍ରଜ୍ଞା ଓ ବାସ୍ତବ-ସଚେତନତାର ତୁଳନା ନାହିଁ । ଏହି କବିଙ୍କ କବିତା ପଢ଼ିଲାବେଳେ ଦିଶିଯାଏ କଟକ ଷ୍ଟେସନ୍‌ର ନିକଟବର୍ତ୍ତୀ ରେଭେନ୍‌ସା କଲେଜ ଅଞ୍ଚଳର ଦୃଶ୍ୟ, ପୁଣି କେବେ ଦିଶିଯାଏ ଶୈଶବର ଆମ୍ବଗଛରେ ମାଡ଼ିଥିବା ସେଇ ଚେକାଏ ନିର୍ମୂଳି ଲଟା । କବି ଗୁରୁପ୍ରସାଦଙ୍କ ରଚନା ସମ୍ଭାର ନିଶ୍ଚୟ 'ମିତଞ୍ଚ ସାରଞ୍ଚ'ର ବିଶିଷ୍ଟତା ପ୍ରତିପାଦନ କରେ । ତାଙ୍କ ସଂରଚନାରେ ଜଣେ ସତ୍‌କବିର ଅନ୍ତର୍ଗତ ପ୍ରତ୍ୟାହାର ପ୍ରବଣତା, ପ୍ରକାଶର ତୀକ୍ଷ୍ଣତା, ବହୁଶାସ୍ତ୍ରଦର୍ଶିତା, ସାହିତ୍ୟିକ ପରମ୍ପରାର, କିମ୍ବଦନ୍ତୀ ଓ ଇତିହାସର ଗଭୀର ଜ୍ଞାନ, ପରିବେଶ ସହ ଆତ୍ମୀୟତା ତଥା ତିକ୍ତ-ମଧୁର ଜୀବନବୋଧର ଚିତ୍ର ଉପସ୍ଥିତ । ପ୍ରାଚ୍ୟ ସଂସ୍କୃତି ଓ ଆତ୍ମିକ ନିର୍ଯ୍ୟାସ ସହ ପାଶ୍ଚାତ୍ୟର ବିକାଶମୁଖୀ ଚିନ୍ତାଧାରାର ସମନ୍ୱୟ ଘଟାଇ ସେ ଓଡ଼ିଆ କବିତାକୁ ଐଶ୍ୱର୍ଯ୍ୟମୟ କରିଛନ୍ତି ।

ଏହି କବିଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ହୋଇ ନାହିଁ, କ୍ୱଚିତ୍ କେବେ ନମସ୍କାର ଜଣାଇଛି ମାତ୍ର । ତାଙ୍କର ପତ୍ନୀ ଅଧ୍ୟାପିକା ଅରୁଣା ମହାନ୍ତିଙ୍କ ସହ କିଛିଟା ଆତ୍ମୀୟତା ରହିଛି । ସେ ରେଭେନ୍‌ସା କଲେଜରେ, ମୋର ୨ ବର୍ଷ ଉପରେ ପଢୁଥିଲେ । ଧଳାଶାଢ଼ି ପରିହିତା, ସୁନ୍ଦରୀ, ଚୁପ୍‌ଚାପ୍ ଝିଅଟି ସେ - ମୁଁ କବିତା ଲେଖୁଥିବା ଜାଣି, ସେ ମୋତେ ଆଦର କରିଥିଲେ । 'କବିତା ସେ ଭଲ ପାଆନ୍ତି' କହିଥିଲେ । ମୁଁ ପରେ ଶୁଣିଲି, ସେ କବି ଗୁରୁପ୍ରସାଦଙ୍କୁ ବିବାହ କଲେ । ୧୯୬୫ ମସିହାରେ ଗୁରୁବାବୁ

ଢେଙ୍କାନାଳର ଏନ୍‌ସିସି ମେଜର୍ ଥିଲେ । ଢେଙ୍କାନାଳ ଟାଉନ୍‌ରେ ଅବସ୍ଥାନ କରୁଥିବା ମୋ ବଡ଼ ଭଉଣୀ ଘରକୁ ଯିବା ବେଳେ ମୁଁ ଥରେ ତାଙ୍କ ଘରକୁ ବୁଲି ଯାଇଥିଲି । ତାଙ୍କ ବଡ଼ପୁଅ ମୋ ବଡ଼ ଝିଅ ଏକା ବୟସର ପ୍ରାୟ । ତା'ପରେ ସେହି ଭଦ୍ରମହିଳାଙ୍କୁ ବୃତ୍ତିଗତ ଜୀବନରେ ବହୁବାର ଭେଟିଛି- ଯଦିଓ ନିବିଡ଼ ଯୋଗାଯୋଗ ହୋଇପାରି ନାହିଁ । ଏବେ ପୁଣି ତାଙ୍କ ସହ ସାକ୍ଷାତ ।

ଲେଖକ ମହାପାତ୍ର ନୀଳମଣି ସାହୁଙ୍କ ଆଗ୍ରହ ରକ୍ଷା କରି, ତାଙ୍କୁ ନେଇ ରୋଗ ଶଯ୍ୟାଶାୟିତ ଗୁରୁବାବୁଙ୍କୁ ମୁଁ ଦେଖିବାକୁ ଯାଇଥିଲି । ପୂର୍ବରୁ କହିଛି, ତାଙ୍କ ସହ ମୁହାଁମୁହିଁ ପରିଚିତ ହୋଇ ନାହିଁ ବା ଏକା କଲେଜରେ ବି କାମ କରି ନାହିଁ । ଅଥଚ ଏପରି ଏକ ବେଳ– ବହୁତ ଘୂରିବୁଲି ଗାଡ଼ି ଫେରାଇଲାବେଳକୁ, ବାଟରୁ ଫୋନ୍‌କରି ଅରୁଣା ଅପାଙ୍କଠାରୁ ଠିକଣା ବୁଝିଲି । ଘରକୁ ଗଲି । ଖଟ ଉପରେ ଶୋଇଛନ୍ତି ଯିଏ, ସେ କ'ଣ ଗୁରୁବାବୁ ? ମଣିଷର ଶରୀର କ'ଣ ଏଭଳି ବିକୃତ ହୋଇପାରେ ? ବୋଧେ ମାତ୍ର ୨୦ ଦିନ ପରେ ତାଙ୍କର ଦେହାନ୍ତ ହେଲା । ଖବରକାଗଜରେ ତାଙ୍କର ମୃତ ଶରୀରର ଫଟୋ ପ୍ରକାଶ ପାଇଥିଲା- ଠିକ୍ ସେହିପରି ଦେଖିଥିଲି ପାଟି ଆଁ ରହିଥାଏ, ସେ ମଝିରେ ମଝିରେ ଗଁ ଗଁ କରୁଥାନ୍ତି । ଅଥଚ ଦେଖିବା, ଶୁଣିବା, ଚାଲିବା, ଉଠିବା କଥା କହିବା କିଛି ବି କ୍ରିୟାକର୍ମ ହେଉ ନ ଥାଏ । କେବଳ ଗୋଟେ ଖତରା କାଠଖଣ୍ଡ ପରି, ଛାତି ଉଠ୍‌ପଡ଼ ହଉଥାଏ ଯାହା । ଆଖି ବୁଜିଥାନ୍ତି, ବେଳେବେଳେ ଖୋଲୁଥାନ୍ତି, ଆଖି ବୁଲାଉଥାନ୍ତି । କିନ୍ତୁ ସେଥିରେ 'ଦୃଷ୍ଟି' ନ ଥାଏ । ହାତ ଗୋଡ଼ ଲାଠି, ଲାଠି । ବେଡ୍‌ସୋର୍ ବି ହୋଇଥାଏ । ବାକି ସବୁ ସଫାସୁତୁରା ଅରୁଣାଅପା କରନ୍ତି । ପୁଅଟି ସାହାଯ୍ୟ ମଧ୍ୟ କରେ । ନୀଳମଣି ବାବୁ ତାଙ୍କୁ କହିଲେ, "ତୁମେ କ'ଣ ଗୁରୁବାବୁଙ୍କୁ ନିଜ ସନ୍ତାନଭଳି ସେବା କରୁଛ ।" ମୁଁ କହିଲି, "ସନ୍ତାନ ? ସେ ତ ହେଲେ ବଢ଼ି ଉଠିବାର ସମ୍ଭାବନା ଥାଏ ।" ସତକଥା, ଅରୁଣାଅପା କହୁଥାନ୍ତି- "ମୁଁ ରାତିରେ ଶୋଇପାରୁ ନାହିଁ । ଗଁ ଗଁ ଶୁଭୁଛି । କ'ଣ ଦରକାର କି ? ବ୍ୟସ୍ତ ଲାଗୁଛି । ଶରୀର ଚଳତ୍‌ଶକ୍ତିରହିତ । ତାଙ୍କୁ 'ପାର୍କିନ୍‌ସନ୍ ଡିଜିଜ୍' ବୋଲି ପ୍ରଥମରୁ କହୁଥିଲେ । ଏବେ ଡାକ୍ତର କହୁଛନ୍ତି 'ଆଲ୍‌ଝାଇମର୍' । ଶୁଖିଲା କାଠପରି ତ ଅବସ୍ଥା । ମୁଁ ଉଠାଉ ଉଠାଉ ବେଳେବେଳେ ପଡ଼ିଯାଉଛି, ପୁଅ ତେଣୁ ଧରାଧରି ବି କରେ । ୩ ବର୍ଷ ହୋଇଗଲା, ଏହିପରି ଅବସ୍ଥା । ୫ ବର୍ଷ ହେଲାଣି ବେମାର – ପୂର୍ବରୁ ଟିକେ ଭଲ ଥିଲେ । ମତେ ଦିନେ କହିଲେ "ମୋତେ ହଠାତ୍ କିଛି ଦେଖାଯାଉ ନାହିଁ- କାହିଁକି ? ତୁ ବୁଝି ପାରୁଛୁ ନା ନାହିଁ- ମୁଁ କିଛି ଦେଖିପାରୁ ନାହିଁ ।" ବାସ୍, ଏ ଘରେ ମୁଁ କାମ କଲାବେଳେ, ଆଖିଡୋଳା ତାଙ୍କର ମୋରି ସାଙ୍ଗରେ ବୁଲୁଛି, ଏଣେ ଦେଖିପାରୁ ଥିବାର କିଛି ଚିହ୍ନ ନାହିଁ, speech ତ ନାହିଁ । ଅରୁଣାଅପା-୪୦/୪୨ ବର୍ଷତଳର ସେଇ

ଝିଅ ! କେତେ କଷ୍ଟ ନ ସହିଲେ ! ଜନରବ ସାଙ୍ଗକୁ ସଂସାର, ଚାକିରି, ସାଲିସ୍‌ବିହୀନ କବି-ଜଣଙ୍କର ପତ୍ନୀତ୍ୱ, ପୁଣି ଶେଷକୁ ଅବସର ଗ୍ରହଣ ପୂର୍ବରୁ ଓ ପରେ ଏହି ଭଳି ରୋଗୀ ସେବା- ଜୀବନଟା ଯେମିତି ଖଣ୍ଡେ ସଳିତା ! ଆମେ ଫେରିଲାବେଳେ ଅରୁଣାଅପା କାନ୍ଦି ପକାଇଲେ । "ପ୍ରତିଦିନ ସକାଳୁ ନିଦ ଭାଙ୍ଗିଗଲେ ଆଗ ଅନାଉଛି ତାଙ୍କ ଛାତି ଉଠ୍‌ପଡ଼୍ ହେଉଛି କି ନାହିଁ - ନାକ ସାମ୍ନାରେ ଆଙ୍ଗୁଠି ରଖି ନିଃଶ୍ୱାସ ବାରୁଛି ।" ଏକାଦଶାହକୁ ନିମନ୍ତ୍ରଣ କରିଥିଲେ । ଫୋନ୍‌ରେ ଅରୁଣାଅପା ବାରମ୍ବାର ମୋତେ 'ମା' ସମ୍ବୋଧନ କରି 'ନିଶ୍ଚେ ଆସିବ' କହିଥିଲେ । ମୁଁ ଯାଇ ନାହିଁ, ଯାଇପାରିଲି ନାହିଁ ।

ଅଥଚ ଗୁରୁବାବୁଙ୍କ କବିତା ପଢ଼ିଲେ ଯେମିତି ବିଭୋର ହୋଇପଡ଼େ - ସେତିକି ରହସ୍ୟ, ବିସ୍ମୟରେ ମୁଁ ଘାରିହୁଏ ! ଚିହ୍ନା ଆଉ ଅଚିହ୍ନା-ଦେହ ପୁଣି ବିଦେହ । ସେ ଯାଉଛନ୍ତି 'ଅରୁନ୍ଧତୀ'ର ଆଲୁଅ ଖୋଜି । ଯଥାର୍ଥରେ ତାଙ୍କ 'ଚିଠି' କବିତାରେ ସେ ଲେଖିଥିଲେ, "ତୁମର ପାଦର ଚିହ୍ନ ପାହାଚ ଉପରେ ପୁଣି ଚାରିଆଡ଼େ ଚାରିପାଖେ / ତୁମର ଦେହର ଚିହ୍ନ ରୋଗଗ୍ରସ୍ତ ଏ ଦେହରେ / କ୍ଲାନ୍ତ ମୋର ବିବର୍ଣ୍ଣ ଦେହରେ ।" କ'ଣ ଅରୁଣା ଅପାଙ୍କୁ ହିଁ ଲେଖିଥିଲେ ଯେ ଚିଠି ? ସେ କ'ଣ ଏହି ପରି ଘଟିବ ବୋଲି ଅନୁମାନ କରିଥିଲେ ?

ସେହି ପ୍ରଥିତଯଶା କବିଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ମୋର ବିନମ୍ର ଭକ୍ତି ଓ ଶ୍ରଦ୍ଧା ନିବେଦନ କରୁଛି ।



## 'ଗାଧୁଆ କୁଣ୍ଡ ଭିତରେ ବନ୍‌ଶୀ'

### ଶୀର୍ଷକଟି ଶରତବାବୁଙ୍କ ଲେଖାରୁ ସଙ୍ଗୃହୀତ

### [ ୰ ପ୍ରଫେସର, ଦର୍ଶନ ଓ ସାହିତ୍ୟବିତ୍ ଶରତ କୁମାର ମହାନ୍ତିଙ୍କୁ ଭକ୍ତିଅର୍ଘ୍ୟ ]

୧୯୭୮ ମସିହା ବେଳକୁ ମୁଁ ତାଙ୍କୁ ଚିହ୍ନିଲି । ୧୯୭୮ରେ ମୋର କବିତା ସଂକଳନ 'ସାହାଡ଼ା ସୁନ୍ଦରୀ'କୁ ପ୍ରକାଶ କରିଥିଲେ 'ଅଗ୍ରଦୂତ'ର ଶ୍ରୀଯୁକ୍ତ ବୀରବର ମହାନ୍ତି । ତାଙ୍କ ସହିତ ମୋ ବାପାଙ୍କର ପରିଚୟ ଓ ବନ୍ଧୁତା ଥିଲା । ମାତ୍ର ବାପା ଦୂରରେ ରହୁଥିବାରୁ ସେକଥା ଶ୍ରୀଯୁକ୍ତ ମହାନ୍ତିଙ୍କଠାରୁ ହିଁ ଜାଣିଲି । ତାଙ୍କୁ 'ମଉସା' ଡାକିବାକୁ ଆରମ୍ଭ କଲି । ତାଙ୍କ ଘର 'ଜରିପଡ଼ା' ଗାଁରେ, ସେ ଗାଆଁରେ ଆମ ଗାଆଁର ବନ୍ଧୁବାନ୍ଧବ ମଧ୍ୟ ଥାଆନ୍ତି । ତେବେ, ପ୍ରଫେସର, ସାହିତ୍ୟବିତ୍ ସୁଲେଖକ ସ୍ୱର୍ଗତ ଶରତ କୁମାର ମହାନ୍ତିଙ୍କ ସହ ମୋର ପରିଚୟ କରାଇ ଦିଅନ୍ତି, ମୋର ଗୁରୁପ୍ରତିମ ସାହିତ୍ୟିକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ ।

କ୍ରମଶଃ ମୁଁ ଜାଣିବାକୁ ପାଏ ଯେ, ତାଙ୍କ ପତ୍ନୀ ଆରତି ମୋର ଛାତ୍ରୀ । ପୁରୀ ମହିଳା କଲେଜରେ ମୁଁ ଆଡ୍‌ହକ୍ ଅଧ୍ୟାପିକା ଭାବେ ଯୋଗଦେଲାବେଳକୁ ଆରତି ଥିଲେ ୪ର୍ଥ ବର୍ଷର ଛାତ୍ରୀ । ସେତେବେଳକୁ ଆରତି ଖୁବ୍ ସୁସ୍ଥ ଥିଲେ । କିନ୍ତୁ ତାଙ୍କ ପରିବାର ସହ ମୁଁ ଘନିଷ୍ଠ ହେଲାବେଳକୁ ଆରତି ହୋଇଯାଇଥିଲେ ଦୁର୍ବଳ ଓ ଅସୁସ୍ଥ । ତାଙ୍କ ଯତ୍ନ ନେବାରେ ଶରତବାବୁ ସଦାସର୍ବଦା ସଚେଷ୍ଟ ଥାଆନ୍ତି । ଏପରିକି ପ୍ରତି ସନ୍ଧ୍ୟାରେ ଭୁବନେଶ୍ୱର ସହରର ଜନାକୀର୍ଣ୍ଣ ରାସ୍ତାରେ ଆରତିର ହାତଧରି ସେ ସାନ୍ଧ୍ୟଭ୍ରମଣରେ ବାହାରନ୍ତି, କାରଣ ଡାକ୍ତରଙ୍କ ପରାମର୍ଶ ଥାଏ, ଆରତି ଚାଲିବା ବୁଲିବା ଦରକାର । ଆରତି ସାରାରାତି ଶୁଅନ୍ତି ନାହିଁ, ଘରକାମ କରିପାରନ୍ତି ନାହିଁ- ତାଙ୍କୁ ଆଦୌ ନିଦ ହୁଏନା । ତଥାପି ଔଷଧ ଓ ଚିକିତ୍ସା ରୀତିମତ ଚାଲିଥାଏ । ଶରତବାବୁ ସ୍ୱାମୀ ଭାବରେ କେତେ ଶ୍ରଦ୍ଧାଶୀଳ ଓ କର୍ତ୍ତବ୍ୟପରାୟଣ, ତାଙ୍କ ଚିହ୍ନିଲାଲୋକେ ଜାଣିଥିବେ । ପିତା ଓ ପୁତ୍ର ଭାବରେ ମଧ୍ୟ ସେ ସ୍ନେହଶୀଳ ଓ କର୍ତ୍ତବ୍ୟନିଷ୍ଠ । ହଠାତ୍ ତାଙ୍କର ବିୟୋଗ ଘଟିଲା । ତାଙ୍କ ଅସୁସ୍ଥତା ବଢ଼ିବା କାଳକୁ ଆରତି ମୋତେ କହୁଥିଲେ, ସେ କାଳେ ୨/୩ ଦିନ ଆଗରୁ ଆରତିକୁ 'ମାଆ' ବୋଲି ଡାକୁଥିଲେ ଓ ବାରମ୍ବାର କହୁଥିଲେ "ଆଲୋ ମାଆ, ମୁଁ ତ ମରିଯିବି, ତୋ ଖବର କିଏ ବୁଝିବ ?" ଆରତିର କାନ୍ଦ ବାଧା ମାନୁ ନ ଥିଲା ।

ଆଜି ବି ଦିଶିଯାଏ ଆଖି ଆଗରେ । ସତ ଭଳି, ବାସ୍ତବ ଭଳି ସେ ଚିତ୍ର । ୟୁନିଟ୍-୯ର ମୋ ଘର ସାମ୍ନା ପଡ଼ିଆରେ ଗାଡ଼ି ରଖି ଶରତବାବୁ ଓ ନୀଳମଣିବାବୁ ଆସୁଛନ୍ତି । ପ୍ରାୟ ୧୯୭୮ ମସିହାରୁ ସେ ଆମ ଘରକୁ ମଝିରେ ମଝିରେ ଆସନ୍ତି । ଏକା କଦାପି ନୁହଁ, ନୀଳମଣିବାବୁ, ସାଥିରେ ଥାଆନ୍ତି । ଗତ ପ୍ରାୟ ୪/୫ ବର୍ଷ ହେବ ସେ ମାସେ ଦି' ମାସ ଅନ୍ତରରେ ନୀଳମଣିବାବୁଙ୍କୁ ଧରି ଆମ ଘରକୁ ଆସନ୍ତି । ଆଗରୁ ନୀଳମଣିବାବୁ ଫୋନ୍ କରିଥାନ୍ତି । ଜଳଖିଆ ବରାଦ ହେଇଥାଏ । ଚା', ଜଳଖିଆ ସହିତ ଗପ ଚାଲେ । ଗପଚାଲେ ମାନେ, ଶରତବାବୁ ତ ଚୁପ୍ ହେଇ ବସିଥାଆନ୍ତି, କେବେ ବା ମୁରୁକି ହସୁଥାଆନ୍ତି, ଗପି ଚାଲନ୍ତି ନୀଳମଣିବାବୁ । ମଝିରେ କ୍ୱଚିତ୍ ତାଙ୍କୁ ପ୍ରଶ୍ନ କଲେ ସେ ପଦେ ମତାମତ ଦିଅନ୍ତି । ହଠାତ୍ ଶୁଣିଲି ସେ ଅସୁସ୍ଥ । ରୋଗ ସେତେବେଳକୁ ବହୁକି ପଡ଼ିଲାଣି । ତାଙ୍କୁ ଦେଖିବାକୁ ବାହାରିଛୁ, ଶୁଣିଲୁ ସେ ନୀଳାଚଳ ହସ୍ପିଟାଲ୍‌ରେ ରହିଲେଣି । ମୁଁ ସେଠାରେ ପହଞ୍ଚିଲା ବେଳକୁ ତାଙ୍କ ରୁମ୍ ଭିତରକୁ ଛାଡୁ ନ ଥାନ୍ତି କାହାକୁ । ମୁଁ ନ ମାନି କି ପଶିଗଲି । ଖଟ ଉପରେ ଶୋଇଥାଆନ୍ତି, ଆଖି ଖୋଲି ବୁଲାଉଥା'ନ୍ତି, ବୋଧେ କିଛି ଦେଖୁ ନ ଥାନ୍ତି । ମୋ ବଡ଼ ଝିଅ ଟିଟାନସ୍ କଥା ଜାଣି କହିଲା, "ମଉସା ବୈଜ୍ଞାନିକ, କେତେ ବିଜ୍ଞାନ ବହି ଲେଖିଛନ୍ତି ଶେଷକୁ ଏଇଆ କଲେ । କ୍ୱାକ ଦ୍ୱାରା ଅପରେସନ୍ କରାଇଲେ ।" କାହାକୁ କିଛି ସେ ମୂଳରୁ ଜଣାଇ ନ ଥିଲେ । ଅପରେସନ୍ ୧୦/୧୫ ଦିନ ପରେ ଟିଟାନସ୍ ହେଲା ବେଳକୁ ଲୋକେ ଜାଣିଲେ, ରୋଗ ନିର୍ଣ୍ଣୟ ହେଲା ବହୁତ ବିଳମ୍ବରେ । ତାଙ୍କ ଭଉଣୀ ବାଂଶରୀଦେବୀ କହନ୍ତି, "ଭାଇ ବାବାଜି ଲୋକ ।" ବାବାଜି ଲୋକ ବୋଧେ ଏମିତି ଅନ୍ତର୍ମୁଖୀ ଥାଆନ୍ତି ।

ନିଜର ବହିଖଣ୍ଡିଏ ପ୍ରକାଶ ପାଇଲେ ସେ ଆଣି ଘରେ ଦେଇଯାଆନ୍ତି । ମୋର ଫିଚର୍ ଗଳ୍ପ ପୁସ୍ତକ 'ଭାରତମାତାର ଲୁହ' 'ଅଗ୍ରଦୂତ' ପ୍ରକାଶ କରିଥିଲେ ଓ ମୁଁ ନିଜେ ପ୍ରୁଫ୍ ଦେଖିବାକୁ ଚାହିଁଲାରୁ, ଶରତବାବୁ ଗାଡ଼ିରେ ଆସି ମୋତେ ପ୍ରୁଫ୍ ଦେଇଯାଉଥିଲେ । କିଏ ଭଲା ଏଭଳି ପ୍ରକାଶକ ଅଛନ୍ତି ମୁଁ ନ କହିଥିଲେ ବି, 'ଭାରତମାତାର ଲୁହ' ପ୍ରକାଶିତ ହେବା ପରେ ସେ ଜିଦ୍‌କରି ଭୁବନେଶ୍ୱର ପୁସ୍ତକମେଳାରେ ତାଙ୍କ ଷ୍ଟଲ୍‌ରେ ପୁସ୍ତକଟିକୁ ଉନ୍ମୋଚନ କରାଇଥିଲେ । ବିଶିଷ୍ଟ କବି ରମାକାନ୍ତ ରଥଙ୍କ ଦ୍ୱାରା ଉନ୍ମୋଚିତ କରାଇ ଚା'-ଜଳଖିଆରେ ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ । ସେ ଦିନ ଜଳଖିଆ ବ୍ୟାଗ୍ ସେ ନିଜେ ବୋହି ଷ୍ଟଲ୍‌କୁ ଆଣିବା ମୋତେ ଦିଶିଯାଉଛି ।

୨୦୦୩ ମସିହାରେ ମୁଁ ଓଡ଼ିଆ ସୋସାଇଟିର ନିମନ୍ତ୍ରଣ କ୍ରମେ ଆମେରିକା ଯାଉଥାଏ । ସେ ମୋତେ କହିଥିଲେ, 'ମେସୋପଟାମିଆ' ସଭ୍ୟତା ବିଷୟରେ କିଛି ତଥ୍ୟ ମିଳିଲେ, ଆଣିବାପାଇଁ । ମୋର ୩ ମାସ ରହଣିକାଳ ମଧ୍ୟରେ ମୁଁ ଷ୍ଟାନ୍‌ଫୋର୍ଡ଼ ୟୁନିଭର୍ସିଟି, ବର୍କଲେ ୟୁନିଭର୍ସିଟି, ଆର୍ଲିଂଟନ୍ ଓ ହ୍ୟୁଷ୍ଟନ୍ ୟୁନିଭର୍ସିଟିର ଲାଇବ୍ରେରୀମାନଙ୍କରେ ଖୋଜିଥିଲି ।

ଆର୍ଲିଂଟନ୍ ୟୁନିଭର୍ସିଟି ଲାଇବ୍ରେରୀରୁ ପ୍ରାୟ ୪୦ ପୃଷ୍ଠାର ଜେରକ୍ସ ଆଣିଥିଲି । ସେଥିରୁ କିଛି ତଥ୍ୟ ପାଇଛନ୍ତି ବୋଲି ମୋତେ କହିଥିଲେ । 'ପ୍ରାଚୀନ ସଭ୍ୟତାର କାହାଣୀ 'ମେସୋପଟାମିଆ' ବହି ଖଣ୍ଡିକ ଛପା ହେଲାମାତ୍ରେ ଘରେ ଦେଇଯାଇଥିଲେ । ତାଙ୍କ ରଚିତ ପୁସ୍ତକ 'ଅସ୍ତିତ୍ୱବାଦର ମର୍ମକଥା' ପଢ଼ି ଆଧୁନିକ ତତ୍ତ୍ୱଟି ସମ୍ପର୍କରେ ମୁଁ ଅନେକ ତଥ୍ୟ ଜାଣିଥିଲି । ତାଙ୍କର 'ସକ୍ରେଟିସ୍ ଓ ପ୍ଲାଟୋ', 'ଗାନ୍ଧୀ ମଣିଷ' ଆଦି ପୁସ୍ତକ ଓଡ଼ିଆ ସାହିତ୍ୟ ଜଗତର ଉଜ୍ଜ୍ୱଳ ଆଲୋକ ଉତ୍ସସଦୃଶ । ଓଡ଼ିଆମାନଙ୍କ ଚେତନା ଜଗତକୁ ଉଦ୍‌ଭାସିତ କରିବା ନିମିତ୍ତ ତାଙ୍କ ସର୍ଜନ ପ୍ରୟାସ ବିରଳ ଯୋଗ୍ୟତାର ପ୍ରମାଣ ଦିଏ । ଆଉ ଶରତବାବୁଙ୍କ ଭାଷା 'ସମ୍ୟକ୍ ଜ୍ଞାତଃ ସମ୍ୟକ୍ ସମ୍ପ୍ରଯୁକ୍ତଃ" । ତାଙ୍କ ଶବ୍ଦରାଜିର ଶକ୍ତି ଅକଳନୀୟ । ଗଭୀର ମନନଶୀଳତା, ଶାଣିତ ବ୍ୟଙ୍ଗ ଓ ପ୍ରଚୁର ଅର୍ଥବାହୀ ତାଙ୍କ ସୃଜନଗୁଡ଼ିକ ଲକ୍ଷ୍ୟସିଦ୍ଧ । ଏପରି ଏକ ଯୋଗଜନ୍ମା ସାହିତ୍ୟିକଙ୍କ ବିୟୋଗରେ ସତକୁ ସତ ଓଡ଼ିଆ ସାହିତ୍ୟ ଦରିଦ୍ର ହୋଇଗଲା । ଆଉ ମୁଁ? ଜଣେ ଉଦାର ପ୍ରକାଶକ ଓ ମନନଶୀଳ ଲେଖକ ତଥା ଶିକ୍ଷାବିତ୍‌ଙ୍କ ବନ୍ଧୁତ୍ୱ ହରାଇ ଚେତନାଜଗତରେ ଦାରିଦ୍ର୍ୟ ଭୋଗିଲି । ବର୍ଷଟିଏ ଅତୀତ ହେବାକୁ ବସିଲାଣି । ଏଭଳି ଅକାଳ ମୃତ୍ୟୁର ନିଦାରୁଣ ସତ୍ୟ ଦେହସୁହା ହେବାରେ ଲାଗିଲାଣି କ୍ରମଶଃ ।

ଗୋଟିଏ ମଜାକଥା ଶରତବାବୁଙ୍କ ଲେଖା ବିଷୟରେ, ଶରତବାବୁଙ୍କ ରଚନାରେ, wit of humour ଥାଏ । ଥରେ ଜଣେ ଦାର୍ଶନିକ ଗାଧୁଆ କୁଣ୍ଡ ଭିତରେ ବନ୍‌ଶୀ ପକାଇ ବସିଥାଆନ୍ତି । ଆଉ ଜଣେ ବନ୍ଧୁ ତାଙ୍କୁ ପଚାରିଲେ "ଏଥିରେ କାହିଁକି ବନ୍‌ଶୀଟା ପକାଇଛନ୍ତି ? ପ୍ରଥମ ଦାର୍ଶନିକ ହସି ହସି କହିଲେ "ଆରେ ମୂର୍ଖ, ମୁଁ କ'ଣ ଜାଣିନି, ଗାଧୁଆ କୁଣ୍ଡରେ ମାଛ ନ ଥାନ୍ତି ବୋଲି ?"

ତାଙ୍କ ଆତ୍ମା ନିଶ୍ଚୟ ସ୍ୱର୍ଗଲୋକରେ ଅବସ୍ଥାପିତ ହୋଇଥିବ । ତାଙ୍କର ଉଦାରତା ଓ ସର୍ଜନଶୀଳତା ନେଇ ଅନ୍ତତଃ ଆଉ ଜଣେ କେହି ଯେ ଓଡ଼ିଶା ଭୂଇଁରେ ଜନ୍ମ ନିଅନ୍ତୁ - ଏହା ଆମେମାନେ ଆଶା କରିବା ସ୍ୱାଭାବିକ । ଆଜି, ସେହି ସତ୍-ସାହିତ୍ୟିକଙ୍କ ପ୍ରଥମ ବର୍ଷ ଶ୍ରାଦ୍ଧ ଅବସରରେ ମୁଁ ତାଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାପୂତ ପ୍ରଣତି ଜଣାଉଅଛି ।



# ପ୍ରେମ ଓ ଭକ୍ତିର ନୀରାଜନା

## [ ଁ କବି ବ୍ରହ୍ମୋତ୍ରୀ ମହାନ୍ତିଙ୍କୁ ପ୍ରଣାମ ସହ ]

ମୁଁ ତାଙ୍କୁ ନିୟମିତ ପଢ଼େ-୧୦ମ ଓ ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ । 'ପ୍ରଜାତନ୍ତ୍ର' ଓ 'ଝଙ୍କାର' ପୃଷ୍ଠାରେ । ମୋ ବୋଉ ଗାଁର ଅଶିକ୍ଷିତାମାନଙ୍କୁ ପ୍ରତି ସନ୍ଧ୍ୟାରେ ପାଠ ପଢ଼ଉଥିଲା- ବ୍ଲକ୍ ତରଫରୁ ଏହି ଶିକ୍ଷାଦାନ ବ୍ୟବସ୍ଥା ଚାଲୁଥିଲା । ମୁଁ ଆଉ ଏକୁଟିଆ ଘରେ ରହିବି କ'ଣ- ଲଣ୍ଠନଟିଏ ଧରି ବୋଉ ସାଙ୍ଗରେ ଯାଏ । ସେଠାରେ ଗୋଟିଏ ଅଲଗା କୋଠରିରେ ବସି ପଢ଼ାପଢ଼ି କରେ- ସେ ସ୍ଥାନଟି 'ମାତୃମଙ୍ଗଳ କେନ୍ଦ୍ର' । ସେଠାକୁ ଉପରୋକ୍ତ ସମ୍ବାଦପତ୍ର ଓ ପତ୍ରିକା ନିୟମିତ ଆସେ । ସେତେବେଳେ ମୁଖ୍ୟମନ୍ତ୍ରୀ ଥାଆନ୍ତି ମାନ୍ୟବର ଡଃ ହରେକୃଷ୍ଣ ମହତାବ । ସେହି ପଢ଼ିବାର ଅବକାଶରେ ମୁଁ ଶ୍ରୀମତୀ ବ୍ରହ୍ମୋତ୍ରୀଙ୍କ କବିତା ପଢ଼େ । ତାଙ୍କ କବିତାଗୁଡ଼ିକ ମତେ ଭଲ ଲାଗେ । ସେତେବେଳେ ମୁଁ ମଧ୍ୟ ପ୍ରଜାତନ୍ତ୍ର 'ନାରୀଜଗତ'ରେ ମଝିରେ ମଝିରେ କବିତା ଲେଖି ଛପଉଥାଏ ।

ଶ୍ରୀମତୀ ବ୍ରହ୍ମୋତ୍ରୀ ଖୁବ୍ ସାହସିକତାର ସହିତ ପ୍ରେମ କବିତାମାନ ଲେଖୁଥାନ୍ତି । ସେ କାଳରେ ନାରୀମାନେ କବିତା ଲେଖିବା ଖୁବ୍ ପ୍ରଶଂସାର କାର୍ଯ୍ୟ ମଧ୍ୟ ନ ଥିଲା । ତଥାପି, ଏହି ପ୍ରେମ କବିତାଗୁଡ଼ିକ ମାଧ୍ୟମରେ ସେ ବିଶେଷ ପରିଚିତା ହୋଇଥିଲେ । କେତେ ଅଳ୍ପସଂଖ୍ୟକ ମହିଳା ଲେଖୁଥିଲେ, ଜାଣିଲେ ଏବେ ଆଶ୍ଚର୍ଯ୍ୟ ଲାଗିବ । ୧୯୫୯, ୬୦, ୬୧ ମସିହାର କଥା । ତାଙ୍କର ପ୍ରେମ କବିତାଗୁଡ଼ିକ ମୋତେ ବିଶେଷ ଅନୁପ୍ରାଣିତ କରୁଥିଲା । ତାଙ୍କର "ମୁଁ ଯଦି କେବେ ସ୍ୱପ୍ନ ଦେଖେ ରାଜକୁମାର ଜଣେ / ଚୁମ୍ବନରେ ଅଧୀରା କରେ ମତେ..." ପରି ଧାଡ଼ିଗୁଡ଼ିକ ମୁଖସ୍ଥ ରହିପାରି ନାହିଁ । ସେ କହୁଛନ୍ତି, 'ଜଣେ ନାରୀ ଯଦି ସ୍ୱପ୍ନରେ ଜଣେ ରାଜକୁମାର ସହ ପ୍ରଣୟ ରଚେ, ଏଭଳି ସ୍ୱପ୍ନଦୋଷାବହ ନୁହେଁ । ସେ ବିବାହିତା ନାରୀଟି କ'ଣ ତା'ହେଲେ ଏଇ ମଧୁର ସ୍ୱପ୍ନରେ ଆବିଷ୍ଟ ରହିବ ନାହିଁ? ସେ କାହିଁକି ଅଧାନିଦରୁ ଉଠିପଡ଼ି ନିଜର ପାପ ହେଲା ବୋଲି ଭାବିବ ଓ ପଞ୍ଚସତୀଙ୍କର ପୁଣ୍ୟନାମ ଗୁଣି ବସିବ? ପରବର୍ତ୍ତୀକାଳରେ ସେ ଅବଶ୍ୟ ଏହି ଧାରାକୁ ତ୍ୟାଗ କରି ବିଭୁ ନୀରାଜନାର ପଥ ଅବଲମ୍ବନ କଲେ । ମୁଁ ଯେତେ ଖୋଜିଲି, ତାଙ୍କର କୌଣସି ସଂକଳନରେ ଏଇ କବିତାଗୁଡ଼ିକ ପାଇଲି ନାହିଁ । କେଜାଣି ସେ ସଂକଳିତ କରି ନାହାନ୍ତି କିମ୍ବା ମୁଁ ପାଇପାରି ନାହିଁ ।

ମୁଁ ପ୍ରଥମେ ତାଙ୍କୁ ଦେଖେ ବିଷୁବ ମିଳନ ସମାରୋହରେ ୧୯୬୧ ଏପ୍ରିଲ୍ ମାସରେ । ମୁଁ ହଷ୍ଟେଲ୍‌ରୁ ଲୁଚି ମୋର ଉପର କ୍ଲାସ୍‌ର ୨ ଜଣ ଲେଖିକାଙ୍କ ସହିତ ଚାଲିଯାଇଥିଲି ସେଠିକୁ । ଲୁଚିକି ଅର୍ଥାତ୍ ମୋର ନିମନ୍ତ୍ରଣପତ୍ରଟି ସହ-ତତ୍ତ୍ୱାବଧାରିକା ପୂର୍ବରୁ ତାଙ୍କ ଦ୍ୱାରା ଆସିବା ଜାଣିଥିଲେ ଏବଂ ମୋର ସେଦିନ ସେକେଣ୍ଡ ସିଟିଂ ଦିନ ୨ଟାରେ ଫିଜିକ୍ସର ଫାଇନାଲ୍ ପରୀକ୍ଷା ଥିଲା । ମୁଁ ପଢୁଥିଲି ରେଭେନ୍‌ସାରେ ପ୍ରି.ୟୁ ବିଜ୍ଞାନରେ । ପ୍ରଜାତନ୍ତ୍ର ପ୍ରଚାର ସମିତି ସମାରୋହରେ ସକାଳ ୮ଟା ବେଳକୁ ଗୋଟିଏ ରିକ୍ସାରେ ଆମେ ୩ ଜଣ ଝିଅ ପହଞ୍ଚିଗଲୁ । ସେଇଠି ଅନିନ୍ଦ୍ୟ ସୁନ୍ଦରୀ ବ୍ରହ୍ମୋତ୍ରୀଅପାଙ୍କୁ ଦେଖିଲି । କବି ଭାବରେ ସେ 'ଝଙ୍କାର' ପୁରସ୍କାର ପାଇଥାନ୍ତି ସେ ବର୍ଷ, ଆଉ ହଷ୍ଟେଲ୍‌ରୁ ଲୁଚିକି ଆସିଥିବା ମୁଁ, ସେ ବର୍ଷ ପ୍ରଜାତନ୍ତ୍ର ନାରୀଜଗତର କବିତା ପୁରସ୍କାର ପାଇବାର ଥାଏ । ଯା' ଭିତରେ ମୁଁ ଜାଣି ନ ଥିଲି ଯେ ଆମ ଉପର କ୍ଲାସ୍‌ର ମୋ ସହିତ ଆସିଥିବା 'ଅଗସ୍ତି'ଅପା ବ୍ରହ୍ମୋତ୍ରୀଅପାଙ୍କର ପୂର୍ବ ପରିଚିତା ଥାଆନ୍ତି । ସେଦିନ କାଳେ ତାଙ୍କ ଘରକୁ ଆମର ନିମନ୍ତ୍ରଣ ଥାଏ, ଦି'ପହରେ ଖାଇବାପାଇଁ । ମୋର ପରୀକ୍ଷା, ୟୁନିଭର୍ସିଟିର, ଯା' ହଉ ଉପର କ୍ଲାସ୍‌ର ଅନ୍ୟ ଦି' ଜଣ ଏଥିପାଇଁ ସଚେତନ ଥାଆନ୍ତି । ସଭା ଶେଷ ହେବା ମାତ୍ରକେ ଆମେ ବ୍ରହ୍ମୋତ୍ରୀଅପାଙ୍କ ଘରକୁ ଚାଲିଗଲୁ, ଅତି ନିକଟରେ ତାଙ୍କର ଘର । ସେ, ତାଙ୍କ ସ୍ୱାମୀ ଶ୍ରୀ ବିଜୟକୃଷ୍ଣ ମହାନ୍ତି ଓ ଆମେ ୩ ଜଣ କିଶୋରୀ । ତାଙ୍କ ସ୍ୱାମୀ ବି ଲେଖକ ଓ ସେ ମଧ୍ୟ ବିନୟ ଓ ସ୍ନେହରେ ଭରପୂର । ସ୍ତ୍ରୀଙ୍କୁ ବୋଧହୁଏ ସେ ଦେବୀତୁଲ୍ୟ ଜ୍ଞାନ କରନ୍ତି ।

ଆମର ଏଥର ଖାଇ ଦେଇ ଚାଲିଯିବା କଥା, ମୋର ପରୀକ୍ଷା, ପୁଣି ଦୂରବାଟ । ତେଣୁ ସମସ୍ତେ କଦଳୀପତ୍ର ପକାଇ ତଳେ ଖାଇବସିଲୁ । ଜାଣିଲି, ସେ ତେଲ ମସଲା ଖାଆନ୍ତି ନାହିଁ । ସବୁ ସିଝା କିନ୍ତୁ ସୁସ୍ୱାଦୁ । ସକାଳୁ ଏତକ ରାନ୍ଧି, ଚଣ୍ଡୀ ମନ୍ଦିର ଯାଇ ସେଠାରେ ମିଠାଭୋଗ କରି ଆମ ପାଇଁ ରଖିଛନ୍ତି । ତାଙ୍କ ସ୍ୱାମୀ ଶୀଘ୍ର ଦହି ନେଇ ଆସିଲେ । ଆମେ ଆନନ୍ଦରେ ଖାଇ ସାରି ତୁରନ୍ତ ବାହାରିଲୁ । ଅବଶ୍ୟ ମୋ ସହପାଠିନୀମାନେ ପରୀକ୍ଷା ହଲ୍‌କୁ ଯିବାକୁ ସଜବାଜ ହଉଥାନ୍ତି । ମୁଁ ତତ୍‌କ୍ଷଣାତ୍ ମୋର କଲମ ଓ ଆଡମିଟ୍ କାର୍ଡ ଧରି ବାହାରି ପଡ଼ିଲି । ଅଧିକାଂଶ ନାକ ଟେକିଲେ- ଏଇଟା କି ପରୀକ୍ଷା ଦବ - ସକାଳୁ ବୁଲି ବୁଲି ଆସିଲା । ଅବଶ୍ୟ ମୁଁ ପୂର୍ବଦିନ କଠିନ ପରିଶ୍ରମ କରିଥିଲି - ଫିଜିକ୍ସରେ ଭଲ ନମ୍ବର ପାଇଥିଲି ଓ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲି ।

ଏବେ ମୁଁ ବ୍ରହ୍ମୋତ୍ରୀଅପାଙ୍କ ପ୍ରସଙ୍ଗକୁ ଆସେ । ତାଙ୍କ ସ୍ୱାମୀ ଆମ ସାମ୍ନାରେ ମଧ୍ୟ ତାଙ୍କୁ 'ବ୍ରହ୍ମୋତ୍ରୀ ଦେବୀ' ବୋଲି ସମ୍ବୋଧନ କରୁଥାନ୍ତି । ତା' ପରେ ପରେ ମୋର ବିବାହ, ପରିବାର (ଶାଶୂଘର) ଜଞ୍ଜାଳ ବଢ଼ିଚାଲିଲା ଓ ମୁଁ ଆଉ ବେଶି ତାଙ୍କ ସହ ମିଳମିଶା କରିପାରି ନାହିଁ । କିନ୍ତୁ ତାଙ୍କ କବିତା ମୁଁ ନିୟମିତ ପଢ଼େ । ବହୁ ବର୍ଷ ପରେ, ପ୍ରାୟ ୫/୬ ବର୍ଷ ତଳେ କବି ସୁଚେତା ମିଶ୍ର ମୋତେ ନିମନ୍ତ୍ରଣ କଲେ ବ୍ରହ୍ମୋତ୍ରୀ ମହାନ୍ତିଙ୍କର ଶ୍ରାଦ୍ଧବାର୍ଷିକୀ

ପାଇଁ । ସେ ଗୋଟେ ଅନୁଷ୍ଠାନ ଗଢ଼ିଥିଲେ । ତା'ରି ତରଫରୁ ସେ ନିମନ୍ତ୍ରଣ ଜଣାଇଥିଲେ । ମୁଁ, ଅର୍ଚ୍ଚନା ଓ ଜୟନ୍ତୀ ରଥ ପୁରୀ ଯାଇଥିଲୁ । ବଡ଼ ଆଦର ଓ ସମ୍ବର୍ଦ୍ଧନା ମିଳିଥିଲା ଆମକୁ । ସୁଚେତା ମୋତେ 'ମାଉସୀ' ଡାକନ୍ତି, ମୁଁ ମଧ୍ୟ ତାଙ୍କୁ କନ୍ୟା-ସମା ବୋଲି ମନେ କରେ । ଶୃଙ୍ଖଳାର ସହିତ ସଭାକାର୍ଯ୍ୟ ଚାଲିଲା । ବ୍ରହ୍ମୋତ୍ରୀଅପାଙ୍କ ସମ୍ପର୍କରେ ମୁଁ କ'ଣ କହିବି ? ମତେ ଉଦ୍‌ବୁଦ୍ଧ କରିଥିବା ଅନେକ କବିତା ତାଙ୍କ ସଂକଳନ 'ଦୃଷ୍ଟିର ଦ୍ୟୁତି'ରେ ଖୋଜି ପାଇଲି ନାହିଁ । କୁଆଡ଼େ ଗଲା ସବୁ ଏଡ଼େ ସାହସିକତାର ଉଚ୍ଚାରଣ ତାଙ୍କର ! ସେ ତ କେବେ ହଜେଇ ଦେଇ ନ ଥିବେ । ପାଖେ ପାଖେ ତାଙ୍କର ସମର୍ପିତ ସ୍ୱାମୀ । ଯା' ହଉ, ମୁଁ ଟିକେ ଦୁଃଖିତ ହେଲି । ସେହି ସଭାରେ ମଧ୍ୟ ମୁଁ ତାହା ପ୍ରକାଶ କଲି । କେହି ଉତ୍ତର ଦେଲେ ନାହିଁ । "ତୁମ ଦତ୍ତ ମୋ କବରୀ ଫୁଲ/ଗତ ରାତ୍ରେ ଥିଲା ଯା'ର ମାଣିକ୍ୟର ମୂଲ/ଆଜି ପ୍ରାତେ ସେ ତ ଉପେକ୍ଷିତ, ସୁଷମା ସ୍ତିମିତ ।" ଏମିତି କିଛି ଅଳ୍ପ ମନେ ପଡ଼ିଲା । ଏବେ ଜଣେ ଅଧ୍ୟାପିକା କହିଲା, ବରଂ ଅନୁରୋଧ କଲା, "ମୁଁ ବ୍ରହ୍ମୋତ୍ରୀଅପାଙ୍କ ବିଷୟରେ କିଛି ଲେଖେ ।" ସାହିତ୍ୟ ସମାଲୋଚନା ଲେଖିପାରିବାର ଆଉ ସୁଯୋଗ ନାହିଁ । କିଛି ବ୍ୟକ୍ତିଗତ ଆଳାପ ଓ ଭଲ ପାଇବାର କଥା ହିଁ ଲେଖିଲି । ଜଣେ ଅତ୍ୟନ୍ତ ସାହସିନୀ ସୁନ୍ଦରୀ କବିଙ୍କୁ ଆନ୍ତରିକ ପ୍ରଣାମ ଜଣାଉଛି । ତାଙ୍କ ସ୍ମୃତି ସକଳ କବିତା-ପ୍ରେମୀଙ୍କର ମନେ ରହିବ । ସେ କବି ଭାବରେ ଖୁବ୍ ସମ୍ମାନିତା । କ'ଣ ପୁରସ୍କାର ପାଇଲେ ନ ପାଇଲେ, ସେ କଥା ଏଠାରେ ଅବାନ୍ତର । କାରଣ ୬୦ ମସିହା ବେଳକୁ ଏତେ ପୁରସ୍କାର ଥିଲା ନା ଏତେ ସଂଖ୍ୟକ ସଭାସମିତି, ଭୋଜିଭାତ ଚାଲୁଥିଲା । ତଥାପି, ଭଲ କବି ତ, ଏଯାବତ୍ ସେ ଚିରଞ୍ଜୀବୀ ହୋଇରହିଛନ୍ତି ।

ତାଙ୍କ ଲିଖିତ କେତେକ ପଂକ୍ତି ଯାହା ଆଜି ବି ମନେ ରହିଆସିଛି । "ମୁଁ ଯାହାଙ୍କୁ ପ୍ରେମ କରିଥିଲି / ପାଇପାରିଲିନି ତାଙ୍କୁ / ମାତ୍ର ଯାହାଙ୍କୁ ନେଇ ସଂସାର କରୁଛି / ମନେହୁଏ ବିବାହ ଆଗରୁ ତାଙ୍କୁ ବି ପ୍ରେମ କରାଯାଇପାରିଥାନ୍ତା ।" (ସେତୁବନ୍ଧ, ୧୩) ଅନ୍ୟ କେତୋଟି ପଂକ୍ତି- "ତମେ ଯଦି ହାତ ନ ଧରିବ ମୋର / ଲେଖିବି କିପରି କୁହ ? / ତମ ଦେହେ ଲୋଟି ରହିଚି ଲତା ମୁଁ / ତମେ ମୋର ମହୀରୁହ ।" ଉପରୋକ୍ତ ପଂକ୍ତିଗୁଡ଼ିକରେ ପ୍ରେମ ଓ ଭକ୍ତି ପରସ୍ପର ଆପଣାର ସ୍ୱତନ୍ତ୍ର ସତ୍ତା ହରାଇ ଦେଇଛନ୍ତି ।"

ବ୍ରହ୍ମୋତ୍ରୀଅପା ସେହିପରି 'ଅମର କବି', ତାଙ୍କୁ ମୋର ଭକ୍ତି ନିବେଦନ କରୁଛି ।



# ହିନ୍ଦୀ ସହ ଓଡ଼ିଆକୁ ଭଲ ପାଉଥିବା ଶିକ୍ଷାବିତ୍

## [ ସ୍ୱର୍ଗତ ନାମଓ୍ୱର୍ ସିଂଙ୍କୁ ପୁଷ୍ପାଞ୍ଜଳି ]

ହିନ୍ଦୀ ସାହିତ୍ୟର ବିଶିଷ୍ଟ ପ୍ରଫେସର ଓ ଲେଖକ କବି ତଥା ସମାଲୋଚକ ଡଃ ନାମଓ୍ୱର୍ ସିଂଙ୍କ ହାତରୁ ମୁଁ ବିଷୁବ କବିତା ପୁରସ୍କାର ଗ୍ରହଣ କରିଥିଲି । ମୁଁ ଏପରି ସଂଭ୍ରମରେ ବିନୀତ ହୋଇଥିଲି ଯେ ମୁଁ ତାଙ୍କ ମୁହଁକୁ ବି ଭଲକରି ଚାହିଁକି ଦେଖି ନ ଥିଲି । ପରେ ସେ ବିଭିନ୍ନ ସଂସ୍ଥାକୁ ଅତିଥି ହୋଇ ଆସିଲେ, ମୁଁ ଥରେ ଦି' ଥର ଡକ୍ଟର ଶତପଥୀଙ୍କ ସହ ତାଙ୍କୁ ସାକ୍ଷାତ କରିଥିଲି । ପ୍ରଥମ ହିନ୍ଦୀ କବିତା ପୁସ୍ତକ (ସମୟ ନହିଁ ହୈ, ଚୁନିହୁଇ କବିତାଏଁ) ଖଣ୍ଡିକ ତାଙ୍କୁ ଦେଇଥିଲି । ଶୁଣିଥିଲି, ସେଇ ବହିଟି ତାଙ୍କ ଅଧକ୍ଷତାରେ ରାଜା ରାମମୋହନ ଫାଉଣ୍ଡେସନ୍‌ରେ କିଣାଯାଇଛି । ତାକୁ ପ୍ରକାଶ କରିଥିଲେ ରାଧାକୃଷ୍ଣ ପ୍ରତିଷ୍ଠାନ । ଅନୁବାଦକ ଥିଲେ ପଦ୍ମଶ୍ରୀ ଶ୍ରୀନିବାସ ଉଦ୍‌ଗାତା । ଏହି ପ୍ରକାଶନ ସଂସ୍ଥା ଏବେ 'ରାଜକମଲ୍' ନାମରେ ନାମିତ ହୋଇଛି । ଯା'ପରେ ଦିଲ୍ଲୀରେ ବିଭିନ୍ନ ୟୁଜିସି ଓ ସାହିତ୍ୟ ଏକାଡେମୀର କାର୍ଯ୍ୟକ୍ରମକୁ, ଏନ୍‌ବିଟି ପୁସ୍ତକ ପ୍ରଦର୍ଶନୀକୁ ଯାଇ ତାଙ୍କୁ ସାକ୍ଷାତ କରିଛି । ସେ ସର୍ବଦା ଖୁବ୍ ଶ୍ରଦ୍ଧାର ସହ କହନ୍ତି, ୟେ ହେଉଛନ୍ତି ଯଥାଯୋଗ୍ୟ ପ୍ରତିଭା । ସଂଭ୍ରମରେ ମୋର ମୁଣ୍ଡ ନଇଁଯାଏ । ଥରେ ରମାଦେବୀ ମହାବିଦ୍ୟାଳୟର ହିନ୍ଦୀ ଉତ୍ସବକୁ ସେ ନିମନ୍ତ୍ରିତ ଅତିଥି ଭାବେ ଆସିଥାନ୍ତି । ମୁଁ ଯାଇଥାଏ ସେହି ସଭାକୁ । ମୋ ଦ୍ୱାରା ଲିଖିତ ଆତ୍ମକଥାର (ଶୈଶବରୁ ସଂସାର) ଏକ ଅଂଶର ହିନ୍ଦୀ ଅନୁବାଦ ସେ କୌଣସି ପତ୍ରିକାରୁ ପଢ଼ିଥାନ୍ତି । ସେ ଅଂଶଟି ପଢ଼ି ସେଠାରେ ସମସ୍ତ ହିନ୍ଦୀ ଅତିଥି ପ୍ରଫେସରମାନଙ୍କ ସମକ୍ଷରେ ସିଂଜୀ ବର୍ଣ୍ଣନା କଲେ ଓ ପ୍ରଶଂସା କଲେ । ସେତେବେଳଯାଏ ମୋ ଆତ୍ମକଥାଟି ପୁସ୍ତକାକାରରେ ଛପା ହୋଇ ନ ଥାଏ । ବିଭିନ୍ନ ପତ୍ରିକାରେ ତା'ର କିଛି କିଛି ଅଂଶ ପ୍ରକାଶ ପାଉଥାଏ । ମୁଁ ତାଙ୍କର ସମୀକ୍ଷା ଓ ଆଗ୍ରହରେ ଅଭିଭୂତ ହୋଇପଡ଼ିଲି । ମୁଁ ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୧ ମସିହା ନିମନ୍ତେ ପାଇଲି । ତା'ର ପ୍ରଦାନ ଉତ୍ସବରେ ନାମଓ୍ୱର୍‌ଜୀଙ୍କଠାରୁ ଦିଲ୍ଲୀ ଟି.ଭି. ବାଇଟ୍ ନେଉଥାଆନ୍ତି । ସେଥିରେ ସେ କହିଥିଲେ, ଏ ବର୍ଷର ପୁରସ୍କାରରେ ମୁଁ ଅତ୍ୟନ୍ତ ପ୍ରୀତ । ବିଶେଷକରି ହିନ୍ଦୀରେ ଯିଏ ପ୍ରାପ୍ତ ହୋଇଛନ୍ତି ଓ ଓଡ଼ିଆରେ ଯିଏ ପ୍ରାପ୍ତ ହୋଇଛନ୍ତି, ତାଙ୍କ ପ୍ରାପ୍ତିରେ ମୁଁ ଆନନ୍ଦ ଅନୁଭବ କରୁଛି । ଏପ୍ରକାର ଆତ୍ମୀୟତା ତାଙ୍କ ଭଳି ବିରାଟ ବ୍ୟକ୍ତିତ୍ୱଙ୍କଠାରୁ ପ୍ରାପ୍ତ ହେବା ମୋର ପରମ ସୌଭାଗ୍ୟ ।

ପୁନର୍ବାର ୨୦୧୫ ମସିହାରେ ମୋର ଗୋଟିଏ ହିନ୍ଦୀ କବିତା ସଂକଳନ 'ତୁହ୍ମାରେ ଲିୟେ ହରବାର୍' (ବାଣୀ ପ୍ରକାଶନ, ଅନୁବାଦ- ଡଃ ରାଜେନ୍ଦ୍ର ପ୍ରସାଦ ମିଶ୍ର)ର ଉନ୍ମୋଚନ ଉତ୍ସବ ସାହିତ୍ୟ ଏକାଡେମୀ ହଲ୍‌ରେ ପ୍ରକାଶକ ଅନୁଷ୍ଠିତ କରାଇଥିଲେ । ଦିଲ୍ଲୀର ବହୁ ହିନ୍ଦୀ, ଇଂରାଜୀ, ଓଡ଼ିଆ ଲେଖକ ଓ ପାଠକ ଏଥିରେ ଯୋଗ ଦେଇଥିଲେ । ନାମଓ୍ଵର୍‌ଜୀ କହିଥିଲେ, "ଆଜି ଯେ ମୁଁ ସାହିତ୍ୟ ଏକାଡେମୀର ଏହି ଉତ୍ସବକୁ ଆସିଲି - ଏହାଦ୍ୱାରା ମୋର ଆୟୁଷ ବୃଦ୍ଧି ହୋଇଯିବା ଭଳି ମନେ କରୁଛି । (ଉମ୍ର ଲଗ୍ ଯାୟେଗା) ।" ଆହୁରି ମଧ୍ୟ ତାଙ୍କ ଅଭିଭାଷଣରେ କହିଥିଲେ, "ବର୍ତ୍ତମାନ ଓଡ଼ିଆ କବିତା ବହୁତ ଆଗେଇଛି, ଉତ୍ତମ ସର୍ଜନାର ଉଦାହରଣ ପାଲଟିଛି । ବଙ୍ଗଳା ଓ ହିନ୍ଦୀ କବିତା ଓଡ଼ିଆ କବିତା ପରି ଏତେ ଉନ୍ନତ ହେଉ ନାହିଁ ।" ଆଶ୍ଚର୍ଯ୍ୟର କଥା, ଏତେ ଶ୍ରୋତା କେହି ବି ଜଣେ କିଛି ପ୍ରତିବାଦ କଲେ ନାହିଁ, ବରଂ ଆନନ୍ଦ ପ୍ରକଟ କଲେ । ଏହି ମହାମନୀଷୀଙ୍କ ଦେହାନ୍ତ ହେଲା ।

ତାଙ୍କ ରଚନାଗୁଡ଼ିକ ମଧ୍ୟରେ 'ଛାୟାବାଦ', 'ଇତିହାସ ଔର୍ ଆଲୋଚନା', 'କହାନୀ ନୟୀ କହାନୀ', 'କବିତା କେ ନୟେ ପ୍ରତିମାନ', 'ଦୁସ୍‌ରୀ ପରମ୍ପରା କୀ ଖୋଜ୍', ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଅଥଚ ତାଙ୍କର ଦର୍ଶନ ପାଇବା ମୋ ଭାଗ୍ୟରେ ନ ଥିଲା । ତେଣୁ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି ପୁସ୍ତକଟିର ମୋର କ୍ଷୁଦ୍ର ରଚନାଟିକୁ ତାଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ସବିନୟ ଉତ୍ସର୍ଗ କରି ନିଜକୁ କୃତାର୍ଥ ମନେ କରୁଛି ।

ଡଃ ସିଂଙ୍କର ଜନ୍ମ ତା ୧/୫/୧୯୨୭ ଓ ଦେହାନ୍ତ ତା ୧୯/୨/୨୦୧୯ ।



## ସ୍ମାରକୀ

# ସ୍ରଷ୍ଟା ଓ ଦ୍ରଷ୍ଟା ପଦ୍ମଭୂଷଣ ସରସ୍ୱତୀ ମନୋଜ ଦାସ

ତାଙ୍କ ସହ ମୋର ପ୍ରଥମ ସାକ୍ଷାତ ୧୯୬୨ ମସିହାରେ । ପୂର୍ବରୁ ତାଙ୍କର ନିବାସ ଯୋବ୍ରା ନିକଟସ୍ଥ ଘରେ ମୁଁ ପହଞ୍ଚିଥିଲି ତାଙ୍କ ସ୍ତ୍ରୀ ପ୍ରତିଜ୍ଞାଅପାଙ୍କ ସାନଭଉଣୀ ବାଣୀ ସହିତ । ମୁଁ ରେଭେନ୍ସା ହଷ୍ଟେଲରେ । ଥରେ ଦି'ପହର (leisure) ଥିଲାବେଳେ ବାଣୀ (ଡଃ ବାଣୀ ସାମନ୍ତ) ମତେ ଡାକି ନେଇଥିଲା । ଘର ଦ୍ୱାରରେ ଆଘାତ କଲାରୁ ଭିତରୁ ଦୌଡ଼ିକି ଆସିଲେ ପ୍ରତିଜ୍ଞାଅପା - ଦୀର୍ଘ, ଦୋଳାୟମାନ କେଶଗୁଚ୍ଛ । ମୋତେ ଆଦର କଲେ । କିନ୍ତୁ ଲେଖକ ମନୋଜ ସେତେବେଳେ ଘରେ ନ ଥିଲେ । ବାଣୀ ସୁନା ବ୍ୟାଣ୍ଡ୍ ବନ୍ଧା ଘଣ୍ଟା ପିନ୍ଧି କଲେଜ ଆସେ, କହେ ମୋ ନାଆଁ 'ବାଣୀ ଜେମା' ଓ ଅପାର ନାମ 'ପ୍ରତିଜ୍ଞା ମଣିମା' । ଶୁଣିବାକୁ ଭଲ ଲାଗେ - ପ୍ରି.ୟୁ. ବିଜ୍ଞାନର ଛାତ୍ରୀ ଆମେ ଦୁହେଁ ।

କିନ୍ତୁ ଲେଖକ ମନୋଜ ଦାସଙ୍କୁ ଦେଖିଲି ବର୍ଷକପରେ ।

ମୁଁ ଓ ଶତପଥୀବାବୁ ରିକ୍‌ସାରେ ଯାଉଥିଲୁ, ବିପରୀତ ଦିଗରୁ ସେ ବି ରିକ୍ସାରେ ଆସୁଥିଲେ । 'ଦିଗନ୍ତ'ରେ ମୋର କବିତା 'ନାବିକ ବିଳୟ' ଛପା ହୋଇଥାଏ, ସମ୍ପାଦକ ସେ । କହିଲେ, କବିତାଟି ଭଲ ହେଇଛି । ଏତିକିରେ ମୁଁ ଅଭିଭୂତ ହୋଇପଡ଼ିଲି । ତାଙ୍କ ରଚିତ ସମୁଦ୍ରର କ୍ଷୁଧା- ଅସହାୟତାରେ ଓ ଦୁଃଖରେ ନାୟିକାର ନିର୍ଯାତନା ସହ ଏକାତ୍ମ ହୋଇପଡ଼ିଲି- ତା' ପରେ ପଢ଼ିଗଲିଲି ତାଙ୍କ ରଚିତ ପୁସ୍ତକଗୁଡ଼ିକ, ଖୋଜିଖୋଜି, କିଣି, ଲାଇବ୍ରେରୀରୁ ଆଣି । ଗୋଟିକରୁ ଗୋଟିଏ ବଳି ସେ ଗପ - ଆନ୍ଦୋଳିତ ହେବା ସହ କେବେ ବିହ୍ୱଳ ବା କେବେ ନୂତନତାର ଗଭୀର ସ୍ପର୍ଶରେ ଆଚମ୍ବିତ ହୋଇଉଠିଲି । 'ଶେଷ ବସନ୍ତର ଚିଠି'ଟି ମୋର ପ୍ରିୟ ଗଳ୍ପ । 'ବିଜୟା'ର ସମ୍ପାଦକ କବି ସୁନୀଲ ପୃଷ୍ଟି ମୋ ଠାରୁ ମତାମତ ନେଇଥିଲେ । ତା'ସହ 'ଆରଣ୍ୟକ', 'ଲକ୍ଷ୍ମୀର ଅଭିସାର' ଆଦି ବହୁଗଳ୍ପ ସହ 'ଅମୃତଫଳ' ଉପନ୍ୟାସଟି ପୁରାକଳ୍ପ ଓ ସମକାଳୀନ ବାସ୍ତବତାର ଏକ ଅନନ୍ୟ ରଚନା- ତା' ମଧ୍ୟରେ ମୁଁ ମଜ୍ଜିଗଲି । କ୍ଷୁଦ୍ରଗଳ୍ପ 'ଶେଷ ବସନ୍ତର ଚିଠି'ର କାରୁଣ୍ୟ ଓ ଲେଖକଙ୍କର ଏହି ଆବେଗଠାରୁ ଯଥେଷ୍ଟ ଦୂରତା ମୋତେ ଘାଣ୍ଟି ପକାଇଲା । ପୁନଶ୍ଚ 'ଜହ୍ନରାତିର ସେତୁ' କି ଅଦ୍ଭୁତ, ଆଶ୍ଚର୍ଯ୍ୟଜନକ ଆନ୍ତରିକତା ଅଥଚ ନିର୍ଲିପ୍ତତା ଏହି ଗଳ୍ପକାରଙ୍କର । ମୋର ଛୋଟ ଝିଅ ଥାଆନ୍ତି । 'ସେଥିରେ ଶେଷ ବସନ୍ତର ଚିଠି' ମୋ ଅନ୍ତଃକରଣକୁ ଲୁହ ଛଳଛଳ କରିପକାଇଲା । ଯେତେ ବାର ସ୍ମରଣ କରେ ମୋ ଛାତି ତଳ ଅଶ୍ରୁସିକ୍ତ ହୋଇଯାଏ । ମୋର ଖାଲି ମନେ ପଡ଼େ, ସେଇ ନିର୍ଲିପ୍ତ ଲେଖକଙ୍କର ଉଚ୍ଚାରଣ, "ରୀନା, ଟିକି ମାଆଟି ମୋର ।"

ତାଙ୍କର ଗଳ୍ପଗୁଡ଼ିକରେ କାରୁଣ୍ୟ, ଶ୍ଳେଷ ଓ ବିହ୍ୱଳତା ସୁପ୍ରଯୁକ୍ତ ହୋଇ ପାଠକ / ପାଠିକାଙ୍କ ହୃଦୟକୁ ସଞ୍ଚରିଯାଏ ଅବଲୀଳାକ୍ରମେ । ମାତୃହରା ଅବୋଧ ବାଳିକାଟି (ରୀନା)ର ପ୍ରତ୍ୟାଶା ପ୍ରତି ଲେଖକଙ୍କ ଅପୂର୍ବ ସଂବେଦନା, ନିଗୂଢ଼ ସହାନୁଭୂତି ପାଠକଙ୍କୁ ବେଦନାକ୍ତ କରିପକାଏ । ତାଙ୍କର 'କବିତା ଉତ୍କଳ' ପୁସ୍ତକଟି ମୋ ଦ୍ୱାରା ସମ୍ପାଦିତ 'ଉଦ୍‌ଭାସ୍' (କବିତା ପତ୍ରିକା)ରେ ସମୀକ୍ଷା କରାଯାଇଥିଲା । ତା'ର ଅଭୁଲା କେତୋଟି ପଂକ୍ତି- "ତୁମ ଗାଆଁ ମନେହେଲା...ଅତି ପରିଚିତ... ପ୍ରଥମ ଦେଖାରେ ମୋର"... ଏଇ ତାଙ୍କର ପ୍ରେମମୟ କବିତା । ଓଡ଼ିଆ କବିତାରେ ତାଙ୍କ ପ୍ରେମସିକ୍ତ ଅନୁଭବର ଓ ଭାବବାଦର ଦ୍ୟୋତକ ଏଇ ଧାଡ଼ି ସବୁ । ପତ୍ନୀଙ୍କର ଗାଆଁ ଓ ମନୋଜବାବୁଙ୍କ ଗାଆଁ ପ୍ରାୟ ଏକାପରି ନୁହଁ କି ? ବଡ଼ ଇଷ୍ଟେଟ୍, ବୃହତ୍ ନିବାସ, ସମୁଦ୍ରକୂଳ ଓ ଆକାଶ ତ ସହଜେ ଏକାପରି ! ଯା ଠାରୁ ଉଚ୍ଛଳ ପ୍ରେମକବିତା ଆଉ କଅଣ ଥାଇପାରେ ! କେତେ ଦିନ ତଳେ ଦୂରଦର୍ଶନରେ ତାଙ୍କର ସାକ୍ଷାତକାର ମୁଁ ନେଇଥିଲି । ସେହି ଅବସରରେ ସେ କହିଥିଲେ 'ନାରୀର ମାତୃରୂପଟି ତାଙ୍କର ପ୍ରିୟ' - ତାଙ୍କ ଉତ୍ତର ଏହିଭଳି ଅର୍ଥ ସୂଚାଇଥିଲା । ନିକଟ ଅତୀତରେ ଗୋଟିଏ ପୁରସ୍କାର ପ୍ରାପ୍ତି ଉତ୍ସବରେ ସେ କହିଥିଲେ - "ଶିବ ଯେତେବେଳେ ସାଗର ମନ୍ଥନରୁ ନିର୍ଗତ ହଳାହଳ ପାନ କଲେ, ଜଗତର କଲ୍ୟାଣପାଇଁ, ତାଙ୍କ ଶରୀର ଜ୍ୱାଳାମୟ ହୋଇଉଠିଲା । ସେତିକିବେଳେ ମାଆକାଳୀ ତାଙ୍କୁ କୋଳକୁ ନେଇ ସ୍ତନ୍ୟଦାନ କରିଥିଲେ । ଯନ୍ତ୍ରଣାକୁ ଉପଶମ କରାଇବାରେ ଲାଗିଥିଲେ ।" ପତ୍ନୀର ମାତୃରୂପ !

ତାଙ୍କ ଇଣ୍ଡୋନେସିୟା ଅନୁଭୂତି ପାଠ କରିଥିଲି-ଖୁବ୍ ସରସ ଓ ଉଦ୍ଦୀପକ । ସେ ଛାତ୍ର ନେତା ଭାବେ ଯାଇଥିଲେ ସେଠାରେ ଛାତ୍ର ସମ୍ମିଳନୀରେ ଯୋଗ ଦେବାକୁ । ମୋର ମନେ ରହିଯାଇଛି । ଅଳ୍ପ ବୟସର ପଠନାନୁଭୂତି ତ ! ପରେ ଅନେକ ଗଳ୍ପର ଆକର୍ଷଣୀୟ, ଭାବମୟ ପୃଷ୍ଠପଟ ଓ ଉଚ୍ଚାରଣ ମୋତେ ଆନନ୍ଦ, ବିଷାଦ, ବିସ୍ମୟରେ ଆବିଷ୍ଟ କରିରଖିଛି । ଏବେ କେତେ ବର୍ଷ ହେବ, ମୁଁ ତାଙ୍କ ସହ ମଝିରେ ମଝିରେ ସଂକ୍ଷିପ୍ତଭାବେ କଥା ହୁଏ । ଏହା ପୂର୍ବରୁ ମୁଁ ତାଙ୍କର କେତେକ ଅଭିଭାଷଣ ଶୁଣିଛି ଓ ବିଦେଶରେ ପଢୁଥିବା ଝିଅମାନଙ୍କୁ ଧାଡ଼ିମାନ ଉଦ୍ଧାର କରି ଚିଠି ଲେଖିଛି, କହିଛି । ଆଜିକାଲି ସେ ଆସୁଥିବା ସଭାକୁ ମୁଁ ପ୍ରାୟ ଯାଇପାରୁ ନାହିଁ । ସହରରେ ଗୋଟେ ଦୂରପ୍ରାନ୍ତରେ ମୁଁ ରହୁଛି ଏବଂ ଆଉ ଗୋଟିଏ କଥା ଯେ, ମନୋଜବାବୁଙ୍କ ଉପସ୍ଥିତି ପାଇଁ ପ୍ରବଳ ଭିଡ଼ ହୁଏ । ସେଠାରେ ତାଙ୍କ ନିକଟବର୍ତ୍ତୀ ହେବା ଖୁବ୍ କଷ୍ଟକର, ପୁଣି ମୁଁ ଏବେ ପ୍ରାୟ ଏକୁଟିଆ । ତେଣୁ ଏବେ ମୋର ଗୋଟିଏ ଅଭ୍ୟାସ ରହିଯାଇଛି - ତାଙ୍କର ସମ୍ବାଦପତ୍ରରେ ମୁଖ୍ୟତଃ 'ସମାଜ'ରେ ପ୍ରକାଶିତ ମତାମତକୁ ପଢ଼େ ଓ ସେଥିରୁ ଯେତିକି ମନରେ ଘେନିପାରେ । ମତେ ଖୁବ୍ ଆଶ୍ୱସ୍ତ ଲାଗେ । ତାଙ୍କର ଏତାଦୃଶ ଉତ୍ତରଗୁଡ଼ିକ ପାଠ କଲେ ଭାବେ ଯେ କ'ଣ ଈଶ୍ୱର ? କିପରି କହିବି ଈଶ୍ୱର - ସେ ତ ମୋ ସହିତ ଦୂର ଅତୀତରେ କଥାଭାଷା ହୋଇଛନ୍ତି ।

ନିଜ ଘରେ ମୁଁ ତାଙ୍କୁ ପୁରଦିଆ ଏଣ୍ଡୁରିପିଠା ଖାଇବାକୁ ଦେଇଛି - ଦୂରଦର୍ଶନରେ ସାକ୍ଷାତ କରିଛି-ମୋତେ ପ୍ରାୟ ୩୦ ବର୍ଷ ହେଲାବେଳକୁ ଶତପଥୀବାବୁଙ୍କ ସହ ତାଙ୍କୁ ଦେଖା କରିବାକୁ ମହାମାନ୍ୟ ଡଃ ମନ୍ମଥନାଥ ଦାସଙ୍କ ଘରକୁ ଯାଇଛି - ତାଙ୍କ ମୁଖନିଃସୃତ ଆଶିଷ - "ତୁମକୁ ପ୍ରଥମେ ଦେଖିଲାବେଳୁ ମୁଁ ବୋଧ କରିଛି - ତୁମେ ଜଣେ ଉତ୍ତମ କବି ।" ଯଦିବି ଦେବତା ନୁହନ୍ତି, ସେ ନିଶ୍ଚେ ଦିବ୍ୟଭାବ ଯୁକ୍ତ ବ୍ୟକ୍ତି-ଯାହାଙ୍କ ଅନୁଭବରେ ମନ୍ଦଶକ୍ତିଗୁଡ଼ିକ ସହଜରେ ଚିହ୍ନି ହୋଇଯାଆନ୍ତି । କେଉଁ ଅବସରରେ ମନ୍ଦଶକ୍ତିମାନେ ଆମ ଘରିପାଖରେ ଠୁଳ ହୋଇଯାଇ ବ୍ୟକ୍ତିକୁ କବଳିତ କରନ୍ତି । ସମସ୍ତ 'ମନୋଜପ୍ରେମୀ'ମାନଙ୍କୁ ଏହା ଜ୍ଞାତ ଥିବ - ମୋ'ଠାରୁ ବହୁଗୁଣରେ ।

ଥରେ ପଣ୍ଡିଚେରୀରେ, ତାଙ୍କ ସହ ବାଣୀବିହାର ଛାତ୍ରଛାତ୍ରୀଙ୍କ ମେଳରେ ଶତପଥୀବାବୁ ଓ ମୁଁ ଫଟୋ ନେଇଛୁ । ଆଉଥରେ ୧୯୯୭ ମସିହାରେ ପଣ୍ଡିଚେରୀରେ ପ୍ରତିଜ୍ଞାଅପାଙ୍କୁ ମୁଁ ଲେଖିଥିଲି- ସେ ଆଶ୍ରମର ଘର ଗୋଟେ ମୋର ରହଣିପାଇଁ ବୁଝିଦେଇଥିଲେ । ତାଙ୍କ ଘରକୁ ଖାଇବାକୁ ମତେ (ମୋର ଜଣେ ବାନ୍ଧବୀସହ) ଡାକିଥିଲେ । ମନୋଜବାବୁ ଥିଲେ । ଆମେ ସମସ୍ତେ କଥା ହୋଇଥିଲୁ । ଏବେ ମୁଁ ତାଙ୍କୁ 'ମନୋଜଭାଇ' ବୋଲି କହେ । ମୋ ସହପାଠିନୀ ଡଃ ବାଣୀର ସେ ଭାଇ ନୁହନ୍ତି କି ? ତାଙ୍କୁ 'ଭାଇ' କହିଲେ ମୋତେ ଉଦ୍‌ବୁଦ୍ଧ ଲାଗେ । ତାଙ୍କ ବିଷୟରେ ମୋର ମନୋଭାବ ବଖାଣି ବସିଲେ, ସରିବ ନାହିଁ - ଜୀବନ ସରିଯିବ । ପୂଜ୍ୟ ମହାପାତ୍ର ନୀଳମଣି ସାହୁଙ୍କ ଘରେ ଦେଖାହେଇଛି, ଏକାଧିକବାର । ମୁଁ ଦୈବାତ ଯାଇଥିବି, ଜାଣି ନ ଥିବି, ପାପାନାନୀ ତାଙ୍କୁ ମଧ୍ୟାହ୍ନ ଭୋଜନକୁ ନିମନ୍ତ୍ରଣ କରିଥିବେ । ମୋର ସେ ସୌଭାଗ୍ୟ । ଅବୁଝା ହୃଦୟକୁ ସାନ୍ତ୍ୱନା ଦେବାକୁ ମୁଁ କେତେଥର ମନକଥା ତାଙ୍କୁ କହିଛି । ସେ ସ୍ଥିରଚିତ୍ତରେ ଉପଦେଶ ଦେଇଛନ୍ତି । ସାହସ ପ୍ରଦାନ କରିଛନ୍ତି । ଓଡ଼ିଶା, ଭାରତ ତଥା ସାରା ବିଶ୍ୱର ସେ ଜଣେ ମହାନ୍ ଲେଖକ ଓ ପୂଜ୍ୟ ବ୍ୟକ୍ତିତ୍ୱ । ପ୍ରତୀକ ଓ ରୂପକଳ୍ପ ତାଙ୍କ ରଚନାରେ ପର୍ଯ୍ୟାପ୍ତ ଏବଂ ତାଙ୍କର ଅଧ୍ୟାତ୍ମ ରଚନାରେ ମଧ୍ୟ ପ୍ରଚୁର ଓ ସୁପ୍ରଯୁକ୍ତ ଭାବେ ରହିଥାଏ । ବୁଦ୍ଧିଦୀପ୍ତ ବ୍ୟଙ୍ଗାତ୍ମକତା ତାଙ୍କ ରଚନାରେ ବହୁଭାବେ ଲକ୍ଷ୍ୟ କରିହୁଏ ।



# ମୋର ପ୍ରିୟ କବି-ଏକ ଉଦାର ବ୍ୟକ୍ତିତ୍ୱ

## [ କବି ପଦ୍ମଶ୍ରୀ ଜୟନ୍ତ ମହାପାତ୍ରଙ୍କୁ ଆଭୂମ ପ୍ରଣତି ସହ ]

(ଜୟନ୍ତ ମହାପାତ୍ର କେବଳ ଓଡ଼ିଶା ବା ଭାରତବର୍ଷରେ ନୁହନ୍ତି, କବି ଭାବେ ବିଶ୍ୱବିଦିତ । ଜନ୍ମ ୧୯୨୮ରେ, ପାଟନା ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଜ୍ଞାନରେ ଏମ୍.ଏ. । ଗଳ୍ପରୁ ଇଂରାଜୀରେ ଆରମ୍ଭ ତାଙ୍କ ଲେଖକ ଜୀବନ ଓ ପରେ ମୁଖ୍ୟତଃ ଏହା କବିତାରେ ହିଁ କେନ୍ଦ୍ରିତ । କବିତା ରଚନା ଆରମ୍ଭରୁ ନିଜର ମୌଳିକ ଅନୁଭବ ଓ ବିଶେଷକରି କବିତାରେ ଭାରତୀୟପଣ (Indianness)ର ଅନ୍ତରଙ୍ଗ ନ୍ୟାସ ପାଇଁ ଜୟନ୍ତଙ୍କ କବିତା ତାଙ୍କ ସମକାଳୀନ ଅନ୍ୟ ଭାରତୀୟ ଇଂରାଜୀ କବିମାନଙ୍କଠାରୁ ଆଖିଦୃଶିଆଭାବେ ସ୍ୱତନ୍ତ୍ର । କ୍ଷୁଧା, ଦାରିଦ୍ର୍ୟ, ଯୌନତା ଓ ଆଧ୍ୟାତ୍ମିକତା, ସତ୍ତା ଓ ଶାଶ୍ୱତ, ସଂସ୍କୃତି ବନାମ ପୁରାତତ୍ତ୍ୱ (Myth) ପ୍ରକୃତି ଓ ମାନବିକତା ହେଉଛି ତାଙ୍କ କବିତାର ପ୍ରମୁଖ ପ୍ରସଙ୍ଗ ।... ଫେରିଆସିବାର ସମ୍ଭାବନା ନ ଥିବା ଅତୀତ ଓ ଉଦ୍ଧାର ହୋଇପାରୁ ନ ଥିବା ଐତିହ୍ୟ ପାଇଁ କବିଙ୍କର ସୀମାହୀନ ଦରଦ ତାଙ୍କର ଅଧିକାଂଶ କବିତାକୁ ପାଠକର ସ୍ମୃତିରେ କରିଥାଏ ବେଶ୍ ଦୀର୍ଘଜୀବୀ । ଶବ୍ଦରେ ଏଯାବତ୍ ସଂଭବ ହୋଇ ନ ଥିବା ଶକ୍ତିର ସଞ୍ଚାର କରାଇବା, ନୂଆ ଢଙ୍ଗରେ ବିଷୟ ପରିବେଷଣ କରିବା ଓ କିମ୍ବଦନ୍ତୀ ଭିତରେ ସଦ୍ୟତମ ବର୍ତ୍ତମାନ ଓ ଅନାଗତ ଭବିଷ୍ୟକୁ ମୂର୍ତ୍ତ କରି ତୋଳି ଧରିବାରେ ଜୟନ୍ତଙ୍କ ଅନୁରୂପ କବି ଭାରତରେ ବିରଳ ।

କବିଙ୍କର ଏଯାବତ୍ ପ୍ରକାଶିତ ଇଂରାଜୀ କବିତା ସଂକଳନ ମୋଟ ୧୬ଟି, ଯେଉଁଥିରୁ 'A Rain of Rites', 'Relationship', 'Life Signs', 'Temple' ଓ 'Bare Face' ହେଉଛି ପ୍ରଧାନ । ଓଡ଼ିଆରେ ପ୍ରକାଶିତ କବିତା ସଂକଳନଗୁଡ଼ିକ ହେଉଛି ଯଥାକ୍ରମେ 'ବଳି', 'କହିବି ଗୋଟିଏ କଥା', 'ବାୟା ରଜା' ଓ 'ଟିକିଏ ଛାଇ' । 'The Green Garden' ହେଉଛି କବିଙ୍କର ଏକମାତ୍ର ଗଳ୍ପ ଗ୍ରନ୍ଥ । ପ୍ରଥମ ଭାରତୀୟ ଇଂରାଜୀ କବି ଭାବେ ୧୯୮୧ ପାଇଁ କବି ପାଆନ୍ତି 'କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର' ତାଙ୍କର ପ୍ରଖ୍ୟାତ 'Relationship' କବିତା ଗ୍ରନ୍ଥ ପାଇଁ । ୧୯୭୫ରେ ପ୍ରାପ୍ତ ଜାକୋବ ଗ୍ଲାଟ୍‌ଷ୍ଟେନ୍ ସ୍ମାରକୀ ପୁରସ୍କାର (ଚିକାଗୋ'ରୁ ପ୍ରକାଶିତ 'ପୋଏଟ୍ରି ମ୍ୟାଗାଜିନ୍' ପକ୍ଷରୁ ପ୍ରଦତ୍ତ) ୧୯୯୪ରେ ପ୍ରାପ୍ତ 'ଗଙ୍ଗାଧର ମେହେର ଜାତୀୟ ପୁରସ୍କାର' ଓ 'ରାମକୃଷ୍ଣ ଜୟଦୟାଲ ସଂହତି ପୁରସ୍କାର' । ବିଶ୍ୱର ବହୁ ବିଶ୍ୱବିଦ୍ୟାଳୟର ସମ୍ମାନିତ

ଚେୟାର ମଣ୍ଡନ କରିଥିବା, ଆବାସିକ କବି ଭାବେ ଭାରତୀୟ କବିତାର ସମ୍ମାନ ବହୁଗୁଣିତ କରିଥିବା ଓ ବିଶ୍ୱବ୍ୟାପୀ ଅନେକ ମର୍ଯ୍ୟାଦାପୂର୍ଣ୍ଣ କବିତା ମଞ୍ଚରେ ସ୍ୱରଚିତ କବିତା ପଢ଼ି ପାଠକମାନଙ୍କୁ ମଂତ୍ରମୁଗ୍ଧ କରିଥିବା ବହୁମୁଖୀ ପ୍ରତିଭାର ଅଧିକାରୀ ଜୟନ୍ତ ହେଉଛନ୍ତି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଇଂରାଜୀ ଷାଣ୍ମାସିକ 'ଚନ୍ଦ୍ରଭାଗା'ର ବହୁଚର୍ଚ୍ଚିତ ସମ୍ପାଦକ । 'ଆପାତଃ ବୋଧ୍ୟ (What Perhaps I understood) ଓ 'ଅନବୋଧ୍ୟ' (What I did not) ସୃଜନମାନସର ଏଇ ଦୁଇ ଦିଗନ୍ତ ମଧ୍ୟବର୍ତ୍ତୀ  ସୀମାରେଖାରେ କବି ନିଜର କାବ୍ୟିକ ଅସ୍ତିତ୍ୱକୁ ଆବିଷ୍କାର କରନ୍ତି (Contemporary Authors' Autobiography Series Vol. ୯-ଚ-୧୪୮) । ଜୟନ୍ତଙ୍କ କବିତାରେ 'ଅର୍ଥପ୍ରତୀତି' ପ୍ରାୟଧୂସର, 'ଚିତ୍ର' ଓ 'ପ୍ରତୀକ'ର ଯୌଥ ଉପସ୍ଥିତି ଭିତରେ ମନନଶୀଳ ପାଠକଙ୍କପାଇଁ ସର୍ବଦା ସୁରକ୍ଷିତ ଏକ ସ୍ୱାଧୀନ ଯୋଗସୂତ୍ର । 'Times of India' ପକ୍ଷରୁ ପଚରା ଯାଇଥିବା ଏକ ପ୍ରଶ୍ନର ଉତ୍ତରରେ କବି ଏକଦା କହିଥିଲେ- 'I am an odia poet writing in English'. ଇଂରାଜୀରେ ଲେଖିଥିବା ଏଇ ଓଡ଼ିଆ କବି ଜୟନ୍ତ ମହାପାତ୍ରଙ୍କ ଏକମାତ୍ର ପୁତ୍ର ମୋହନ ମହାପାତ୍ର ଏବେ ବହୁଦେଶୀୟ କମ୍ପାନୀ 'ଭର୍ଜିନ' ର ପରିଚାଳନା ନିର୍ଦ୍ଦେଶକ, ରହନ୍ତି ବମ୍ବେରେ । ଏହି ବାଣୀସାଧକଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ଘଟିଥିଲା ୧୯୭୦ମସିହା ଡିସେମ୍ବର ମାସରେ । ଏବେ, ମୋହନ ଦିବଙ୍ଗତ । (କବିତା ପତ୍ରିକା 'ଉଦ୍‌ଭାସ୍'ରୁ ଉଦ୍ଧୃତ ।)



# ସ୍ମାରକୀ

## [ କବି ପଦ୍ମଶ୍ରୀ ଜୟନ୍ତ ମହାପାତ୍ରଙ୍କୁ ନିବେଦିତ ]

ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଓ ପରିଚୟ ଘଟିଥିଲା ୧୯୭୦ ମସିହା ଡିସେମ୍ବର ମାସରେ । ଦିଲ୍ଲୀ ରେଡ଼ିଓ ଷ୍ଟେସନରୁ କଟକ ରେଡ଼ିଓ ଷ୍ଟେସନ ମାଧ୍ୟମରେ ମୋତେ ନିମନ୍ତ୍ରଣ ଆସିଥାଏ National Symposium of Poetsରେ ଯୋଗ ଦେବା ପାଇଁ । ମୁଁ ସେତେବେଳେ ରେଭେନସା କଲେଜରେ ଅଧ୍ୟାପିକା ଥାଏ । ଏହି ନିମନ୍ତ୍ରଣ ଯୋଗୁଁ ଆମ ଓଡ଼ିଆ ବିଭାଗର ସମସ୍ତେ ଅତି ଆନନ୍ଦିତ ହେଉଥାନ୍ତି ଯେ, ଏତେ କମ୍ ବୟସରେ ମୋତେ ଜାତୀୟସ୍ତରରେ ସ୍ୱୀକୃତି ମିଳିଛି । ଯା'ହଉ କବିତାଟିର ହିନ୍ଦୀ ଓ ଇଂରାଜୀ ଅନୁବାଦ ଆବଶ୍ୟକ । ସାର୍ ସେତେବେଳକୁ ସିକାଗୋ ପୋଏଟ୍ରି ଆୱାର୍ଡ ପାଇସାରିଥାନ୍ତି । ଅଧ୍ୟାପକ ଶତପଥୀ କହିଲେ ତୁମ କଲେଜର କବି ଜୟନ୍ତ ମହାପାତ୍ରଙ୍କୁ କୁହ । ମୁଁ ଦିନେ ଗଲି Physics Deptt କୁ । କମର୍ସ ବ୍ଲକ୍ ଆଡ଼କୁ ମୁହଁ କରିଥିବା ତଳମହଲା ରୁମ୍‌ଟିରେ ସାର୍‌ଙ୍କୁ ଭେଟିଲି । ସେ ସାଗ୍ରହ କବିତାଟିକୁ ଗ୍ରହଣ କଲେ ଓ ନିର୍ଦ୍ଧାରିତ ସମୟରେ ଅନୁବାଦ କରିଦେଲେ ।

ଖୁବ୍ କମ୍ ସଭାସମିତିକୁ ସାର୍ ଯାଉଥିଲେ । ଏବେ ବରଂ ସଂଖ୍ୟାଧିକ ସଭାସମିତି ତାଙ୍କୁ ବରଣ କରିନେଉଛନ୍ତି । ମୁଁ ଶତପଥୀବାବୁ ଓ ମୋ ଝିଅ ବିଭିନ୍ନ ସମୟରେ ତାଙ୍କ ଘରକୁ ଯାଇଛୁ । ସାର୍ ତ ପ୍ରାୟ ବେଶି କଥାବାର୍ତ୍ତା କରନ୍ତି ନାହିଁ । କିନ୍ତୁ ତାଙ୍କ ପତ୍ନୀ ରୁନୁଅପା (ଜ୍ୟୋସ୍ନା ଦାସ) ଆଦରରେ ଆମମାନଙ୍କୁ କିଣିନିଅନ୍ତି । ଘରେ ତିଆରି କରି ନ ହେଲେ ବଜାରରୁ କିଣି ଆଣି ଭଲ ଜଳଖିଆ ଖୁଆନ୍ତି । ସେଠାରେ ସାର୍‌ଙ୍କ ବିଭିନ୍ନ କୃତିତ୍ୱ ଶୁଣୁ, ଫଟୋ ଦେଖୁ, କବିତା ବିଷୟରେ ଆଲୋଚନା କରୁ । ସାର୍‌ଙ୍କ ସମ୍ପାଦିତ 'ଚନ୍ଦ୍ରଭାଗା' ପତ୍ରିକାରେ ଗ୍ରାହିକା ମଧ୍ୟ ମୁଁ ହୋଇଥିଲି ଥରେ । ମୋ ଅନୁରୋଧରେ ସେ ମୋର କବିତା କେତୋଟି ଅନୁବାଦ କରିଦେଇଥିଲେ । ପୁସ୍ତକର ନାମକରଣ ବି ସେ ଓ ରୁନୁଅପା କରିଥିଲେ । ଶୀର୍ଷକ ଥିଲା : 'A Time of Rising' ତାହା ଦିଲ୍ଲୀର ପ୍ରକାଶନ ସଂସ୍ଥା । 'Har-ananda Publishers' ପ୍ରକାଶ କରିଥିଲେ । ମୋର ସମ୍ପୃକ୍ତ ଓଡ଼ିଆ କବିତାର ଶୀର୍ଷକ ଥିଲା 'ଉଇଁବାର ବେଳ' । ଏହି କବିତାର ଇଂରାଜୀ ଭାଷାନ୍ତରକୁ ମୁଁ ପାଠ କରିଥିଲି ୨୦୦୧ ଡିସେମ୍ବର ମାସରେ ବାଙ୍ଗାଲୋର୍‌ରେ ।

ମୋର କର୍ଣ୍ଣାଟକର ଥିରୁମଳାମ୍ବା ଜାତୀୟ ପୁରସ୍କାର ପ୍ରାପ୍ତିର ସମାରୋହରେ । ସେଇ କବିତାଟି କାବ୍ୟପ୍ରେମୀଗଣ ବହୁତ ପସନ୍ଦ କରିଥିଲେ । ସେ କୃତିତ୍ୱ ଥିଲା ନିଶ୍ଚୟ ଅନୁବାଦକଙ୍କର । 'A Time of Rising' ପୁସ୍ତକଟି ଯେତେବେଳେ ଭୁବନେଶ୍ୱର ପୁସ୍ତକ ମେଳାରେ ଉନ୍ମୋଚିତ ହେଲା, ସେହି ସମାରୋହରେ ସାର୍ ଆସି ମୋର ତିନୋଟି କବିତା (ଇଂରାଜୀରେ) ନିଜେ ପାଠ କରିଥିଲେ ଓ କବି ସୀତାକାନ୍ତ ମହାପାତ୍ର କବିତାଗୁଡ଼ିକୁ ଅନ୍ତରଙ୍ଗ ଭାବେ ଆଲୋଚନା କରିଥିଲେ । ସାର୍ ଯେ ପଢ଼ିବାକୁ ଆସିଥିଲେ, ସେଦିନ ତାଙ୍କୁ ଜ୍ୱର, ସେ ଭୀଷଣ ଅସୁସ୍ଥ । ସେହି ସହୃଦୟତାର ଋଣ ମୁଁ କ'ଣ ଶୁଝିପାରିବି ?

ପ୍ରାୟ ୨/୩ ଥର ମୁଁ, ଲେନି, ରୁନୁଅପା ଏବଂ ସାର୍‌ଙ୍କୁ ନେଇ ବୁଲିବାକୁ ଯାଇଛୁ । ଚନ୍ଦକା ବନାଞ୍ଚଳ ବୁଲି ସେଠାରେ ଗେଷ୍ଟ ହାଉସ୍ (ଜଙ୍ଗଲ ଭିତରେ) ଚା' ପିଇଲାବେଳେ ସାର୍ ଅଭିଭୂତ ହୋଇ ଚାରିପାଖର ପ୍ରକୃତିକୁ ନିରୀକ୍ଷଣ କରୁଥାନ୍ତି । କବିତା ସମ୍ପର୍କରେ ଆଳାପ ମଧ୍ୟ ଚାଲିଥାଏ । କେତେ ଘଣ୍ଟା ଏକତ୍ର ଆମେ କଟାଇଛୁ । ଖୁବ୍ ମହତ୍ତ୍ୱପୂର୍ଣ୍ଣ ସେସବୁ ସମୟ, କାବ୍ୟିକ ମଧ୍ୟ । ପାରମିତାର ପ୍ରଥମ ଇଂରାଜୀ ଅନୁବାଦ ଗଳ୍ପ ସାର୍ କରିଥିଲେ । ସେ ଗଳ୍ପଟି ଥିଲା 'କାରଗିଲ୍ ମା' ଓ ତାହା 'Indian Literature'ରେ 'The Return' ଶୀର୍ଷକରେ ପ୍ରକାଶ ପାଇଥିଲା ।

ସ୍ୱରଚିତ ପ୍ରତ୍ୟେକ ଓଡ଼ିଆ କବିତା ସଂକଳନ ସାର୍ ମତେ ଦିଅନ୍ତି ଏବଂ ମୁଁ ନିୟମିତ ଭାବେ ମୋ ସମ୍ପାଦିତ 'ଉଦ୍‌ଭାସ' ପତ୍ରିକାର ସଂଖ୍ୟାମାନ ସାର୍‌ଙ୍କୁ ପଠାଏ । କହନ୍ତି, "ସେତିକି ମନେରଖି ପଠାଉଛ-ଯଥେଷ୍ଟ ।" ତାଙ୍କ କବିତା ତାଙ୍କ ନିଜସ୍ୱ ପରିବେଶ, କଟକ, ମହାନଦୀ, ତେଲେଙ୍ଗା ବସ୍ତି, ଓଡ଼ିଶାକୁ ନେଇ ବିଶେଷ ଭାବରେ ଚିତ୍ରାୟିତ କରିଥାଏ । ମୋତେ ତାଙ୍କ କବିତା ଭଲ ଲାଗେ । ଭଲ ଲାଗେ ତାଙ୍କର ବିଶେଷଭାବେ ଚିତ୍ରିତ ନାରୀ ଜୀବନର ଦୁର୍ଦ୍ଦଶା ତଥା ମହନୀୟତାର ଚିତ୍ର । ସେଥିରେ ମୁଁ ମୁଗ୍ଧ ହୋଇଯାଏ । 'ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ଶୀର୍ଷକ ମୋର ପ୍ରବନ୍ଧ ସଙ୍କଳନ (ଯାହା ଯା ଭିତରେ ପ୍ରାୟ ଗୁଡ଼ିଏ ମୁଦ୍ରଣ ହୋଇସାରିଯାଇଛି)ରେ ମୁଁ ସାର୍‌ଙ୍କ କବିତା ପୁସ୍ତକ 'ବାୟାରଜା' ଉପରେ ଗୋଟିଏ ଆଲୋଚନା ଲେଖିଥିଲି ।

ତା'ର ଶୀର୍ଷକ ଥିଲା 'ଉତ୍ତରିତ ଆକୁଳତାର ସିଂହାସନ' । ଦୁଃଖୀ, ପୀଡ଼ିତଙ୍କ ପ୍ରତି ତାଙ୍କର ସହାନୁଭୂତି, ନିର୍ଯାତିତା ନାରୀ ପ୍ରତି ତାଙ୍କର ଅନ୍ତରଙ୍ଗ ଭାବ ବନ୍ଧୁ କଳାତ୍ମକ ପ୍ରତୀକ ଓ ଚିତ୍ରକଳ୍ପ ଦ୍ୱାରା ପୁସ୍ତକଟିରେ ଉତ୍କୀର୍ଣ୍ଣ । ନାରୀର ପ୍ରାତ୍ୟହିକ ଜୀବନର ସକଳ ବିଡ଼ମ୍ବନା ସତ୍ତ୍ୱେ, ତା'ର ଆନ୍ତରିକତା ଓ ତ୍ୟାଗର ମହକ କିପରି ବିଛାଡ଼ି ପଡ଼େ- ତା'ର ଗୋଟିଏ ଛୋଟ ଉଦାହରଣ ଉଦ୍ଧାର କରୁଛି - "ବୋହୂ ବସନ୍ତ ପବନ ପରି ତା' ନିଜର ଖୋଲି ଦେଇଥିବା / ଦେହକୁ ଧରି କାମ କରିଯାଏ ଆଉ ନିରେଖି ଦେଖିଲେ / ହାତପାଦରୁ ତା'ର ମାଟି ବଢ଼ିଲା ପରି ମନେହୁଏ ଅଥଚ ତା' ଚକୁଳିର ଆଣରେ ବାଲି

ଟିକେ ବି ନ ଥାଏ ।' ('ସମୟର ଆକାଶ', ସଂ. କହିବି ଗୋଟିଏ କଥା) କବି ଜୟନ୍ତଙ୍କ ଓଡ଼ିଆ କବିତାର ଭାବଭୂମି ଉଜ୍ଜ୍ୱଳ, ପରମ୍ପରାସିଦ୍ଧ ଓ ଗଭୀର ମାନବିକ ସମ୍ବେଦନାରେ ପରିପୂର୍ଣ୍ଣ । ସ୍ୱରର ଆନ୍ତରିକ ଭାଷା ପାଠକର ହୃଦୟକୁ ରୋକ୍‌ଠୋକ୍ ଛୁଇଁଯାଏ । 'ଭୋର୍ ମୋତିର କାନଫୁଲ' ଓ 'ପରେ ପରେ' ଦୁଇଟି ତାଙ୍କର ଆତ୍ମଜୀବନୀ, ଗୋଟିଏ ପ୍ରକାଶିତ (ପୁସ୍ତକାକାରରେ) ଅନ୍ୟଟି 'ବିଜୟା' ପତ୍ରିକାରେ କ୍ରମାନ୍ୱୟରେ ମୁଦ୍ରିତ । ତାଙ୍କ ଆତ୍ମକଥାରେ ତାଙ୍କ ଜନ୍ମକାଳ ଓ ଏପରିକି ବାପା, ଜେଜେଙ୍କ କାଳ ବହୁ ବୈଚିତ୍ର୍ୟରେ ବିମଣ୍ଡିତ ଓ ତାହା ପାଠକକୁ ଟାଣି ଟାଣି ଅଭ୍ୟନ୍ତରକୁ ଘେନିଯାଏ ।

କବି ଜୟନ୍ତ ମହାପାତ୍ର ଜଣେ ବିଚକ୍ଷଣ ଅନୁବାଦକ । ଓଡ଼ିଆ ସାହିତ୍ୟକୁ ଇଂରାଜୀ ଅନୁବାଦ ମାଧ୍ୟମରେ ଓଡ଼ିଶା ବାହାରେ ପ୍ରସାରିତ କରିବା କାର୍ଯ୍ୟକ୍ରମଟି ସେ ସାଗ୍ରହ ଓ ସ୍ୱଇଚ୍ଛାରେ ଗ୍ରହଣ କରିଛନ୍ତି । ଥରେ ରୁନୁଅପା ଶକ୍ତ ବେମାର ପଡ଼ି ବମ୍ବେରୁ ଚିକିତ୍ସା ପରେ ଫେରିଥା'ନ୍ତ । ଅତି ଜଟିଳ ଅବସ୍ଥା । ମୁଁ ଓ ଲେନି ତାଙ୍କୁ ଦେଖିବାକୁ ଯାଇଥିଲୁ । ସାର୍ ତାଙ୍କର କେତେ ସେବା କରିଛନ୍ତି ! ସେ କହୁଥାନ୍ତି । ଆମେ ତ ଭାବୁଥିଲୁ ରୁନୁଅପା କ'ଣ ସତରେ ଭଲ ହେବେ ? କିନ୍ତୁ ସେ ଭଲ ହେଲେ । ତା'ର କିଛି ବର୍ଷ ପରେ ସାର୍ ବେମାର ପଡ଼ିଲେ ଓ ରୁନୁଅପା ଶୁଶ୍ରୂଷାକାରିଣୀର ଭୂମିକା ତୁଲାଇଲେ । ସାର୍ ଗୁରୁତର ଶୁଣି ମୁଁ ତାଙ୍କୁ ଦେଖିବାକୁ ଘରକୁ ଯାଇଥିଲି । ଆମ୍ବ, ବାଉଁଶଘେରା ସେ ବଗିଚା ମହାବାତ୍ୟାରେ ଅନେକ ସରସତା ହରାଇସାରିଥିଲା । ସାର୍ ଥାଆନ୍ତି ବେଡ୍‌ରୁମ୍‌ରେ । ୨ ଜଣ ଡାକ୍ତର, କ'ଣ ସବୁ ରକ୍ତ ସାଲାଇନ୍ ଲାଗିଥାଏ । ରୁନୁଅପା ଡ୍ରଇଂରୁମ୍‌ରେ ମୋତେ ସଂଖୋଳିଲେ । ସାର୍‌ଙ୍କ ପାଖକୁ ଯିବାକୁ ବାରଣ କଲେ । ମୁଁ ତାଙ୍କ ପାଖେ ବସିଥାଏ । କେହି କେହି ଦର୍ଶକଙ୍କୁ ରୁନୁଅପା ଫେରାଇ ଦେଉଥାନ୍ତି । ସାର୍ ସିରିଅସ୍ । କିଛି ସମୟ ପରେ ରୁନୁଅପା ମୋତେ ଭିତରକୁ ଛାଡ଼ିଲେ । ମୁଁ ସାର୍‌ଙ୍କୁ ପ୍ରଣାମ କଲି । ସେ ଗୋଟିଏ ହାତ ବଢ଼ାଇଲେ - ମୁଁ ତାଙ୍କ ହାତକୁ ଧରିଲି । କଥା କହିପାରୁ ନ ଥାନ୍ତି । ବାକ୍‌ଶକ୍ତି ହରାଇଥାନ୍ତି । ମୁହଁ ଥମ୍‌ଥମ୍ । ଆଖି କରୁଣ । ବିଦାୟ ନେଇ ଆସିଲାବେଳକୁ ତାଙ୍କ ପୁଅ ଗେଟ୍‌ଯାଏ ଆସିଲେ, କହିଲେ 'ଡାକ୍ତରଙ୍କ ମତାମତ ଭଲ ନୁହେଁ ।' ମୋ ଦ୍ୱାରା ସମ୍ପାଦିତ 'ଉଦ୍‌ଭାସ' ପତ୍ରିକାରେ ମୁଁ ଓ ସମ୍ପାଦନା ମଣ୍ଡଳୀ ସାର୍‌ଙ୍କ ଆରୋଗ୍ୟ ନିମିତ୍ତି ପ୍ରାର୍ଥନା ପ୍ରକାଶ କରିଥିଲୁ ।

ସାର୍ ଓ ରୁନୁଅପାଙ୍କ ଆନ୍ତରିକତାର ଆଉ ଏକ ପର୍ଯ୍ୟାୟ 'ସରୋଜିନୀ' । ସେ ତେଲେଙ୍ଗା ସ୍ତ୍ରୀଲୋକଟି ବିଧବା, ତା'ର ଛୋଟ ପୁଅଟିଏ । ପାଖ ବସ୍ତିରେ ରହୁଥିଲେ, ଏବେ ବୋଧେ ସାର୍‌ଙ୍କ ଘରେ ରହୁଥିବେ । ସେ ଘରେ ପ୍ରାୟ ସବୁ କାମ କରେ । ରୁନୁଅପାଙ୍କର ଭାରି ବିଶ୍ୱସ୍ତ । ତା' ପୁଅକୁ ସାର୍ ପାଠ ପଢ଼ାଉଥିଲେ । ସେ ରେଭେନ୍‌ସାରେ ପଢୁଥିଲା- ଏବେ କୋଉଠି ଚାକିରି କରିଯିବଣି । ସେ ପିଲାଟି ଛୋଟ ବେଳେ, ନିଜ ଘରେ ସାର୍ ତାକୁ ପଢ଼ାଉଥିଲେ । ରୁନୁଅପା ଚାଲିଗଲା ପରେ ବର୍ତ୍ତମାନ ସରୋଜିନୀ ହିଁ ସବୁକିଛି ଦାୟିତ୍ୱ ତୁଲାଉଛି ।

ହଁ, କହୁଥିଲି ସାର୍‌ଙ୍କ ଶକ୍ତ ବେମାର କଥା । ପରେ ରୁନୁଅପାଙ୍କ ଠାରୁ ଶୁଣିଲି ସାର୍‌ଙ୍କୁ ପ୍ରାୟ ମାସେ ବ୍ୟବଧାନରେ ଗୋଟିଏ ଲେଖାଏଁ ଇଞ୍ଜେକ୍‌ସନ୍ (ଦାମ୍ ଦେଢ଼ ଲକ୍ଷ ଟଙ୍କା) ଦିଆଯିବାରୁ ସେ କ୍ରମେ ସୁସ୍ଥ ହେଲେ । ରୁନୁଅପା ଅଚାନକ ଆରପୁରକୁ ପ୍ରସ୍ଥାନ କଲେ । ସାର୍‌ଙ୍କ ସାହସ ଓ ଧୈର୍ଯ୍ୟ ଅସୀମ । ବିଗତ ମେ ମାସରେ ଦିଲ୍ଲୀରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ କବି ରବୀନ୍ଦ୍ରଙ୍କ ଦେଢ଼ଶହତମ ଜୟନ୍ତୀ ପାଳନ ଉତ୍ସବରେ ସାର୍ ଯୋଗ ଦେଇଥିଲେ । ମୁଁ ଓଡ଼ିଶାରୁ ନିମନ୍ତ୍ରିତ ହୋଇ କବିତା ପଢ଼ିଥିଲି । ସାର୍ ମଧ୍ୟ କବିତା ପଢ଼ିଥିଲେ ଓ କିଛି ବକ୍ତବ୍ୟ ରଖିଥିଲେ । ମୋତେ କହିଥିଲେ ଏଠାକୁ ଆସିବାରେ ବହୁତ ଷ୍ଟ୍ରେନ୍ ନେବାକୁ ପଡ଼ିଲା ।' ତଥାପି ବେଶ୍ ଚଞ୍ଚଳ ଥାଆନ୍ତି ସେ । ସାର୍ କେତେ ଉପାଧି, ପୁରସ୍କାର ଅନ୍ୟାନ୍ୟ ଓ ସମ୍ବର୍ଦ୍ଧନାରେ ବିଭୂଷିତ । ସାରା ବିଶ୍ୱରେ ଅନନ୍ୟ ପ୍ରସିଦ୍ଧି ତାଙ୍କର ।

୪/୬ ମାସ ତଳେ ସାର୍‌ଙ୍କୁ ଦେଖିବାକୁ ତାଙ୍କ ଘରକୁ ଯାଇଥିଲି – ଫୁଲମାଳଟିଏ ଦେଲି । ଗତକାଲି ସନ୍ଧ୍ୟାରେ 'ହଁ ଆସ' କହିଥିଲେ, ଆଜି ସକାଳବେଳା ପହଞ୍ଚିଲା ବେଳକୁ ଜର – ଯୋଡ଼ିଏ କମ୍ବଳ ଘୋଡ଼ି ହୋଇଥାନ୍ତି । ପାଖରେ ବସିଲି-ମତେ କାନ୍ଦ ମାଡୁଥାଏ । କହିଲେ, "ପ୍ରତିଭା, ତୁମେ ଯେ ମୋତେ ଦେଖିବାକୁ ଆସିଲ, ଖୁବ୍ ବଡ଼ କଷ୍ଟ କଲ, ତୁମ କଥା ସବୁ ତ ମୁଁ ଜାଣେ । ଯେତିକି କଷ୍ଟ କଲ ଯଥେଷ୍ଟ ।" ଯେ ଭିତରେ ସାର୍ ନିଜ ଘର ପଛକୁ ଗୋଟିଏ ଜାଗା ଦେଇଥିଲେ - ସରୋଜିନୀର ପୁଅକୁ । ସେ ଘର କରୁଥିଲା – କହୁଥିଲା, "ମା', ମୋ ପୁଅ ବିଭାଘରକୁ ନିଶ୍ଚେ ଆସିବେ ।"

ଏହି ଅବସରରେ ସାର୍‌ଙ୍କର ସୃଜନଶୀଳ, ନିରାମୟ ଜୀବନ ଜାରି ରହିଥାଉ ବୋଲି ଈଶ୍ୱରଙ୍କଠାରେ ପ୍ରାର୍ଥନା ଜଣାଉଛି ।



## ମୋ ଭାଇନା ଓ ଭାଉଜ ପଦ୍ମଶ୍ରୀ ଡଃ ଶ୍ରୀନିବାସ ଉଦ୍‌ଗାତା

### [ (ବିଦ୍ୟା ବାଚସ୍ପତି)ଙ୍କ ପାଇଁ ]

ମୁଁ ବାଣୀବିହାରରେ ଥିଲାବେଳେ ଆସନ୍ତି । ବେଳେବେଳେ ତାଙ୍କ ସହିତ ଥାଆନ୍ତି ସଦାନନ୍ଦ ଅଗରୱାଲ୍ । ମୋ କବିତା ବିଷୟରେ ଖୁବ୍ ଉଚ୍ଚ ଧରଣର ମନ୍ତବ୍ୟ ଦିଅନ୍ତି । ମୋତେ ଅପ୍ରତିଭ ଲାଗେ । ମନକୁ ମନ ମୋ କବିତାଗୁଡ଼ିକର ଅନୁବାଦରେ ବ୍ରତୀ ହୁଅନ୍ତି । ଡକ୍ଟର ଶତପଥୀ ମଧ୍ୟ ତାଙ୍କୁ ଆଦର କରନ୍ତି । ଥରେ ଥରେ ଆମ ଘରେ ଖାଆନ୍ତି । ତାଙ୍କର ସ୍ନେହାଶୀର୍ବାଦରୁ ମୋର ପ୍ରଥମ ୨ଟି ହିନ୍ଦୀ କବିତା ସଂକଳନ ଓ କାବ୍ୟ ପ୍ରସ୍ତୁତ ହୁଏ । ଆମ ଘରେ ଆମ ସାମ୍ନାରେ ପଢ଼ନ୍ତି । ମୁଁ ଆଦୌ ମନକୁ ନିଏ ନାହିଁ । ହଅ, ମୋ କବିତାର ହିନ୍ଦୀ ଅନୁବାଦ କିଏ ପଢ଼ିବ ! ଯଦିଓ ହାଇସ୍କୁଲ ପଢ଼ା ଯାଏ, ହିନ୍ଦୀରେ ବହୁତ ଭଲ କରୁଥିଲି । ୱାର୍ଦ୍ଧାରୁ ରାଷ୍ଟ୍ରଭାଷା ପ୍ରଚାର ସମିତି ଠାରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲି- 'ପ୍ରାରମ୍ଭିକ' ପରୀକ୍ଷାରେ । ପୁଣି 'ପ୍ରବେଶ' ଓ 'ପରିଚୟ' ପରୀକ୍ଷାରେ ଭଲ ନମ୍ବର ରଖିଥିଲି । ମାତ୍ର ମୋର ଭାଗ୍ୟରେ ନ ଥିଲା । ମୁଁ ଆଉ ସେଆଡ଼େ ଧ୍ୟାନ ଦେଲିନି ।

ହାଇସ୍କୁଲ ବେଳେ ଶ୍ରେଣୀରେ ପ୍ରଥମ ହେବା ଓ ବୁଣାବୁଣି, ଗୀତନାଚରେ ମାତିଲି । ଭଲମନ୍ଦ ବାଟ ବତେଇବାକୁ ବା କିଏ ଥିଲେ ! ୩ ବର୍ଷ ବଡ଼ଭାଇ ଦୂରରେ ଇଂଜିନିୟରିଂ ଛାତ୍ର । ବାପା ତ କୋରାପୁଟରେ । ଟଙ୍କା ପଠାଇ ଦେଇ କେବେ କେମିତି ଖଣ୍ଡେ ଚିଠି ଲେଖି ନିଜେ କର୍ତ୍ତବ୍ୟ-ମୁକ୍ତ । ବୋଉର ଆନ୍ତରିକତା, ନିଷ୍ଠା ଓ ଦୃଢ଼ ସଂକଳ୍ପ ଅନୁସାରେ ମୁଁ ବଢ଼ିଚାଲିଥାଏ । ୧୯୬୧ ମସିହାରେ ମଫସଲ ସ୍କୁଲରୁ ଝିଅଟିଏ ମାଟ୍ରିକ ପରୀକ୍ଷାରେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ଥାଏ ଏକ ବିରଳ ଘଟଣା । ସୁତରାଂ ମୁଁ ଆଉ ହିନ୍ଦୀକୁ ନଜର ଦେଲି ନାହିଁ । ଯଦିଓ ହିନ୍ଦୀ କବିତା ପ୍ରଚୁର ପଢ଼ିଲି ଚାକିରି କରିବା ପରେ । ନଚେତ୍ ଅଳ୍ପ ବୟସରେ ବିବାହ । ତା' ଭିତରେ ସନ୍ତାନ ଜନ୍ମ ଓ ପାଠପଢ଼ା- ଏସବୁରେ ମଜ୍ଜିହୋଇ ଯାଉଥିଲି ।

ଶ୍ରୀନିବାସ ଭାଇନା ପ୍ରାୟ ୨/୩ ବର୍ଷ ବ୍ୟବଧାନରେ ମୋର ହିନ୍ଦୀ କବିତା ସଂକଳନ 'ସମୟ ନହିଁ ହୈ' (ଚୁନୀହୁଇ କବିତାଏଁ) ଓ 'ଶବରୀ' କାବ୍ୟର ହିନ୍ଦୀ ଅନୁବାଦ ପ୍ରସ୍ତୁତ କରିଦେଲେ । ପ୍ରଥମଟିକୁ ସେତେବେଳର ପ୍ରକାଶକ 'ରାଧାକୃଷ୍ଣ ପବ୍ଲିକେଶନ' (ଏବେକାର 'ରାଜକମଲ୍ ପ୍ରକାଶନ) ଓ କାବ୍ୟ 'ଶବରୀ'କୁ 'ବାଣୀ ପ୍ରକାଶନ' ଛପାଇଲେ ।

ଆଶ୍ଚର୍ଯ୍ୟ କଥା ଦୁଇଟିଯାକ ଅନୁବାଦ ପୁସ୍ତକ ପ୍ରଫେସର ଡଃ ନାମୱର ସିଂ ଓ ପ୍ରଫେସର ବିଦ୍ୟାନିବାସ ମିଶ୍ର ପସନ୍ଦ କଲେ । ୨ଟି ଯାକ ପୁସ୍ତକ 'ରାମମୋହନ ଫାଉଣ୍ଡେସନ୍' ଦ୍ୱାରା ଦିଲ୍ଲୀ ଓ ଓଡ଼ିଶାରେ ଚୟିତ ହୋଇ ବିକ୍ରି ହୋଇଗଲା । ଭାଇନା ମୋ ଠାରୁ କେବେ ପଇସାଟିଏ ନେଇ ନାହାନ୍ତି । ସବୁବେଳେ କହନ୍ତି ତୁମେ କବିତାରେ ଜ୍ଞାନପୀଠ ପୁରସ୍କାର ଲାଭ କରିବ । ମୁଁ ତାଙ୍କ କଥାରେ କାନ ଦିଏ ନାହିଁ । ଭାବେ, ଖୁସି ହଉଚନ୍ତି ହୁଅନ୍ତୁ । ଜ୍ଞାନପୀଠ ପୁରସ୍କାର ଆଉ ମୁଁ ! ପ୍ରାୟ ଦୂରଦର୍ଶନ ବା ବେତାର କେନ୍ଦ୍ରରେ କାର୍ଯ୍ୟକ୍ରମ ଥିଲେ ବଲାଙ୍ଗୀର ଅଞ୍ଚଳରୁ ଭାଇନା ଆସିଥାନ୍ତି । ମୁଁ ବି ନିମନ୍ତ୍ରିତ ହୋଇ ଯାଇଥାଏ । ଆମେ କିଛି କଥାବାର୍ତ୍ତା ହଉ ଓ ମୁଁ ତାଙ୍କୁ ପାଖ କ୍ୟାଣ୍ଟିନ୍‌ରେ ଖୁଆଏ । ଆଉ କିଛି କଥାବାର୍ତ୍ତା ଟେଲିଫୋନ୍‌ରେ ହୋଇପାରେ ନାହିଁ । ଦୂରକୁ ଟେଲିଫୋନ୍ କରିବାକୁ ଡଃ ଶତପଥୀ ପସନ୍ଦ କରନ୍ତି ନାହିଁ ।

ତା' ପରେ ଭାଇନା ଆସିଲେ ଓଡ଼ିଶା ସାହିତ୍ୟ ଏକାଡେମୀର ଉପସଭାପତି ଭାବରେ । ଘରଟି ପାଇଥାଆନ୍ତି ମୁଁ ଓ ଶତପଥୀବାବୁ ମଝିରେ ମଝିରେ ତାଙ୍କ ଘରକୁ ଯାଉ । ସେହିଠାରେ ମୋ ଅନୁରୋଧରେ ତାଙ୍କ ଜ୍ୱାଇଁ ଛନ୍ଦାଚରଣ ଚିତ୍ରଶିଳ୍ପୀ ମୋର ଗୋଟିଏ ପ୍ରଚ୍ଛଦ ଆଙ୍କି ଦେଇଥିଲେ । ମୋର କବିତା ସଂକଳନ 'ମହାମେଘ' ପାଇଁ- ଚିତ୍ରଟି ପ୍ରତୀକାତ୍ମକ ଓ ସୁନ୍ଦର । ଥରେ ଦି'ଥର ଭାଇନା ଭାଉଜଙ୍କୁ ମୁଁ ଘରକୁ ଖାଇବାକୁ ଡାକିଛି । ତାଙ୍କ ସାନପୁଅ ଖୁବ୍ ବୁଦ୍ଧିମାନ୍- ବାଣୀବିହାରରେ ପଢୁଥିଲା, ତାଙ୍କୁ ବି ଥରେ ଦି'ଥର ଖାଇବାକୁ ଡାକିଛି । ଆଉ ଭାଉଜ ଏତେ ସ୍ନେହୀ । ଏମିତିରେ ତ ସେ ବିଶିଷ୍ଟ ଅନୁବାଦିକା ଶ୍ରୀମତୀ ସୌଦାମିନୀ ଉଦ୍‌ଗାତା । ମତେ ଖୁବ୍ ଶ୍ରଦ୍ଧା କରନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରାୟ ପ୍ରତିଟି କବି ସମ୍ମିଳନୀରେ ମୁଁ ଅତିଥି ରୂପେ ନିମନ୍ତ୍ରିତ ହୁଏ । ଥରେ ରାଉରକେଲାରେ ସର୍ବଭାରତୀୟ ମହିଳା କବି ସମ୍ମିଳନୀରେ ମୁଁ ଯାଇଥାଏ । ସଚିବ ଶ୍ରୀ ରାଜକିଶୋର ମିଶ୍ର ଓ ଉପସଭାପତି ଭାଇନା ଯାଇଥାନ୍ତି । ସାଙ୍ଗରେ ଭାଉଜ । ମତେ ଗୋଟେ ଜଣକିଆ କୋଠରି ମିଳିଥାଏ । ଦିନେ ସମ୍ମିଳନୀ କକ୍ଷରୁ ମୁଁ ଫେରିଲାବେଳକୁ ଭାଉଜ ମୋ ପୂର୍ବରୁ ଫେରିଆସି ମୋର ଲୁଗାପଟା ଚଉତି ରଖୁଥାନ୍ତି । ଅନ୍ୟମାନଙ୍କୁ କହୁଥାନ୍ତି- "ଦେଖୁ ନାହାନ୍ତି, କେତେ 'ବାୟାଣୀ' ଯେ କବି ଜଣକ ! ଖଟ ସାରା ଶାଢ଼ି, ବ୍ଲାଉଜ୍ ଫିଙ୍ଗି ପୋଫାଡ଼ି ଯାଉଚି ।" ମତେ ଲାଗିଲା ଭାଉଜ ତ ମୋର ଅତି ନିଜର !

ଏହା ପୂର୍ବରୁ କେତେଥର ଭାଇନା ମୋତେ ତାଙ୍କ 'କବିକୁଟୀର' ବଲାଙ୍ଗୀର ଡାକିଛନ୍ତି । କହନ୍ତି ଏ ବର୍ଷ ପୂଜାକୁ ଆମ ଘରକୁ ଆସ । ମୁଁ ଯାଇପାରେ ନାହିଁ । ସେ କହନ୍ତି – "ସବୁ ଭଉଣୀ ଆସିଲେ, ଆମ ଘରେ ଗୋଟେ 'ଭଉଣୀ ମେଳା' ହେଲା । କେବଳ ପ୍ରତିଭା ଆସିଲେ ନାହିଁ ।" ଥରେ ବଲାଙ୍ଗୀରରେ ଏକ ବିରାଟ ସାହିତ୍ୟ ସମ୍ମିଳନୀକୁ ମତେ ନିମନ୍ତ୍ରଣ ଥିଲା । ମୁଁ ଯାଇପାରିଲି ନାହିଁ, କାରଣ କେତେବେଳେ ଅଳସୁଆମି, ଆଉ କେତେବେଳେ

ଦୂରକୁ ଯିବାକୁ ଅନିଚ୍ଛା । ଏଭଳି ଭାବରେ ମୁଁ ବହୁତ ସୁଯୋଗ ହାତଛଡ଼ା କରିଛି । ଭାଇନା ଭାଉଜ ଏବେ ଦୂରରେ । ଭାଗ୍ୟ ସେମାନଙ୍କୁ ବହୁତ ଧକ୍‌କା ଦେଇଛି । ଅଳ୍ପ ବର୍ଷ ତଳେ ଦି'ଜଣ ଭୁବନେଶ୍ୱର ଆସନ୍ତି । ତାଙ୍କ ଭଉଣୀ ଘରକୁ । ମୋତେ ଖବର ଦିଅନ୍ତି ମୁଁ ଯାଏ- ୨ଥର ଯାଇଛି । ମୋର ଆଉ ଦେଖା ହୋଇ ନାହାନ୍ତି । ମୋର ହିନ୍ଦୀ 'ଶବରୀ' କାବ୍ୟର ୨ୟ ସଂସ୍କରଣ ଛପା ହେଲା ବେଳେ ତାଙ୍କ ସହ ଯୋଗାଯୋଗ କରିଥିଲି, କେତେଖଣ୍ଡ ନୂଆବହି ପଠାଇଥିଲି । ସେ ଖୁସି ହେଲେ ।

ତାଙ୍କ ଯୋଗୁ ହିଁ ୧୯୯୭ ରେ ମୋର 'ଶବରୀ' କାବ୍ୟର ପ୍ରଥମ ସଂକଳନ ପଢ଼ି ହିନ୍ଦୀ ପ୍ରଫେସର ଡଃ ବେଦପ୍ରକାଶ ଭରଦ୍ୱାଜ 'ସମକାଳୀନ ଭାରତୀୟ ସାହିତ୍ୟ'ରେ ଏକ ବିଶ୍ଳେଷଣାତ୍ମକ ପ୍ରବନ୍ଧ ଲେଖିଥିଲେ । 'ପୁରାଖ୍ୟାନୌଁ କା ନୟାପାଠ' ଶୀର୍ଷକରେ । କାବ୍ୟର ମୁଖବନ୍ଧରେ ଡଃ ବିଦ୍ୟାନିବାସ ମିଶ୍ର ଲେଖିଥିଲେ "ୟେ ଖଣ୍ଡକାବ୍ୟ ନୁହେଁ ଏକ ମହାକାବ୍ୟ ।" ଭାଇନାଙ୍କ ଆଗ୍ରହ ଯୋଗୁଁ ମୁଁ ଉପରୋକ୍ତ ସମ୍ମାନ ପ୍ରାପ୍ତ ହୋଇଥିଲି । ମାତ୍ର ମୁଁ ତାଙ୍କ ପାଇଁ କିଛି ବି କରିପାରି ନାହିଁ । ଋଣୀ ହୋଇ ରହିଗଲି । ଏବେ ସେ ବଲାଙ୍ଗୀରରେ, ମୁଁ ଏଠି । ବୟସ ଓ ଦୂରତା ଯୋଗୁଁ କେଜାଣି ମୁଁ ତାଙ୍କୁ ଆଉ ଦେଖିପାରୁ ନାହିଁ । ସେ ମୋର ମନେପଡ଼ିଲେ - ଭାଇନା, ଭାଉଜଙ୍କୁ ମନେମନେ ପ୍ରଣାମ କରେ । 'ଭଲରେ ଥାଆନ୍ତୁ' ବୋଲି ପ୍ରାର୍ଥନା କରେ । ଜ୍ଞାନୀ, ଗୁଣୀ, ମହତ୍ ଜନ ସେ ।

❖❖❖

# ପୁଷ୍ପାଞ୍ଜଳି : ପଦ୍ମଭୂଷଣ ରମାକାନ୍ତ ରଥଙ୍କୁ

ଚଳିତ ବର୍ଷ ଭାରତ ସରକାରଙ୍କ ଦ୍ୱାରା ପ୍ରଦତ୍ତ ଅତ୍ୟନ୍ତ ସମ୍ମାନାସ୍ପଦ ବେସାମରିକ ସମ୍ମାନ 'ପଦ୍ମଭୂଷଣ' ଉପାଧିରେ ସମ୍ମାନିତ ହେଲେ ଆମ ସମୟର ସାରସ୍ୱତ - ତୁଙ୍ଗିମାର ଅନ୍ୟତମ ଅଧିକାରୀ କବି ଶ୍ରୀ ରମାକାନ୍ତ ରଥ । ଏ ଆନନ୍ଦ ତାଙ୍କର ଅନେକ ଅନୁଗାମୀ ଓ ପାଠକଙ୍କୁ ଆହ୍ଲାଦିତ କଲା ପରି ଆମକୁ ବି ଆତ୍ମହରା କରିଛି । 'ଉଦ୍‌ଭାସ' ତା'ର ପ୍ରଥମ ଆଲୋକ ଦେଖିବା ମୁହୂର୍ତ୍ତରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସେ ବରାବର ଆମ ସହ ରହି ଆସିଛନ୍ତି । ସେ ଆମକୁ 'ତାଙ୍କର' ଓ ଆମେ ତାଙ୍କୁ 'ଆମର' ବୋଲି ଗ୍ରହଣ କରିସାରିଛୁଁ ।

'କେତେଦିନର'କୁ ଫେରି ଚାହିଁଲେ କବି ରମାକାନ୍ତ ଯେଉଁ କେତୋଟି କବିତା-ଗ୍ରନ୍ଥର ଅମଳିନ ସ୍ରଷ୍ଟା, ତା'ର ପାଠକୀୟ-ପରୀକ୍ଷା ତାଙ୍କ ସମକାଳରେ ହୋଇସାରିଛି ଓ ଏପରି ପରୀକ୍ଷାରୁ ସେ ଅକ୍ଳେଶରେ ଉତ୍ତୀର୍ଣ୍ଣ ହୋଇ ଏକ ଧ୍ରୁପଦୀ-ସ୍ରଷ୍ଟାର ଆସନ ଅଳଂକୃତ କରିସାରିଛନ୍ତି । ଏ 'ପୁଷ୍ପାଞ୍ଜଳି' ତାଙ୍କ କାବ୍ୟକୃତିର ଆକଳନ ନୁହେଁ, ଅପେକ୍ଷାକୃତ ନିକଟରୁ ତାଙ୍କର ଓ ତାଙ୍କ କୃତିଚୟର ଏକ କ୍ଷୁଦ୍ର ସ୍ମୃତିଚାରଣ ମାତ୍ର । ପିଲାଟିଏ ଉପରକୁ ଉଠିଲେ ମାଆର ଅଶ୍ରୁ ସଜଳ ଆଖିରେ ଯେମିତି ଜଳଜଳ ଦିଶିଯାଏ ତା'ର ମାମୁଲି ଅତୀତ ସବୁ, ଆଜି କବି ରମାକାନ୍ତଙ୍କ ସଫଳତାରେ ଆମକୁ ବି ଦିଶିଯାଉଛି ତାଙ୍କ ଅତୀତ, ତାଙ୍କ ଦୁରୁଦୁରୁ ପିଲାଦିନ ।

ଦିନେ ତାଙ୍କର ଶିକ୍ଷକ ପିତା- ଛାତ୍ର ଭାବେ ତାଙ୍କର ଅଧ୍ୟବସାୟର ପ୍ରମାଣ ନେବା ନିମିତ୍ତ ଦେଖିବାକୁ ଚାହିଁଲେ ତାଙ୍କର ପଢ଼ାଖାତା । ତରତରରେ ବାପାଙ୍କ ଦୃଷ୍ଟି ଅନ୍ୟଆଡ଼କୁ ନେବାପାଇଁ କହିଲେ - "ବାପା, ମୁଁ ଗୋଟେ କବିତା ଲେଖିଛି ।" ବାପା କହିଲେ - "ତୁ କବିତା ? ପଢ଼ିଲୁ କ'ଣ ଲେଖିଛୁ ?'' ସେଇ କବିତାର ଠାଏ ରମାକାନ୍ତ ଲେଖିଥିଲେ - 'ନଡ଼ିଆ ଫୁଲର ବାସ୍ନା' । ବାପା ସଂଗେ ସଂଗେ ପଡ଼ିକି ଉଠି କହିଲେ - ''ମୂର୍ଖ, କବିତା ଲେଖିଛୁ, ନଡ଼ିଆ ଫୁଲର ବାସ୍ନା ଥାଏ ?'' ଅବକାଶ ବେଳେ ଚା' ସୁଡୁକାର ହାଲ୍‌କା ଫାଙ୍କ ଭିତରେ କେବେ ଦିନେ ରମାକାନ୍ତ ବଖାଣି ବସିଥିଲେ କବିତାକୁ ନେଇ ତାଙ୍କ ଜୀବନର ଏ ବିରଳ ଅନୁଭୂତିଟି ।

ଆଜି କିନ୍ତୁ କଥାଟିକୁ ମନେ ପକାଇଲାବେଳେ 'ଶ୍ରୀରାଧା' ରଚନା ସମ୍ପର୍କରେ କବି ଅନେକତ୍ର କହିଥିବା ତାଙ୍କ ଉକ୍ତିମାନ ମନେ ପଡ଼େ । ସେ କହନ୍ତି 'ମୋର ମନେ ହୋଇଛି,

ଶ୍ରୀରାଧାର ଅନେକ ପଙ୍‌କ୍ତି ମୁଁ ଲେଖି ନାହିଁ, ଜଣେ କିଏ ଡାକି ଦେଇଛି, ମୁଁ ତାକୁ ଲିପିବଦ୍ଧ କରିଛି ମାତ୍ର । ଉଚ୍ଚତର ସର୍ଜନ ବ୍ୟାପାରଟିକୁ କେବଳ ରମାକାନ୍ତ ନୁହନ୍ତି, ବହୁ ମହାକବି ଆପଣା ସାମର୍ଥ୍ୟ ବାହାରର ବୋଲି ମନେ କରିଆସିଛନ୍ତି । ସାରଳା ଦାସ ଲେଖିଛନ୍ତି:

"ଯେଉଂଶ ଆଗ୍ୟାଂୟେକ ମୋତେ ଦିଲେକ ହେଙ୍ଗୁଳା
କୃପାଜଳ ନନ୍ଦିନୀ ହୃଦୟରେ ମମ ହାରା ।
ଅଜଣା ଅପଣ୍ଡିତ ମୁଁ ଅକର୍ମଣ୍ୟ ଅଟଇ
ଶ୍ରୀଚଣ୍ଡୀ ସାରୋଳାର ବାଚା କରି ଯେମାନ ଭେଟାଇ ।"

(ଆର୍ତ୍ତବଲ୍ଲଭ ସମ୍ପାଦିତ 'ମହାଭାରତ', ଭୀଷ୍ମପର୍ବ-ପୃ: ୨୩୭)

ମହାମତି ସାରୋଳା କହୁଛନ୍ତି- ଏ ମହାଭାରତ ମୋର ନୁହେଁ, ଶ୍ରୀଚଣ୍ଡୀ ଶାରୋଳାର 'ବାଚା' ବା ମୁଖନିଃସୃତ 'ବାକ୍ୟ', ମୁଁ ସେଇ 'ବାକ୍ୟ'ର ଲିପିକାର ମାତ୍ର । ସବୁ କାଳଜୟୀ କବି ଯୁଗେଯୁଗେ ମନେ କରିଆସିଛନ୍ତି ଯେ, କବିତାର ଅତି ଅପହଞ୍ଚ 'ମହାବାକ୍ୟ'କୁ ଲେଖିବାପାଇଁ ସେମାନଙ୍କ ଶାରୀରିକ, ଜାଗତିକ ଓ ମାନସିକ ଶକ୍ତି ଯେମିତି ସେତେ ଯଥେଷ୍ଟ ନୁହେଁ । ମହାର୍ଘ ସେଇ ଉଚ୍ଚାରଣ ସାମ୍ନାରେ ସେମାନେ ବଡ଼ ଅକିଞ୍ଚନ ଓ ଅପଣ୍ଡିତ । ଉଚ୍ଚତାର ସୃଜନ-ଭୂମିକାରେ ସାରୋଳ ଦାସ ଓ ରମାକାନ୍ତଙ୍କର ଅନୁଭବ ଠିକ୍ ଏକା ପରି, ସମଧର୍ମା ଅନ୍ୟ ଅନେକ ସ୍ରଷ୍ଟାଙ୍କ ପରି । ନ ହେଲେ କାହିଁ 'ନଡ଼ିଆ ଫୁଲର ବାସ୍ନା', କାହିଁ 'ନଡ଼ିଆ ଗଛର ଶୀର୍ଷେ ଲାଖିଥିବା ଖରାର ଶାଗୁଣା...' (ବିମାନ ଦୁର୍ଘଟଣାରେ ମୃତ୍ୟୁ) ! କବି ହେବାର ନିଷ୍କାମ ସରଳତା ଗୋଟିକରେ ତ ଗୋଟିକରେ ସେଇ ସରଳତାର ଜଟିଳତର ଅଭିବୃଦ୍ଧି । 'ସପ୍ତମ ଋତୁ' ଓ 'ସଚିତ୍ର ଅନ୍ଧାର' ଯଦି ହୁଏ ରମାକାନ୍ତଙ୍କ ତପସ୍ୟା, ତେବେ 'ଶ୍ରୀରାଧା' ଓ 'ଶ୍ରୀପଳାତକ' ହେଉଛି ତାଙ୍କର ଅବଧାରିତ ସିଦ୍ଧି ।

ବୈଷ୍ଣବମାନଙ୍କ ହାତଗଢ଼ା 'ଶ୍ରୀରାଧା'କୁ ଖୋଜି ଖୋଜି କେହି କେହି ହତାଶ ଓ କ୍ଷୁବ୍ଧ ହୁଅନ୍ତି ରମାକାନ୍ତଙ୍କ 'ଶ୍ରୀରାଧା'ରେ । କିନ୍ତୁ ହାୟ ସାହିତ୍ୟର ବା କବିତାର 'ଚରିତ୍ର' କ'ଣ ଯେଉଁ ନାଆଁ ଉଚ୍ଚାରିତ, କେବଳ ସେହି ତୁଚ୍ଛା ନାଆଁଟିର ? ଗର୍କି କହନ୍ତି: ଲେଖକ ଗଢୁଥିବା ଚରିତ୍ରଟି କେବଳ ସେଇ ଚରିତ୍ର ମାତ୍ର ନୁହେଁ, ଅନୁରୂପ ବହୁ ଚରିତ୍ରମାନଙ୍କର ସାରାଂଶ । ସେ 'ବ୍ୟକ୍ତି' (Individual) ନୁହେଁ, 'ପ୍ରକାର' (Type) ଯେପରି ଶ୍ରୀରାଧା; ଯହିଁରେ ସବୁ କଳ୍ପିତ ଓ କଳ୍ପିତ ହେବାକୁ ବାକି ବହୁ 'ଶ୍ରୀରାଧା'ଙ୍କ ବୈଶିଷ୍ଟ୍ୟ ସମନ୍ୱିତ । ଏକ କାଳଖଣ୍ଡରେ ଲେଖାଯାଇ ସେହି କାଳଖଣ୍ଡକୁ ଅତିକ୍ରମ କରିଯିବାର ଶକ୍ତିକୁ ନିଜ ଭିତରେ ଧାରଣ କରୁଥିବାରୁ ମହତ୍ତମ ସୃଷ୍ଟି ମାତ୍ରେଇ ରଚନାର ସମକାଳରେ କ୍ୱଚିତ୍ ସମୁଦାୟ ବୋଧ । ରମାକାନ୍ତଙ୍କ 'ଶ୍ରୀରାଧା' ଯେତିକି ଅତୀତର ଓ ଏବର, ତତୋଽଧିକ ଭବିଷ୍ୟତର । ଅତଏବ 'ଶ୍ରୀରାଧା'ର ସେହି ମହାନ୍ ସ୍ରଷ୍ଟା ଓ ଖୋଦ୍ 'ଶ୍ରୀରାଧା'କୁ

ଯେଉଁ ଉଚ୍ଚତାରେ ବୁଝାଯିବାର କଥା, ସେହି ଉଚ୍ଚତାରେ ପହଞ୍ଚିବାର ସାମର୍ଥ୍ୟ ଅଭାବରୁ ଯେଉଁମାନେ ନିରୁପାୟ ଭାବେ ନିଶସ୍ତ ଅଥଚ ଅନନୁତପ୍ତ, ସେମାନେ କ୍ଷମଣୀୟ ।

ପରିଶେଷରେ, କବିଙ୍କର ଯେତେସବୁ ଆଗାମୀ ଦିନ ଓ ସେ ଦିନମାନଙ୍କରେ ତାଙ୍କର ଯେତେସବୁ ସୃଷ୍ଟି ଓଡ଼ିଆ ସାହିତ୍ୟର, ନିର୍ଦ୍ଦିଷ୍ଟଭାବେ ଓଡ଼ିଆ କବିତାର ଦିଗବାରେଣୀ ହେଉ, ଏତକ କାମନା କରି ଏ 'ପୁଷ୍ପାଞ୍ଜଳି' ବାଢ଼ି ଦେଉଛୁ ।

ସଂକ୍ଷେପରେ କବି ରମାକାନ୍ତ :-

ଜନ୍ମ : ୧୩ ଡିସେମ୍ବର, ୧୯୩୪, ପୈତୃକ ଗ୍ରାମ : ଦାମୋଦରପୁର ଶାସନ, ପୁରୀ, ପିତା:ସ୍ୱର୍ଗତ ବିଶ୍ୱନାଥ ରଥ କାବ୍ୟତୀର୍ଥ, ମାତା-ସ୍ୱର୍ଗତା ଦୁର୍ଗାଦେବୀ, ସ୍କୁଲ୍ ଶିକ୍ଷା ଭବାନୀପାଟଣା, ବଲାଙ୍ଗୀର, କଲେଜ ଶିକ୍ଷା- ଏସ୍.ସି.ଏସ୍. କଲେଜ୍, ପୁରୀ, ରେଭେନ୍‌ସା କଲେଜ କଟକ, (ଇଂରାଜୀରେ ଏମ୍.ଏ.:୧୯୫୬) । ବୃତ୍ତି-ଆଇ.ଏ.ଏସ୍.ରେ ଯୋଗଦାନ: ୧୯୫୭ (୩୦ ନଭେମ୍ବର ୧୯୯୨ରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଥାଇ ଅବସର ଗ୍ରହଣ), ସାରସ୍ୱତ ପଦପଦବୀ: କେନ୍ଦ୍ର ସାହିତ୍ୟ ଏକାଡେମୀ, ଉପସଭାପତି (୧୯୯୩-୯୮), ସଭାପତି (୧୯୯୮-୨୦୦୨)

କବିତା:କେତେ ଦିନର-୧୯୬୨, ଅନେକ କୋଠରି-୧୯୭୨, ସପ୍ତମଋତୁ-୧୯୭୭, ସଚିତ୍ର ଅଂଧାର - ୧୯୮୨, ଶ୍ରୀରାଧା - ୧୯୮୫, ଶ୍ରୀପଳାତକ - ୧୯୯୬, ସୀମାନ୍ତବାସ - ୨୦୦୨, ଫେରି ଚାହିଁଲେ - ୨୦୦୪ ।

ପ୍ରାପ୍ତ ସମ୍ମାନ/ପୁରସ୍କାର- କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର-୧୯୭୮, ଶାରଳା ପୁରସ୍କାର-୧୯୮୪, ବିଷୁବ ସମ୍ମାନ-୧୯୯୦, ସରସ୍ୱତୀ ସମ୍ମାନ-୧୯୯୨, ରାଷ୍ଟ୍ରଭୂଷଣ ସମ୍ମାନ-୨୦୦୧, ଗଙ୍ଗାଧର ଜାତୀୟ କବିତା ପୁରସ୍କାର-୨୦୦୨, ପଦ୍ମଭୂଷଣ ଉପାଧି-୨୦୦୬ । ପରିବାର– ପତ୍ନୀ ଶାନ୍ତିଦେବୀ, କନ୍ୟା-୩, ପୁତ୍ର-୧ । ('ଉଦ୍‌ଭାସ'ରୁ ଉଦ୍ଧୃତ)



# ମୋର କାବ୍ୟ ଗୁରୁ

## [ କବି ରମାକାନ୍ତ ରଥଙ୍କୁ ]

ମୁଁ ପ୍ରଥମେ ତାଙ୍କୁ ଦେଖିଥିଲି ବିଷୁବ ମିଳନ ଉତ୍ସବରେ । ସେଦିନ ଅତିଥି ଥାଆନ୍ତି । ୧୯୬୨ରେ ମୋର ବିବାହ । ମତେ ମିଳିଥିଲା ଉପହାର 'କେତେ ଦିନର' କବିତା ବହିଟି । ଉପହାର ଦେଇଥିଲେ ୰ ଜେନାମଣି ନରେନ୍ଦ୍ର କୁମାର ଡାକ୍ତର । ବହିଟିକୁ ଅମୂଲ୍ୟ ଧନ ପରି ମୁଁ ପଢ଼ିବାରେ ଲାଗିଲି । କେତେକ କବିତା କିଛି କିଛି ବୁଝିଲି, କେତେକ ମଧ୍ୟ ଆଦୌ ବୁଝିପାରିଲି ନାହିଁ । କିଛି ବୁଝା, କିଛି ଅବୁଝା-ପାଶ୍ଚାତ୍ୟ କବିମାନେ ମଧ୍ୟ ଏକଥା କହନ୍ତି, ଏଥିପୂର୍ବରୁ ୧୯୫୯, ୬୦ ମସିହାରେ ମଧ୍ୟ ମୁଁ ତତ୍କାଳର 'ଝଙ୍କାର'ରୁ ତାଙ୍କ କବିତା ପଢ଼ିଥିଲି । ବୋଧହୁଏ ୧୯୭୭ ମସିହା, ମୋର ସ୍ୱାମୀଙ୍କ ସହ ତାଙ୍କ ବଙ୍ଗଳାକୁ ଯାଇଥିଲି । ତାଙ୍କର କହିବା କଥା ଥିଲା ମୋତେ, "ଆପଣଙ୍କ କବିତା 'ଝଙ୍କାର'ରେ ପଢ଼ିଲି । କବିତା ଲେଖା ଛାଡ଼ନ୍ତୁ ନାହିଁ । ମହିଳାମାନେ ତ କବିତା ଲେଖୁ ନାହାନ୍ତି ପ୍ରାୟ । ଲେଖିଲା ପରେ ଅଳ୍ପଦିନ ପରେ ଲେଖା ଛାଡ଼ି ଦଉଛନ୍ତି ।"

ମତେ ଉତ୍ସାହିତ ଲାଗିଲା । ମନ ଉତ୍‌ଫୁଲ୍ଲ ହୋଇଉଠିଲା । ଥରେ ସେ ଦିଲ୍ଲୀରେ ଥିବାବେଳେ 'ଝଙ୍କାର'ରୁ ମୋ କବିତା 'ଦେବକୀ' ପଢ଼ି ମୋତେ ଖଣ୍ଡେ ସଂକ୍ଷିପ୍ତ ଚିଠି ଲେଖି ଉପଦେଶ ଦେଇଥିଲେ । ଏୟା ଯେ- 'ଦେବକୀ' ଗୋଟିଏ ଭଲ କବିତା, ମାତ୍ର ସାମାନ୍ୟ ତ୍ରୁଟି ସେଥିରେ ରହିଯାଇଛି । ଆପଣ ଦେଖିବେ, ଆଉ ଗୋଟିଏ 'ଅକ୍ଷର' କବିତାର ଧାଡ଼ି (ପଞ୍ଚଦଶ)ରେ 'ମାତୃତ୍ୱ ମୋର' ନ ହୋଇ ବଢ଼ିଥିଲେ ଛନ୍ଦପତନ ହୋଇ ନ ଥାନ୍ତା । ମୁଁ ଜାଣିଲି, ଶିଖିଲି ଓ ତତ୍‌କ୍ଷଣାତ୍ ଆଉ ଗୋଟେ ଅକ୍ଷର ଯୋଗକଲି, କବିତାଟିର ଛନ୍ଦ ରକ୍ଷା ହେଲା । ମୁଁ ମଧ୍ୟ ଛନ୍ଦ ବିଷୟରେ ଅଧିକ ସଚେତନ ହେଲି । ଆଧୁନିକ କବିତାରେ ଯେଉଁ ଅନ୍ତର୍ନିହିତ ଛନ୍ଦ ଥାଏ, ତା' ପ୍ରତି ଯତ୍ନଶୀଳ ହେଲି । ସେହିଦିନୁ ମୁଁ ତାଙ୍କୁ 'ଗୁରୁ' ମନେ କଲି ।

ଆଉ ଥରେ ମୋତେ ସେ କହିଥିଲେ, "ପ୍ରତିଭା, କବିତା ଲେଖ, କିନ୍ତୁ ପୁରସ୍କାରର ଆଶା ରଖ ନାହିଁ । ସେହି ଆଶା ରଖିଲେ ଆଉ ଭଲ କବିତା ଲେଖି ପାରିବ ନାହିଁ ।'' ମୁଁ ଏ କଥାକୁ ଗୁରୁବାକ୍ୟ ମାନି କବିତା ରଚନା ରାଜ୍ୟରେ ଆତଯାତ ହେଲି । ମୋ ରଚିତ ଆଉ ୨ଟି ରଚନା ତାଙ୍କ ସମ୍ବର୍ଦ୍ଧନା ଗ୍ରନ୍ଥରେ ପ୍ରକାଶ ପାଇଥିଲା । ବହୁ ଚେଷ୍ଟାକରି ମଧ୍ୟ ସେ ଲେଖା ଦୁଇଟି ପାଇଲି ନାହିଁ । ତାଙ୍କର 'ସରସ୍ୱତୀ ସମ୍ମାନ' ପ୍ରାପ୍ତି ଅବସରରେ ମୋର ତାଙ୍କ ସହ ସଂଳାପଟି ମିଳିଲା ଓ ତାକୁ ଏଥିରେ 'ଅଭିବ୍ୟକ୍ତି' ବିଭାଗରେ ପତ୍ରସ୍ଥ କରିପାରିଲି ।



# ଅପ୍ରତିଦ୍ୱନ୍ଦ୍ୱୀ କଥାସର୍ଜକ

[ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ]

ଶ୍ରୀଯୁକ୍ତ ଶାନ୍ତନୁ କୁମାର ଆଚାର୍ଯ୍ୟ ଜଣେ ମନନଶୀଳ କଥା ସର୍ଜକ । ତାଙ୍କର ସୃଜନଚେତନା ଏକ ଦିଗରେ, ଆଧୁନିକ, ବିଜ୍ଞାନସମ୍ମତ ଜୀବନଶୈଳୀରେ ସମୃଦ୍ଧ ଓ ଅପରଦିଗରେ ପରାମନସ୍ତାତ୍ତ୍ୱିକ, ଉତ୍ତୁଙ୍ଗକଳ୍ପନାର ପ୍ରାମାଣିକ ଓ ବିଶ୍ୱସନୀୟ ଚିତ୍ରରେ ରହସ୍ୟମୟ । ତାଙ୍କ ସୃଷ୍ଟିର ଆକଳନ କରିବା ମୋ ପକ୍ଷରେ ସହଜ ନୁହେଁ । ସାହିତ୍ୟ ସମାଲୋଚନା ନିମିତ୍ତ ମୁଁ କେବେ ପ୍ରସ୍ତୁତ ହୋଇ ନାହିଁ । କେବଳ ଯେଉଁ ଉପନ୍ୟାସ ଓ ଗଳ୍ପକୁ ଭଲ ପାଇଛି, 'କାହିଁକି ଭଲ ଲାଗୁଛି' ତା'ର କାରଣ ଖୋଜିଛି । ସେହି ଅନ୍ୱେଷଣର ଦାୟରେ ଯେତିକି ବିଶ୍ଳେଷଣ ଜରୁରୀ, ସେତିକିରେ ମୋର ପାଠକୀୟତା ସୀମାବଦ୍ଧ ।

ମୋର ମୂଳ ପୈତୃକ ପରିବାର ସିଦ୍ଧେଶ୍ୱରପୁର ଗ୍ରାମର ୰ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରିବାର । ସେହି ସଂଯୋଗରେ ଶାନ୍ତନୁ ଭାଇନା ମୋର ଦଦେଇ ପୁଅ ଭାଇ । ମୋ ବାପା, ତାଙ୍କ ବାପାଙ୍କୁ 'ଅନୁଭାଇନା' ବୋଲି ଡାକନ୍ତି । ତେବେ, ବାପା ବହୁତଦିନ ଧରି ପ୍ରବାସରେ ଥିବାରୁ ସିଦ୍ଧେଶ୍ୱରପୁର ପରିବାର ସହ ମୋର ସମ୍ପୃକ୍ତି ଯଥେଷ୍ଟ ପ୍ରତିଷ୍ଠା ପାଇ ନ ଥିଲା । ମୁଁ ଭାଇନାଙ୍କ କଥା ପ୍ରଥମେ ଶୁଣେ ସିଦ୍ଧେଶ୍ୱରପୁରର କେଶବ କକେଇଙ୍କ ପୁଅ ଅରୁଣ ଠାରୁ । ଅରୁଣ ନନ୍ଦ ସିନେମା ଅଭିନେତା, ଶିଳ୍ପୋଦ୍ୟୋଗୀ ଓ ବଡ଼ ସ୍ନେହୀ । କେଶବ କକେଇ ମୋର ବାପାଙ୍କ ମାମୁ ପୁଅ ଭାଇ । ତେଣୁ ମୋର କଟକ ଘରକୁ ଅରୁଣ ସମୟେ ସମୟେ ଆସେ, ଆମର ଲେଖକ ପରିବାର ଥିବାରୁ ଶାନ୍ତନୁଭାଇନାଙ୍କ ଲେଖକୀୟ ବ୍ୟକ୍ତିତ୍ୱ କଥା ମୋତେ ପ୍ରାୟ କହେ । ଭାଇନାଙ୍କ ଅପେକ୍ଷା ଭାଉଜଙ୍କ କଥା ବେଶି କହେ । ଭାଉଜ କିପରି ସହିଷ୍ଣୁ, ସ୍ନେହୀ ଓ ଉଦାର, ଏବଂ ଲେଖକ ଭାଇନା କ୍ରୋଧୀ ଅଥଚ ଖୁବ୍ ସ୍ୱାଭିମାନୀ, ଏହିସବୁ କଥା ସେ ମତେ କହେ । ଭାଇନା ରାତିରେ କିଛି ଲେଖି, ମନକୁ ନ ଆସିଲେ ଚିରି ଫୋପାଡ଼ି ଦିଅନ୍ତି ଓ ନିରୁଭାଉଜ ସେସବୁକୁ ଗୋଟେଇ ଗୋଟେଇ ରଖିଥାନ୍ତି । ସତକୁ ସତ ଥରେ ଥରେ ଭାଇନା ସେହି ଚିରା କାଗଜକୁ ପୁଣି ସକାଳୁ କାଳେ ଖୋଜନ୍ତି । ତେଣୁ ଭାଉଜଙ୍କର ଯଥାର୍ଥରେ ଲେଖକ ପତ୍ନୀ ହେବାର ଯୋଗ୍ୟତା ରହିଛି । ଏକଥା 'ଅରୁ' ଠାରୁ ମୁଁ ଶୁଣିଛି । ଭାଉଜ ଭାଇନାଙ୍କୁ ସମ୍ଭାଳି ରଖିଥାଆନ୍ତି । ପରେ ମୁଁ ଭାବିଛି ଭାଇନା ଭାଗ୍ୟ ବଳରେ ଏପରି ଲକ୍ଷ୍ମୀ ସ୍ତ୍ରୀଟିକୁ ପାଇଛନ୍ତି । ଅବଶ୍ୟ ଭାଇନାଙ୍କ ଭଳି ସୌମ୍ୟଦର୍ଶନ

ଜ୍ଞାନୀ ଓ ମର୍ଯ୍ୟାଦାବନ୍ତ ଲେଖକ ସ୍ୱାମୀଟିଏ ପାଇବାରେ ଭାଉଜ କମ୍ ଭାଗ୍ୟବତୀ ନୁହନ୍ତି । ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍ ।

ଅରୁଠାରୁ ଶୁଣି ମୂଳରୁ ନ ଦେଖିବା ଆଗରୁ ମୋର ଭାଉଜଙ୍କ ପ୍ରତି ସମ୍ଭ୍ରମ ଚାଲି ଆସିଛି । ମୁଁ କିନ୍ତୁ ତାଙ୍କୁ ପ୍ରଥମେ ଦେଖିଲି ୧୯୬୫ ଆରମ୍ଭରେ । ସେତେବେଳକୁ ତାଙ୍କର ସମ୍ଭବ-ହୁଏତ ପିଲାଟିଏ ଜନ୍ମ ହେବାକୁ ଅଳ୍ପ ଦିନ ବାକି ଅଛି । ଦେଖିଲି, ଯୁବଲେଖକ ସମ୍ମିଳନୀ ସଭାରେ । କିନ୍ତୁ ମୁଁ ପାଖକୁ ଯାଇ ନାହିଁ କି କଥାବାର୍ତ୍ତା କରି ନାହିଁ । ଆଗେ ପଡ଼ି ସମ୍ପର୍କ ଯୋଡ଼ିବା ମୋ ଦ୍ୱାରା କଦାପି ହୋଇପାରେ ନାହିଁ । ମୋ ଭାଇ ଏ ବିଷୟରେ ଧୁରନ୍ଧର । ପ୍ରହରାଜ ପରିବାରର ମଜାଗପ ଓ ଥଟଲା ସ୍ୱଭାବ ଓ ଗପୁଡ଼ିପଣ ମୋ ଭାଇଙ୍କ ଠାରେ ଯଥେଷ୍ଟ । ମାତ୍ର ମୋ ସ୍ୱଭାବରେ ଉଭା ଯେତେ ପୋତା ତା'ଠୁଁ ଅଧିକ । ଟାପରା -ସ୍ୱଭାବତଃ ଆଦୌ ନାହିଁ । ପ୍ରକୃତରେ ପ୍ରହରାଜଙ୍କ ପରିବାରର ଲୋକଙ୍କ ସହିତ ଯଦି ଜଣେ ମିଳାମିଶା କରିଥିବ, ସେ ଜାଣିପାରିବ ସେହି ମଜାଳିଆ ଥଟ୍ଟା କଥା । ଏଣେ ଶାନ୍ତନୁଭାଇନା ବି ଗମ୍ଭୀର ସ୍ୱଭାବର ବ୍ୟକ୍ତି, ଅବଶ୍ୟ, ଠିକ୍ କ'ଣ ହୋଇଥିବେ ହୁଏତ ମୁଁ ଜାଣେନା । ମତେ ସେହିପରି ମନେ ହୁଅନ୍ତି । ଭୁବନେଶ୍ୱର ଆସିବା ପରେ, କ୍ରମଶଃ ତାଙ୍କ ପରିବାର ସହ ଆମ ପରିବାରର ଯୋଗାଯୋଗ ଆରମ୍ଭ ହୁଏ । ଭାଉଜ ଖୁବ୍ ବିଚାରଶୀଳା, ସ୍ନେହୀ । ଝିଅଗୁଡ଼ିକ ଖୁବ୍ ଶାଳୀନ, ସୁନ୍ଦର, ଲକ୍ଷ୍ମୀବନ୍ତ । ସେମାନେ ମୋତେ ଖୁବ୍ ଭଲ ଲାଗନ୍ତି । ଡେରିରେ ହେଲେ ବି ଭାଉଜ, ଆଜିକାଲି ଲେଖୁଛନ୍ତି ଓ ଚମତ୍କାର ଅନୁବାଦ କରୁଛନ୍ତି । ଶାନ୍ତନୁଭାଇନାଙ୍କ ସହ ମୁଁ ଖୁବ୍ ନିବିଡ଼ ହୋଇପାରି ନାହିଁ । ଯଦିଓ ବହୁ ସମୟରେ ତାଙ୍କ ସହ ସାହିତ୍ୟ ଚର୍ଚ୍ଚା କରିଛି । ଭାଇନାଙ୍କ ସହିତ ଘଣ୍ଟାଏ କଥା ହେଲେ ବଡ଼ ଉଦ୍‌ବୁଦ୍ଧ ଲାଗେ । ବିଜ୍ଞାନ, ଦର୍ଶନ, ଦେଶବିଦେଶ-ଯେ ସବୁ ସମ୍ପର୍କରେ ତାଙ୍କ ମନ୍ତବ୍ୟ ଗଭୀର ନିରୀକ୍ଷଣ ଓ ଉପଲବ୍ଧିରୁ ସଂଭୂତ ।

ତାଙ୍କ ଗଳ୍ପ ଉପନ୍ୟାସର ମୁଁ ଜଣେ ମୁଗ୍ଧପାଠିକା । ସେ ମୋର 'ଭାଇନା' ବୋଲି ନୁହେଁ- ତାଙ୍କ ଗଳ୍ପରେ ଅଭିବ୍ୟକ୍ତ ନିର୍ଭୀକତା ସତ୍ୟାଶ୍ରୟିତା, ହାସ୍ୟବ୍ୟଙ୍ଗ ଓ ଭାଷାର ନୂତନ ଦ୍ୟୋତନା, କଳ୍ପନା ଶକ୍ତିର ଦିଗ୍‌ବିଦିଗ ସଞ୍ଚାର ମୋତେ ଆକୃଷ୍ଟ କରେ । ତାଙ୍କ ଗଳ୍ପ ଉପନ୍ୟାସରେ ମୋ ପରିବାରର (ପ୍ରହରାଜ) ଅନେକ ବାସ୍ତବ ଘଟଣାକୁ ଅନବଦ୍ୟ କଳାସୃଷ୍ଟିରେ ସେ ରୂପାୟିତ କରିଛନ୍ତି । ବ୍ୟକ୍ତିଗତତାକୁ ସାର୍ବଜନୀନ ସ୍ତରକୁ ଉନ୍ନୀତ କରିଛନ୍ତି ସେ । ପିଲାଦିନେ ମୋ ଜେଜେମା ଓ ବୋଉଙ୍କଠାରୁ ଶୁଣିଥିବା ପାରିବାରିକ ରହସ୍ୟମୟ କାହାଣୀ ଯେତେବେଳେ ଶାନ୍ତନୁ ଭାଇନାଙ୍କ କଲମ କାଳିରୁ କାଗଜ ଉପରକୁ ଓହ୍ଲାଇ ଆସେ, ମୁଦ୍ରିତ ହୁଏ, ସେସବୁର ନୈର୍ବ୍ୟକ୍ତିକତାରେ ମୁଁ ଅଭିଭୂତ ହୋଇପଡେ । ସେ ଯେ ମୋ ବଂଶର ଜଣେ ବିଶିଷ୍ଟ କଥା ସର୍ଜକ ଓ ରୋକ୍‌ଠୋକ୍ ବ୍ୟକ୍ତିତ୍ୱ ଅଧିକାରୀ, ଏଥିପାଇଁ ମୁଁ ବେଶ୍ ଗର୍ବ କରେ । ଏଇଠି ଗୋଟିଏ ଘଟଣା କହିଲେ ଅପ୍ରାସଙ୍ଗିକ ହେବ

ନାହିଁ । ଅଳ୍ପଦିନ ତଳେ ନିରୁଭାଉଜଙ୍କଠାରୁ କଥାଟିଏ ଶୁଣିଥିଲି । ତାଙ୍କର ବିଶ୍ୱାସ ତାଙ୍କ ସ୍ୱାମୀ ନାରୀମାନଙ୍କ ସହ ବ୍ୟବହାର କିପରି କରାଯାଏ ଜାଣନ୍ତି ନାହିଁ । ମୋ ମତରେ ସ୍ତ୍ରୀର ଏଭଳି ବିଶ୍ୱାସ ପରିବାର ପାଇଁ ନିହାତି ସ୍ୱାସ୍ଥ୍ୟପ୍ରଦ । ତାଙ୍କ ବିବାହର ପ୍ରଥମ ବର୍ଷ ଘଟଣା-ବୋଧେ ସ୍ତ୍ରୀ ବାପଘରେ ରହି ଆଇ.ଏ. ପଢୁଥାନ୍ତି । ସ୍ୱାମୀ ନୂଆ ଚାକିରିରେ ଯୋଗଦେଲେ । ଛୁଟିରେ ସ୍ତ୍ରୀ ଯିବେ ସ୍ୱାମୀଙ୍କ ପାଖକୁ, ବାପା ବା ଭାଇଙ୍କ ସାଙ୍ଗରେ । ପୂର୍ବରୁ ସ୍ୱାମୀ ଚିଠି ଲେଖିଥାନ୍ତି ସ୍ତ୍ରୀଙ୍କୁ ବାରମ୍ବାର ତାଗିଦା କରିଥାନ୍ତି ଯେ, "ବସ୍‌ରେ ଆସିଲାବେଳେ ତୁମେ ବସ୍ ଝରକାରେ ହାତ ଲଗାଇବ ନାହିଁ । ବସ୍ ଝରକାଗୁଡ଼ିକ ଅପରିଷ୍କାର-ହାତ ପୁଣି ପାଟିରେ ବାଜିବ ।" ତାଙ୍କ ନବବିବାହିତା ପତ୍ନୀଙ୍କୁ ଚିଠିରେ ଏହି ଥିଲା ଗୁରୁତ୍ୱପୂର୍ଣ୍ଣ ଉପଦେଶ- ସ୍ୱାସ୍ଥ୍ୟ ରକ୍ଷାର ଚିନ୍ତା । ମନ୍ଦ ନୁହେଁ ଅବଶ୍ୟ । କିନ୍ତୁ ଭାଉଜ ଖୁବ୍ ମଜା କରନ୍ତି ଏହି କଥା କହି ।

ତାଙ୍କ ରଚିତ ଉପନ୍ୟାସ 'ଅନ୍ୟ ଏକ ସମୟ, ଅନ୍ୟ ଏକ ଭାରତ'ରେ ନାରୀ ଚରିତ୍ରର ବିଶିଷ୍ଟତା ମୋତେ ଯେତିକି ଅନୁପ୍ରାଣିତ କରିଛି, 'ଆମ ମାଉସୀ' ଗଳ୍ପଟିର ରହସ୍ୟମୟତା କମ୍ ଅନୁପ୍ରାଣିତ କରି ନାହିଁ । ସେହି ଗଳ୍ପର 'ଆରେ ଗୋପାଳ, ଆଲୋ ରାଧା' ଭଳି ସଂଳାପ ଅନ୍ତରାଳରୁ ମୋତେ ବେଳେବେଳେ ଶୁଭିଯାଏ । ଏକ ଅଚିନ୍ତନୀୟ ଶକ୍ତି ଓ ଅଘଟିତ-ଯୋଗ୍ୟ ଘଟଣାକୁ ସେ ରୂପ ପ୍ରଦାନ କଲାବେଳେ ତାହା ସତ୍ୟ ବା ବାସ୍ତବଠାରୁ କୌଣସି ଗୁଣରେ ଊଣା ଲାଗେ ନାହିଁ । ବରଂ ଅଧିକ ଆବିଷ୍ଟ କରି ରଖେ । ମନେହୁଏ, ଯାହା ଯାହା ଘଟେ, ତା' ମଧ୍ୟରେ ଅଲୌକିକତା କିଛି ନିହିତ ଥାଏ, ଫୁଲମାଳରେ ସୂତାଖିଅଟି ଲୁଚି ରହିଲାପରି । କିଏ କହିବ ତାହା ମିଥ୍ୟା ? କିଏ ବା କହିବ ତାହା ଅଘଟଣଯୋଗ୍ୟ ? ଯଦି ମିଥ୍ୟା, ପ୍ରମାଣ କରି ଦେଖାଇଦିଅ । ଯଦି ମିଥ୍ୟା ବୋଲି ପ୍ରମାଣ କରି ନ ପାର, ତେବେ ସତ୍ୟ ନୁହେଁ, ବୋଲି କହିବା ଯୁକ୍ତିସଙ୍ଗତ ହେବ କି ? ଏ ସବୁ ଆଚ୍ଛାଦିତ ସତ୍ୟ ।

ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଆଉ ଏକ ଗଳ୍ପ ଏହି occult ବା ପରାମନସ୍ତାତ୍ତ୍ୱିକ ଘଟଣା ଉପରେ ଆଧାରିତ ଶୀର୍ଷକ ବଙ୍କୁଲିବାଡ଼ି । ବଙ୍କୁଲିବାଡ଼ିଟି ରାସ୍ତାରେ ଚାଲିଛି, ଶ୍ମଶାନରେ ଠିଆ ହେଉଛି- ଠିକ୍ କେହି ଜଣେ ତାକୁ ହାତରେ ଧରିଥିଲା ପରି । ଯେଉଁ ବ୍ୟକ୍ତି ଧରି ଯା'ଆସ କରୁଥିଲେ ସେ ମୃତ । ଅଥଚ ତାଙ୍କ ଅନୁପସ୍ଥିତିରେ ବାଡ଼ିଟିର ଏଭଳି ଅବସ୍ଥାକୁ ଭୌତିକ କାଣ୍ଡ କୁହାଯିବ କି ? ଅବଶ୍ୟ ନୁହେଁ । ଏହା ଉତ୍ତରିତ ସତ୍ୟର ଏକ ଆଲେଖ୍ୟ । ଲେଖକଙ୍କ କରଞ୍ଜିଆ ଡାଏରୀରେ ଏହି ସଦ୍ୟ ସତେଜ occultର ସ୍ୱରୂପ ବହୁଭାବରେ ବିଶ୍ଳେଷିତ ଓ ପ୍ରମାଣିତ । ଲେଖକ ଜଣେ ବୈଜ୍ଞାନିକ ହୋଇଥିବାରୁ ତାଙ୍କ ଦ୍ୱାରା ପରୀକ୍ଷିତ ଅଭିଜ୍ଞତାକୁ 'ତାନ୍ତ୍ରିକ ସିଦ୍ଧି' ପର୍ଯ୍ୟାୟବାଚୀ କୁହାଯାଇପାରେ ।

ଔପନ୍ୟାସିକ ଶାନ୍ତନୁ କୁମାର ବକ୍ତବ୍ୟ ଚୟନରେ ସର୍ବଦା ନବଦିଗନ୍ତର ଉନ୍ମୋଚନ କରିଥାନ୍ତି । ତାଙ୍କର ପ୍ରସିଦ୍ଧ ଉପନ୍ୟାସ ମଧ୍ୟରେ 'ଶକୁନ୍ତଳା', 'ମନ୍ତ୍ରୀଙ୍କ ସେୟାର' ଓ 'ଧରିତ୍ରୀର କାନ୍ଦ' ଏହି ତିନୋଟି ଉପନ୍ୟାସ ବିଭିନ୍ନ ପରିବେଶ ଓ ସ୍ଥିତିରେ ରଚିତ

ହେଲେ ହେଁ ଜୀବନର ସାମଗ୍ରିକତାକୁ ବହୁଭାବେ ଉଦ୍‌ବୁଦ୍ଧ କରିଥାଏ । ଏଗୁଡ଼ିକର ଭାଷା ଓ ଶୈଳୀ ପୁଣି ଚିତ୍ରିତ ବାସ୍ତବତା ଓ ଅନ୍ତର୍ନିହିତ ସତ୍ୟ ଦୃଷ୍ଟିରୁ ପରସ୍ପରଠାରୁ ଯଥେଷ୍ଟ ଭିନ୍ନ ଓ ଉଚ୍ଚାଙ୍ଗ ସାହିତ୍ୟ ପର୍ଯ୍ୟାୟବାଚୀ ।

'ଅନ୍ୟ ଏକ ସମୟ ଅନ୍ୟ ଏକ ଭାରତ'ର ସିରିଆ ଚାଷୁଣୀର ମହତ୍ତ୍ୱପୂର୍ଣ୍ଣ ଚରିତ୍ର । 'ମନ୍ତ୍ରୀଙ୍କ ସେୟାର' ର ଆଧୁନିକ ନାୟିକାର ମନସ୍ତତ୍ତ୍ୱ ଓ ସାହସିକତା, ତାନ୍ତ୍ରିକ ସିଦ୍ଧି ମିଶ୍ରିତ ଜୀବନଚର୍ଯ୍ୟା, 'ଧରିତ୍ରୀର କାନ୍ଦ'ରେ ଅତ୍ୟାଧୁନିକ ଅଭିଶପ୍ତ ଜୀବନ ଭିତରେ ଆକସ୍ମିକତା ଓ ଉତ୍ତୁଙ୍ଗ ମାନବିକତା ସମଗ୍ର ଉପନ୍ୟାସକୁ ମହାର୍ଘ କରି ତୋଳିଛି । ପୁଣି ସମକାଳୀନ ପ୍ରାସଙ୍ଗିକତାକୁ ନେଇ ତାଙ୍କର ଉପନ୍ୟାସ 'ଶକୁନ୍ତଳା' ମିଥ୍‌କୁ ପୁନର୍ଜୀବନ ଦେଇ ପୁନର୍ନବୀକରଣ କରିଛି । ତେଣୁ ବାସ୍ତବତାର କଷଟିରେ ଉପନ୍ୟାସଗୁଡ଼ିକ ଉତ୍ତୀର୍ଣ୍ଣ, ଅଥଚ କଳ୍ପନା ଶକ୍ତି ଓ ଅକଲ୍‌ଟ୍‌ର ସଞ୍ଚାରଣ, ବେଶ୍ ବୌଦ୍ଧିକ ଶୈଳୀରେ ଅନ୍ୟ ଏକ ସାମର୍ଥ୍ୟ ହୋଇଛି Wit of humour ଯାହାକୁ ବୌଦ୍ଧିକ ବ୍ୟଙ୍ଗ ବୋଲି ମଧ୍ୟ କହିହେବ । ଏହି ଧରଣର humour ଓ occult ବର୍ତ୍ତମାନର ଦୁଇ ପ୍ରମୁଖ ଗଦ୍ୟଶିଳ୍ପୀ ଶାନ୍ତନୁ ଆଚାର୍ଯ୍ୟ ଓ ମନୋଜ ଦାସଙ୍କ ଠାରେ ଲକ୍ଷ୍ୟଣୀୟ । ଉପରୋକ୍ତ ୨ ଟି ଗୁଣ ଆଧୁନିକତା ଓ ଉତ୍ତର ଆଧୁନିକ ରଚନାର ବିଶିଷ୍ଟତା ବୋଲି କହିହେବ । ତାଙ୍କ ଦ୍ୱାରା ଅଙ୍କିତ ନାରୀ ଚରିତ୍ର ଖୁବ୍ ଉଦାର, ଶକ୍ତିମତୀ ଓ ସାହସିନୀ, ଏକଦା ନର କିନ୍ନର ଉପନ୍ୟାସର ଗୋଦରୀ ବୁଢ଼ୀ ମୋତେ ଖୁବ୍ ଚମତ୍କୃତ କରିଥିଲା, ମୋର ପ୍ରାକ୍‌ତାରୁଣ୍ୟ କାଳରେ । ତହିଁରେ ପ୍ରକଟିତ ଜୀବନବୋଧ ନିୟତି ବିରୋଧରେ ମାନବର ଏକ ଯୁଦ୍ଧଂଦେହି ଆହ୍ୱାନ । ଏଥିରୁ ସ୍ପଷ୍ଟ ହୁଏ ଜୀବନ କେତେ ବିପୁଳ ଓ ସମ୍ଭାବନାମୟ, ଅଥଚ କେତେ ବେଶି ସଂଘର୍ଷପୂର୍ଣ୍ଣ । ମାନବିକତାର ଆକସ୍ମିକ ଓ ମହତ୍ତମ ସ୍ଫୁରଣ ତଥା ପ୍ରତିଷ୍ଠାରେ ଦୀପ୍ତିମନ୍ତ ସେହି ଉପନ୍ୟାସ ଯେ ଏକ ପ୍ରଚଣ୍ଡ ପ୍ରତିଭାର ଉଷାଲୋକ ଏହା ନିଶ୍ଚୟ ସେତେବେଳର ପାଠକ ହୃଦୟଙ୍ଗମ କରିଥିବେ ।

ଚେହେରାରେ ସୁନା ତାର ପରି ଉଜ୍ଜ୍ୱଳ ଓ ସ୍ୱଭାବରେ ସ୍ୱାଭିମାନୀ ଏବଂ ଆଶାବାଦୀ ଶାନ୍ତନୁ ଭାଇନାଙ୍କ ବିଷୟରେ ମୁଁ ଯାହା ଏଠାରେ କହିଲି, ତାହା ଯଥେଷ୍ଟ ନୁହେଁ । ସେ ମୋର ବଡ଼ଭାଇ ହେଲେ ବି, ମୁଁ ତାଙ୍କ ଠାରୁ ନିଜକୁ ବହୁ ଦୂରରେ ରଖି, ମୋର ଚେତନା ଓ ଅବବୋଧରେ ଅଙ୍କିତ ତାଙ୍କର ସ୍ୱରୂପକୁ, ତାଙ୍କ ସୃଜନକୁ ଓ ବ୍ୟକ୍ତିତ୍ୱକୁ ଚିତ୍ରଣ କରିଛି । ଆପଣାପଣର ସଙ୍କଟ ଏଠାରେ ନାହିଁ । ମୋ ଭାଷାର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଓ ମନନଶୀଳ ବ୍ୟକ୍ତିତ୍ୱଙ୍କୁ ମୁଁ ଯେପରି ଗ୍ରହଣ କରିଛି, ବୁଝିଛି ମୋର ଏ ଆଲେଖ୍ୟଟି ତାହାର ଯଥାର୍ଥ ପ୍ରତିବିମ୍ବ ବୋଲି ମୁଁ ବିଶ୍ୱାସ କରୁଛି । ମୋ ଭାଷା ଜଣେ କବିର ଭାଷା, ଆଲୋଚକ ବା ସମୀକ୍ଷକର ଆଦୌ ନୁହେଁ । ତଥାପି ଗଦ୍ୟଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ସୃଜନଶୀଳ ବ୍ୟକ୍ତିତ୍ୱ ପ୍ରତି ମୋର ଏହି ଅନୁଶୀଳନ କିଞ୍ଚିତ୍ ଆଲୋକପାତ କରିପାରିଥାଏ ଯଦି, ମୁଁ କୃତକୃତ୍ୟ ହେବା ନିଶ୍ଚିତ ।



# ଓଡ଼ିଆ ସାହିତ୍ୟର ପାଟରାଣୀ, ବୀଣାପାଣି

## [ ପଦ୍ମଶ୍ରୀ ଡଃ ବୀଣାପାଣି ମହାନ୍ତି, ମୋର ବୀଣାଅପା ]

ଆପଣଙ୍କ ଜୀବନର ଗୋଟିଏ ବୋଲି ଜହ୍ନରାତି, ତା' ମୋର । ଗୋଟିଏ ବିଶ୍ୱସ୍ତ ଚଢ଼େଇର ସ୍ୱର-ତା' ବି ମୋର । ମୁଁ ମାଗି ନେଇ ନାହିଁ ଆପଣଙ୍କଠାରୁ । ଆପଣ ବଳେବଳେ ମୋତେ ସମର୍ପି ଦେଇଛନ୍ତି । ରାତି ସାରା ସ୍ୱପ୍ନ ବୁଣୁଥିବା ଚଢ଼େଇ ମୋ ଝର୍କାର ରେଲିଂ ଉପରେ ଗୀତ ଗାଇବ । କିପରି ଆପଣ ବୁଝିନେଲେ ମୁଁ ଉନ୍ମୁଖ ନଦୀଟିଏ, ଝରଣାଟିଏ, ସ୍ୱରଟିଏ-ଫୁଲଟିଏ ଫୁଟି ଉଠିବା ପରି ଫୁଟିଉଠିବି ମୁଁ କେଉଁ ପ୍ରାନ୍ତରେ ? ଆପଣ ନାଆଁ ଜାଣି ନ ଥିବା ସେଇ ଚଢ଼େଇ, ଅଥଚ ପ୍ରିୟ, ଯିଏ ଥରଟିଏ ସ୍ୱପ୍ନନେଇ ଆପଣଙ୍କ ନିକଟକୁ ଆସିଥିଲା । ସେଇ ଚଢ଼େଇ ନେଇଆସିବ ମୋର ଅଗଣାକୁ ଝରଣାଟିଏ, ବାରିପଟକୁ  ନଈଟିଏ । ୟେ କ'ଣ ଆପଣଙ୍କର ଭୋଜବାଜି ? ଆପଣ ସାଇତିଥିବା ଗୋଟିଏ ଜହ୍ନ ରାତିକୁ ମୋତେ ଦେଇଦେବେ- ମୋର ନୀରବିତ ଯନ୍ତ୍ରଣାକୁ ଅନୁଭବ କରି ଆପଣ ମୋତେ ସୁଖୀ କରିବାକୁ ଚାହିଁଛନ୍ତି ନା ?

ବୀଣା'ପା ବୋଲି ଡାକେ ସିନା, ମୁଁ ଜାଣେ ଆପଣ ମୋର ଭଉଣୀଠାରୁ ଅଧିକ, ଯେତିକି ଭଗ୍ନୀସମା, ସେତିକି ପ୍ରିୟ ସହଚରୀ । ସେଇଥିପାଇଁ ତ କଟକରୁ ବସ୍ ଚଢ଼ି ରିକ୍ସା ଚଢ଼ି ଭୁବନେଶ୍ୱର ପୁଣି ଭୁବନେଶ୍ୱରରୁ ବସ୍ ଚଢ଼ି ରିକ୍ସା ଧରି ଶୈଳବାଳା ମହିଳା କଲେଜର ହଷ୍ଟେଲକୁ ଧାଏଁ ମୁଁ । ଆଉ ଏଇଠି ଭୁବନେଶ୍ୱରରେ ନିଜେ ଗାଡ଼ି ଚଳାଇ ଉଠେ, ଆପଣଙ୍କ ବରମୁଣ୍ଡା ଫ୍ଲାଟ୍ ଘରେ, ତା' ପରେ ବାଦାମବାଡ଼ି ଗ୍ଲାସ୍ ପ୍ୟାଲେସ୍‌ରେ ! କେତେ ସ୍ଥାନକୁ ଓଡ଼ିଶା ଭିତରେ ଓ ବାହାରେ ଆପଣଙ୍କ ସହିତ ଯାଇ ସାହିତ୍ୟ ସଭାରେ ଯୋଗ ଦେଇଛି । ଆପଣଙ୍କ ଆନ୍ତରିକତା, ଉନ୍ମୁକ୍ତ ଶ୍ରଦ୍ଧାଶୀଳତା, ଭୋଗିଛି, ତା' ମୋର ସୌଭାଗ୍ୟ । ଏବେ ଆଉ ବେଶି ଥର ଯାଇପାରୁ ନାହିଁ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ବ୍ୟକ୍ତିଗତ ସମ୍ପର୍କ ! କ'ଣ ବା ମୁଁ ଆପଣଙ୍କ ଉପକାରରେ ଆସିଛି କେବେ ! ଉଦାରତାର ସାଗର ଆପଣ, ମୋ ପରି 'ସ୍ୱପ୍ନର ସାଗର'କୁ ଆପଣଙ୍କ କଥାମାନି ଆଖିଖୋଲି ଦେବାକୁ କହିଛନ୍ତି । ଆପଣଙ୍କ ହୃଦୟବତ୍ତାର ପଟାନ୍ତର ନାହିଁ । ଜଣଜଣକ ନିକଟରେ ଅଜୀବନ ଋଣୀ ହୋଇ ରହିଯିବାକୁ ହୁଏ ।

ମୁଁ ସେହିପରି ଆଜୀବନ ଆପଣଙ୍କଠାରେ ଋଣୀ । ମୋର ସବାସାନ ଝିଅ, ଯାହାକୁ ଆପଣ ଆଦରକରି ତା'ର କଥାକୁହା ଆଖିକୁ ପ୍ରଶଂସା କରନ୍ତି, ମୁଁ ଏବେ ତା' ନିକଟରେ ରହୁଛି । ଆପଣ ସାନଜ୍ୱାଇଁ ଦେବାଶିଷଙ୍କୁ ବି ବହୁତ ପ୍ରଶଂସା କରିଥାଆନ୍ତି । ମୁଁ ବର୍ତ୍ତମାନ ସେଇ ଦୁଇଜଣଙ୍କୁ ଅବଲମ୍ବନ କରି ରହିଛି । ହୃଦୟ ଖୋଲି କହି ହୁଏନା ସବୁ କଥା । ତଥାପି ମୋର ଗୋଟିଏ 'ଉତ୍ସର୍ଗପତ୍ର' ('ନିମିଷେ ଅକ୍ଷର'-କବିତା ସଂକଳନର) ଆପଣଙ୍କ ପାଦତଳେ ସମର୍ପି ଦେଉଛି-ଏଇଠି । ଘେନା କରିଛନ୍ତି ତ ନିଶ୍ଚୟ । ପୁଣି କେବେ, କୋଉଠି ସାକ୍ଷାତ...

❖❖❖

# ଆଉ କେତେ କାଳ

[ କବି ପ୍ରତିଭା ଶତପଥୀଙ୍କୁ – ପଦ୍ମଶ୍ରୀ ଡଃ ବୀଣାପାଣି ମହାନ୍ତି ]

କହିବ ଯଦି
ରାତିସାରା ସ୍ୱପ୍ନବୁଣି
ଥଣ୍ଡରେ ଶିଶିର କଣା ଧରି
ଆଖିପତା ମୁଦି ଆସୁଥିବା
ଚଢ଼େଇଟିକୁ ପଠାଇବି
ପଠାଇବି, ଗୀତ ଗାଇବାକୁ
ତୁମ ଝର୍କାର ରେଲିଂ ଉପରେ
କଳଙ୍କିଲଗା କୁହୁଡ଼ିର ଉଦାସ ବୁକୁରେ ।

ଫୁଲଟିଏ ଫୁଟି ଉଠେ / କେତେବେଳେ କେଉଁ ମୁହୂର୍ତ୍ତରେ
ସେ ଯେ ସବୁବେଳେ ଉନ୍ମୁଖ ନଦୀଟିଏ
ଝରଣାଟିଏ, ସ୍ୱରଟିଏ
ତା' ଲାଗି ମୁହୂର୍ତ୍ତ କାହିଁ ? ଅନନ୍ତ କାଳ ବି ଅଣ୍ଟେ ନାହିଁ
ସେ କେତେବେଳେ ଫୁଟିବ କେଉଁ ପ୍ରାନ୍ତରେ
କିଏ ଜାଣେ ତା'ର ଜାତକ ।

ତଥାପି ମୁଁ ପଠେଇବି ଚଢ଼େଇକୁ
ନାଁ ତା'ର ଜଣା ନାହିଁ ମତେ
କେଉଁ ଦେଶରେ ଘର ତା'ର / ଭୂଗୋଳରେ ନାହିଁ,
ଥରୁଟିଏ ସେ ମୋ ପାଖୁ ଆସିଥିଲା
କିଛି ସ୍ୱପ୍ନ ନେଇ / ସେତେବେଳେ ପୁଅ ମୋର
ବାପା ପାଖୁ ଯିବ ବୋଲି / ଆଖି ବୁଜି ବୁଜି ଚାଲିଥିଲା
ମୁଁ କହି ପାରିଲିନି ଚଢ଼େଇକୁ
ଟିକିଏ ବସି ଯା, ତୋର ପର ସାଉଁଳି ଦେବି
ଆଖିରେ ଆଖିଏ ଲୁହ ନେଇ ସେ ଫେରିଗଲା

ପୁଅର ଡେଣା ଧରି
ନଈ କୂଳରେ ଏକା, ଏକା ମୁଁ ବୁଲୁଥିଲି
ଗତକାଲି ଗୋଧୂଳିରେ ତା'ର
ଧୂସର ଡେଣା ମୁଁ ଦେଖୁଛି
ବୁଡ଼ନ୍ତା ସୂର୍ଯ୍ୟର ସୁନେଲୀ ଆଖିରେ
ଜାଣେ ସେ ଆସିବ, ଆଜି ନ ହେଉ କାଲି ।

କହିବ ଯଦି ପଠେଇବି ତାକୁ
କହିବି ଝରଣାଟିଏ ନେଇଯିବ / ତମ ଅଗଣାକୁ
ବାରି ପଟକୁ ନଈଟିଏ ନେଇଯିବ,
କିଛି ପବନର ଝିରିଝିରି ଶବ୍ଦ ।

କହିବ ଯଦି ପଠେଇବି
ଚଢ଼େଇକୁ / ତୁମ ଝର୍କାର ରେଲିଂ ଦେଇ
ଚଞ୍ଚୁରେ ବୁଣିଦେବ
ମୋର ସାଇତି ରଖିଥିବା ସାରା ଜୀବନର
ଗୋଟିଏ ବୋଲି ଜହ୍ନ ରାତିକୁ,
ତୁମ ମୁଦ୍ରିତ ଆଖି ପତାରେ,
ମାତ୍ର ଗୋଟିଏ ବୋଲି ଜହ୍ନ ରାତି
ଯା'ର ଗୋଟିଏ ବୋଲି ଜହ୍ନ ରାତି
ଯା'ର ସହସ୍ର ପାଖୁଡ଼ାରେ ସ୍ୱପ୍ନ
ଦେବତାଙ୍କର ଯନ୍ତ୍ରଣା, ଯଶୋଦାର ଶୋକ
କୁବୁଜା ପିଠିରେ ଚନ୍ଦନର ବାସ୍ନା ।
ଯମୁନା କୂଳର ଅତୁଟ ଯୌବନ ।

କହିବ ଯଦି ପଠେଇବି ଚଢ଼େଇକୁ
ଶିଆଳି ଲଟାରୁ ପାଦ ଖୋଲିଦେବ
ଆ ! କି ରକ୍ତ !
କେତେକାଳ ସହିବ ନୀରବିତ ଯନ୍ତ୍ରଣା
ଏବେ ନିଅ ମୋର ଜହ୍ନରାତି
ସ୍ୱପ୍ନର ସାଗର-କଥା ମାନି ଆଖି ଖୋଲିଦିଅ ।



# ଗାଳ୍ପିକା ଶ୍ରୀମତୀ ବୀଣାପାଣି ମହାନ୍ତିଙ୍କୁ

କେତେବେଳେ ଆପଣାର ପରିପୂର୍ଣ୍ଣତା ଭିତରେ ବିବାକ୍ ବୁଡ଼ିଯାଏ ତ କେତେବେଳେ ଶୂନ୍ୟ, ଏକୁଟିଆ । କେହି କୋଉଠି ନ ଥାନ୍ତି, ଆକାଶସାରା ଶୂନ୍ୟ, ଏକୁଟିଆ । ଆକାଶସାରା ଆସନ୍ନ ଘୂର୍ଣ୍ଣିବାତ୍ୟାର ଧୂସରତା,...ପବନ ସତେକି ଶ୍ୱାସରୁଦ୍ଧ ହୋଇ ଛଟପଟ ହେଉଥାଏ। ପ୍ରତିଟି କୋଠରିର ଦ୍ୱାରକୁ ନିରୁଦ୍ଧ କରିଥାଏ ଅସହିଷ୍ଣୁତା, ଈର୍ଷା ପୁଣି ସ୍ୱାର୍ଥପରତା । ତା'ରି ଭିତରେ କୋଉଠି ଥାଏ କୋଠରିଟିଏ, ମମତା ଓ ପ୍ରତ୍ୟୟରେ ଭରପୂର ଦରଆଉଜା କୋଠରିଟିଏ, ମୁଁ ତାକୁ ଜାଣିଚି । ଥରେ ହାତ ଛୁଇଁ ଦଉ ଦଉ ସେ ଖୋଲି ଯାଇଚି - ଖୋଲି ଯାଇଚି ଛାତ ଆଉ କାନ୍ଥ ତା'ର-ବ୍ୟାପିଯାଇଚି ଦିଗ୍‌ବଳୟରୁ ଆକାଶ ଯାଏଁ । ମୋ ସ୍ପର୍ଶ ଅପେକ୍ଷାରେ ସେ ରହିଥିଲା ସତେକି...କୃତାଞ୍ଜଳିରୁ ମୋର ଉଛୁଳି ପଡ଼ିଛି ମକରନ୍ଦ, ସମୁଦାୟ ସତ୍ତା ମହକି ଉଠିଛି, ଜାଗି ଉଠିଛି-ସୁବାସିତ, ମଧୁର ଓ ଅନିର୍ବଚନୀୟ । ପରେ ପରେ ଅବଶ୍ୟ ମୁଁ ଛିଟ୍‌କି ପଡ଼ିଚି ଲକ୍ଷ ଲକ୍ଷ ରୁଦ୍ଧଦ୍ୱାର କୋଠରିର ସାମ୍ନାକୁ । କପାଳରୁ ହତାଶାକୁ ପୋଛିଆଣିଲାବେଳକୁ ଆଖିପତା ଝଲମଲ କରିଉଠିଚି । ...କାହିଁକି ମୁଁ ସେ ବିଚିତ୍ର କୋଠରିକୁ ଚିହ୍ନିଲି - କାହିଁକି ମୁଁ ବୁଡ଼ିଗଲି ନିମିଷକେ ତା'ର ଅନନ୍ୟ ଆତ୍ମୀୟତାରେ ? କାହିଁକି ଆଜି ଦୁଃଖର ନିଃଶ୍ୱାସ ଭିତରେ ମୁଁ ବଞ୍ଚି ରହିଛି ପ୍ରତିନିୟତ ! ଅଥଚ...ଦୁଃଖକୁ ନିଜର ବୋଲି କହିପାରୁ ନାହିଁ ! କି ବିଚିତ୍ର ତନ୍ମୟତା ! ସେ କ'ଣ ପ୍ରାଣାନ୍ତକ ଏକ ଦଣ୍ଡର ସାକ୍ଷୀ ? ଭଲଟିକୁ ଚିହ୍ନିବା, ତା' ସହିତ ଦଣ୍ଡେ ଏକାତ୍ମ ହେବା; ପୁଣି ତା'ଠୁ ବିଚ୍ୟୁତ ହେବା ଓ ପୁନର୍ବାର ଖୋଜି ଲାଗିବା-ଏଇ ତେବେ ଜୀବନ ! ପରସ୍ତ ପରସ୍ତ ମାଟି-କାଦୁଅ-ପଙ୍କବୋଳା ଶରୀର ଓ ଆତ୍ମା ଭିତରେ ବିନ୍ଦୁଏ ଉତ୍ତୀର୍ଣ୍ଣ ରସର ସ୍ପନ୍ଦନ....ବିକୃତ କୋଳାହଳ ଭିତରେ ଏକାଗ୍ର ଶ୍ୟାମଳ ଧ୍ୱନିଟିଏ...ତା'ର ସମ୍ମୋହନରେ ପ୍ରଧାବିତ ଯେ ମୋର ସତ୍ତା... କୋଉ ଦର୍ପରେ କହିବି ଯେ ମୋର ବିଚ୍ୟୁତି, ମୋର କର୍ଦ୍ଦମାକ୍ତ ସ୍ଥିତି, ମୋର କୋଳାହଳଗ୍ରସ୍ତ ଜୀବନ ଭିତରେ ହଜିଯାଇଛି ପୃଥିବୀର ଭଲପଣ...ସତ୍ତା ହରାଇଚି ମହାଜୀବନର ଉତ୍ତୀର୍ଣ୍ଣତା, ମଉଳି ଯାଇଚି ଆତ୍ମ-ସଂଯୋଗର ଧ୍ୱନିଟିଏ ? ମୁଁ କିଏ କି ? ମୋର ମୃତ୍ୟୁରେ ମୃତ୍ୟୁ ହୋଇଯିବ ଏଇ ପୃଥିବୀର, ପ୍ରବହମାନ ଜୀବନଧାରାର, ସବୁ ଭଲପଣର, ଭଲପାଇବାର ?

ବୀଣା'ପା,

ଚିହ୍ନି ଚିହ୍ନୁ ନ ଥିବା, ପାଇ ହଜାଉଥିବା, ପୂର୍ଣ୍ଣତାରୁ ଶୂନ୍ୟତା ଓ ବରଦାନରୁ ଅଭିଶାପ ଯାଏ ଘୂରିଲାଗିଥିବା ମୋର ଏଇ ଅନିର୍ବଚନୀୟ ଅନୁଭବର ଉଚ୍ଚାରଣକୁ ଆପଣଙ୍କ ହାତରେ ଦଉଚି । ଏଇ ଗୋଲକଧନ୍ଦାକୁ ଆପଣ ବୁଝିପାରିବେ ବୋଧେ । ପ୍ରତିଭା ।



# 'ବନହଳଦୀ'ର ଅତୁଟ ରଙ୍ଗ

ମୁଁ ତାଙ୍କୁ ଭେଟେ 'ପ୍ରଜାତନ୍ତ୍ର' ପୃଷ୍ଠାରେ କି 'ସମାଜ' ପୃଷ୍ଠାରେ ଠିକ୍ ମନେପଡୁ ନାହିଁ । କିନ୍ତୁ 'ବନହଳଦୀ' କବି ବନଜ ଦେବୀଙ୍କର କବିତା ସଂକଳନ ନାମଟି ମନକୁ ଛୁଏଁ । ମନେ ରହିଯାଏ । ହେଲେ ତା' ପରେ ଆଉ କୋଉଠି ଦେଖିପାରେ ନାହିଁ, ସେ ନାମକୁ । ହାଇସ୍କୁଲରେ ପଢ଼ିଲାବେଳର ସ୍ମୃତିଫର୍ଦ୍ଦରେ 'ବନହଳଦୀ' ଲେଖାହୋଇ ରହିଯାଏ । ପରେ, କେବେ କେମିତି ତାଙ୍କ କବିତା ପଢ଼ିଥାଏ ।

ପ୍ରଥମେ ଚାକ୍ଷୁଷ ସାକ୍ଷାତ ହୁଏ ବାଙ୍କୀରେ । ବାଣୀବିହାର ପି.ଜି. ପିଲାଙ୍କ ସହ ପିକ୍‌ନିକ୍‌ରେ ଆମେ ଯାଇଥାଉ ବାଙ୍କୀ । ଓଡ଼ିଆ ବିଭାଗର ମୁଖ୍ୟ ଥାଆନ୍ତି ଡଃ ବଂଶୀଧର ମହାନ୍ତି । ଛାତ୍ରଛାତ୍ରୀ ମୋତେ ଡାକିନିଅନ୍ତି । ଅତଏବ ମୁଁ ଯାଇ ବାଙ୍କୀରେ ପହଞ୍ଚେ । ବଣଭୋଜି ସାରି, ଚର୍ଚ୍ଚିକାଙ୍କ ଦର୍ଶନ ସାରି ଡଃ ମହାନ୍ତି ପହଞ୍ଚନ୍ତି ତାଙ୍କ ଛାତ୍ର-ଅଧ୍ୟାପକଙ୍କ ଘରେ । ବୋଧହୁଏ, ପରଦିନ କୁମାର ପୂର୍ଣ୍ଣିମା ଥାଏ । ସଜ ଉଖୁଡ଼ାର ପାଗବାସ୍ନା ଛୁଟି ଆସୁଥାଏ । ଆମେ ତାଙ୍କ ଘରେ ବସିଥିବାବେଳେ, ପ୍ରଫେସରମାନେ ଓ ମୁଁ ସେମାନଙ୍କ ସହିତ କଥା ହେଉଥାଉ । ବୋଧେ ଆଗରୁ ବନଜଦେବୀଙ୍କୁ ତାଙ୍କ ପଡ଼ୋଶିନୀ (ଲେଖିକା ପ୍ରଫୁଲ୍ଲତା ଦେବୀ) ଖବର ଦେଇଥାନ୍ତି । ହସ ହସ ମୁହଁରେ ପଶିଆସନ୍ତି ତନୁପାତଳୀ ମହିଳା ଜଣେ, ମୁଣ୍ଡରେ ଲୁଗା ଦେଇଥାନ୍ତି - ଓଠରେ ଜବର ହସ । ଏଇ ବନଜଦେବୀ କବି, ଲେଖିକା । ସେଠି ମୁଁ ଦେଖିଲି ତାଙ୍କୁ । ସେ ତ ପ୍ରାୟ ଦୂରରେ ଦୂରରେ ଥାଆନ୍ତି । କ୍ୱଚିତ୍ ଦେଖାହୁଏ, ପ୍ରାୟ ବି ହୁଏନା । ଥରେ, ତାଙ୍କ ସାନ ଝିଅର ଚାକିରି ବିଷୟରେ ଡାକବିଭାଗ ଓ ସରକାରଙ୍କର ଶିଥିଳତାକୁ ଚାଲେଞ୍ଜ୍ କରି ଚିଠିଟେ ସେ ଛପେଇଥାନ୍ତି, ସମ୍ବାଦପତ୍ରରେ । ସେଥିରୁ ତାଙ୍କର ମନର ଦୃଢ଼ତା ଜାଣିପାରିଛି ।

ପରେ ସେ ତ ହେଲେ ଓଡ଼ିଶା ଲେଖିକା ସଂସଦର ଉପସଭାନେତ୍ରୀ । ସେଇଠି ସଭାରେ କେବେକେବେ ଦେଖାହୁଏ । ଯେତେବେଳେ ଶୁଣିଲି ତାଙ୍କ ରଚନାତ୍ମକ ବିଷୟରେ ବହିଟିଏ ବାହାରିବ - କ'ଣ୍ କରିବି - ମୋର ସମସ୍ତ ପୁସ୍ତକ - ସଞ୍ଚୟକୁ ମୁଁ ବିଭିନ୍ନ କଲେଜ, ୟୁନିଭରସିଟି, ଉତ୍କଳ ସାହିତ୍ୟ ସମାଜ ଲାଇବ୍ରେରୀ ଓ ପବ୍ଲିକ୍ ରିଡିଂ ଲାଇବ୍ରେରୀକୁ ଦାନ କରିସାରିଛି । ପଢ଼ିବାକୁ ସୁଯୋଗ ନାହିଁ । ଶାରଳା ପୁରସ୍କାର ପ୍ରାପ୍ତି ଅବସରରେ ଯାହାସବୁ ସେ ବିଭିନ୍ନ ସାକ୍ଷାତକାରରେ କହିଥିଲେ, ସେଇସବୁ ହିଁ ମୋ

ସମ୍ବଳ । ତାଙ୍କୁ ହିଁ ପଢ଼ି ତାଙ୍କ ଅଲିଅଳ ପିଲାଦିନ, ଘରକରଣା, ଯୋଗ୍ୟ ପୁଅଝିଅଙ୍କ କଥା ଜାଣିଲି, ବହୁତ ଭଲ ଲାଗିଲା । କେତେ ବୁଦ୍ଧିମତୀ, ପରିଶ୍ରମୀ ସେ । ଖୁବ୍ ଗୁଡ଼ାଏ ପାଠ ହୁଏତ ପଢ଼ିପାରି ନାହାନ୍ତି, ସେ ସମୟର ପ୍ରଭାବରେ । ମାତ୍ର ତାଙ୍କର ଭାଷା ଓ ରଚନାଶୈଳୀ ଖୁବ୍ ଉନ୍ନତ, ଆକର୍ଷଣୀୟ ।

ଥରେ, ମୁଁ ଚନ୍ଦ୍ରମା ହାଉସିଂ କମ୍ପ୍ଲେକ୍ସରେ ରହୁଥିଲାବେଳେ, ତାଙ୍କ ଝିଅ ଦୁହେଁ ମୋ ଘରକୁ ଆସି ମତେ ନିମନ୍ତ୍ରଣ ଜଣାଇଲେ । ତାଙ୍କର କବିତା ସଂକଳନ ଉନ୍ମୋଚନ ନିମନ୍ତେ । ଅନ୍ୟ ଅତିଥିମାନଙ୍କ ମଧ୍ୟରେ ପ୍ରସିଦ୍ଧ କବି ପଦ୍ମଭୂଷଣ ରମାକାନ୍ତ ରଥ ମଧ୍ୟ ଥିଲେ । ମୁଁ ତତ୍କ୍ଷଣାତ୍ ସମ୍ମତି ଜଣାଇଲି । ମୁଁ 'ବନହଳଦୀ' ନାମଟି ପ୍ରକାଶ କରିଥିଲି - ଏଇଠି, ମୋର କୈଶୋରର ଉଜ୍ଜ୍ୱଳ ସ୍ମୃତି ଭାବରେ । ସେ ମଧ୍ୟ ମୋର ଗୋଟିଏ ଆଲୋଚନାଗ୍ରନ୍ଥ 'ପ୍ରତିଭା, ଧୂଳିରୁ ନକ୍ଷତ୍ର'ରେ ନିଜ ମତାମତ ଲେଖିଥିଲେ - 'ଆଞ୍ଜୁଳାଏ ମାଟିର ସିଂହାସନରେ'- ତା'ର ଶୀର୍ଷକଟି ଥିଲା । କେନ୍ଦ୍ର ସାହିତ୍ୟ ଏକାଡେମୀ ଯେବେ ମୋର 'Meet the author' କାର୍ଯ୍ୟକ୍ରମ କରିଥିଲେ, ତାଙ୍କ ଉପରୋକ୍ତ ରଚନାଟିକୁ ଆଲୋଚନାରେ ଗ୍ରହଣ କରିଥିଲେ । ଖୁବ୍ ଆନ୍ତରିକତା ଓ ଗଭୀରତା ସହ ସେ ଉପରୋକ୍ତ ଲେଖାଟି ଉପସ୍ଥାପନ କରିଥିଲେ ।

ତାଙ୍କର ଗୋଟିଏ କବିତା ସଂକଳନ 'ସୁନାରେ ଭରିଛି ନାଆ' ମୋର ଅତି ପ୍ରିୟ । ଏପରିକି ତା'ର ସୂଚନାତ୍ମକ ପ୍ରଚ୍ଛଦଟି ମୋ ଆଖି ସାମ୍ନାରେ ଦିଶିଯାଉଛି । ଖୁବ୍ ଅସ୍ତିବାଚକତା ଓ କଳାତ୍ମକତା ସେହି ସଂକଳନଟିରେ ଭରିରହିଛି । ଜୀବନ ପ୍ରତି ଗୋଟିଏ ଗଠନମୂଳକ ଦୃଷ୍ଟିଭଙ୍ଗୀ ତାଙ୍କ ସମସ୍ତ ରଚନାରେ ଉଜ୍ଜୀବିତ ଥାଏ । ମତେ ଲାଗେ ସେହି ଅସ୍ତିବାଚକତା ତାଙ୍କ ଚରିତ୍ରର, ବ୍ୟକ୍ତିଗତ ଜୀବନର ଓ ରଚନାତ୍ମକତାର ମୂଳପିଣ୍ଡ । ମୋର ଅଗ୍ରଜା, ମୋର ଅତିପ୍ରିୟ ଓ ସହୃଦୟ ଏହି ରଚନାକାରଙ୍କୁ ମୁଁ ସବିଶେଷ ଭକ୍ତି ନିବେଦନ କରୁଛି । ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କୁ 'ନାରୀ' ବୋଲି କହିବି ନାହିଁ - ଯଦିଓ ସେ ନାରୀଦେହଧାରିଣୀ । ସୃଜନଶୀଳତାରେ ନାରୀ ଓ ପୁରୁଷର ଭେଦଭାବକୁ ମୁଁ ସ୍ୱୀକାର କରେ ନାହିଁ । କନ୍ନଡ଼ ଭାଷାର ପ୍ରାଚୀନ କବି ଆକ୍କା ମହାଦେବୀ କହିଥିଲେ, "ମାନବୀୟ ଆତ୍ମାର ଲିଙ୍ଗଭେଦ ନ ଥାଏ ।" ମୁଁ ଏହା ଗ୍ରହଣ କରେ, ସମ୍ମାନ ଦିଏ ଏହି ବକ୍ତବ୍ୟକୁ । ସୃଜନଶୀଳତା ଆତ୍ମାର ଏକ ଅଂଶର ବାଙ୍ମୟ ରୂପ । ତେଣୁ ତାଙ୍କର ଏଇ ସମ୍ବର୍ଦ୍ଧନା ପୁସ୍ତକ ପ୍ରକାଶ ଅବସରରେ ମୁଁ ସାନନ୍ଦ ନମସ୍କାର ଜଣାଉଛି ।



# ପ୍ରିୟ ବାନ୍ଧବୀ 'ଅବାକ୍ ସୁନ୍ଦରୀ'ର କବି

## [ ଡକ୍ଟର ସୌଦାମିନୀ ନନ୍ଦଙ୍କୁ ସ୍ନେହସହ ]

ମୁଁ ତାଙ୍କୁ ପ୍ରଥମ ଭେଟିଥିଲି ରେଭେନ୍ସାରେ ପ୍ରଥମବର୍ଷ ଉପାଧି ବିଜ୍ଞାନ ପଢ଼ିଲାବେଳେ । ଦେଖା କରିବାକୁ ଯାଇଥିଲି ଶୈଳବାଳା ମହିଳା କଲେଜ ହଷ୍ଟେଲ୍‌କୁ । ସେ ଦ୍ୱିତୀୟ ବର୍ଷ ଡିଗ୍ରୀ 'କଳା' ପଢୁଥିଲେ । ମୋ ସାଙ୍ଗରେ ଶତପଥୀବାବୁ ଥାଆନ୍ତି, ସେ ତାଙ୍କର ସମ୍ପର୍କୀୟା ଭାଣିଜୀ, ପତଳା ଢକ୍ ଢକ୍, ଗୋରୀ, ଧଳାଶାଢ଼ି ଓ ଚଷମା ପିନ୍ଧିଥାନ୍ତି । ତା' ପରେ ବହୁବର୍ଷ ବିତିଗଲା ପୁଣି ଦେଖାହେଲା କଟକରେ, ମୁଁ ରେଭେନ୍‌ସାରେ ଅଧ୍ୟାପିକା ଥାଏ । କିଛିଦିନ ପରେ ସେ ରେଭେନ୍ସାରେ ଅଧ୍ୟାପିକା ଭାବେ ଯୋଗଦେଲେ । ତାଙ୍କର ସ୍ୱାମୀ ଡକ୍ଟର ବିଜୟ କୁମାର ନନ୍ଦ, ଆମ ପରିବାରର ଡାକ୍ତର, ବିନାମୂଲ୍ୟରେ ଆମର ଚିକିତ୍ସା କରନ୍ତି । ସେ ମଧ୍ୟ ଜଣେ ନାଟ୍ୟକାର, ଯେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । ସୌଦାମିନୀ ମୁଖ୍ୟତଃ କବି । ତାଙ୍କର ପ୍ରଥମ ୨ଟି କବିତା ସଂକଳନ 'ସୂର୍ଯ୍ୟାଭିଳାଷ', 'ସୂର୍ଯ୍ୟାଭିସାର' । ଖୁବ୍ ଅନ୍ତରଙ୍ଗ ଆତ୍ମୀୟତାର ସ୍ୱର ସହିତ ଏକ ଉର୍ଦ୍ଧ୍ୱ ଜଗତର ବାର୍ତ୍ତା ନେଇ ଏହି କବିତା ପୁସ୍ତକ ମତେ ଅଭିଭୂତ କରେ । ପରେ ତାଙ୍କର 'ଅବାକ୍ ସୁନ୍ଦରୀ' କବିତା ସଂକଳନ ଅଧିକତର ଭାବବାହୀ ଓ ଏହାର କବିତାଗୁଡ଼ିକ ହିନ୍ଦୀରେ ଅନୂଦିତ ଓ ଗୋଟିଏ ଅନୂଦିତ କବିତା 'ସିନ୍ଦୂରୀ ଚିଡ଼ିୟା' ନାମକ ଏକ ହିନ୍ଦୀ ସଂକଳନରେ ସ୍ଥାନିତ ହୋଇଛି ।

ଅନୁବାଦ କର୍ମରେ ସେ ମଧ୍ୟ ନିପୁଣା । 'ଧର୍ମବୀର ଭାରତୀ'ଙ୍କ 'ଅନ୍ଧାଯୁଗ' ଅନୁବାଦ କରି ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତା । ଏହା ବ୍ୟତୀତ ବୈକମ୍ ମହମ୍ମଦ ବସିର୍‌ଙ୍କ ପୁସ୍ତକ ସେ 'ଅଜାଙ୍କ ହାତୀ' ଶୀର୍ଷକରେ ଅନୁବାଦ କରିଛନ୍ତି । ଏହି ପୁସ୍ତକଗୁଡ଼ିକ ଅନୁବାଦ ହେଲେ ହେଁ ମୌଳିକତାର ସ୍ୱାଦ ଓ ସୁଗନ୍ଧ ଆଣିଦେଇଥାଏ । ସୌଦାମିନୀ ତାଙ୍କ ଭାବଗମ୍ଭୀର ଉଚ୍ଚତର ଚେତନାର ପରିଚୟ ଦିଅନ୍ତି, ତାଙ୍କ ପ୍ରବନ୍ଧ ସଂକଳନଗୁଡ଼ିକରେ । ମୁଁ ତାଙ୍କ ପ୍ରବନ୍ଧ ଭିତରେ ପ୍ରବେଶ କରି ଦିଗହରା ହୋଇଯାଏ । ପ୍ରବନ୍ଧଗୁଡ଼ିକ 'ମୟୂରାଙ୍କିତ ବଂଶୀ', 'ଅଲକ୍ଷିତ ଶବ୍ଦ' ଓ 'ବିଳମ୍ବିତ ଲୟ', 'ସ୍ୱରଶୃଙ୍ଗାର' ଓ 'ଅତଳରୁ ଅନ୍ତରୀକ୍ଷ' ଗଳ୍ପ ସଂକଳନ ଗୋଟିକ ମଧ୍ୟ ବହୁ ଭାବରେ ଆକର୍ଷଣୀୟ ତଥା ମଧୁର । ଶ୍ରୀଅରବିନ୍ଦଙ୍କ 'ସାବିତ୍ରୀ' କାବ୍ୟକୁ ସେ ବିଶଦ ଆଲୋଚନା କରି ଏକ ସ୍ୱତନ୍ତ୍ର ପୁସ୍ତକ ରଚନା କରିଛନ୍ତି ।

ମାତ୍ର ଉପରୋକ୍ତ ସମସ୍ତ ତଥ୍ୟ ବାହାରେ ତାଙ୍କ ସହ ମୋର ଗଭୀର ଆତ୍ମୀୟତା ରହିଛି । ପାରିବାରିକ ସମ୍ପର୍କଠାରୁ ଏହି ଆତ୍ମୀୟତା ଭିନ୍ନ ପ୍ରକାର ।

ଗୋଟିଏ ଘଟଣାପାଇଁ ତାଙ୍କ ନିକଟରେ ମୁଁ କୃତଜ୍ଞ ଯେ, ବହୁ ବିରଳ ଇଂରାଜୀ ଓ ହିନ୍ଦୀ ପୁସ୍ତକ ତାଙ୍କ ଠାରୁ ହିଁ ପଢ଼ିବାପାଇଁ ପାଇଛି । ତାଙ୍କ ସ୍ୱାମୀ ଜଣେ ପୁସ୍ତକ ପ୍ରିୟ ବ୍ୟକ୍ତି । ଇଂରାଜୀ ସାହିତ୍ୟର ବହୁ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ସେ ରଖିଥାନ୍ତି । ମୁଁ ସୌଦାମିନୀ (ମିନି)ଙ୍କ ଠାରୁ ଆଣି ପଢ଼ିଛି । ତା'ପରେ ବହୁ ତାତ୍ତ୍ୱିକ ଆଲୋଚନା ତାଙ୍କ ମୋ ମଧ୍ୟରେ ଚଳେ । ମୁଁ ସ୍ୱୀକାର କରୁଛି, ସେ ମୋ ଠାରୁ ଯଥେଷ୍ଟ ବୁଦ୍ଧିମତୀ । ଜଣେ ଭଲ ମାଆ ଓ ସ୍ୱଭାବତଃ ଗମ୍ଭୀର । ମୁଁ ହୃଦୟକୁ ତାଙ୍କ ନିକଟରେ ଖୋଲିଦିଏ କିନ୍ତୁ ମୋର ମନେହୁଏ, ହୃଦୟ ଖୋଲିବାକୁ ସେ କିଛିଟା ସଂଭ୍ରମ ରଖନ୍ତି । ତା' ଅବଶ୍ୟ ଜୀବନ ନିର୍ବାହ ପାଇଁ ଉତ୍ତମ ମାର୍ଗ । ମୁଁ ଯାହା କହୁଛି, ତା' ବି ସତ୍ୟ ହୋଇ ନ ପାରେ । ତେବେ ମୋର ଗୋଟିଏ କବିତା ସଂକଳନ 'ନିୟତ ବସୁଧା'କୁ ମୁଁ ତାଙ୍କୁ ଉତ୍ସର୍ଗ କରିଥିଲି । ପଚାରିଥିଲି 'ମୁଁ କାହିଁକି ଭଲରେ ଶୋଇପାରୁନି ?" ରାତିରେ ପିଲାଙ୍କ ଜଞ୍ଜାଳ ଥାଏ, ଦିନରେ କଲେଜ । ତେବେ ସେ କହନ୍ତି "ତୁମେ ଯେବେ ଭଲକି ଶୋଇପଡ଼ନ୍ତ କବିତା ଲେଖନ୍ତା କିଏ ? ତୁମକୁ ନିଦ ନ ହେଉ, ଭଲ ଲେଖିପାରିବ ଅନ୍ତତଃ ।" ମୋତେ ବୁଝାଇ ଦେବାକୁ ସେ ସବୁବେଳେ କିଛି ନା କିଛି ତାଙ୍କ ବକ୍ତବ୍ୟରେ ରଖିଥାନ୍ତି । ୨୦୧୭ ନଭେମ୍ବରରେ ମୁଁ ଭୋପାଳଠାରେ କବୀର ସମ୍ମାନ ନିମିତ୍ତ ନିମନ୍ତ୍ରିତ ହେଲି । ଆଶ୍ଚର୍ଯ୍ୟର କଥା, ଏକ ପ୍ରଶସ୍ତ ସ୍ଥାନରେ ଶତାଧିକ ଉକ୍ତି, ସନ୍ଥ କବୀରଙ୍କର ଲିଖିତ ହୋଇଥାଏ ଓ ସଜ୍ଜିତ ଥାଏ ସମୁଦାୟ ସ୍ଥାନରେ । ରାଷ୍ଟ୍ରପତି ସେଦିନର ଅତିଥି । ସେତିକିବେଳେ ମୁଁ ସନ୍ଥ କବୀରଙ୍କ ଗୋଟିଏ ଉକ୍ତିକୁ ନିଜ ଅନ୍ତରାତ୍ମା ସହ ସାମିଲ୍ କରିପାରିଲି । "ସୁଖିୟା ସବ୍ ସଂସାର ହୈ ଯୋ ଖାଓ୍ୱେ ଔର ସୋୟେ / ଦୁଃଖିୟା ଦାସ କବୀର ହୈ ଯୋ ଜାଗେ ଔର ରୋୟେ ।" ଯେ 'ମିନି'ଙ୍କର ଅନୁରୂପ ପ୍ରବୋଧନା ନୁହେଁ କି? ମୁଁ ନିଜକୁ ଅବଶ୍ୟ ବହୁ ପୂର୍ବରୁ ଉପରୋକ୍ତ ରୂପେ ବୁଝାଇଥାଏ, ହୁଏତ ଶବ୍ଦାବଳୀ ଭିନ୍ନ ହୋଇଥାଏ । ସେ ଅନେକ ପୁରସ୍କାର ପ୍ରାପ୍ତ ହୋଇଛନ୍ତି – 'ପ୍ରଜାତନ୍ତ୍ର ବିଷୁବ ପୁରସ୍କାର', 'ସତ୍ୟବାଦୀ ସାହିତ୍ୟ ପୁରସ୍କାର' ଓ ଅନ୍ୟାନ୍ୟ ଅନେକ ।

ସୌଦାମିନୀ ତାଙ୍କର ଅନୁବାଦ ପୁସ୍ତକ 'ଅନ୍ଧାଯୁଗ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀର ଅନୁବାଦ ପୁରସ୍କାରପ୍ରାପ୍ତ ହେଲେ । ମୋ ଆନନ୍ଦ କହିଲେ ନ ସରେ । ସେ ବହିଟି କବି ଧର୍ମବୀର ଭାରତୀଙ୍କର ରଚନା ଓ ତା'ର ଅନୁବାଦ ଖୁବ୍ ରୋଚକ ଓ ସାର୍ଥକ । ଏହି ନାଟକଟି, ପରେ ରବୀନ୍ଦ୍ର ମଣ୍ଡପରେ ଅଭିନୀତ ହୋଇଥିଲା- ବିଶିଷ୍ଟ ମଞ୍ଚ କଳାକାର ଓ ଅଭିନେତା ଅସୀମ ବସୁଙ୍କ ନିର୍ଦ୍ଦେଶନାରେ । ବହୁ ମାନ୍ୟଗଣ୍ୟ କବି ସାହିତ୍ୟିକଙ୍କ ମେଳରେ ମୁଁ ମଧ୍ୟ ସେଇ ସନ୍ଧ୍ୟାରେ ଉପସ୍ଥିତ ରହିଥିଲି । ସେ ନାଟକର ଦୃଶ୍ୟ ଏବେ ବି ମୋ ଆଖି ସାମ୍ନାରେ ଦିଶିଯାଉଛି । ତାଙ୍କ ଭଳି ଗୋଟିଏ ପ୍ରାଣସଙ୍ଗିନୀ ମୁଁ ମୋର ଭାଗ୍ୟବଳରେ ପ୍ରାପ୍ତ ହୋଇଛି । ମୁଁ ତାଙ୍କର କୌଣସି ଉପକାରରେ ଆସିପାରି ନାହିଁ । ଆଜିକାଲି ବୟସ ଓ ଅସୁସ୍ଥତା ଆମ ମଝିରେ ପ୍ରାଚୀର ତୋଳି ଦେଇଛି । କେବଳ ସ୍ମରଣରେ ଯାହା-



# ମିତ୍ରତାର ଭାବମୂର୍ତ୍ତି

## [ ଡକ୍ଟର ସଂଘମିତ୍ରା ମିଶ୍ରଙ୍କୁ ଶ୍ରଦ୍ଧା ସହ ]

ସଂଘମିତ୍ରାଙ୍କ ସହ ମୋର ପ୍ରଥମ ସାକ୍ଷାତ ହୁଏ ଗୋଟିଏ ବଣଭୋଜିରେ । ପୂର୍ବରୁ ବାଣୀବିହାର ଓଡ଼ିଆ ବିଭାଗରେ ପିକନିକ୍ ହେଲେ ପ୍ରାୟତଃ ଅଧ୍ୟାପକମାନଙ୍କ ପରିବାରକୁ ନିମନ୍ତ୍ରଣ କରାଯାଉଥାଏ । ପ୍ରଥମେ ପ୍ରଥମେ ମୁଁ ଦେଖି ନ ଥିବା ସ୍ଥାନକୁ ସେମାନଙ୍କ ସହିତ ଯାଉଥିଲି-ସାଥିରେ ମୋର ଗୋଟିଏ ବା ଦୁଇଟି ଝିଅ ଯାଉଥିଲେ । କ୍ରମଶଃ ସେମାନେ ଉଚ୍ଚ କ୍ଲାସ୍‌କୁ ଗଲେ ଆଉ ଯିବାକୁ ଚାହିଲେ ନାହିଁ ଏବଂ ମୁଁ ବି ସାରା ଦିନର କ୍ଲାନ୍ତିକୁ ଆଦରି ନ ପାରି ସେଥିରୁ ଓହରି ରହିଲି । ସେଥର ପିକ୍‌ନିକ୍ ଥାଏ ମହାମାୟା ଭଟ୍ଟାରିକାଙ୍କ ପୀଠରେ । ସେ ବର୍ଷ ସଂଘମିତ୍ରା ଷଷ୍ଠବର୍ଷର ଛାତ୍ରୀ । ଗୁଦୁଲ୍ ଗାଦୁଲ୍ ଝିଅଟିଏ । ଲୁଗାପଟାରେ ଭାରି ସଂଯତ । ଆମେ ପାଖାପାଖି ଗପକଲୁ ଆଉ ତାଙ୍କ ସହପାଠିନୀମାନଙ୍କଠାରୁ ଶୁଣିଲି ଯେ ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ, ବିବାହିତା ପୁଣି ୨ଟି ପିଲାର ମାଆ, କପାଳରେ, ସିନ୍ଥିରେ ସିନ୍ଦୂର । ମୁଁ କୌତୂହଳୀ ହୋଇଉଠିଲି । ଦୁଇଟି ପିଲା ପୁଣି ଷାଷ୍ଟ୍‌କ୍ଲାସ୍ ସହ ଫାଷ୍ଟ । ସେ ନିଦାରୁଣ ଅବସ୍ଥା ଦେଇ ମୁଁ ମଧ୍ୟ ଗତିକରି ଥିଲି । ଶିଶୁ ସନ୍ତାନ ସହ ପଢ଼ାବହି ହାତରେ ଧରିବା ଅବସ୍ଥା ଯେ କି ଝକ୍‌ମାରି ଜାଣିଥିଲି, "ପିଲାଙ୍କୁ କିଏ ରଖିଲା, ତୁମେ କିପରି ଚଳାଇ ପାରିଲ ?" "ସେମାନେ ମୋ ନାନୀ ପାଖରେ ଥିଲେ ।" "ବାଃ, ବେଶ୍ ସୁବିଧା ତ" ଉତ୍ତର ଆସିଲା, "ସୁବିଧାଠାରୁ ଅସୁବିଧା କେତେ ବେଶି ଭୋଗିଛି ମୁଁ ଜାଣିଛି ।" ତେବେ ମୁଁ ଆଉ ସେ ବିଷୟରେ ମୁଣ୍ଡ ଖେଳାଇନି । ସେ ତାଙ୍କ ଝିଅ ମାମା କଥା ପ୍ରସଙ୍ଗ କରିଥିଲେ ହୁଏତ, କିନ୍ତୁ ମୁଁ ସେ କଥା ଜାଣି ନ ଥିଲି ।

ଅଧ୍ୟାପିକା ଭାବେ ପୁନର୍ବାର ସାକ୍ଷାତ ହେଲା ରମାଦେବୀ ମହିଳା କଲେଜରେ । ଆମେ ଏକାଠି କାମକଲୁ । ତାଙ୍କ ସମୟାନୁବର୍ତ୍ତିତା, ନମ୍ରତା ଓ ଶିକ୍ଷାଦାନରେ ନିଷ୍ଠାପରତା ସମ୍ପର୍କରେ କ୍ରମଶଃ ମୁଁ ଅବଗତ ହେଲି । ସେତେବେଳେ ସେ କମନରୁମ୍‌ରେ ଗପିବାରେ ଧୁରନ୍ଧର ଥିଲେ, ଏବେ ଆଉ ସେଇ ଗପିବାର ମିଜାଜ୍ ବୋଧେ ନାହିଁ । ନିଜର ସାରା ପରିବାର ଓ ପ୍ରିୟପରିଜନଙ୍କୁ ନିଜର ସହନଶୀଳତା ତଥା ଶ୍ରଦ୍ଧାରେ ସେ ବୁବେଇ ରଖିଥିଲେ । ପରେ ଜାଣିଲି ତାଙ୍କ ପତି ଡାଃ ଜଗନ୍ନାଥଙ୍କୁ- ସେ ରାଗୀମଣିଷ, ଏବଂ ଆଜିକାଲି ସେ ଖୁବ୍ ଥଣ୍ଡା । ତେବେ ସେ ଖୁସିବାସିଆ ଲୋକ, ନାଟକ ଅଭିନୟରେ ତାଙ୍କର ସଉକ୍,

ତା'ପରେ ବି ରାଜନୀତି । ଆମ କଲେଜ ହଷ୍ଟେଲ ପିଲା ଓ ଛାତ୍ରୀମାନଙ୍କର ଚିକିତ୍ସା ସେ କରନ୍ତି । ମୋ ପରିବାରକୁ ମଧ୍ୟ ସେ ଅକୁଣ୍ଠ ଚିକିତ୍ସା ପ୍ରଦାନ କରିଥାନ୍ତି । କିନ୍ତୁ ସଂଘମିତ୍ରା, ଅଦ୍ଭୁତ ତାଙ୍କର ଆପଣାକୁ ବିଭାଜନ କରିବାର ଶକ୍ତି । ଜଣେ ଉଚ୍ଚଶିକ୍ଷିତା, ଉପାର୍ଜନକ୍ଷମା, ଡାକ୍ତର-ପତ୍ନୀ ଓ ନେତାଙ୍କ ପତ୍ନୀ ଭାବରେ ସେ ନିଜକୁ ବିଭାଜିତ କରିଥାଆନ୍ତି । ଆଶ୍ଚର୍ଯ୍ୟର କଥା ସବୁ କ୍ଷେତ୍ରରେ ତାଙ୍କ ଭୂମିକା ଶାନ୍ତି ପ୍ରଦାୟୀ ହୋଇଥାଏ । ଶିକ୍ଷାବିଭାଗରେ ସେ ଯେମିତି ବିଶ୍ୱସ୍ତା, ସମସ୍ତ ମାନବିକ ସମ୍ପର୍କଠାରେ ମଧ୍ୟ ସେ ଅନୁରୂପ ବିଶ୍ୱାସଭାଜନ । ହିଂସା ବା ଈର୍ଷାର ତିଳେମାତ୍ର ସ୍ପର୍ଶ ତାଙ୍କଠାରେ ଲାଗିଥିବାର ମୁଁ ଦେଖି ନାହିଁ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ସେ ନିଯୁକ୍ତି ପାଇଲେ । ଆମେ ରମାଦେବୀ କଲେଜରୁ ତାଙ୍କୁ ହରାଇଲୁ । ମୁଁ ଜାଣିଥିଲି ଯେ ସେ ବୁଦ୍ଧିମତୀ, ସୁଛାତ୍ରୀ-ଅଧ୍ୟାପକ ପ୍ରତିଯୋଗିତାରେ ଯୋଗ୍ୟତା ଅର୍ଜନ କରିବା ତାଙ୍କର ଦାବି । ତା'ପରେ ତାଙ୍କର ସାହିତ୍ୟ ସାଧନା-ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି. ଡିଗ୍ରୀ ଦରକାର । ସେ ସବୁ ସେ ଅବଲୀଳାକ୍ରମେ ହାସଲ କଲେ । ତାଙ୍କର ଗାଇଡ୍ ସ୍ୱର୍ଗତ ପ୍ରଫେସର ଡଃ କୃଷ୍ଣଚରଣ ସାହୁ, ମୋର ମଧ୍ୟ ସେ ଗାଇଡ୍ ହେଲେ । ସାର୍ ମତେ ଭାରି ଭଲ ପାଉଥିଲେ । ମୁଁ କେବେ ତାଙ୍କର ଛାତ୍ରୀ ନ ଥିଲି କି ଅନର୍ସ ବା ଏମ୍.ଏ.ରେ କୃତିତ୍ୱ ଦେଖାଇ ଚମତ୍କାର କରିପାରିବା ମୋ ଭାଗ୍ୟରେ ନ ଥିଲା । ପିଲାଛୁଆ ଧରି ଘରୋଇ ଭାବରେ ପାଠପଢ଼ା । ଏବେ ସେଇ ଗବେଷଣା କର୍ମ ମଧ୍ୟରେ ସାର୍ ମୋର ମେଧାର କିଛି ପରିଚୟ ପାଇଥିଲେ । ସଂଘମିତ୍ରାଙ୍କୁ ସେ କହିଥିଲେ "ତୁମେ ପ୍ରତିଭାଙ୍କୁ ଖାଲି ତୁମ ସାର୍‌ଙ୍କ ପତ୍ନୀ ବୋଲି ଭାବ ନାହିଁ, ସେ ଅଧିକ କିଛି" । ସଂଘମିତ୍ରା ମୋତେ ଏକଥା କହିଥିଲେ । ସାର୍‌ଙ୍କ ସହୃଦୟତା ମୋର ଭାଗ୍ୟବଶରୁ ପାଇଥିଲି କିନ୍ତୁ ସଂଘମିତ୍ରା ପ୍ରତିବର୍ଷ ନିଷ୍ଠାର ସହ ସାର୍‌ଙ୍କ ଜୟନ୍ତୀ ପାଳନ କରିଥାନ୍ତି । ତାଙ୍କ ପରିବାର ସେଥିରେ ସହଯୋଗ କରିଥାଆନ୍ତି । ଆଜିର ଏଇ ଅକୃତଜ୍ଞ ଯୁଗରେ 'କାମ ସରିଲେ ଗଡ଼ଗଡ଼ା' ନୀତିରେ ସଂସାର ଚାଲେ, ବାପ ମାଆଙ୍କ କଥା ତ ଦୂରେ ଥାଉ, ଶିକ୍ଷକ ଆଉ ଗାଇଡ୍ ! ସଂଘମିତ୍ରା ଏକ ଭିନ୍ନ ପ୍ରକାର ବ୍ୟକ୍ତିତ୍ୱ ନିଜ ବାପା, ମା' ନାନୀ ସମସ୍ତଙ୍କ ଶେଷ ସମୟରେ ସେ ଉପଯୁକ୍ତ ଚିକିତ୍ସା ଯୋଗାଇଛନ୍ତି । ସେଥିରେ ତାଙ୍କର ସ୍ୱାମୀଙ୍କର ପୂର୍ଣ୍ଣପ୍ରାଣ ସହଯୋଗ ଥାଏ ।

ହଁ, ତାଙ୍କ ସାହିତ୍ୟ ସାଧନା କଥା କହୁକହୁ ଗବେଷଣାରେ ପଶିଗଲି । ସେ କବିତା ଲେଖୁଥିଲେ ପ୍ରଥମରୁ, କ୍ରମଶଃ ତାଙ୍କର କବିତାରେ ଅନ୍ତର୍ନିହିତ ଭାବରାଜି ଦୃଢ଼ତାର ସହ ଉଚ୍ଚାରିତ ହେଲା । ତେବେ ସେ ସବୁ ତାଙ୍କ ଜୀବନ ସାଧନାରୁ ଉଦ୍ଭୁତ । କେଉଁ ଲେଖକ ବା କବିର ନିଜ ସୃଜନରେ ଜୀବନ ସାଧନାର ପ୍ରଭାବ ରହି ନାହିଁ ? କେବଳ କବିତା ନୁହେଁ ଏକାଙ୍କିକା, ପ୍ରବନ୍ଧ, ସମାଲୋଚନା ଫିଚର ଇତ୍ୟାଦି ଅନେକ ପୁସ୍ତକ ଲେଖିଛନ୍ତି । ସବୁଗୁଡ଼ିକ ଯଥାର୍ଥ ଲୋକପ୍ରିୟତା ମଧ୍ୟ ଅର୍ଜନ କରିଛନ୍ତି । ଅନେକ ଗବେଷକ ଗବେଷିକାଙ୍କୁ

ପ୍ରଚୁର ସମୟ ଓ ଧ୍ୟାନ ଦେଇ ସେ ଦିଗ୍‌ଦର୍ଶନ ଦେଇଛନ୍ତି । ମୁଁ ତାଙ୍କୁ ଥରେ ଥରେ କହେ ଏତେ ପରିଶ୍ରମ କରନା, ଦୂରଦୂରାନ୍ତକୁ ଜୁରୀ ବା ପରୀକ୍ଷକ ଭାବେ ଯାଅନା, ଏବେ ଆରାମ କର, କେବଳ ଲେଖାଲେଖି କର ସେ ବୁଝନ୍ତି ହୁଏତ, କିନ୍ତୁ କେବେ କାର୍ଯ୍ୟବିରତ ହୋଇ ନାହାନ୍ତି ।

ବହୁତ ପରେ ଜାଣିଲି ତାଙ୍କ ଜନ୍ମବୃତ୍ତାନ୍ତ, ସ୍ୱାଧୀନତା ସଙ୍ଗ୍ରାମୀ ସ୍ୱର୍ଗତ ବଂଶୀଧର ମିଶ୍ରଙ୍କର ସେ ସାନଝିଅ । ତାଙ୍କ ବାପା ଜଣେ ଅତି ସାହସୀ ଦେଶଭକ୍ତ ଥିଲେ । ସେ ସମ୍ପର୍କରେ ମୁଁ ଲେଖୁ ନାହିଁ ଏଠି । ମୋ ବାପା ବି ସ୍ୱାଧୀନତା ସଙ୍ଗ୍ରାମୀ, କାରାଗାରରେ ଥିଲେ, ଆଦର୍ଶ ବିବାହ (ବାଲ୍ୟ ବିଧବା) କରିଥିଲେ । କିନ୍ତୁ ସଂଘମିତ୍ରାଙ୍କ ବାପା ଥିଲେ ସମାଜପ୍ରତି ଉତ୍ସର୍ଗିତ । ମୁଁ ତାଙ୍କୁ ବେଳେବେଳେ କହେ ତୁମେ ବଂଶୀଧର ମିଶ୍ରଙ୍କର ଝିଅ ବୋଲି ଏତେ କଷ୍ଟ କରିପାରୁଛ । ଗର୍ବ ଅହଂକାର ସେ ଜାଣନ୍ତି ନାହିଁ । କିନ୍ତୁ ଅନ୍ୟାୟ ବା ଅବିଚାର ସାମ୍ନାରେ ସେ ନମ୍ରଭାବେ ତାଙ୍କ ମତବ୍ୟକ୍ତ କରି ପ୍ରତିରୋଧ କରିଥାନ୍ତି- ତାଙ୍କର ଏ ଗୁଣଟିକୁ ମୁଁ ବହୁତ ପସନ୍ଦ କରେ ।

ଏଠି ଆଉ ଗୋଟିଏ ପ୍ରସଙ୍ଗ । ସେ ମୋତେ ତାଙ୍କ ସାର୍‌ଙ୍କ ସ୍ତ୍ରୀ ଭାବରେ ବହୁତ ସମୀହ କରନ୍ତି ଓ ସମବେଦନା ମଧ୍ୟ ଜଣାନ୍ତି । ମୁଁ ପ୍ରବନ୍ଧ ଲେଖିଲାବେଳେ ଯଦି କୌଣସି ରେଫରେନ୍ସ ବହି ଦରକାର ପଡ଼େ ମୁଁ ତାଙ୍କୁ କହେ । ମୋ ଘରେ ସକଳ ପୁସ୍ତକ ଥିଲେ ମଧ୍ୟ ଖୋଜିବା ନିମିତ୍ତ ପରିଶ୍ରମ ବିମୁଖ ହୋଇ ମୁଁ ତାଙ୍କଠାରୁ ବହି ମଗାଏ । ନିଜେ ଯାଇ ଲୋକ ପଠାଇ ବହିଟି ଆଣେ । ଏମିତିରେ ମୁଁ ସମ୍ପାଦନା କରୁଥିବା କବିତା ପତ୍ରିକା 'ଉଭାସ'ରେ ସେ ମୋତେ ସହଯୋଗ କରନ୍ତି ପ୍ରାୟ ୮ବର୍ଷ କାଳ ୨୦୦୩ରୁ ୨୦୧୦ ମସିହା ପର୍ଯ୍ୟନ୍ତ । ଏଥିରେ ସଂଯୋଜିତ 'ସିଂହାବଲୋକନ' ବିଭାଗଟିକୁ ସେ ନିୟମିତ ସମ୍ପାଦନା କରିଥାନ୍ତି । ପ୍ରାୟ ୧୯୭୦ ମସିହା ପର୍ଯ୍ୟନ୍ତ (ପ୍ରାଚୀନଯୁଗରୁ ଆରମ୍ଭ କରି) କବିମାନଙ୍କର ସ୍ୱ-ପରିଚୟ ସହ କବିତାକୁ ଚୟନ କରିଥାନ୍ତି । ଖୁବ୍ ଆନ୍ତରିକ ସହଯୋଗ ତାଙ୍କ ଠାରୁ ପାଇଛି, ମୂଳରୁ କହିଛି ସେ ନିର୍ଭରଯୋଗ୍ୟ ।

ମୋର ଜଣେ ବିଶ୍ୱାସୀବନ୍ଧୁ ଭାବରେ ମୁଁ ତାଙ୍କୁ ଗ୍ରହଣକରେ । ଈଶ୍ୱର ତାଙ୍କର ସାହିତ୍ୟ ସାଧନା ଓ ଜୀବନ ସାଧନାକୁ ପୁଷ୍ପାସ୍ତୃତ କରନ୍ତୁ ।



## ଆଲେଖ୍ୟ

# କବିତାରେ ମାନବିକ ମୂଲ୍ୟବୋଧ

[ ମୁଖ୍ୟତଃ ଓଡ଼ିଆ କବିତା, ତା' ସହିତ ଅଳ୍ପ କେତେକ ଅନ୍ୟ ଭାରତୀୟ ଭାଷାର କବିତା ଏବଂ ଇଂରାଜୀ କବିତାକୁ ଏହି ପ୍ରବନ୍ଧର ଆଲୋଚନା ପରିସରଭୁକ୍ତ କରାଯାଇଛି । ]

ସାହିତ୍ୟ ସର୍ବଦା ମାନବିକ ମୂଲ୍ୟବୋଧ ସହ ଅଭିବନ୍ଧିତ ହୋଇ ରହିଛି । ଏପରିକି ଆଦିକବି ବାଲ୍ମୀକିଙ୍କର ପ୍ରଥମ କାବ୍ୟିକ ଉଚ୍ଚାରଣ ଗଭୀର ସମ୍ବେଦନଶୀଳତାରୁ ଉଦ୍‌ଭୂତ - "ମା ନିଷାଦ ପ୍ରତିଷ୍ଠା ତ୍ୱମ ଗମ ଶାଶ୍ୱତୀ ସମାୟତ୍ କ୍ରୌଞ୍ଚ ମିଥୁନାଦେକମବଧି କାମ ମୋହିତଂ ।"

କବିତା ପଙ୍‌କ୍ତି ନିଷ୍ଠୁରତା ବିପକ୍ଷରେ ବିପୁଳ ପ୍ରତିବାଦର ସ୍ୱର ଉତ୍ତୋଳନ କରିଛି । ସଭ୍ୟତାର ବିକାଶ ସହିତ ମଣିଷ ଅସ୍ତିତ୍ୱ ପ୍ରତି, ମଣିଷର ଆଭ୍ୟନ୍ତରୀଣ ଓ ବାହ୍ୟ ବାସ୍ତବତା ପ୍ରତି କବିର ସଂବିତ୍ତି ଓ ଅବବୋଧ ବିଶେଷ ଭାବରେ ଅଭିନିବିଷ୍ଟ ରହିଛି । ଏତାଦୃଶ ଅଭିନିବେଶ ଓ ନିରୀକ୍ଷଣ-କବିତା, ଉପନ୍ୟାସ, ଗଳ୍ପ, ନାଟକ ଆଦି ସୃଜନଶୀଳ କଳା ମଧ୍ୟରେ ପ୍ରମୂର୍ତ୍ତ । ସେହି ଅର୍ଥରେ କବିତା ମାନବିକ ମୂଲ୍ୟବୋଧକୁ କେବଳ ପ୍ରତିବିମ୍ବିତ କରି ନାହିଁ-ବରଂ ସମଗ୍ର ମାନବତାକୁ ପ୍ରଭାବିତ କରି ନୂତନ ମୂଲ୍ୟବୋଧ ସୃଷ୍ଟି କରିବାରେ ସମର୍ଥ ହୋଇଛି । ବହୁ ଦାର୍ଶନିକ, ସାମାଜିକ ଓ ଐତିହାସିକ ବିକାଶ ମାଧ୍ୟମରେ ମାନବିକତାର ବିଭିନ୍ନ ବିଭବ ଉତ୍ତରୋତ୍ତର ଅଭିବୃଦ୍ଧି ଲାଭ କରିଛି ।

କବିତା ମଣିଷର ଆବେଗଶୀଳ ସୃଜନବିଧା ହୋଇଥିବାରୁ କବିର ମାନବିକ ବାସ୍ତବତାକୁ ପ୍ରତିବିମ୍ବିତ କରିବାରେ କବିତାର ପ୍ରଚୁର ସାମର୍ଥ୍ୟ ରହିଛି । କବିତା ସଦାସର୍ବଦା ଆଗୁସାର ହୋଇ ଦୁଃଖୀ ଓ ଅସହାୟ ମଣିଷର, ବଞ୍ଚିତ ଓ ଶରଣାର୍ଥୀ ମଣିଷର ପାଖେ ପାଖେ ଛିଡ଼ା ହୋଇଛି । କେବେ ପ୍ରତିବାଦରେ, କେବେ ସମ୍ବେଦନଶୀଳତାରେ କବିତା ଅନ୍ୟାୟ ଓ ଅସମତା ବିରୋଧରେ ସ୍ୱରୋତ୍ତୋଳନ କରିଛି । ଏହି କ୍ରିୟାଶୀଳତା ଦ୍ୱାରା କବିତା ନିଜ ସ୍ଥାନ ଓ କାଳ ସମର୍ଥିତ ନୂତନ ମାନବିକ ମୂଲ୍ୟବୋଧ ମଧ୍ୟ ସୃଷ୍ଟି କରିପାରିଛି । ବର୍ତ୍ତମାନର ସ୍ଥାନ ଓ କାଳ ରକ୍ତଜର୍ଜର । ପୁନଶ୍ଚ ଯୁଦ୍ଧ, ଶୀତଳ ଯୁଦ୍ଧ, ସନ୍ତ୍ରାସ, ଶୋଷଣ, ରାଜନୀତିକ ଓ ସାମାଜିକ ଦ୍ୱନ୍ଦ୍ୱ ଦ୍ୱାରା ଏହା ମଳିନ ଓ ଆଚ୍ଛନ୍ନ ହୋଇପଡ଼ିଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ କବିତାରେ ଏହି ମାନବିକ ଦରଦ ସ୍ପଷ୍ଟ ଓ ତୀବ୍ର ହୋଇଉଠିଛି । ଭାରତୀୟ କବିତାରେ ଏହିପରି ଧାରା ବିଂଶଶତକର ଶେଷାର୍ଦ୍ଧଠାରୁ ସ୍ପଷ୍ଟ ଭାବେ ଲକ୍ଷ୍ୟଣୀୟ ।

ଏକ ପ୍ରମୁଖ ଭାରତୀୟ ଭାଷା ଭାବରେ ଓଡ଼ିଆ କବିତା ମାନବିକ ମୂଲ୍ୟବୋଧର ବିକାଶ ଦିଗରେ ପ୍ରଚୁର ସହଯୋଗ କରିଛି । ଓଡ଼ିଆ କାବ୍ୟ-କବିତାର ପୁରାଣ ସଙ୍ଗୀତ ମାଧ୍ୟମରେ ସାଧାରଣ ଜନତାକୁ ଉଦ୍‌ବୁଦ୍ଧ କରିବାର ଯୁଗଯୁଗବ୍ୟାପୀ ପରମ୍ପରା ରହିଛି । କିନ୍ତୁ ଏହି ପ୍ରବନ୍ଧରେ ୧୯୫୦ ପରବର୍ତ୍ତୀକାଳର କବିତାକୁ ବିଚାରକୁ ନିଆଯାଉଛି । ଏତିକି ବେଳେ ଆମର ସମାଜ ଉତ୍ତର-ସାମ୍ରାଜ୍ୟବାଦୀ ସାମାଜିକ, ଆର୍ଥନୀତିକ ପରିବର୍ତ୍ତନର ଜଟିଳତା ମଧ୍ୟରେ ପ୍ରବେଶ କରିଛି । ଯଦିଓ ଏହି କାଳରେ ଶିଳ୍ପ, ଶିକ୍ଷା, ବିକାଶ ବୃଦ୍ଧି ପାଇଛି, ତଥାପି ମଣିଷର ଯନ୍ତ୍ରଣା ଓ ଲାଞ୍ଛନା ଶେଷ ହୋଇ ନାହିଁ । ଏହି ବିରୋଧାତ୍ମକ ପରିସ୍ଥିତି କବିର ଚେତନାକୁ ପ୍ରଭାବିତ କରିଛି । ଏହି ପରିପ୍ରେକ୍ଷୀରେ ଓଡ଼ିଆ କବିତାରେ ବାସ୍ତବତାର ବହୁ ବର୍ଣ୍ଣବିଭା ଲକ୍ଷ୍ୟ କରାଯାଇପାରିବ । ଏହା ବ୍ୟତୀତ କେତେକ ଭାରତୀୟ ଭାଷାରେ ତଥା ଇଂରାଜୀରେ ଲିଖିତ କବିତାକୁ ଅନୁଧ୍ୟାନ କଲେ ମାନବିକ ମୂଲ୍ୟବୋଧର ବହୁଦିଗବ୍ୟାପୀ କଳାତ୍ମକ ସ୍ୱରୂପକୁ ଉପଲବ୍ଧି କରିହେବ ।

ଏହି ପ୍ରବନ୍ଧରେ କବିତାରେ ଚିତ୍ରିତ ମାନବିକ ମୂଲ୍ୟବୋଧର ସ୍ୱରୂପକୁ ଦୁଇ ଗୋଟି ପରିସରରୁ ନିରୀକ୍ଷା କରାଯିବ । ପ୍ରଥମତଃ, ସାଧାରଣ ମାନବିକ ସ୍ଥିତିର ବିଶ୍ଳେଷଣ । ଦ୍ୱିତୀୟତଃ, ନାରୀର ବାସ୍ତବ ସ୍ଥିତି ପ୍ରତି ନର୍ଦ୍ଦିଷ୍ଟ ଗୁରୁତ୍ୱର ସହିତ ବିଚାର ଆଲୋଚନା ।

ମାନବୀୟ ସମ୍ପର୍କ ହିଁ ମଣିଷ ମଣିଷ ମଧ୍ୟରେ ଆତ୍ମୀୟତାର, ଦରଦର ଯୋଗସୂତ୍ର । ଏହା ଦ୍ୱାରା ଜୀବନ ପ୍ରତି ଏକ ଆସ୍ଥାମୂଳକ ବା ଅସ୍ତିବାଚକ ଦୃଷ୍ଟି ପ୍ରକଟିତ ହୋଇଥାଏ । ବସ୍ତୁବାଦର ଗହ ଗହ କୁଆପଥର ମାଡ଼ରେ ମାନବିକତାର କୋମଳ ଚାରାକୁ ନଷ୍ଟ ହେବାକୁ ଦିଆ ନ ଯାଉ, ଏହି କରୁଣାପୂର୍ଣ୍ଣ ଆବେଦନ କବି ଉଚ୍ଚାରଣ କରେ । କବିର ଏହି ଆନ୍ତରିକତା, ତା'ର ଏହି ପ୍ରେରଣାମୟ ମାନବିକତାବାଦୀ ଦୃଷ୍ଟିରେ ଓତପ୍ରୋତ ଏବଂ ସମ୍ବେଦନଶୀଳ ହୃଦୟରୁ ସଂଜାତ । କିଛି କହିବାର କ୍ରିୟାତ୍ମକ ବ୍ୟାକୁଳତା, ଜୀବନ ଜଗତର ବିମ୍ବ, ବିଚାରର ସାରସତ୍ୟ କବିର ଅନ୍ତଃକରଣକୁ ଉଦ୍‌ବୁଦ୍ଧ କରେ । ତେଣୁ କବିର କରୁଣାପ୍ଳୁତ ହୃଦୟରୁ କେବେ ବିପ୍ଳବର ବା କେବେ ପ୍ରତିବାଦର ସ୍ୱର ଉଚ୍ଚାରିତ ହୁଏ ।

ଏଠାରେ ଯେଉଁ ମାନବିକ ମୂଲ୍ୟବୋଧର ବିଶ୍ଳେଷଣ କରାଯାଉଛି, ତାହା କବିର ଗଭୀର ଅନ୍ତର୍ମନ ନିଃସୃତ, କରୁଣାସିକ୍ତ, ଉପଯୁକ୍ତ କଳାତ୍ମକ ଶୈଳୀ ଦ୍ୱାରା ସୁସଜ୍ଜିତ କବିତା, ଯାହା ପାଠକର ଅନ୍ତର୍ଲୋକକୁ ଉଦ୍‌ବୁଦ୍ଧ କରିଥାଏ ।

ବିଭଙ୍ଗ ବାସ୍ତବତାକୁ ଗଢ଼ି ତୋଳିବାର ସଂକଳ୍ପ କବିତା ମାଧ୍ୟମରେ ପ୍ରକଟିତ ହୁଏ- ଏଠାରେ ମଣିଷ ପ୍ରତି ପ୍ରଗାଢ଼ ମମତ୍ୱ ହେତୁ ସକଳ ପ୍ରାଣୀଠାରେ ମମତ୍ୱର ଏକ ମନନଶୀଳ ଚିତ୍ର ଉଦ୍‌ଭାସିଉଠେ । ମଣିଷ, ପ୍ରକୃତି ଓ ସକଳ ପ୍ରାଣୀଙ୍କର ଦୁଃଖ-ଦୁର୍ଦ୍ଦଶାର ନିରାକରଣ ପାଇଁ କବି ବାସ୍ତବତାର ଗରଳ ପାନ କରିବାକୁ ଉଦ୍ୟତ ହୁଏ । ଆତ୍ମ ନିଗ୍ରହ ବରଣ କରିବାକୁ

ପ୍ରସ୍ତୁତ ହୁଏ । ଏ ପରିପ୍ରେକ୍ଷୀରେ କବି କହନ୍ତି – "ଛାତି ଫାଟି ଯିବାର / ଓ ଗଛମାନେ ଭାଙ୍ଗିପଡ଼ିବାର ଶବ୍ଦ ଶୁଭୁଥିଲା । ସେତେବେଳେ ଚେର ଓ ମୂଳ ସହିତ / ମୁଁ ସମ୍ପୂର୍ଣ୍ଣ ଉଠି ଆସିଲି ଉପରକୁ / ଝାଡ଼ି ଦେଲି ସବୁ ପତ୍ର ଓ ଫୁଲ ଫଳ ଓ ଖଣ୍ଡ ଖଣ୍ଡ ହୋଇ ଖସିପଡ଼ିଲି / ପୃଥିବୀର ବନ୍ଧା ହୋଇଥିବା ଆତ୍ମା ଉପରେ (ଚଣ୍ଡାଳ-ଆଶୁତୋଷ ପରିଡ଼ା) ଏହିପରି ଆତ୍ମତ୍ୟାଗର ସାମୂହିକ କଲ୍ୟାଣ କାମନାର ଅନ୍ୟ ଏକ ଉଚ୍ଚାରଣ – "ବିଶାଳତମ ଅଭିଶାପକୁ ଫେରାଇ ଦିଅ ମୋ ଆଡ଼କୁ ମୁଁ ଭୋଗିବି / ମହୀମଣ୍ଡଳର ସମସ୍ତ ଅସନ୍ତୋଷକୁ ଗଡ଼ାଇ ଦିଅ ମୋ ଆଡ଼କୁ / ମୁଁ ସହିବି/ ଅମରତ୍ୱର ଶେଷ ଟୋପାକ ନିଶା / ନିଗାଡ଼ି ଦିଅ ମୋ ଆଡ଼କୁ ମୁଁ ପିଇବି" (ସମ୍ଭାବନାର ଶେଷ ବିନ୍ଦୁ-ହର ପ୍ରସାଦ ପରିଚ୍ଛା ପଟ୍ଟନାୟକ) ଏହି ଦୃଷ୍ଟିକୋଣ ସମ୍ପନ୍ନ କବିତା ଗ୍ରନ୍ଥ 'ତନ୍ମୟ ଧୂଳି'ର ଶେଷ ପଙ୍‌କ୍ତିର ଉଚ୍ଚାରଣଟିକୁ ଦେଖାଯାଉ-ଚାଲ ଆମେ "ପ୍ରାଣୀମାନେ ଭାଗ ବାଣ୍ଟି ନେଉଥିବା ଦୁଃଖରୁ/ବଡ଼ଭାଗଟି ଉଠାଇ ନେବା / ଭୋଗି ଚାଲିବା" (ପ୍ରତିଭା ଶତପଥୀ) ।

ସମାଜ, ରାଜନୀତି ତଥା ଐତିହାସିକ ସତ୍ୟ ପ୍ରତି ସଜ୍ଞାନ, ସଚେତନ କବି ଉପରୋକ୍ତ ସକଳ କ୍ଷେତ୍ରର ସତ୍ୟଗୁଡ଼ିକୁ ସ୍ୱଆବେଗ ମଧ୍ୟରେ ଆବିଷ୍କାର କଲେ ହିଁ ତାହା କଳାତ୍ମକ ଅଭିବ୍ୟକ୍ତି ଲାଭ କରେ । ସାମାଜିକ ଅସଙ୍ଗତି ଓ ମର୍ମଦାହୀ ପରିବେଶ, କ୍ଷୁଧାଜର୍ଜର ଧୂସର ମଣିଷ ପ୍ରତି କବିର ଗଠନମୂଳକ ସହାନୁଭୂତି କେତେ କେଜାଣି ଯନ୍ତ୍ରଣାର ଚିତ୍ର ଆଙ୍କେ, ପ୍ରତିକାର କରି ନ ପାରିବାର ଗ୍ଲାନିରେ କବି ଆତ୍ମଧିକ୍‌କାରରେ ଶଢ଼ିଯାଏ ।

ଧର୍ମାନ୍ଧତା, ଯୁଦ୍ଧ ଓ ସନ୍ତ୍ରାସର ଖଣ୍ଡାଧାରରେ ବଳି ପଡୁଛି ମଣିଷ, ଅଥଚ ମଣିଷପଣ ତଥାପି ରହିଛି ସଜୀବ, ସତେଜ । କବିର ସମ୍ବେଦନା ହୁଏତ ଯୁଦ୍ଧ ଓ ସନ୍ତ୍ରାସକୁ ସମୂଳେ ନିରାକରଣ କରି ନ ପାରେ, ଦାରିଦ୍ର୍ୟକୁ ହଟାଇ ଦେଶକୁ ସମୃଦ୍ଧ କରି ନ ପାରେ, ଏ ଦିଗରେ ଏକ ସଚେତନ, ସହାନୁଭୂତିଶୀଳ ଆବେଦନକୁ ପାଠକ ଅନ୍ତରରେ ଉଦ୍ରେକ କରେ ଓ ସମ୍ଭାବନାର ଏକ ଉଜ୍ଜ୍ୱଳ ଦିଗନ୍ତର ସୂଚନା ଦେଇପାରେ । ସେହିଭଳି କେତୋଟି ଉଦ୍‌ବୋଧକ ପଙ୍‌କ୍ତି – "ଯେଉଁଦିନ ମନ୍ଦିର, ମସ୍‌ଜିଦ୍, ଗିର୍ଜାମାନଙ୍କ ଆଗରେ ଖଣ୍ଡା ଝୁଲିଲା / ଖଣ୍ଡାର ଝନତ୍‌କାର / ସଙ୍ଗୀତ ବୋଲି ଘୋଷିତ ହେଲା- / ସେଇଦିନୁ ହିଁ ଶିଶୁମାନଙ୍କ କୋମଳ କଲିଜା / କୁଆଁରୀ କନ୍ୟାର ଅସ୍ଥିମଜ୍ଜାରେ ପାକ ପ୍ରସ୍ତୁତ ହୋଇଛି" (ଯୁଦ୍ଧ, ସାବରମତି – ଶତ୍ରୁଘ୍ନ ପାଣ୍ଡବ) ।

ରାଜନୀତିର ଭୋଜବାଜି ଖେଳ ଭାରତୀୟ ଜନଜୀବନକୁ ବିପନ୍ନ ଓ ଅନ୍ଧୀଭୂତ କରି ଦେଇଛି । ମିଥ୍ୟାଚାରୀ ଶାସକର ଛଳନା ତଳେ ମଣିଷ ପଙ୍ଗୁ ହୋଇଯିବାର ଦୁର୍ଯୋଗ ଦେଖା ଦେଇଛି । ନିଃସ୍ୱ, ଅସହାୟ ଜନଗଣଙ୍କ ପାଇଁ ନ୍ୟାୟ, ନୀତିର ବ୍ୟାଖ୍ୟା ଯେ ତ୍ରୁଟି ଜଡ଼ିତ ଏ ଦିଗରେ ସ୍ୱରୋତ୍ତୋଳନ କରୁଛି କବିତା । ଅମଲା – ମଣିଷର ନିର୍ଲଜ୍ଜ ଅହଙ୍କାର ଭିତରେ ଫୁଟିଉଠିଚି ଆତ୍ମପରିହାସର ସ୍ୱର – "ଏସବୁ ତ ଗଣିତ ପାଠର କାରସାଦି, କରାମତି/

ହାକିମ, ପିଅନ ଠୁଁ ମୋ ଯାଏଁ ଜାଣ / ଆମେ ସବୁ ଗଣିତର ଗଜପତି / ସରକାରୀ ଚଉକିର ଚତୁର ପ୍ରଜାପତି / ଦେଖୁ ନାହାନ୍ତି, କେତେ ସକ୍ଷମ ଆମ କୁଟିଳ ଓଠ / କେତେ ସୁଦୃଢ଼ ଆମ ଗୋଠ” (ପୃ-୨୫, ଉଦ୍‌ଭାସ-୬, ପୀତାମ୍ବର ତରାଇ) । ଭାରତୀୟ ଜନଜୀବନରେ ଯଦି ବା ଭୟଙ୍କର ଯୁଦ୍ଧର ପରିସ୍ଥିତି ଆସି ନାହିଁ, ମାତ୍ର ଆଜିର ଜଗତୀକରଣର ଆବହାଓ୍ୱାରେ ସାରା ବିଶ୍ୱର ଆତଙ୍କ ଓ ମୃତ୍ୟୁ ଭାରତୀୟ ଜନତାର ଅନ୍ତରକୁ ପ୍ରଭାବିତ କରୁଛି । ଭାରତ ହୋଇଛି ସନ୍ତ୍ରାସର ଏକ ରକ୍ତାକ୍ତ କ୍ଷେତ୍ର । ଅଚାନକ ବୋମାମାଡ଼ରେ ଭ୍ରାତୃଭାବ, ସଦ୍‌ଭାବ, ସଦିଚ୍ଛାପୂର୍ଣ୍ଣ ହୃଦୟ ରକ୍ତାକ୍ତ ହେଉଛି । କାରଗିଲ୍ ପାଲଟିଛି ବଧଭୂମି । ସ୍ୱାଧୀନତା ପୂର୍ବ ମୁହୂର୍ତ୍ତରେ ରକ୍ତସ୍ନାତ ଓ ବାସଚ୍ୟୁତ ଜନଗଣଙ୍କର ଏକ ହୃଦୟସ୍ପର୍ଶୀ ଚିତ୍ର ସିନ୍ଧୀ କବିତାରେ ଦେଖନ୍ତୁ- “ଆମେ ମନିପ୍ଲାଣ୍ଟ-ନିଜ ଭୂମିରୁ ଓପଡ଼ା ହୋଇ ଯାଇଛୁ / କେବଳ ପାଣି ଭିତରେ ଆମେ ବଢୁଛୁ, ଜୀବନ ବଞ୍ଚାଇଛୁ । “Money plants we are / separated from our soil / in water / we grow and thrive” (ମହେଶ ନେଓ୍ୱାନି) । ମାନବାତ୍ମାକୁ ବିଗଳିତ କରିବାରେ ସମର୍ଥ କରୁଣା ଓ ସଂବେଦନା ହିଁ ଏ ପ୍ରକାର କବିତାରେ ପ୍ରମୂର୍ତ୍ତ । ଜଣେ ଯୁଦ୍ଧ-ବିରୋଧୀ ଇଂରାଜୀ କବି ୱିଲ୍‌ଫ୍ରେନ୍ ଓ୍ୱେନ୍ ଉଚ୍ଚାରଣ କରନ୍ତି- ମୁଁ ଯୁଦ୍ଧ ବିଷୟରେ ଲେଖୁଛି-ଯୁଦ୍ଧର କାରୁଣ୍ୟ ବିଷୟରେ ବି ଲେଖିଛି । କବିତା ଆଜି ଦୟା କରୁଣାରେ ଓତପ୍ରୋତ । “I write about the war and the pity of war. The poetry is in pity ” କବିଙ୍କ ବକ୍ତବ୍ୟ ହେଲା “ଯେଉଁ କରୁଣା କବିତାକୁ ଜନ୍ମଦିଏ, ମୋ ରଚନାରେ ଯୁଦ୍ଧ ପ୍ରତି ସେହି କରୁଣା ବିଦ୍ୟମାନ ।”

ଯୁଦ୍ଧ ଧ୍ୱାନ୍ତ ପୃଥିବୀରେ କ୍ଷମତାଲୋଭୀ ଏକଚ୍ଛତ୍ରବାଦୀ ମଣିଷକୁ ତା’ର କୃତକର୍ମର ସର୍ବଶେଷ ଫଳ ଭୋଗ କରିବାକୁ କବି ଆହ୍ୱାନ କରେ । “ଏବେ ଆରମ୍ଭ ହୋଇଗଲାଣି ଯୁଦ୍ଧ / ଆସ, ଯୁଦ୍ଧ ବସ୍ତ୍ର ପିନ୍ଧ ଓ / ପାଦ ବଢ଼ାଅ ସଭ୍ୟତାର ସୂର୍ଯ୍ୟାସ୍ତ ଆଡ଼କୁ / ଜୀବନର ବରାଭୟକୁ ଭୂମି ଆଡ଼େ ବଢ଼ାଅ / ଓ ଆଲିଙ୍ଗନବଦ୍ଧ କର / ଆଣବିକ ପଞ୍ଝାକୁ, ମୃତ୍ୟୁର ନଖ ଦାନ୍ତକୁ ଓ ଶାଣିତ ନିଷ୍ଠୁରତାର ଯୁଦ୍ଧକୁ” (ଯୁଦ୍ଧ-ଅମରେନ୍ଦ୍ର ଖଟୁଆ) । ଏ ଯୁଗର ଗଣତନ୍ତ୍ରବାଦୀ ରାଜନୀତି କବି ହୃଦୟର ସଚେତନ ଦର୍ପଣରେ ଏକ କୁହେଳିକା ପରି ପ୍ରତୀତ ହୁଏ । ଏହି ‘ବାଦ’ ସର୍ବସ୍ୱ ରାଜନୀତି ଓ ସମାଜନୀତି ଜନତାକୁ ବହୁ ଭାବେ ପ୍ରତାରିତ କରେ । ହିଂସା ଓ ସନ୍ତ୍ରାସର କବଳରେ ଥରହର ଭାରତୀୟ ଜନତାର ଚେତନାକୁ ବିମ୍ବିତ କରନ୍ତି କବି ଏକ ଡୋଗ୍ରୀ କବିତାରେ – “ରହସ୍ୟବାଦ୍ ସେ ସମାଜବାଦ୍ ତକ”... / ୟା / ପ୍ରଗତି ତକ୍ କେଓ୍ୱଲ୍ ବାଦ୍ ହିଁ ବାଦ୍, ଜୈସେ ଆତଙ୍କବାଦ / ଉଡ଼ାଏ ଗୟେ ପୁଲ / ଗଲତୀ ରାତିୟାଁ / ଅପହୃତ ବିମାନ / ଉଜଡ଼ନେ ଘର, / ନିର୍ଦ୍ଦୋଷୋଁକୀ ହତ୍ୟାଏ ?, ବଳାତ୍କାର”- (ନରସିଂହ ଦେବ ଜମାଲ ।)

ବିଗତ ଶତାବ୍ଦୀର ମଧ୍ୟ ଭାଗରେ ଆତତାୟୀର ଗୁଳି ଚୋଟରେ ପ୍ରାଣ ହରାନ୍ତି ଜାତିର ଜନକ ମହାତ୍ମା ଗାନ୍ଧୀ । ଭାରତୀୟ ଜନଜୀବନର ଯୁଗପୁରୁଷ ଏ ମାଟିରୁ ବିଦାୟ ନେବାର

୫୦ ବର୍ଷ ପରେ ତାଙ୍କର ସ୍ଥିତି କେବଳ ଅନୁଭୂତ ହେଉଛି ଗୋଟିଏ 'ଜାତୀୟ ଛୁଟି ଦିବସ' ଦ୍ୱାରା । ତାଙ୍କର ତ୍ୟାଗ, କର୍ମ ଓ ଜୀବନଧାରା ଭାରତୀୟ ରାଜନୀତିକ ଜୀବନରେ ବର୍ତ୍ତମାନ ଅସ୍ୱୀକୃତ । ଇଣ୍ଡୋ-ଆଂଲିଆନ୍ କବି ଜୟନ୍ତ ମହାପାତ୍ର ଦୁଃଖ ଓ ଶ୍ଳେଷରେ ଉଚ୍ଚାରଣ କରନ୍ତି "What you have left behind/ are faded pictures on bare office walls / a day every year / as a national holiday" "କ'ଣ ତୁମେ ଛାଡ଼ି ଯାଇଛ / ଅଫିସ୍ କାନ୍ଥମାନଙ୍କରେ ଖାଲି ଫିକା ଫଟୋ କେତୋଟି / ଆଉ ଗୋଟିଏ ଦିନ ପ୍ରତିବର୍ଷ ଜାତୀୟ ଛୁଟି ।"

ବାସ୍ତବ ଓ କ୍ରିୟାଶୀଳ ଶାସକଙ୍କଦ୍ୱାରା ଆଚରିତ ଦୁର୍ନୀତି ଓ ଦୁଃଶାସନ କବି ଚେତନାରେ ଧରାପଡ଼େ ଓ ଲେଖନୀ ସକ୍ରିୟ ହୁଏ । ବରିଷ୍ଠ ବଙ୍ଗଳା କବି ନୀରେନ୍ଦ୍ର ଚକ୍ରବର୍ତ୍ତୀ ତୋଷାମୋଦପ୍ରିୟ, ଭୀରୁ ଜନତାର ଏକ ଚିତ୍ର ଦିଅନ୍ତି । ପରିହାସମୂଳକ ଏକ କିମ୍ବଦନ୍ତୀର ଉପସ୍ଥାପନା ମାଧ୍ୟମରେ ରଚିତ ତାଙ୍କର କବିତା 'ଉଲ୍ଲଙ୍ଗ ରାଜା' ଏ ଦିଗରେ ଏକ ସଫଳ କୃତି । ରାଜା ଉଲଗ୍ନ, ଅଥଚ ସୁନ୍ଦର ବସ୍ତ୍ର ପିନ୍ଧି ଥିବାର ଛଳନା କରନ୍ତି । ପାରିଷଦ, ଭାଟ, ଭୀରୁ ଓ ବିଭ୍ରାନ୍ତ ଜନତା ନିର୍ବସ୍ତ୍ର ରାଜାଙ୍କୁ ଦେଖି ମଧ୍ୟ ତାଙ୍କ ବସ୍ତ୍ରର ପ୍ରଶଂସା କରି ଚାଲନ୍ତି, ରାଜାଙ୍କୁ ବାଃ ବାଃ ଦିଅନ୍ତି । ଅଥଚ ଉକ୍ତ ଭଣ୍ଡ ଶାସନର ନିର୍ଲଜ୍ଜତାର ମୁଖା ଖୋଲିଦିଏ, ଗୋଟିଏ ସରଳ ନିଷ୍ପାପ, ନିର୍ଭୀକ ବାଳକ । ସେ ଆଗକୁ ଆସି ଉଚ୍ଚ ସ୍ୱରରେ ପଚାରେ- "ରାଜା ତୋର୍ କାପଡ୍ କୋଥାୟ୍" ? ଏହି ଲୋକକଥାର ବାଳକଟିର ନିର୍ଭୀକ ଚରିତ୍ର ଆଜି ଦେଶର ଜନତାଠାରେ ରହିବା କେତେ ଜରୁରୀ, କବି ତାହାର ସୂଚନା ପ୍ରଦାନ କରିଛନ୍ତି ।

ଅନୁରୂପ ଏକ ସ୍ୱର ହିନ୍ଦୀ କବି ରଘୁବୀର ସହାୟକଙ୍କ କଣ୍ଠରେ "ଇସ୍ ଲଜ୍ଜିତ ଔର ପରାଜିତ ଯୁଗ ମେଁ / କହିଁ ସେ ଲେ ଆଓ ୱ ହ୍ ଦିମାଗ୍ / ଯୋ ଖୁସାମଦ୍, ଆଦତନ ନହୀଁ କରତୀ" (ଆନେବାଲା ଖତରା) । ପୁନଶ୍ଚ ଶାସକର କ୍ଷୁଦ୍ରତା ଓ ସ୍ୱାର୍ଥ-ସର୍ବସ୍ୱତାକୁ ସେ ପରିହାସ କରନ୍ତି- "ସିଂହାସନ ଉଚ୍ଚା ହୈ / ସଭାଧ୍ୟକ୍ଷ ଛୋଟା ହୈ ।"- (ମେରା ପ୍ରତିନିଧି)

ଦାରିଦ୍ର୍ୟ ଓ କ୍ଷୁଧାର ସର୍ବସଂହାରି ଅପରାଜେୟ ଶକ୍ତିକୁ କବିତାରେ ରୂପ ଦିଅନ୍ତି ହିନ୍ଦୀ କବି ସୀତେଶ· ଆଲୋକ- "ଏ କଥା ସତ ଯେ ଧରଣୀ / ଯେତେ ବି ଫଳାଇଲା ଫସଲ/କିନ୍ତୁ ପାରି ହେଲାନି ଭୋକକୁ.../ ଗାଢ଼ରୁ ଗାଢ଼ତର ହେଲା ଅମଣିଷ ପଣର/ଅଭିଶପ୍ତ ଛାଇ" (ଯଥାସମ୍ଭବ) ମଣିଷର ଅମଣିଷପଣ ହିଁ ସକଳ ଦୁଃସ୍ଥିତିର, କ୍ଷୁଧାର, ଶୋଷଣର ଏକମାତ୍ର ହେତୁ । ସମାଜ ସମତାହୀନ, କାରଣ ମାନବିକତାବିହୀନ । ଶାସକ, ମାଲିକ କିମ୍ବା ଅର୍ଥ କ୍ଷମତାର ଶୀର୍ଷରେ ଥିବା ବ୍ୟକ୍ତି ଯଦି ଜଣେ ଆତତାୟୀ ହୁଏ, ନୀରବ, ନିର୍ଜୀବ ଭାବରେ ତା'ର କୁକର୍ମର ସାକ୍ଷୀ ହୋଇଥାଏ ତା'ର ଭୃତ୍ୟ । ଅଥଚ ଭୃତ୍ୟଟି କୌଣସି ପ୍ରତିକ୍ରିୟା ପ୍ରକାଶ କରିପାରେ ନାହିଁ ବରଂ ତାକୁ ନିରୁପାୟ ଭାବେ

ସହ୍ୟ କରେ ଓ ମୂକ ସମର୍ଥନ ଜଣାଏ । ଅନ୍ୟ ପକ୍ଷରେ ଭୃତ୍ୟର ଆନ୍ତରିକ ଗ୍ଲାନିବୋଧର ମାର୍ମିକ ଚିତ୍ର ପ୍ରଦାନ କରନ୍ତି ରମାକାନ୍ତ ରଥ- "ମହାଶୟ, ଆପଣଙ୍କ ହାତରେ ଲାଗିଛି ରକ୍ତ ଛିଟିକା / ଯେଉଁ ଲୋକ କାଲି ଆସିଥିଲା / ଏ କ'ଣ ତାହାର ରକ୍ତ / ଯାହାର ରକ୍ତ ହେଉନା କାହିଁକି ସବୁ ଦାଗ ପୋଛିଦେବା ଆମ କାମ / ଦେହରୁ ମନରୁ ସବୁଦାଗ ପୋଛା ହେବ / କେଉଁ ଦାଗ କିଏ ଛାଡ଼ିଥିଲା / ଆମେ କ'ଣ ପାଇବୁ ସେଥିରୁ" (ଧନୀ ପ୍ରତି ଭୃତ୍ୟର ଭକ୍ତି) । କବି ସୀତାକାନ୍ତ ମହାପାତ୍ର ଆଜିର ରାଜନୀତିକ ପରିବେଶକୁ 'ଧ୍ରୁବଚରିତ' ମାଧ୍ୟମରେ ପରିବେଷଣ କରନ୍ତି । ଧ୍ରୁବ ଏକ ମିଥିକ୍ ଚରିତ୍ର, ସେ କିଶୋର ସମାଜର ପ୍ରତୀକ । ତା'ର ଦୃଢ଼ତା ଓ ନିଷ୍ଠା, ସର୍ବଶ୍ରେଷ୍ଠ ସତ୍ୟ ନିକଟରେ ପହଞ୍ଚିବାର ତପସ୍ୟାକୁ ଭ୍ରଷ୍ଟ କରିବାକୁ ମହାରଥୀ ଇନ୍ଦ୍ର, ବରୁଣ ଆଦିଙ୍କ ପ୍ରଚେଷ୍ଟା ଜାରିରହିଛି । କବି କହୁଛନ୍ତି- "ଯେଉଁ ସ୍ନେହ ଓ ସ୍ୱାଧିକାର ନିମିତ୍ତ ତୋର ତପସ୍ୟା, ତୁ କ'ଣ ସେଥିରୁ ଟଳିଯିବୁ ? ଧନ କ୍ଷମତାର ପ୍ରଲୋଭନ ନିଶ୍ଚୟ ତୋ ନିକଟରେ ହାର ମାନିବ । କାରଣ ମାନବିକତାର ପ୍ରତିଷ୍ଠା ତୋ ତପସ୍ୟାର ଚରମ ଓ ପରମ ଲକ୍ଷ୍ୟ ।"

ଯୁଗ ଯୁଗ ଧରି ଆମ ଦେଶ ନାରୀ ନିର୍ଯାତନାର ଘେର ଭିତରେ ରହିଆସିଛି । ସତୀଦାହ ପ୍ରଥା, ବାଲ୍ୟ ବିବାହ ଓ ବିଧବାଙ୍କର ନିର୍ଯାତନା ମାଧ୍ୟମରେ ଅଶିକ୍ଷା, ଅବହେଳା ଓ କୁସଂସ୍କାରର ପୀଡ଼ା ନାରୀମାନଙ୍କର କପାଳ ଲିଖନ ବୋଲି ପୂର୍ବରୁ ଧରି ନିଆଯାଇଛି । ମାତ୍ର ବିଂଶ ଶତକର ପ୍ରାରମ୍ଭରେ ନାରୀମାନଙ୍କର ଶିକ୍ଷାରମ୍ଭ ହେଲା ଓ ଗାନ୍ଧିଜୀଙ୍କର ଆହ୍ୱାନରେ ସ୍ୱାଧୀନତା ସଙ୍ଗ୍ରାମରେ ସେମାନଙ୍କ ଭୂମିକା ସ୍ୱୀକୃତ ଓ ସମ୍ମାନିତ ହେଲା ।

ଉତ୍କଳଗୌରବ ମଧୁସୂଦନ କହିଲେ- "ନଦୀର ସ୍ରୋତ ଯେପରି ତା'ର ଉତ୍ସମୁଖରୁ ଉର୍ଦ୍ଧ୍ୱକୁ ଗତି କରିପାରେ ନାହିଁ, ସେହିପରି ଏକ ଜାତି ତା'ର ନାରୀ ସମାଜକୁ ଶିକ୍ଷାରୁ ବଞ୍ଚିତ କରି ଉନ୍ନତ ହୋଇପାରିବ ନାହିଁ ।" ତଥାପି ୧୯୭୫ /୮୦ ମସିହା ପର୍ଯ୍ୟନ୍ତ ନାରୀର ଚିରାଚରିତ ଭୂମିକା ଭିନ୍ନ ତା'ର ବ୍ୟକ୍ତିତ୍ୱର ସ୍ୱୀକାରୋକ୍ତି ସାହିତ୍ୟ ବା କବିତାରେ ପ୍ରତିଷ୍ଠା ପାଇପାରିଲା ନାହିଁ । ୧୯୩୦ ପରବର୍ତ୍ତୀକାଳରେ ନାରୀର ସ୍ୱାଧିକାର ପ୍ରସଙ୍ଗକୁ ଗୁରୁତ୍ୱ ଦେଇଥିବା ଓଡ଼ିଶାର ଜନନେତ୍ରୀ ଓ ଲେଖିକା ସ୍ୱର୍ଗତା ସରଳା ଦେବୀଙ୍କର ଅଗ୍ନିଗର୍ଭା ଲେଖନୀ ମଧ୍ୟ ନାରୀର ପାରିବାରିକ, ସାମାଜିକ ସ୍ଥିତିରେ ବିଶେଷ କିଛି ପରିବର୍ତ୍ତନ ଆଣି ପାରି ନ ଥିଲା । ପରବର୍ତ୍ତୀକାଳରେ ଲେଖିକାଗଣ ନିଜ ଜୀବନର ବିଡ଼ମ୍ବନା ଓ ବ୍ୟକ୍ତିତ୍ୱର ଅସହାୟତା ସମ୍ପର୍କରେ ନିଜ କବିତାରେ ବର୍ଣ୍ଣନା କରିଚାଲିଲେ । ମାତ୍ର ୧୯୮୦ ପରବର୍ତ୍ତୀ କବିତା ନାରୀର ବାସ୍ତବତାକୁ ନେଇ ହୋଇପଡ଼ିଲା ମୁଖର ଓ ଉଜ୍ଜ୍ୱଳ । ନାରୀର ବ୍ୟକ୍ତିତ୍ୱ, ତା'ର ଆଶା ସ୍ୱପ୍ନ, ତା'ର ପରାକ୍ରମ, ପରାଜୟ କବିକୁ ଉଦ୍‌ବୁଦ୍ଧ କଲା । ଏ ଦିଗରେ ନାରୀର ନିଜ ଅସ୍ତିତ୍ୱ ପ୍ରତି ସଂଜାତ ଅପୂର୍ବ ସଚେତନତା ଓ ସ୍ୱଅଭିବ୍ୟକ୍ତିକୁ ଦୃଢ଼

ଓ ନିର୍ଭୀକ ଭାବେ ଉପସ୍ଥାପନ କରିବାର ସଂକଳ୍ପ ନାରୀ ବାସ୍ତବତାକୁ ଉନ୍ମୋଚିତ କରିବାରେ ସାହାଯ୍ୟ କଲା । ଓଡ଼ିଶାର ସମାଜ ଜୀବନ ଓ ସାହିତ୍ୟରେ ଯେଉଁ ନାରୀ ବ୍ୟକ୍ତିତ୍ୱ ୧୯୮୦ ବେଳକୁ ପ୍ରକଟିତ ହୋଇଛି ଓ ୨୦୦୦ ବେଳକୁ ପ୍ରାୟ ପ୍ରତିଷ୍ଠିତ ହୋଇଛି ତାହା ଅନେକ ଭାବେ ନାରୀର ପୂର୍ବ ବ୍ୟକ୍ତିତ୍ୱଠାରୁ ଭିନ୍ନ ।

ପାଶ୍ଚାତ୍ୟର 'ଫେମିନିଜିମ୍'କୁ ଭାରତୀୟ ଫେମିନିଜିମ୍ ଭାବେ ଭାରତ ତଥା ଓଡ଼ିଶାର ନାରୀ ସମାଜ ଅକ୍ଷରେ ଅକ୍ଷରେ ଗ୍ରହଣ କରିବାକୁ ପସନ୍ଦ କରନ୍ତି ନାହିଁ । ସେମାନେ ପତ୍ନୀତ୍ୱ, ମାତୃତ୍ୱର ଭୂମିକାପାଇଁ ତ୍ୟାଗ, ସେବା ସ୍ୱୀକାର କରିବା ନିମିତ୍ତ ପ୍ରସ୍ତୁତ, ମାତ୍ର ପାରିବାରିକ ସ୍ତରରେ ସେମାନଙ୍କର ଏହି ଅବଦାନ ସ୍ୱୀକୃତ ହେବା ଉଚିତ । କର୍ମଜୀବିନୀ ନାରୀର କାର୍ଯ୍ୟଦକ୍ଷତା, ନିଷ୍ଠା ମଧ୍ୟ କର୍ମ ସ୍ଥଳରେ, ସମାଜରେ, ରାଜନୀତିକ କ୍ଷେତ୍ରରେ ସ୍ୱୀକୃତ ହେଉ, ନାରୀ ଉପଯୁକ୍ତ ସମ୍ମାନ ଓ ବିଚାରର ଅଧିକାରିଣୀ ହେଉ, ପରିବାର ଓ ସମାଜ ନାରୀକୁ ତାହାର ସ୍ୱାଧିକାର ଅକୁଣ୍ଠ ଚିତ୍ତରେ ପ୍ରଦାନ କରୁ, ଏହି ପ୍ରକାର ଦାବି କବିଗଣ ସ୍ୱକବିତା ମାଧ୍ୟମରେ କେବେ ନମ୍ର, ଅନୁଚ୍ଚ ଅନୁରୋଧ, କେବେ ବା ଅଭିମାନ, ପ୍ରତିବାଦଦ୍ୱାରା ପ୍ରକାଶ କରିଛନ୍ତି । ମାତ୍ର ଏହି ପ୍ରକାଶର ଅନ୍ତରାଳରୁ ସେମାନଙ୍କ ସଚେତନ ବ୍ୟକ୍ତିତ୍ୱର ସ୍ପଷ୍ଟ ଆଭାସ ମିଳୁଛି । ନାରୀର ଏହି ନୂତନ ବ୍ୟକ୍ତିତ୍ୱର ପରାକାଷ୍ଠା ମଧ୍ୟ ପ୍ରଭାବିତ କରୁଛି ପୁରୁଷ କବିମାନଙ୍କୁ । ତେଣୁ କେବଳ ନାରୀ ନୁହନ୍ତି, ପୁରୁଷ ମଧ୍ୟ ସେମାନଙ୍କ କବିତାରେ ନାରୀର ବାସ୍ତବତାକୁ କଳାତ୍ମକ ଭାବେ ପ୍ରକଟିତ କରୁଛନ୍ତି । ନାରୀର ଶିକ୍ଷା, ନାରୀ ସଶକ୍ତୀକରଣ, କନ୍ୟା ସନ୍ତାନବର୍ଷ, 'ମର୍ଦସ ଡେ' ଆଦି ସାମାଜିକ, ରାଜନୈତିକ ସ୍ତରରେ ପ୍ରଚଳିତ ହେଲେ ହେଁ ନାରୀର ବାସ୍ତବତା ତଥାପି ଅନ୍ଧକାରରେ ରହିଛି । ଯାହା କିଛି ଆଲୋକିତ ହୋଇଛି, ସେହି ସଚେତନତା ପ୍ରକୃତପକ୍ଷେ ପ୍ରତିଟି ମଣିଷର ଅନ୍ତଃକରଣକୁ ସ୍ପର୍ଶ କଲେ ହିଁ ମଣିଷର ନାରୀ ପ୍ରତି ଦୃଷ୍ଟିକୋଣ ପରିବର୍ତ୍ତିତ ହେବ । ନାରୀ ନିର୍ଯାତନାକୁ ସମୂଳେ ନିଷେଧ କରିପାରିବା ସାମର୍ଥ୍ୟ କବିତାର ନାହିଁ । ମାତ୍ର ଏ ଦିଗରେ ଜନଚେତନାକୁ ଜାଗ୍ରତ କରିବାର ଭୂମିକା କବିତା ନିଶ୍ଚିତଭାବେ ନିର୍ବାହ କରିପାରେ । ନାରୀତ୍ୱର ଭୂଷଣ ସ୍ନେହ, କ୍ଷମା, ତ୍ୟାଗ, ନମ୍ରତା, ଲଜ୍ଜା – ଏହା ତା'ର ଦୁର୍ବଳତାର ଲକ୍ଷଣ ନୁହେଁ ବରଂ ମାନସିକ ଉଚ୍ଚତାର ଚିହ୍ନ ବୋଲି କବି ପ୍ରତିପାଦିତ କରିବାକୁ ଚାହାନ୍ତି । ସୁଚେତା ମିଶ୍ର କହନ୍ତି- "ଫେରାଇ ନିଅ ତୁମର ସମ୍ବେଦନ / ଆହୁରି କିଛି ସମୟ ଦରକାର / ଲୋକେ ବୁଝିବାକୁ ଯେ / ନମ୍ରତାର ଅର୍ଥ ଦୁର୍ବଳତା ନୁହେଁ / କି ଲଜ୍ଜା ପାପ ଢାଙ୍କିବାର ବସ୍ତ୍ର ନୁହେଁ / ଶ୍ରଦ୍ଧା ମାଗି ଆଣିବାର ଚିଜ ନୁହେଁ / କି ଅଧିକାର କେବେ ଜନ୍ମଗତ ନୁହେଁ ।" (ଦିନେ ଦିନେ)

ବିବାହ ମାଧ୍ୟମରେ ପୁରୁଷ ନାରୀ ଉପରେ ଯେଉଁ ଅଧିକାର ସାବ୍ୟସ୍ତ କରେ ତାହାର ମୂଳ ଭିତ୍ତି ହେବା ଉଚିତ ସମାନତା ଓ ମାନବିକତା । ମାତ୍ର ପତ୍ନୀ 'ଅଧିକୃତ ବସ୍ତୁ'

ରୂପେ ବିଚାରୁଥିବା ଏଇ ବ୍ୟବସ୍ଥା ସମ୍ପର୍କରେ 'ପରୀ' କବିତାରେ ଏକ ଚିତ୍ର ଉତ୍ତୋଳିତ – "ସେ ଥିଲା / ସ୍ୱାମୀର ନିତିଦିନିଆ ଲୋଡ଼ା / ବିଛଣା ଚାଦରଟେ ସତେ ବା ।"(ପ୍ରତିଭା ଶତପଥୀ)

ପୁନଶ୍ଚ ମାଲୟାଲମ୍ କବି ଓ.ଏନ୍.ଭି. କରୁପ୍ ତାଙ୍କ 'ଭଉଣୀ' ଶୀର୍ଷକ କବିତାରେ କହନ୍ତି – 'ଚନ୍ଦନ କାଠ ପରି ତୁ / ଦିନକୁ ଦିନ ଘୋରି ହୋଇ ହୋଇ କ୍ଷୟ ପାଉଛୁ / କର୍ପୂର ପରି ଜଳି ଜଳି ଅନ୍ୟକୁ ତା'ର ବାଂଛିତ ସୁବାସ ପ୍ରଦାନ କରୁଛୁ ।" ଏ ଯୁଗର ନାରୀକୁ ପତି, ସନ୍ତାନ, ଶାଶୂ, ଶ୍ୱଶୁର, ନିଜର କର୍ମସ୍ଥଳୀ ଯେ ସବୁକୁ ଏକତ୍ର ସମ୍ଭାଳିବାକୁ ହୁଏ । ସକଳ କ୍ଳାନ୍ତି ଓ ଅବସାଦର ପ୍ରତି ବଦଳରେ ସେ ଚାହେ ସ୍ୱାମୀ ତା'ର ଶ୍ରମ, ସାଧନାକୁ ସ୍ୱୀକୃତି ଦେଉ । ତା' ମଧ୍ୟ ମିଳେ ନାହିଁ- ରାଜସ୍ଥାନୀ କବିଙ୍କ ଅଭିବ୍ୟକ୍ତିରେ – "ଖଟ୍‌ତେ ଖଟତେ ଭି / ଛୁଟ୍ ହୀ ହୋ ଯାତା ହି / କୋଇ ନା କୋଇ କାମ୍ / କପ୍‌ଡ଼େ ଧୋନା / ବର୍ତନ୍ ମାଁଜନା / ଝାଡୁ ଲଗାନା / ଉନ୍‌କୀ କାମିଜ୍ ପେ ବଟନ୍ ଟାଁକ୍‌ନା / ଟିଫିନ୍ ବକ୍ସ ତୈୟାର କରନା କି ଅପନୀ ଗାଡ଼ି ମେଁ ପେଟ୍ରୋଲ ଡାଲ୍‌ନା...ଲେକିନ ଦପ୍ତର ପହୁଁଚ୍ ଦେର୍ ହୋ ଯାତି ହୈ / ହାଜୀରୀ ରେଜିଷ୍ଟାର ମେଁ ଦସ୍ତଖତ ।" (ଅତୁଲ କନକ)

ନାରୀକୁ ପଣ୍ୟବସ୍ତୁ ରୂପେ ବ୍ୟବହାର କରୁଥିବା ସମାଜର ନାରୀ ସତ୍ତାଟିଏ ମର୍ଯ୍ୟାଦା ଖୋଜିବାର ପ୍ରୟାସ କରୁଛି । ଏ ସମ୍ପର୍କରେ ହୃଷୀକେଶ ମଲ୍ଲିକଙ୍କ ରୂପକଧର୍ମୀ ବର୍ଣ୍ଣନାର ପ୍ରତିବେଦନ ଦେଖନ୍ତୁ- "ଦୀର୍ଘଶ୍ୱାସ ଓ ହାହାକାରର / କାଠି କୁଟାରେ ତିଆରି ମୁଁ / ବସା ବାନ୍ଧିବ ତ ବାନ୍ଧ / ଝଡ଼ି ପଡୁଥିବା ରୁଏ ବଣ ମହୁଲ ମୁଁ / ମହୁ ନବ ତ ନିଅ / ପାଉଣା ଦବ ?/ ଦିଅ ତେବେ ଶ୍ରଦ୍ଧା ଓ ବିଶ୍ୱାସ ।" (ପାମେଲା- ୨)

ଯୌତୁକର ଯୂପକାଠରେ ବଳି ପଡ଼ିବା ନାରୀର ନିୟତି । ଏହା ବ୍ୟତୀତ ସବୁକିଛି ନିର୍ଯାତନାର ମୂଳରେ ଥାଏ ସ୍ୱାମୀର ଅବହେଳା ଓ ଅମଣିଷପଣିଆ । ନାରୀର ପ୍ରେମ ଓ ନାରୀତ୍ୱ ବିଡ଼ମ୍ବନାର ଶିକାର ହୁଏ । ପତି-ତାଡ଼ିତା ପତ୍ନୀର କରୁଣ ପ୍ରତିକ୍ରିୟାକୁ ରୂପ ପ୍ରଦାନ କରନ୍ତି ବଙ୍ଗଳା କବି ଦେବାରତି ମିତ୍ର- "ଏ ବାଡ଼ି ତେ / ସିଂହେର ମତୋ ମୁଖ / କଛପେର ମତୋ ମୁଖ / ଶୁୟରେର ମତୋ ମୁଖ / ସବାଇ ଦେବତା । ଆର୍ ଆମାର ପତି ଦେବତା- ଉନି ତୋ ଘାଡ଼ ଧରେ ଝାଁ କାତେ ଝାଁକାତେ ଆମାକେ ଯଖନ ତଖନ ବାର୍ କରେ ଦିତେ ପାରେନ୍ / ଆର୍ ଏକ୍ ମିନିଟ୍‌ଓ ନୟ, ବେରୋଓ...ତମାଦି ହୟେ ଯାବେ ଆମାର ଛାବ୍‌ବିଶ ବଛରେର୍ ବସନ୍ତ ଦିନ୍, କୁଂକୁମ୍ ରଂଗେର୍ ଲଜ୍ଜା ।" ('ଦୋଲ୍ ପୂର୍ଣ୍ଣିମାତେ'- ଶାରଦୀୟ 'ଦେଶ' ୨୦୦୧, ପୃ-୫୩)

ନିମ୍ନବିତ୍ତ ପରିବାରର ନିର୍ଯାତିତା ନାରୀର ମହିମ୍ନ ରୂପକୁ ଆଂକନ୍ତି କବି ଜୟନ୍ତ ମହାପାତ୍ର – ଏଥିରେ ମାର୍ମିକ ସହାନୁଭୂତି ସହିତ ନାରୀର ଅଦ୍ଭୁତ ସହନଶୀଳତା ଓ କଲ୍ୟାଣକାରୀ ତ୍ୟାଗର ସ୍ୱରୂପ ପ୍ରକଟିତ । 'ପେଟ ଭିତରେ କାମୁଡ଼ି ହେଲା ପରି ଦିନମାନ

/ ଗିରସ୍ତ ଠୁଁ ମଝିରେ ମଝିରେ ପିଟା ଖାଉଥାଏ / ଶାଶୂ-ଶ୍ୱଶୁରଙ୍କ ସରି ଆସିଥିବା ଦେହ ଭିତରେ ନିଜେ ଉବୁଟୁବୁ ଖାଏ / କିନ୍ତୁ ପିଲାଏ ଯେତେବେଳେ ଖାଇ ବସନ୍ତି / ସମସ୍ତଙ୍କୁ କେମିତି / ତା' ଦେହରୁ ଘାସ କଅଁଳିଲା ପରି ଲାଗେ ।"

ଏତାଦୃଶ ମାନବିକ ମୂଲ୍ୟବୋଧକୁ ରୂପାୟିତ କରିଥିବା କବିତା ଦେଶ କାଳ ପାତ୍ରର ଏକ ଦର୍ପଣ ସ୍ୱରୂପ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥାଏ । ସମାଜକୁ ବଦଳାଇ ଦେବା ଲକ୍ଷ୍ୟ ପ୍ରଚ୍ଛନ୍ନ ଥାଏ । କିନ୍ତୁ କବି ନ୍ୟାୟାୟିକ ନୁହେଁ, ସମାଜକୁ ସେ ପ୍ରତ୍ୟକ୍ଷ ଭାବେ ପରିବର୍ତ୍ତିତ କରି ପାରେ ନାହିଁ । ମାତ୍ର ମଣିଷର ଚେତନାକୁ ଆନ୍ଦୋଳିତ ଓ ଉଦ୍‌ବୁଦ୍ଧ କରି ବ୍ୟକ୍ତି ଜୀବନ ଓ ସମାଜ ଜୀବନ୍‌ରେ ଉଜ୍ଜ୍ୱଳ ମାନବିକତାର ପ୍ରତିଷ୍ଠା କରିବାରେ ସହାୟକ ହୋଇଥାଏ ।

(ୟୁ.ଜି.ସି.ର ରୌପ୍ୟଜୟନ୍ତୀ ଅବକାଶରେ ୨୦୦୩ ନଭେମ୍ବରରେ କଲିକତାଠାରେ ଆୟୋଜିତ 'ଭାଷା ସାହିତ୍ୟ'ର ଜାତୀୟ ସେମିନାରରେ ପଠିତ ନିବନ୍ଧ 'Humanistic Values in Poetry'ର ଓଡ଼ିଆ ପ୍ରରୂପ ଏବଂ ଭାରତୀୟ ଭାଷା ପରିଷଦର ଏକ ସମ୍ମାନରେ ମୁଖ୍ୟ ଅତିଥିରୂପେ ମୋଦ୍ୱାରା ପଠିତ ଓ ଆଲୋଚିତ) ।



# କବି, ସଂଗଠକର ସାକ୍ଷାତ୍କାର

ମୋର ବକ୍ତବ୍ୟ

[ ମୁଁ ଅସୁସ୍ଥ ଥିବାରୁ ମୋର ସାକ୍ଷାତ୍କାରଟି କେନ୍ଦ୍ର ସାହିତ୍ୟ ଏକାଡେମୀ ଦିଲ୍ଲୀରେ ନ ହୋଇ ପୂର୍ବାଞ୍ଚଳ ସାହିତ୍ୟ ଏକାଡେମୀ ତରଫରୁ ଭୁବନେଶ୍ୱର ଅଭିଲେଖାଗାରରେ ଅନୁଷ୍ଠିତ ହୋଇଥିଲା । ]

ଉପସ୍ଥିତ ପୂର୍ବାଞ୍ଚଳ ସାହିତ୍ୟ ଏକାଡେମୀର କର୍ମକର୍ତ୍ତାଗଣ, ଆବାହକ ଡଃ ଗୌରହରି ଦାସ ଓ କବିତାପ୍ରେମୀ ସଜ୍ଜନ ମଣ୍ଡଳୀ; ସମସ୍ତଙ୍କୁ ମୋର ସାଦର ନମସ୍କାର ।

ଗୋଟିଏ କଥା ଏଠାରେ କହିବାକୁ ହେଉଛି । ମୋର କବିତା ସଂକଳନ 'ତନ୍ମୟ ଧୂଳି' ୨୦୦୧ ମସିହାରେ ପୁରସ୍କୃତ ହୋଇଥିଲା । ଏଯାବତ୍ ଏହି ପୁସ୍ତକଟି ୧୫ଗୋଟି ଭାରତୀୟ ଭାଷାରେ ଅନୂଦିତ ହୋଇ ସାହିତ୍ୟ ଏକାଡେମୀ ତରଫରୁ ପ୍ରକାଶିତ ହୋଇସାରିଛି । କେନ୍ଦ୍ର ସାହିତ୍ୟ ଏକାଡେମୀ ମଧ୍ୟ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ କରିଛନ୍ତି । ଅଥଚ ଏହି ସାକ୍ଷାତ୍କାର କାର୍ଯ୍ୟକ୍ରମଟି ହୋଇପାରି ନ ଥିଲା । ଆମ ଆବାହକ ମୋତେ ଥରେ ପଚାରି ବିସ୍ମିତ ହେଲେ ଯେ, ଯେ କିପରି କଥା ? ଅବଶ୍ୟ 'କବି ସନ୍ଧି' କାର୍ଯ୍ୟକ୍ରମଟି ପ୍ରାୟ ୧୦ ବର୍ଷ ତଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଯେନତେନ ପ୍ରକାରେଣ ସମ୍ପନ୍ନ ହୋଇଥିଲା । କିନ୍ତୁ କବି ସାକ୍ଷାତକାର ବିଷୟରେ କେହି ନଜର ଦେଇ ନ ଥିଲେ । ଡଃ ଗୌରହରି ଶୀଘ୍ର ଏ ସାକ୍ଷାତକାରଟି ଅନୁଷ୍ଠିତ ହେବ ବୋଲି କହିଲେ । ତାଙ୍କର ସହୃଦୟତା ପ୍ରତି ମୋର ଆନ୍ତରିକ ସାଧୁବାଦ ଜଣାଉଛି ।

ମୋର ପିଲାଦିନ କଥା ଏଠାରେ ଆପଣମାନଙ୍କ ସମକ୍ଷରେ କିଞ୍ଚିତ୍ ଜଣାଇବି । ୧୯୧୧ ମସିହାରେ ଉତ୍କଳଗୌରବ ମଧୁସୂଦନଙ୍କ ସ୍ଥାପିତ ସତ୍ୟଭାମାପୁର (ଆମ ଗାଁ) ସ୍କୁଲରେ ମୋର ପାଠ୍ୟାରମ୍ଭ । ସେତେବେଳେ ଝିଅମାନେ ତ ଗାଁରେ ପାଠ ପଢୁ ନ ଥିଲେ । ଯିଏ ବା ପଢୁଥିଲେ ନିମ୍ନ ପ୍ରାଥମିକ ଶିକ୍ଷା ପରେ ପୋଥିରେ ସେମାନଙ୍କର ଡୋର ବନ୍ଧା ହେଉଥିଲା । ତା'ପରେ ମୁଁ ପଢ଼ିଲି ଗୋପୀନାଥପୁର ମାଇନର ସ୍କୁଲ୍‌ରେ-ଏକମାତ୍ର ଛାତ୍ରୀଭାବେ ମାଇନର ପରୀକ୍ଷା ଦେଇଥିଲି । ଏହି ସମୟ ଭିତରେ 'ରାଷ୍ଟ୍ରଭାଷା' ହିନ୍ଦୀରେ 'ପ୍ରାରମ୍ଭିକ' 'ପ୍ରବେଶ' ଓ 'ପରିଚୟ' ପରୀକ୍ଷା ଦେଇ ୧ମଶ୍ରେଣୀରେ ପାସ୍ କରିଥିଲି ।

ତା' ପରେ ବହୁଗ୍ରାମ ହାଇସ୍କୁଲ - ୩ କି.ମି. ଦୂର । ସେଠାରେ ବଙ୍ଗବାସୀଙ୍କ ସଂଖ୍ୟା ଅଧିକ ଥିଲା, ସେଥି ମଧ୍ୟରୁ କେତେକ ପଢୁଥିଲେ । ମୋର ମଧ୍ୟ ଜଣେ ବଙ୍ଗବାସିନୀ ସହପାଠିନୀ ଥିଲା । ମୋ ଆତ୍ମକଥା 'ଶୈଶବରୁ ସଂସାର'ରେ ଏ ସମ୍ପର୍କରେ ମୁଁ କିଛି

ଲେଖିଛି । ସେଠାରେ ସ୍କୁଲରେ ପ୍ରତିବର୍ଷ ବିବେକାନନ୍ଦଙ୍କ ଜନ୍ମୋତ୍ସବ ପାଳନ କରାଯାଏ । କଟକରୁ ବିଶିଷ୍ଟ ଅତିଥିମାନେ ସେଠାକୁ ଯାଆନ୍ତି । ସେଠାରେ ମୋର ପରିଚୟ ହୁଏ ଲେଖକ ସୁରେନ୍ଦ୍ର ମହାନ୍ତିଙ୍କ ସହ ଓ ପ୍ରଜାତନ୍ତ୍ରର ତତ୍କାଳୀନ ସମ୍ପାଦକ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ସହିତ । ସେଥର ସ୍କୁଲର କବିତା ପ୍ରତିଯୋଗିତାରେ ମୋର କବିତାଟି ପ୍ରଥମ ହୋଇଥାଏ । ସଭାରେ ତାହା ଆବୃତ୍ତି କଲି, ସେହି କବିତାଟି ବିଦ୍ୟୋତ୍ସାହୀ ଜାନକୀବାବୁ ଆଣି ପ୍ରଜାତନ୍ତ୍ର ନାରୀ ଜଗତରେ ଛପାଇ ମୋତେ ଖଣ୍ଡିଏ କପି ସ୍କୁଲ୍ ଠିକଣାରେ ପଠାଇଥିଲେ । ସ୍କୁଲରେ ମୋର କୃତିତ୍ୱ ସମସ୍ତଙ୍କୁ ହୁଲସ୍ଥୁଲ୍ କଲା ।

ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କରି ଆସିଲି ୧୯୬୧ ମସିହାରେ ରେଭେନ୍ସା କଲେଜର ବିଜ୍ଞାନ ଶ୍ରେଣୀକୁ । ସେତେବେଳକୁ ମୋର ଅଧିକାଂଶ ସହପାଠୀ, ପାଠିନୀ ଓ ଅଧ୍ୟାପକ ମହଲ ମୋତେ 'କବି' ବୋଲି ଚିହ୍ନି ସାରିଥାଆନ୍ତି । କାରଣ ପ୍ରତିଟି ପତ୍ରିକା ବା ଖବରକାଗଜରେ ସେତେବେଳେ ଜନାନା କମ୍ପାର୍ଟମେଣ୍ଟ ରହିଥିଲା । ନାରୀ ଜଗତ, ମହିଳାମହଲ, ଯୁଗମାନବୀ ଆଦି ପ୍ରତି ସପ୍ତାହରେ ପ୍ରକାଶ ପାଉଥିଲା ଓ ମୋ କବିତା ପ୍ରାୟ ସବୁଥିରେ ଛପା ହଉଥିଲା । ତେବେ, ଝିଅମାନେ କବିତା ଲେଖିବାରେ ଆଦର ପାଉ ନ ଥିଲେ । କିନ୍ତୁ ମୋ ବାପା ଡାକ୍ତର, ବୋଉ ସୁଶିକ୍ଷିତା, ଅଜା ସାହସୀ ଏବଂ ଗୋପାଳ ପ୍ରହରାଜ ମୋର ଜେଜେବାପା । ତେଣୁ ମୋତେ ପରିବାର ତରଫରୁ ଉତ୍ସାହ ନ ମିଳିଲେ ବି କେହି ନିରୁତ୍ସାହ କରୁ ନ ଥିଲେ ।

ସେହି ବର୍ଷ ରେଭେନ୍ସାର ବିରାଟ ଲେଡିଜ୍ ହଷ୍ଟେଲ୍ ଚାଲୁ ହେଲା । ଆମେ ୨ଶହ ଛାତ୍ରୀ ସେଠାରେ ରହିଲୁ । ସେଇ ବର୍ଷ ହଷ୍ଟେଲରେ ଦଳେ ମଫସଲୀ ଝିଅ ବଛା ହୋଇଥିଲେ । ସେଥିରେ କିନ୍ତୁ ମୋ ନାମ ନ ଥିଲା । ମୁଁ ମଫସଲରୁ ଆସିଥିଲି । ମୋ ନାମ କାହିଁକି ରହିଲା ନାହିଁ । ସେମାନଙ୍କ ଉତ୍ତର – "ସେ 'ମଫସଲୀ' ଭଳି ଜଣାଯାଏ ନାହିଁ । କବିତା ଲେଖେ, ବକ୍ତୃତା ଦିଏ, ନାଚେ, ତେଣୁ ମଫସଲୀ ନୁହେଁ । ତେବେ 'ମଫସଲୀ' ଗଣା ହେବାରେ ମୋର କିଛି ଆପତ୍ତି ନ ଥିଲା । କଦଳୀବଣରେ ଉଡୁଥିବା ପ୍ରଜାପତି, ସବୁଜିମା ଭର୍ତ୍ତି ଧାନକିଆରି, ହିଡ଼ଭର୍ତ୍ତି କଂକଡ଼ା ଗାଡ଼, ବଣବୁଦା ମଝି ମଝିରେ ହସୁଥିବା ପାଞ୍ଚଆଙ୍ଗୁଳିଆ ଫୁଲକୁ ନେଇ ମୁଁ ଏବେ ମଧ୍ୟ ଗର୍ବ କରେ ।

ସେଇ ବର୍ଷ ୧୯୬୨ ବିଷୁବ ମିଳନରେ ମୋର ପ୍ରଜାତନ୍ତ୍ର 'ନାରୀଜଗତ'ର କବିତା ପୁରସ୍କାର ପ୍ରାପ୍ତିର ଚିଠି ହଷ୍ଟେଲକୁ ଆସିଲା । ହଷ୍ଟେଲର ନିୟମାନୁସାରେ ଚଠି ଖୋଲି ପ୍ରଥମେ ଆସିଷ୍ଟାଣ୍ଟ ସୁପରିଣ୍ଟେଡେଣ୍ଟ ପଢ଼ନ୍ତି । ମତେ ନିମନ୍ତ୍ରଣ ପତ୍ରଟି ଦେଲା ବେଳକୁ ସେ କହିଲେ, "କାଲି ତୁମର ଫିଜିକ୍ସର ବାର୍ଷିକ (ୟୁନିଭ୍) ପରୀକ୍ଷା ୨ୟ ସିଟିଂରେ । ତୁମେ ଯାଇପାରିବ ନାହିଁ ।" ମୁଁ ଲୁଚିକି ୮ଟା ବେଳକୁ ମୋର ଉପର କ୍ଲାସ୍‌ର ୨ଜଣ ଝିଅଙ୍କ ସାଙ୍ଗେ ରିକ୍ସାରେ ଚାଲିଗଲି । ଫେରିଲା ବେଳକୁ ୧.୩୦ ବାଜିଛି । ୨ଟାରେ ପରୀକ୍ଷା ହଲ୍‌ରେ ପ୍ରବେଶ କଲି । ସେତେବେଳକୁ ମୋ ସହପାଠିନୀ ହଷ୍ଟେଲବାସିନୀ, ମୋ ମୁହଁକୁ ଚାହୁଁ ନ ଥାନ୍ତି । କିନ୍ତୁ ମୁଁ ତା' ପୂର୍ବଦିନ ଫିଜିକ୍ସ ଭଲକି ପଢ଼ିଥାଏ । ପରୀକ୍ଷାରେ ଭଲ ହେଲା ଓ ମୁଁ ପ୍ରଥମ ଶ୍ରେଣୀରେ ପ୍ରି.ୟୁ. ବିଜ୍ଞାନ ପାସ୍ କଲି । କିନ୍ତୁ ମୋର ପୁରସ୍କାରଟି ଯୋଗୁଁ ମୋ ଗୋଡ଼ ତଳେ ଲାଗୁ ନ ଥିଲା । ।

୧୯୭୧ ରେ All India Radio ତରଫରୁ ମୁଁ National symposium of Poets meet ରେ ଦିଲ୍ଲୀରେ ଯୋଗ ଦେଲି । ସବୁ ଅଧ୍ୟାପକ ପ୍ରଶଂସା ଅଜାଡ଼ି ଦେଲେ । ପୁନଶ୍ଚ ୧୯୭୫ରେ ମୁଁ ମହିଳା ରଚନାକାରଙ୍କ ସମ୍ମିଳନୀକୁ ନିମନ୍ତ୍ରିତ ହୋଇ ନୈନିତାଲ ଯାଇଥିଲି । ଲେଖିକା ବୀଣାପାଣି ମହାନ୍ତି ମଧ୍ୟ ଯୋଗ ଦେଇଥିଲେ । ହିନ୍ଦୀରେ କବିତା ପାଠ ଆରମ୍ଭ ହେଲା । ସର୍ବପ୍ରଥମ ମୁଁ କବିତା ପାଠ କଲି । ଭାଗ୍ୟରେ ଥିଲା ବୋଧେହୁଏ, ବହୁ ଆଦର ପାଇଲି । ସେଠାରେ-ସେହି ନୈନି ହ୍ରଦକୂଳ ଆସରରେ ।

କବିତା ଲେଖୁ ଲେଖୁ – ପଦ୍ମପୋଖରୀରେ ଗୋଡ଼ ବୁଡ଼ାଉ ବୁଡ଼ାଉ ସେ ମୋତେ ଟାଣି ନେଲା – ସେଠୁ ମୁଁ ଉଠି – ଆସିପାରିଲି ନାହିଁ । ନା, ସେ ମୋତେ ଛାଡ଼ିଲା, ନା ମୁଁ ସେଠୁ ଉଠି ଆସିବାକୁ ଚାହିଁଲି ?

ରାତି ଅଧରେ ଉଠି ମନେ ପଡ଼ିଥିବା କବିତା ଧାଡ଼ି ଲେଖାହୁଏ ମୋର – ପ୍ରାୟ ରଚନା କାଳ ରାତି ଅଧ ଅନ୍ଧାର ଘରେ । ଘୁଷୁରି ଘୁଷୁରି କିଛି ଗୁଣୁଗୁଣେଇବା – କିଏ ଯେମିତି ଡାକିଦିଏ "କିଛି ଲେଖ"– କିଏ ଡାକେ ? ଅନ୍ଧାର ଭିତରୁ ବୋଧେ, ଜହ୍ନର ଆରପାଖ ଅନ୍ଧାରରୁ ଡାକିଦିଏ କିଏ – ମୁଁ ଉଚ୍ଚକିତ ହୋଇଉଠେ । ଗୁଣ୍ଠୁଚିର ହୃଦସ୍ପନ୍ଦ, ଫୁଲର ଚୁପ୍‌ଚାପ୍, ଘାସର ଅନବରତ ସବୁଜିମା ମତେ ପୂର୍ଣ୍ଣ କରିଦିଏ । ମୁଁ ଲେଖେ –

୧. "ଧରିଥିଲି ଛାତିରେ ମଣିଷଙ୍କୁ ଯେତିକି
ଗଛ ପତ୍ରଙ୍କୁ ସେତିକି,
ପତଙ୍ଗଟିକୁ ବି ସେତିକି ନିବିଡ଼ରେ ।"

୨. "ଲକ୍ଷ୍ୟସିଦ୍ଧ ଧନୁର୍ଦ୍ଧର ସମୟ
ତୁ ରହିଥାଆ ଅପେକ୍ଷାରେ
ମୁଁ ଯିବି, ନିଶ୍ଚୟ ଯିବି, ଧୂଳି ଉପରେ ହିଁ
ରାମ ନାମ ଲେଖିଦେଲା ପରେ ।" 'ଶବରୀ'
ଯିବାବେଳ ହୋଇଗଲା ପ୍ରାୟ-କିନ୍ତୁ କାହିଁ ?
'ରାମନାମ' ଲେଖି ପାରିଲି କି ?

୩. ପାଠିକାଟିଏ ପ୍ରଶ୍ନକଲା–ଆପଣ ଜଣେ ନାରୀ ହୋଇ କିପରି 'ସେଲିମ୍‌ର ପତ୍ର' କବିତାଟି ଲେଖିଲେ–ପୁରୁଷ ପ୍ରାଣର କଥା ? ହଁ, ଉପରୋକ୍ତ କବିତାଟି ବୋଧେ ମୁଁ କଲେଜର ୨ୟ ବର୍ଷର ଛାତ୍ରୀ ଥିଲାବେଳେ ଲେଖିଥିଲି । ସେଠାରେ ମୁଁ କହିଲି – 'ରମାକାନ୍ତଙ୍କ 'ଶ୍ରୀରାଧା' ନାରୀ ହୃଦୟ-ନିଃସୃତ ପ୍ରେମଭାବ ନୁହେଁ କି ? ଏପରି କେତେ ଉଦାହରଣ ଦେଇ ତାଙ୍କୁ ବୁଝାଇଲି ଯେ କଳା ଜଗତରେ ନାରୀ ପୁରୁଷ ଭେଦଭାବ ନ ଥାଏ । ସେ ଦୁହିଁଙ୍କ ଭାବ ପରସ୍ପରର ହୃଦୟ ଭିତରେ ଯାତାୟାତ କରିଥାଆନ୍ତି ।



# ନାଲ୍‌କୋ ପ୍ରତିଷ୍ଠା ଦିବସରେ, ପୁରସ୍କାର ଗ୍ରହଣ ଉତ୍ସବରେ 'ଶବରୀ' କାବ୍ୟର ଆଲୋଚନା

ଆଜି ବିଶ୍ୱବିଖ୍ୟାତ ଏହି ଶିକ୍ଷାନୁଷ୍ଠାନର ୩୭ତମ (ସପ୍ତତ୍ରିଂଶତମ) ପ୍ରତିଷ୍ଠା ଦିବସର ଭବ୍ୟ ସମାରୋହରେ ଉପସ୍ଥିତ, ମୁଖ୍ୟ ଡଃ ତପନ୍ କୁମାର ଚାନ୍ଦଜୀ, ବିଦେଶାଗତ ଅତିଥି, ଏବଂ ସଜ୍ଜନମଣ୍ଡଳୀ,

ଏହି ଉତ୍ସବରେ ଆଜି ପୁରସ୍କୃତ ଓ ସମ୍ବର୍ଦ୍ଧିତ ହେବା ନିମିତ୍ତ ନିମନ୍ତ୍ରିତ ହୋଇଥିବା ଭାରତର କାବ୍ୟାକାଶର ଧ୍ରୁବତାରା ସରସ୍ୱତୀ କବି ରମାକାନ୍ତ ରଥ ମହୋଦୟ, ଓଡ଼ିଆ ଗଦ୍ୟ ସାହିତ୍ୟର ପାଟରାଣୀ ଶ୍ରୀମତୀ ବୀଣାପାଣି ମହାନ୍ତି, ଯାହାଙ୍କ ସହିତ ସାରା ଭାରତର ବିଭିନ୍ନ ସ୍ଥାନରେ ମୁଁ ସଭାସମିତିରେ ସହଯୋଗିତା କରିଛି । ସେହି ମହାଶୟା ଏଠାରେ ଉପବିଷ୍ଟ । ମୋତେ ଏଠାରେ ମୋର 'ଶବରୀ' କାବ୍ୟ ସମ୍ପର୍କରେ ଅତି ସୀମିତ ସମୟ ମଧ୍ୟରେ ବକ୍ତବ୍ୟ ରଖିବାକୁ ଅନୁରୋଧ କରାଯାଇଛି । ୫ ମିନିଟ୍ ସମୟରେ 'ଶବରୀ'କୁ କଳନା କରିବା, ପାଟି ଭିତରେ ବିଶ୍ୱ-ବ୍ରହ୍ମାଣ୍ଡ ଦର୍ଶନ କରିବା ଭଳି ଏକ ଦୁରୂହ ବ୍ୟାପାର । ତଥାପି ମୁଁ ମୋର ବକ୍ତବ୍ୟ ରଖୁଅଛି । ବହୁବର୍ଷ ତଳେ ପ୍ରାୟ ୧୯୭୬-୭୭ ମସିହାରେ, ଥରେ ଅଗଣାରେ ମାଟି ତାଡ଼ି ଘୁଷୁରୁଥିବା ଜିଆଙ୍କୁ ଦେଖି ମୋର ସେ (ଶବରୀ) ମନେ ପଡ଼ନ୍ତି । ମତେ ଲାଗେ, ସେ ଓ ମୁଁ ଭିନ୍ନ ନୋହୁ । ଏହିଭଳି ଘୁଷୁରି ଘୁଷୁରି ଚାଲିବା ଓ ଦିନେ ମରିଯିବା-ଏଇଟା ତ ନିୟତି । ମାତ୍ର, ମଣିଷର ଏହି ମହାନ୍ ଅସ୍ତିତ୍ୱକୁ, ତୁଚ୍ଛ ଜିଆଠାରେ ଆରୋପ କରିବାକୁ ମୁଁ ଗ୍ରହଣ କରିପାରିଲି ନାହିଁ । ସମୟର ଦୁଇଗୋଟି ବିନ୍ଦୁରେ ସ୍ଥିତ ଆମେ ଦୁହେଁ (ଶବରୀ ଓ ମୁଁ) ଅବଶ୍ୟ ଗୋଟିଏ ସତ୍ତା, ଯାହାର ପ୍ରତୀକ୍ଷା ଓ ଉପଲବ୍ଧି ଏକାପରି ।

ଏହି ଅନୁଭବର ୧୪ ବର୍ଷ ପରେ (ମୁଁ ଶ୍ରମଣା ୧, ୨ ନାମରେ ୨ଟି କବିତା ଲେଖି 'ଝଂକାର'ରେ ପ୍ରକାଶିତ କରାଇବା ପରେ) ପୁନର୍ବାର ଶବରୀ ମୋତେ ଅନୁଭୂତ ହେଲେ । ତାଙ୍କ ବିଷୟରେ ଦୀର୍ଘ କବିତା ଲେଖିବି କି ନାହିଁ, ଭାବି ନ ଥିଲି, ତଥାପି ଭାରତୀୟ ଭାଷାର ସମସ୍ତ ରାମାୟଣକୁ ମୁଁ ଖୋଜି, ଧାନ୍ଦି ପକାଇଲି । 'ତୁଳସୀ ରାମାୟଣ', ବାଲ୍ମୀକି ରାମାୟଣ 'କମ୍ବନ ରାମାୟଣ', 'କୃତ୍ତିବାସ ରାମାୟଣ' ରାମାୟଣ ଭିତରେ ସଂସ୍କୃତର ବାଲ୍ମୀକି ରାମାୟଣ ସହ ଓଡ଼ିଆର ଜଗମୋହନ ରାମାୟଣ ଖୋଜି ପଢ଼ି ପକାଇଲି । କିନ୍ତୁ ବିଶେଷ କିଛି ତଥ୍ୟ ବା ତତ୍ତ୍ୱ ପାଇପାରିଲି ନାହିଁ । ସବୁଠାରେ ଶବରୀଙ୍କ ସମ୍ପର୍କରେ କବିମାନେ ମିତ୍‌ବାକ୍, ପ୍ରାୟ ନୀରବ କହିଲେ ଚଳେ, ମୋ ମନରେ କ୍ଷୋଭ ଜାତ ହେଲା । ସମସ୍ତ କବି କହୁଛନ୍ତି, 'ଶବରୀ'

ରାମଭକ୍ତରେ ନିଷ୍ଠାପର । ମାତ୍ର ୨ଧାଡ଼ି ବି କେହି ଲେଖି ନାହାନ୍ତି । କ'ଣ ପାଇଁ ? ମତେ ଲାଗିଲା ଶବରୀ ଜଣେ ବନବାସିନୀ ନାରୀ, ହୁଏତ ସଭ୍ୟତାରୁ ବଞ୍ଚିତ, ଯା' ବୋଲି କବିମାନେ ତାଙ୍କୁ ଆଡ଼େଇ ଦେଇଯିବେ ? ବୃହତ୍‌କାୟ ରାମାୟଣମାନଙ୍କରେ ୪ ଧାଡ଼ି ବି କେଉଁଠାରେ ଲିଖିତ ହୋଇ ନାହିଁ । ନା, ଯେ ବଡ଼ ଅନ୍ୟାୟ । କେବଳ ବାଲ୍ମୀକି ରାମାୟଣ 'ମୟାତୁ ବିବିଧଂ ବର୍ଣ୍ୟଂ ସଞ୍ଚିତଂ ପୁରୁର୍ଷଷଭ / ତବାର୍ଥେ ପୁରୁଷବ୍ୟାଘ୍ର 'ପମ୍ପୟାସ୍ତୀର ସଂଭବମ୍' ମିଳିଗଲା । ୪ ବଳରାମ ଦାସଙ୍କର ରାମାୟଣ ପାଇଲି ପମ୍ପା ସରୋବର ଯେ ଦେଖିବ ଯାଇ ବାଟେ / ଶବରୀ ଯତି ଅଛନ୍ତି ତହିଁର ନିକଟେ ।" ଏତକ ହିଁ ପ୍ରାପ୍ତ ହେଲି ଓ ଲେଖିବାରେ ଲାଗିଲି । ଏହାର ରଚନା କାଳ ୧ ୯ ୯ ୧ ମଧ୍ୟରେ ଶେଷ ହୋଇ ପ୍ରକାଶିତ ହେଲା ଓ ଖୁବ୍‌ଶୀଘ୍ର ପଦ୍ମଶ୍ରୀ ଶ୍ରୀନିବାସ ଉଦ୍‌ଗାତା ଏହାକୁ ହିନ୍ଦୀରେ ରୂପାନ୍ତରିତ କଲେ ।

ପ୍ରଥମେ ଏହି ହିନ୍ଦୀ ରୂପାୟନକୁ ପ୍ରଫେସର ଡଃ ବିଦ୍ୟାନିବାସ ମିଶ୍ର ଆଦି ପ୍ରଶଂସା କରି ଏହାକୁ 'ମହାକାବ୍ୟ' ଆଖ୍ୟା ଦେଲେ । ଭକ୍ତି ଓ ସମର୍ପଣ ସହ ରାମଚନ୍ଦ୍ରଙ୍କ ପ୍ରତି ଶବରୀ ହୃଦୟରେ ପୋଷିତ ରାଗାତ୍ମିକ ସମ୍ପର୍କକୁ ଗୁରୁତ୍ୱ ଦେଲେ । ଶବରୀ ଯେ ଏଠାରେ ମାତୃରୂପା ତାହା ସେ ବ୍ୟକ୍ତ କଲେ । ଭକ୍ତି ସହ ସିସୃକ୍ଷା ତାଙ୍କଠାରେ ମିଳିତ ହୋଇଛି । ଅଳ୍ପଦିନ ପରେ 'ସମକାଳୀନ ଭାରତୀୟ ସାହିତ୍ୟ'ରେ ପ୍ରକାଶ ପାଇଲା ହିନ୍ଦୀ 'ଶବରୀ' କାବ୍ୟର 'ପୁରାତନୌଁ କା ନୟାପାଠ' ଆଲୋଚନା । ଆଲୋଚକ ଥିଲେ ପ୍ରଫେସର ବେଦ ପ୍ରକାଶ ଭରଦ୍ୱାଜ । ଉଭୟେ 'ଶବରୀ' କାବ୍ୟର ଏହି ନୂତନ ରୂପାୟନକୁ ଭୂୟସୀ ପ୍ରଶଂସା କଲେ । ମୁଁ ଅଭିଭୂତ ହୋଇପଡ଼ିଲି, ଏଠାରେ ମୋ ରଚିତ ଶବରୀ କିନ୍ତୁ ମୋକ୍ଷ ଯାଚନା କରି ନାହାନ୍ତି । ସେ ଅନୁଭବ କରିଛନ୍ତି ଏହି ରାଜ୍ୟରୁ ବିତାଡ଼ିତ ରାଜପୁତ୍ର, ପତ୍ନୀ ଅପହୃତା, ବଣ ଜଙ୍ଗଲରେ କ୍ଷୁଧା, ତୃଷାରେ ଆତୁର, ସେ କ'ଣ ତାଙ୍କୁ ମୋକ୍ଷ ଦେବେ ? ନା, ଶବରୀ ବରଂ ଚାହିଁଛନ୍ତି, ରାମଚନ୍ଦ୍ରଙ୍କ ଚରିତ୍ରରେ ନିଷ୍ଠୁରତା, ସୂର୍ପଣଖା କୁଦଣ୍ଡ, କୈବର୍ତ୍ତ୍ୟ ଓ ମୁନିଙ୍କଠାରୁ ଦୂରେଇ ଯିବାଭଳି କାର୍ଯ୍ୟ ଏସବୁ ଦେବ ଚରିତ୍ରର ଅନୁକୂଳ ନୁହେଁ । ସେ କହିଛନ୍ତି – "ହେ ରାଜପୁତ୍ର, ମୋର ଫଳ ପୁଷ୍ପରେ ତୁମେ ଆପ୍ୟାୟିତ ହୁଅ, କିନ୍ତୁ ମୁଁ ତୁମକୁ ତୁମର ଉପରୋକ୍ତ ନିଷ୍ଠୁରତାରୁ ଭିନ୍ନ କରି ହୃଦୟବାନ୍ କରି ଗଢ଼ିବି ।" "ମହାବୀର, ମୁଁ ତୁମକୁ ପୁନର୍ଜନ୍ମ ଦେବି ।"

ଏଠାରେ ଶବରୀଙ୍କ ଉପରୋକ୍ତ ଆଗ୍ରହ ଏକ ନୂତନ ପୌରାଣିକ -ସର୍ଜନା । ଶବରୀ ବରଂ କହୁଛନ୍ତି, "ମୋକ୍ଷ ମୋର ଲୋଡ଼ା ନାହିଁ । ଜନ୍ମବନ୍ଧରୁ ମୁକ୍ତି ମୁଁ ଚାହେଁନା । ବରଂ ଏହି ଅରଣ୍ୟବାସୀଙ୍କ ଦୁଃଖସୁଖର ସମଭାଗୀ ହୋଇ ଏହିଠାରେ ମୁଁ ଆଜୀବନ କଟାଇବି ଓ ସେମାନଙ୍କ ଅଶ୍ରୁମୋଚନ କରିବି । ମୁଁ ମୋକ୍ଷକାମୀ ନୁହେଁ ମୁଁ ଜୀବନ-କାମୀ । ଅନନ୍ତ ପ୍ରତୀକ୍ଷାର ଈଶ୍ୱରୀ ।"

ସୁଧୀବୃନ୍ଦ, ଏତେ ସମୟ ଧରି ମୋର ଏହି ବକ୍ତବ୍ୟ ଶୁଣିଥିବାରୁ ମୁଁ କୃତଜ୍ଞ ଓ କୃତାର୍ଥ ମନେ କରୁଛି । ଧନ୍ୟବାଦ ।



# କଳିଙ୍ଗ ସାହିତ୍ୟୋତ୍ସବର ଉଦ୍‌ଘାଟନ ମଞ୍ଚରୁ ମୋର ବକ୍ତବ୍ୟ

ଏହି ଭବ୍ୟ ସମାରୋହରେ ମଞ୍ଚାସୀନ ବିଶିଷ୍ଟ ସାହିତ୍ୟିକ ଅମିଷ ତ୍ରିପାଠୀଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ସମ୍ମୁଖରେ ସମବେତ ସଂରଚକ ଓ ସଂରଚନା-ପ୍ରେମୀଙ୍କୁ ତଥା ବହିରାଗତ ଅତିଥିଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ।

ଭଦ୍ରମହୋଦୟଗଣ,

କଳିଙ୍ଗ ସାହିତ୍ୟ ମହୋତ୍ସବ ଏକ ଅନବଦ୍ୟ ଆୟୋଜନ । ଏହାର ପରିକଳ୍ପନା ଓ ପ୍ରତିଷ୍ଠାର ପୃଷ୍ଠପଟରେ ଯେଉଁ ଉତ୍ସାହୀ ବ୍ୟକ୍ତିଗଣ, ସେମାନେ ଧନ୍ୟବାଦର ପାତ୍ର । ବହୁ ଶ୍ରମ ସ୍ୱୀକାର କରି, ସମୟ ବିନିଯୋଗ କରି ସେମାନେ ଏହାକୁ ଅନୁଷ୍ଠିତ କରାଇଛନ୍ତି । ଆମ ଓଡ଼ିଶାର ଅନ୍ୟତମ ନାମ କଳିଙ୍ଗ - ଯାହାର ଏକ ବିଶେଷ ଐତିହ୍ୟ ରହିଛି । ଏହି ଐତିହ୍ୟ ଏଯାବତ୍ ଓ ଆସନ୍ତା ସମୟକୁ ଆମମାନଙ୍କୁ ଅନୁପ୍ରେରିତ କରୁଥିବ । ବହୁ କାଳରୁ ଓଡ଼ିଆ ଭାଷାରେ ରହସ୍ୟଚେତନା ଓ ପ୍ରେମ ଚେତନା ଓତପ୍ରୋତ ପ୍ରକଟିତ ହୋଇ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛି । ଏବେ ମଧ୍ୟ କରିଚାଲିଛି ।

ସୁଧୀମଣ୍ଡଳୀ, ସାହିତ୍ୟ ହେଉଛି ମାନବାତ୍ମା ନିମିତ୍ତ ସଞ୍ଚିତ ମଧୁ । ପାଠକ ଏହି, ମଧୁପାନରେ ଜୀବନଯନ୍ତ୍ରଣାକୁ ଭୁଲିଥାଏ । ଲେଖକ ମଧ୍ୟ ନିଜ ଚତୁଃପାର୍ଶ୍ୱର ପରିବେଷ୍ଟନୀର କଠୋରତାରୁ ସାହିତ୍ୟ ରଚନା ମାଧ୍ୟମରେ ମୁକୁଳିଯାଇ ଏକ ଆହ୍ଲାଦକର ପରିବେଶ ଗଢ଼ି ତୋଳିଥାଏ । ମୃତ୍ୟୁଠାରୁ ଜୀବନ ଆଡ଼କୁ ପ୍ରବାହିତ, ଯେଉଁ ବିଷାକ୍ତ ସ୍ରୋତ, କବିତାର ଯାଦୁକରୀ ସ୍ପର୍ଶରେ, ତାହା ସୁବର୍ଣ୍ଣ ସ୍ରୋତରେ ପରିଣତ ହୋଇଯାଏ । ସାହିତ୍ୟିକର ଜୀବନ ଯେତିକି ଆନନ୍ଦଦାୟକ, ସେତିକି ଯନ୍ତ୍ରଣାଦାୟକ । ସଂରଚନାଟିଏ ମନୋମତ ନ ହେଲେ ସାହିତ୍ୟିକ ଛଟପଟ ହୁଏ । ଅଥଚ ସଂରଚନାଟିଏ ପାଠକର ଅନ୍ତର ସ୍ପର୍ଶକଲେ ଲେଖକ ସୀମାତୀତ ଆନନ୍ଦ ପାଇଥାଏ । ସାହିତ୍ୟ ମାନବିକତାକୁ ତ୍ୱରାନ୍ୱିତ କରେ । ପ୍ରେମ ଯେ ପୃଥିବୀ ପାଇଁ ଅନିବାର୍ଯ୍ୟ, ଧ୍ୱଂସ କଦାପି ନୁହେଁ-ଏହା ସାହିତ୍ୟିକର ବାର୍ତ୍ତା ।

ଭଦ୍ରମଣ୍ଡଳୀ, କେତେକ ଲେଖକଙ୍କ ମତରେ ''କଳାକାରର, ସାହିତ୍ୟିକର ଜୀବନ ଏକ ଦୀର୍ଘ ତଥା ମଧୁର ଆତ୍ମହତ୍ୟା ସଦୃଶ ।" ତେବେ ସାହିତ୍ୟ ଯେ ବଞ୍ଚିବାର ଉପାଦାନ ଯୋଗାଏ-ପାଠକକୁ ଆଶା ଓ କଳ୍ପନାର ଜୀବସାର (Vitamin) ଦ୍ୱାରା ଶକ୍ତିମାନ୍ କରିପାରେ, ଏହା ସର୍ବବାଦିସମ୍ମତ । ଆଶା ଓ କଳ୍ପନା ଭିଟାମିନ୍ ଭଳି ମାନବାତ୍ମାକୁ ସବଳ କରେ । ଅଲିଖିତ ରଚନା ଶୁକପକ୍ଷୀ ଭଳି ଶୂନ୍ୟରେ ସଂଜୀବିତ ଥାଏ । ଉପଯୁକ୍ତ ଲେଖକ, ସଂରଚକକୁ ଚିହ୍ନିଲେ ସେ ତା'ର ହୃଦୟକୁ ଓହ୍ଲାଇଆସେ । ସାହିତ୍ୟିକଟିଏ ଯନ୍ତ୍ରଣାର ଜୀବନ ବଂଚେ ସତ, ମାତ୍ର କଣ୍ଟାବାଡ଼ରେ ଲଟେଇଥିବା ଲଟାପରି ଫୁଲ ଗୋଟିଏ ଗୋଟିଏ ଫୁଟାଇ ଯାଉଥାଏ । ପାଠକ ବିହ୍ୱଳ ହୋଇପଡ଼େ । ନିଜ ଜୀବନର ଅପୂର୍ଣ୍ଣତାକୁ ଭୁଲିଯାଇ ସନ୍ତୋଷ ଲାଭ କରିଥାଏ ।

ସୁଧୀବୃନ୍ଦ, ଆଜି ଆପଣମାନଙ୍କ ସମକ୍ଷରେ ଉପସ୍ଥିତ ରହିବା ମୋର ପରମ ସୌଭାଗ୍ୟ । ମୋର ଏଇ କଥା ଦୁଇପଦ ଶୁଣି ଆପଣମାନେ ମୋତେ ଧନ୍ୟ କରିଛନ୍ତି । ମୋର ଗୋଟିଏ କ୍ଷୁଦ୍ର କବିତା ଆପଣମାନଙ୍କପାଇଁ - ''ଠିକ୍ ମାଟି ପରି ।'' ନମସ୍କାର ।



# ମୋ କବିତା ମୋ ରକ୍ତ

କବିତାକୁ ମୁଁ ଚିହ୍ନିଲି କେମିତି ? କୋଉ ଖଞ୍ଜରେ ସେ ପଶିଆସିଲା ମୋ ହୃଦୟକୁ, ମୋ ବିହ୍ୱଳତାକୁ, ମୋର ଦୋଦୋଚିହ୍ନା-ପରିଚୟ ଭିତରକୁ । ଆଜୀବନ ଅବଲମ୍ବନ ସେ ମୋର । ଅଥଚ ସେ କ'ଣ କେମିତି ବୁଝାଇପାରିବି ନାହିଁ ।

କୈଶୋରରେ, କଦଳୀ ବଣ ଭିତରେ ଉଡୁଥିବା ପ୍ରଜାପତି, ବହଳ ଧାନକ୍ଷେତର ବାସ୍ନା, ବୁଦାଗହଳର ପାଞ୍ଚ ଆଙ୍ଗୁଳିଆ ଫୁଲର ଛଇଛଟକ, କି ହିଡ଼ ଭର୍ତ୍ତି କଂକଡ଼ା ଗାଡ଼ର କୌତୂହଳ, କ'ଣ ମୋ ମନକୁ ଉଚ୍ଚାଟ କଲେ ? ଉଛୁଳା ମୁଛୁଳା ନାଳବନ୍ଧରେ ମୋର ସ୍କୁଲ ରାସ୍ତା-ପୁଣି ଚାରିପାଖର ଲୋକଙ୍କ ଦୁଃଖସୁଖ ମୋତେ କେମିତି ଜାବୁଡ଼ି ଧରିଲେ କେଜାଣି ! ମୁଁ କଲମ ଧରିଲି, କ'ଣ ଗାରେଇଲି, ଲେଖିଲି । ମାଇନର ସ୍କୁଲ୍‌ରେ ମୋ ଗୀତର ନୃତ୍ୟରୂପ ସ୍କୁଲର ବାର୍ଷିକୋତ୍ସବରେ ପରିବେଷିତ ହେଲା । ତେବେ, ଭାଷା ସଚେତନତା ଥିଲା ମୋର- ୰ଗୋପାଳ ଚନ୍ଦ୍ର ପ୍ରହରାଜ ମୋର ଜେଜେ, ପୁଣି ସତ୍ୟଭାମାପୁରରେ ୰ରମାଦେବୀଙ୍କ କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର ଓ ମୋ ବୋଉର ତତ୍କାଳୀନ ଶିକ୍ଷା, ସଂସ୍କୃତି ଓ ଢଗଢମାଳି ମୋର ସୃଜନ ମାନସକୁ ନିଶ୍ଚୟ ଗଢ଼ିଦେଇଥିବ ।

ଏଣେ କବିତାକୁ ଛୁଉଁ ନ ଛୁଉଁଣୁ ସେ ଟାଣିନେଲା ମୋତେ ପଦ୍ମପୋଖରୀ ପରି ତା'ର ଗଭୀର ଶୀତଳ ଜଳ ଭିତରକୁ । ମୁଁ ଯେ ଉବୁଟୁବୁ । ତା' ଠାରୁ ମୁକୁଳିବାର ବାଟ ଜାଣିପାରିଲି ନାହିଁ । ଅତଏବ ପାଦେ ପାଦେ ଭିତରକୁ ପଶିଗଲି । ସିଂଘିବୁଡ଼ା ଖାଇଲି । ଉଠିଆସିଲାରୁ ଅନ୍ଧାର ଘର ଭିତରେ ଏକା ଏକା ଘୁଷୁରିଲି । ଛଟପଟ ହେଲି । କେବେ ସେ କବିତାର ଶବ୍ଦ ବୁନ୍ଦା ବୁନ୍ଦା ଝରିଲା ତ, କେବେ ଗଦ୍‌ଗଦ ଉଚ୍ଚାରଣରେ ତା'ର ଭସେଇଦେଲା ମତେ । ମୁଁ ଭଲପାଇଲି ନିବିଡ଼ଭାବେ ପଶୁପକ୍ଷୀ, କୀଟପତଙ୍ଗଙ୍କୁ । କଅଁଳିଲା ଘାସ ପରି, ଅନବରତତା ହେଲା ମୋର କବିତା ରଚନାର ପ୍ରୟାସ । କବିତାରେ ଲେଖିଲି, "ଧରିଥିଲି ଛାତିରେ ମଣିଷଙ୍କୁ ଯେତିକି/ଗଛ ଲଟାଙ୍କୁ ସେତିକି / ପତଙ୍ଗଟିକୁ ବି ସେତିକି ନିବିଡ଼ରେ ।" ମଣିଷର ଅନ୍ତରାତ୍ମାକୁ କୋଳେଇ ନେଉ ନେଉ ତା' ହୃଦୟବନ୍ଧାରେ ଭିଜିଗଲି । ତା'ର ଅନ୍ତର୍ଚ୍ଚେତନାର ବିସ୍ତାରକୁ ଦେଖି ବିସ୍ମୟାଭିଭୂତ ହୋଇପଡ଼ିଲି । ମୋ ରଚିତ 'ଶବରୀ' ଖଣ୍ଡକାବ୍ୟରେ ବିଶ୍ୱରୂପ ଦର୍ଶନକୁ କିଞ୍ଚିତ୍ ସାକାର କରାଇଲି । ଶବରୀ ରାମାୟଣର ଚରିତ୍ର, ମାତ୍ର ବ୍ରହ୍ମ ଅସ୍ତିତ୍ୱର ପୃଷ୍ଠଭୂମିରେ ବିଶ୍ୱରୂପଦର୍ଶନ ହିଁ ବିଶେଷଦର୍ଶନ ।

ବଡ଼ ବଡ଼ କବିଏ କହିଲେ ମୁଁ ଏଇ ସ୍ଥିତ ଜଗତର ବାହାରେ ଏକ ଭିନ୍ନ ଜଗତ ତିଷ୍ଠିଥିବାର ସନ୍ଧାନ ଦିଏ । ନିଜ ଭିତରୁ ବାହାରି ଯାଏ ଓ ସେହି ଭିନ୍ନ ଜଗତରେ ଆତଯାତ ହୁଏ । ଜାଣି ଜାଣିତ ଏପରି କରେ ନାହିଁ ବୋଧେ । ଗୋଟେ ନିର୍ଜ୍ଜନ ମନଭିତରେ ନୂଆଗୋଟେ ଜଗତକୁ ନିଶ୍ଚୟ ଖୋଜେ, ଘାରିହୁଏ ତାହାରି ପାଇଁ । ତେବେ ପୁରାଣକଳ୍ପ ମୋର କେତେକ କବିତାର ଆଧାର । ଏମିତିରେ 'ଶବରୀ' ଏକ ପୁରାଣ କଳ୍ପ -ନିର୍ଭର ଖଣ୍ଡକାବ୍ୟ । ସେଥିରେ ବିଶ୍ୱରୂପ ଦର୍ଶନର ବର୍ଣ୍ଣନା ଦେଖି ମୁଁ ନିଜେ ବିସ୍ମୟାଭିଭୂତ ହୋଇଛି । କିପରି ଏସବୁ ଲେଖିପାରିଲି ? "ନିଆଁର ବିଶାଳ ଦାନ୍ତ / କୋଟି କୋଟି ଜିହ୍ୱା / ଜ୍ୱାଳାମୟ ମୁଖରବିବର / ସହସ୍ରବାହୁ / ବାହୁରେ ଦିବ୍ୟ ଅଳଂକାର ।" ଯେ କାହାର ଚିତ୍ର ? କୁରୁକ୍ଷେତ୍ରରେ କୃଷ୍ଣଙ୍କର 'ବିଶ୍ୱରୂପ'ର ଏକ ଅଂଶ । ଏହା ବ୍ୟତୀତ ମୋ କବିତାରେ ମିଥ୍ ସହ ଲୋକକଥା ମଧ୍ୟ ପ୍ରକୀର୍ତ୍ତିତ । ପୂର୍ଣ୍ଣ ମିଥ୍ ଅପେକ୍ଷା ଆଂଶିକ ମିଥ୍‌ର ବିଜୁଳି ପରି ତତ୍‌କ୍ଷଣାତ୍ ସ୍ପର୍ଶରେ ମୋ କବିତା ମୋତେ ଅଧିକତର ଆକର୍ଷଣୀୟ ମନେହେଲା, ଯେମିତି - "ରଥ ଦୌଡ଼ିଚି ଆକାଶର / ଏପାରି ସେପାରି / ଈଶ୍ୱରଙ୍କ ତଳିପା ପରି / ହରିଣର କାନପରି ପଣ୍ଡିମାଶା ନାଲି ।" (କହି ନ ହେଲେ) କିମ୍ବା "କହି ନ ହେଲେ କଥା ବୋଧେ ଅମର ହୋଇଯାଏ ।"

ମୁଁ ବୁଝି ସାରିଚି ଯେ, "ବଞ୍ଚି ହୁଏନା କି ମରିହୁଏନା / କବିତାକୁ ଛୁଁରିହେଲେ ।" ମୋର ସାଂସାରିକତା ଓ କବି କର୍ମର ସୂଚନା "କବି ହେବା ମାନେ କ'ଣ ?" "ଭାତ ବାଡୁବାଢୁ / ରନ୍ଧାଘର ଝର୍କା ସେ ପଟେ / କଅଁଳ କଦଳୀ ଭଣ୍ଡାଟେ ପରି/ ବାହାରି ଆସୁଥିବା ଜହ୍ନକୁ ଚାହିଁ ରହିବା/ ସାନଝିଅ ମୁଣ୍ଡରେ ରିବନ୍ ବାନ୍ଧି ଦଉଦଉ ଚମକି ପଡ଼ିବା / ଏଣେ ତେଣେ ଅନାଇଁ / କ'ଣ ଗୋଟେ ଖୋଜିହବା ।" ହେଉଛି କବିର ଦୈନନ୍ଦିନ ବିଡ଼ମ୍ବନା । ଦୈନନ୍ଦିନ ଜୀବନ କବିତାଦ୍ୱାରା ଆବେଗଗ୍ରସ୍ତ । ଅଳ୍ପ ବୟସରୁ ଅପର୍ଯ୍ୟାପ୍ତ ଗୃହଜଞ୍ଜାଳ, ଚାକିରି, ପାରିବାରିକ ସମସ୍ୟାକୁ ନେଇ ସନ୍ତୁଳିତ ମୋର ଅନ୍ତରାତ୍ମା ବିଷାଦର ସ୍ୱର ତୋଳିଛି । ପରବର୍ତ୍ତୀକାଳରେ ଜୀବନର ଉଲ୍ଲାସ, ପ୍ରେମ, ଆଧିଭୌତିକତାର ସ୍ପର୍ଶ ମୋତେ ଉଜ୍ଜୀବିତ କରିଛି । ଯେମିତି "ଗୋଧୂଳିର ନକ୍ଷତ୍ର ପରି / କଅଁଳି ଆସୁଥିବା/ ଆଶା ଆଡ଼କୁ ଅନାଅ / ଅନ୍ଧାର ସବୁକିଛି ନୁହଁ ।" (ଉଇଁବାର ବେଳ)

କହିବାର ବାଗ, ବକ୍ତବ୍ୟ ଓ ପ୍ରକାଶଗତ- ପରିମିତତା ମଧ୍ୟରେ ସମନ୍ୱୟ ସାଧନା କରିବା ଦିଗରେ ମୁଁ ଯତ୍ନନିଏ । ଉପରୋକ୍ତ ତିନୋଟି ଯାକ ପରସ୍ପର ସମନ୍ୱିତ ହୋଇ, ଅଥଚ ପ୍ରତ୍ୟେକ ଅନ୍ୟର ଉପସ୍ଥିତିକୁ ପାସୋରି ଗଲେ ହିଁ କବିତାରେ ଆତ୍ମା ପ୍ରତିଷ୍ଠିତ ହୁଏ । ଏହା ମୋର ସଂକଳ୍ପ । କବିତା ହେଉଛି ମାନବାତ୍ମା ନିମିତ୍ତ ସଞ୍ଚିତ ମଧୁ । ଏହା ମତରେ, ଆନନ୍ଦ ଦିଏ ଅମାପ । ମୁଁ ଭାବେ, ଅନଭିବ୍ୟକ୍ତ କବିତା ଶୂନ୍ୟରେ ରହିଥାଏ । ସୁପ୍ରସ୍ଫୁଟ କବି ଅନ୍ତର ଭିତରକୁ ଓହ୍ଲାଇଆସେ । ଏହ ସତ କି ନୁହେଁ କିଛି ପ୍ରାମାଣିକତା ନାହିଁ । ଯଦିଚ କବିତା କ'ଣ ମୁଁ ତାହା ସଠିକ୍ କହିପାରିବି ନାହିଁ । କାରଣ ମୋର ଅବବୋଧ

ଆଂଶିକ ବୋଲି ମୋର ମନେହୁଏ । ଅନଭିବ୍ୟକ୍ତ, ଶୂନ୍ୟଚାରୀ ସେ କବିତାକୁ ମୁଁ ଆହ୍ୱାନ କରିଛି । ନାରୀଟିଏ ଶୂନ୍ୟକୁ ହାତ ବଢ଼ାଇ ଯାଚନାର ମୁଦ୍ରାରେ ଠିଆ ହୋଇଥିବାର ମୁଁ ପ୍ରତ୍ୟକ୍ଷ କରିପାରିଛି । କୋଉ ଶତାବ୍ଦୀରୁ କବି କଳାକାର ନିମିତ୍ତି ପ୍ରେରଣା ଆସେ । କିଏ ଡାକି ଦେଇ କହେ- 'କିଛି କହିଯାଆ' ଆସେ, ଅନ୍ଧାରରୁ ହୁଏତ, କବିର ଅନ୍ଧକାରାଛନ୍ନ ଅନ୍ୟ ସ୍ଥିତିରୁ, ଯେଉଁ ସ୍ଥିତି ଜହ୍ନର ଆରପାଖ ପରି ଅନ୍ଧାରମୟ, ସେହିଠାରୁ ଯେ ଡାକ ଉଚ୍ଚାରିତ ହୁଏ । ଏହି ଆଶ୍ଚର୍ଯ୍ୟ ସୁନ୍ଦର ପ୍ରେରଣାରେ ବିସ୍ମିତ ନ ହୋଇ, ସେହି ଅନଭିବ୍ୟକ୍ତକୁ ନୂଆଶୈଳୀରେ ବାନ୍ଧି ରଖିବାକୁ ମୁଁ ପ୍ରଯତ୍ନ କରିଥାଏ କେବେ ତତ୍କାଳରେ ବା ଚେବେ ଚେତନା ମଧ୍ୟରେ । ସଞ୍ଚିତ ସେ ସୁକୁମାର ମୂର୍ତ୍ତି କାଗଜ ଉପରକୁ ଓହ୍ଲାଇ ଆସିଲେ, ମୁଁ ବିଭୋର ହୁଏ, ପୁଣି କେବେ ମନ ଭାଙ୍ଗିଯାଏ ।

- "ନା'-ଯେ ନୁହେଁ, ନୁହେଁ ।"

ଗତବର୍ଷ ମୋ କବିତା ସମ୍ପର୍କରେ ଦିଲ୍ଲୀଠାରେ, ସାହିତ୍ୟ ଏକାଡେମୀ ହଲ୍‌ରେ ଗୋଟିଏ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଏଥିରେ ଅତିଥି ଭାବେ ସରସ୍ୱତୀ ସମ୍ମାନପ୍ରାପ୍ତ ବିଶିଷ୍ଟ ଓଡ଼ିଆ କବି ଡଃ ଜଗନ୍ନାଥ ପ୍ରସାଦ ଦାସ କହିଥିଲେ, ଯେ, "ପ୍ରତିଭା ନିଜ କାବ୍ୟ ସାଧନାକୁ, ରଚନାକୁ ପ୍ରତିଷ୍ଠିତ କରି ଓଡ଼ିଆ ସାହିତ୍ୟରେ ଆଜିଯାଏଁ ଚଳିଆସିଥିବା ଜନାନା କମ୍ପାର୍ଟମେଣ୍ଟକୁ ଅଚଳ କରିଦେଇଛନ୍ତି ।" ପ୍ରକୃତରେ ଏ ଯୁଗରେ 'ମହିଳାମହଲ'ର ଆବଶ୍ୟକତା କ'ଣ ? ଏବେ ତ ନାରୀମାନେ ଲେଖକମାନଙ୍କଠାରୁ ସାହିତ୍ୟ କ୍ଷେତ୍ରରେ ଆଦୌ କମ୍ ନୁହନ୍ତି । ସ୍ଥଳବିଶେଷରେ ଅଧିକ ଯୋଗ୍ୟତା ରଖନ୍ତି । ସେହି ଆଲୋଚନା ଚକ୍ରରେ ଜ୍ଞାନପୀଠ ପୁରସ୍କାର ବିଜେତା ଡଃ କେଦାରନାଥ ସିଂ କହିଥିଲେ, "ନାରୀର ଅନ୍ତର୍ବେଦନା, ପୀଡ଼ା ଓ ସାହସିକତାର ଚିତ୍ରଣରେ ପ୍ରତିଭାଙ୍କ କବିତା ତଥାକଥିତ ନାରୀବାଦକୁ ନିଷ୍ପ୍ରଭ କରିପକାଉଛି ।" ମୋର କାବ୍ୟସାଧନାପାଇଁ ଏହା ଖୁବ୍ ଉତ୍ସାହପ୍ରଦ ଥିଲା ।

ଅନେକ ସମୟରେ ଅବିଚାରୀ ଈଶ୍ୱରଙ୍କ ବିପକ୍ଷରେ ମୁଁ କବିତା ମାଧ୍ୟମରେ ସ୍ୱର ତୋଳେ । ଠିଆ ହୋଇଯାଏ ତାଙ୍କ ବିପକ୍ଷରେ । କିନ୍ତୁ ଈଶ୍ୱର ବିପକ୍ଷବାଦୀଙ୍କୁ ସହ୍ୟ କରିପାରନ୍ତି ନାହିଁ । ଅତଏବ ମୁଁ କଠୋରତମ ଦଣ୍ଡ ଭୋଗେ । ସେ ଦଣ୍ଡଭୋଗ ସରିବ ନାହିଁ । ତେବେ ମୋ କବିତା ପଂକ୍ତିଗୁଡ଼ିକର ଶବ୍ଦ ଓ ଶବ୍ଦ ମଧ୍ୟରେ ଉହ୍ୟ ରହିଥିବା ନୀରବତାକୁ ବାଙ୍‌ମୟ କରିବାକୁ ମୁଁ ଲାଗିପଡ଼ିଥାଏ ।

କିନ୍ତୁ, ସତକୁ ସତ, ତା' କ'ଣ କରିପାରେ ? କବିତାକୁ ମୁଁ ମୋ ପ୍ରାଣ ଭଳି ଆଲିଙ୍ଗନ କରେ - ମାତ୍ର ସେ ମୋଠାରୁ ଖସିପଳାଏ ଥରକୁ ଥର ।



# ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଦତ୍ତ ବକ୍ତବ୍ୟ

ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଲିପି ହେମ୍ବ୍ରମଙ୍କ ସ୍ମୃତି ପରିଷଦର ମିଳିତ ଆୟୋଜନରେ ଉପସ୍ଥିତ ମଞ୍ଚାସୀନ ବିଭାଗୀୟ ମୁଖ୍ୟା, ସ୍ମୃତି ପରିଷଦର ଡଃ ରୁଦ୍ରନାରାୟଣ, ଅନ୍ୟତମ ଅତିଥି ନାଟ୍ୟକାର ଓ କବି ପ୍ରଫେସର ଡଃ ନୀଳାଦ୍ରି ଭୂଷଣ ହରିଚନ୍ଦନ, ସମ୍ମୁଖରେ ଉପସ୍ଥିତ ବିଦ୍ୱାନ୍ ପ୍ରଫେସର ଗଣ ଓ ମୋର ପ୍ରିୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଛାତ୍ରଛାତ୍ରୀ ସମୂହ-

ମୁଁ ପ୍ରଥମେ ଲିପିଙ୍କ ସ୍ମୃତିପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

କବିତା ବିଷୟରେ କହିବାର ଆଦିଅନ୍ତ କାହିଁ ? ଆରମ୍ଭ କରିବି କେଉଁଠୁ ଓ ଶେଷ କରିବି କେଉଁଠାରେ ମୁଁ ନିଜେ ସନ୍ଦିହାନ । କବିତାର ସମ୍ପର୍କରେ ବକ୍ତବ୍ୟ ଦିଗନ୍ତବିସ୍ତାରୀ, ପୁଣି ଅନ୍ୟପକ୍ଷରେ ଧାଡ଼ିଏ ବି କହିବା ସହଜ ନୁହେଁ । ତେବେ କବିତା ସହିତ ଦୀର୍ଘକାଳ ମଜ୍ଜି ରହିଥିବାରୁ, କିଛି ନିଜସ୍ୱ ଅନୁଭବ, କିଛି ବକ୍ତବ୍ୟ ତ ରଖିବି ନିଶ୍ଚୟ । ତା' ସହିତ ଛୋଟ କବିତାଟିଏ ପଢ଼ିବି ।

୧୨ ବର୍ଷ ବୟସରୁ ମୋର କବିତାଲେଖା ଆରମ୍ଭ- ରେଭେନ୍ସା କଲେଜ ବିଜ୍ଞାନ ଶ୍ରେଣୀରେ, ନାମ ଲେଖାଇଲାବେଳକୁ ଅଧିକାଂଶ ପ୍ରଫେସର ଓ ଛାତ୍ରଛାତ୍ରୀ ମତେ କବି ବୋଲି ଜାଣିଗଲେଣି । ନିଜକୁ ଦିନେ ପ୍ରଶ୍ନ କଲି, ସତେରେ, ମୁଁ କବି ପାଲଟି ଯାଇଛି ନା' କଅଣ ? ମୋ ସାମ୍ନାରେ, ଅତି ନିକଟରେ ଠିଆ ହୋଇ ଜଣେ କହିଲା, "ହଁ, ମୁଁ କବି ।" ଏହା ମୋର ଅନ୍ତର୍ଗତ ଅସ୍ତିତ୍ୱ ନିଶ୍ଚୟ । କବିତା ସରୋବରରେ ପାଦ ରଖୁରଖୁ ତା' ମୋତେ ଟାଣି ନେଲା କ୍ରମଶଃ ଗଭୀରରୁ ଗଭୀରକୁ । ସରୋବର ମୋତେ ଭିଡ଼ି ଧରିଲା ଓ ମୁଁ ମଧ୍ୟ ତା' ଭିତରୁ ଉଠିବାକୁ ଚାହିଁଲି ନାହିଁ- କଲମରୁ କାଗଜ ଉପରକୁ ଓହ୍ଲାଇବାରେ କବିତା କମ୍ ସମୟ ନିଏ । ମାତ୍ର ପୃଷ୍ଠପଟରେ ବହୁ ଅନୁଭବ, ଆବେଗ, ଶବ୍ଦଚୟନ ଇତ୍ୟାଦି ରହିଥାଏ । କବିତା ନିଶ୍ଚୟ ସତ୍ୟ ପ୍ରକଟ କରେ । କିନ୍ତୁ ସତ୍ୟଟି କଅଣ ? ଆମ ଆଖି ଦେଖା ଜଗତରେ ଯାହା ଦିଶେ, ତାହାହିଁ କ'ଣ ସତ୍ୟ ? ଏହା ବ୍ୟତୀତ ଆଖି ଆଢୁଆଳର ସତ୍ୟ ମଧ୍ୟ ଆହୁରି ଉଜ୍ଜ୍ୱଳ ଓ ନମନୀୟ । ବଜାର ବିକାକିଣା, ରାଜନୀତି ବକ୍ତୃତା, ନେତାର ଛନ୍ଦ କପଟ ଏସବୁର ଭାଷା ଓ ଶବ୍ଦ, କବିତାର ଶବ୍ଦ ନୁହେଁ । ଶବ୍ଦ କି ଭୟଙ୍କର ଦଗାବାଜ, -ଧରାଦିଏ ନାହିଁ, ସହଜରେ । ଦେବୀ ସରସ୍ୱତୀ, ବଡ଼ ଅଭିମାନୀ । ତୁମେ ଆପଣାର ମନ ଧ୍ୟାନ ତାଙ୍କଠାରେ ସମର୍ପି ନ ଦେଲେ, ସେ ଆଡ଼େଇ ଚାଲିଯାଆନ୍ତି ।

କବିଟିଏ ଶବ୍ଦ ଖୋଜେ ଛଟପଟ ହୁଏ- ଅନ୍ଧାର ଘରେ ଅଣ୍ଡାଳି ହୁଏ - ଧେତ୍ ହେଲାନି, ଚନ୍ଦ୍ର ଆରପାରିର ଅନ୍ଧାରରୁ ଡାକ ଆସେ କିଛି ଲେଖ୍ । କବିର ଜୀବନ - A poet's life is long and lovely suicide-Oscar Wilde. Eliot କହନ୍ତି "କବିତାର ଉଦ୍ଦେଶ୍ୟ ହେଉଛି ରକ୍ତକୁ ସ୍ୟାହିରେ ପରିଣତ କରିବା ।" ବକ୍ତବ୍ୟ, ଶୈଳୀ, ପରିମିତତା ଯଦି ଏକ ଭୂମିରେ ରହିଲେ ପୁଣି ପରସ୍ପରର ଉପସ୍ଥିତି ଭୁଲିଗଲେ, ତେବେ କବିତାରେ ପ୍ରାଣପ୍ରତିଷ୍ଠା ହୋଇଥାଏ । କବିର ନିର୍ଜ୍ଞାନ ମନରୁ ସୃଜନ ହୋଇଥାଏ - poet creates from no mind, from inner stillness.

"love makes a man a poet." Plato କହିଥିଲେ ।

କବିତା ମାନବିକତାକୁ ତ୍ୱରାନ୍ୱିତ କରେ- ଜୀବନ ଆଡ଼କୁ ପ୍ରବାହିତ ମୃତ୍ୟୁର ବିଷାକ୍ତ ସ୍ରୋତକୁ କବିତାର ଅନ୍ତଃଶକ୍ତି ସୁବର୍ଣ୍ଣ ସ୍ରୋତରେ ପରିଣତ କରେ । କବିତା ଲେଖିଲେ ଯନ୍ତ୍ରଣା ସହିବାକୁ ପ୍ରସ୍ତୁତ ରହ । ଶବ୍ଦ ହୃଦୟରୁ ହୃଦୟକୁ ଲମ୍ଫ ଦିଏ ।



# ଶବରୀଙ୍କ ଜୀବନଚର୍ଯ୍ୟା

ଶବରୀ କାବ୍ୟର ପୃଷ୍ଠବନ୍ଧ 'ଆମୋକ୍ଷ ତପ'ରେ ମୁଁ କାବ୍ୟର ପୃଷ୍ଠଭୂମି ଉପରେ ଅଳ୍ପ କିଛି ଲେଖିଛି । ସେଥିରେ କହିଛି, ଅଗଣାରେ ମାଟିତାଡ଼ି ଜିଆଟିକୁ ଘୁଷୁରୁଥିବା ଦେଖି ସେ ମୋର ମନେପଡ଼ନ୍ତି । ମୁଁ ଆଉ କ'ଣ କି ? ଏଇ ଜିଆଟେ ତ, ଘୁଷୁରୁଛି, ଦିନେ ଲୀନ ହୋଇଯିବି । ମାତ୍ର ପରକ୍ଷଣରେ ଜିଆ ଭଳି ଏକ ନ୍ୟୂନ ଜୀବନ ସହିତ ମଣିଷକୁ ଏକାକାର କରି ବିଚାରି ପାରିଲି ନାହିଁ । ଅଥଚ ମୁଁ ବୁଝିଲି ଯେ ସେ ଓ ମୁଁ ଅଲଗା ନୋହୁଁ । ସମୟର ଦୂରବର୍ତ୍ତୀ ୨ଟି ବିନ୍ଦୁରେ ଠିଆ ହୋଇଥିବା ସେଇ ଗୋଟିଏ ସତ୍ତା, ତା'ର ପ୍ରତୀକ୍ଷା, ତାହା ଉପଲବ୍ଧି (realisation) ଅବିକଳ ଏକାପରି ।

ତାଙ୍କ ବିଷୟରେ ଲେଖିବି ଭାବି ଭାରତର ଯେତେକ ରାମାୟଣ ଧୁନ୍ଦି ପକାଇଲି କୃତ୍ତିବାସ, କମ୍ବନ୍, ତୁଳସୀ ଦାସ, ବାଲ୍ମୀକି, ଜଗମୋହନ ରାମାୟଣ ସବୁ ମଗାଇଲି ଖୋଜି ପକାଇଲି । କିଛି ବିଶେଷ ପାଇଲି ନାହିଁ । ମନରେ କ୍ଷୋଭ ଆସିଲା । ସବୁ ରାମାୟଣକାର ଶବରୀଙ୍କ ଭକ୍ତି ବିଷୟରେ ଧାଡ଼ିଏ ହୁଏତ ଲେଖିଛନ୍ତି ମାତ୍ର ବିଶେଷ କିଛି ନାହିଁ । ମନରେ କ୍ଷୋଭ ଆସିଲା । ତଥାକଥିତ ଶିକ୍ଷାରହିତ, ବନତାପସୀ ବିଷୟରେ ସମସ୍ତେ ମୂକ ? କ'ଣ ପାଇଁ ? ସେ ନାରୀ ବୋଲି ? ଯେହେତୁ ଅନ୍ୟ ରାମାୟଣକାର ପ୍ରାୟ ନୀରବ, ମୋର କଳ୍ପନା ଯଥେଷ୍ଟ ସୁଯୋଗ ପାଇଗଲା । ବାଲ୍ମୀକି ଲେଖିଥିଲେ, "ମୟାତୁ ବିବିଧଂ ବଣ୍ୟଂ ସଞ୍ଚିତଂ ପୁରୁର୍ଷଷଭ / ତବାର୍ଥେ ପୁରୁଷ ବ୍ୟାଘ୍ର ପମ୍ପୟା ସ୍ତୀର ସଂଭବମ୍ ।" କବି ବଳରାମ ଲେଖିଲେ, 'ପମ୍ପା' ସରୋବର ଯେ ଦେଖିବ ଯାଇ ବାଟେ । / ଶବରୀ ଯତି ଅଛନ୍ତି ତହିଁର ନିକଟେ ।" ଏତିକି ପୁଂଜି । ମାତ୍ର ମୋର କଳ୍ପନା ବିସ୍ତାରିଗଲା ।

ବହୁଦିନରୁ ବନବାସୀଙ୍କ ଦୁଃଖ, ଦୁର୍ଦ୍ଦଶାସହ ଏକାତ୍ମ ହୋଇ ଚଳି ଆସିଥିବା ଶବରୀଙ୍କ ମନରେ ଭାବାନ୍ତର ଜାତ ହେଲା । ଯେ ରାମଚନ୍ଦ୍ର, ନିଜ ରାଜ୍ୟରୁ ବିତାଡ଼ିତ, ପତ୍ନୀ ଅପହୃତା, ଦୁଃଖ ଜର୍ଜର ହୋଇ ବନଜଙ୍ଗଲରେ ଖୋଜି ବୁଲୁଛନ୍ତି । ଯେ ମୋତେ କ'ଣ ଦେଇପାରିବେ, ମୋକ୍ଷ ? ଜନ୍ମ ବନ୍ଧନରୁ ମୁକ୍ତି ? ନା, ଶବରୀ ତାହା ଚାହିଁଲେ ନାହିଁ । ମୋକ୍ଷ ତାଙ୍କର ଲୋଡ଼ା ନାହିଁ । ଏହି ବନବାସୀଙ୍କ ଦୁଃଖସୁଖର ସହଭାଗୀ ହୋଇ ସେ ତାଙ୍କ ଜୀବନ ବିତାଇବେ । ରାମଚନ୍ଦ୍ରଙ୍କୁ ଏକ ସ୍ଥାନରେ ସେ ପରମପୁରୁଷ ରୂପେ ଚିତ୍ରାୟିତ

କରିଛନ୍ତି । କିନ୍ତୁ ଧୂଳିର ଧରଣୀ ଉପରେ ସେ ସେହି ପରମଙ୍କ ନାମ ଲେଖିଦେଇଯିବେ । 'କ୍ଷୁଧା' ଓ 'ଯୁଦ୍ଧ'କୁ ନେଇ ଏଥିରେ ଦୁଇ ଗୋଟି କବିତା ରଚିତ ହୋଇଅଛି । ସେ ୨ଟି ମଣିଷର ଅସହାୟତାକୁ ଉତ୍‌କୀର୍ଣ୍ଣ କରିଛି । ମାତ୍ର ଶବରୀ ମୋକ୍ଷଠାରୁ ଅଧିକ ମୂଲ୍ୟ ଦେଇଛନ୍ତି ମାନବିକ ସଂବେଦନଶୀଳତାକୁ । ଚରିତ୍ର ଓ ଆଚରଣରେ ସେ ଜୀବନକାମୀ ।

ଶବରୀ ବନତାପସୀ ହେଲେହେଁ କେବଳ ଭକ୍ତିମତୀର ସମର୍ପଣ ନୁହେଁ ସେ ରାମଚନ୍ଦ୍ରଙ୍କୁ ଅନୁରାଗାତ୍ମିକ ଦୃଷ୍ଟିରେ ଦେଖିଛନ୍ତି । ସୂର୍ପଣଖାକୁ ଦଣ୍ଡିତ କରିଥିବା, ସକଳ ମୁନି ଋଷିଙ୍କୁ ତ୍ୟାଗ କରି ଆସିଥିବା ଏହି ମହାବୀର ରାଜପୁତ୍ରଙ୍କୁ ସେ ସ୍ନେହଶୀଳ, ନିରହଂକାର ଭାବେ ଆଉଥରେ ଜନ୍ମ ଦେବାର ଆଶା ପୋଷଣ କରିଛନ୍ତି । ଏହାହିଁ ତାଙ୍କ ନାରୀତ୍ୱର ଅନ୍ୟ ଏକ ବିଶେଷତ୍ୱ । ଏହି ସମ୍ପର୍କରେ କାବ୍ୟଟିର ପୃଷ୍ଠପ୍ରଚ୍ଛଦ (୧ମ, ୨ୟ ଓ ୩ୟ ସଂସ୍କରଣ) ରେ ଉଲ୍ଲେଖ ଅଛି ।



# କବିତାର ସତ୍ୟ

କବିତା ଯେଉଁ ସତ୍ୟ ପ୍ରକଟ କରେ, ସେ ସତ୍ୟର ସ୍ୱରୂପ କେଉଁପରି ? ଯାହା ଘଟି ସାରିଛି, ଯାହା ଆମେ ଦେଖିସାରିଛେ, କ'ଣ ଏହାହିଁ ? ନା, କବିତାର ସତ୍ୟ ଏହା ମାତ୍ର ନୁହେଁ । କବିତାର ସତ୍ୟ ଏହାଠାରୁ ଭିନ୍ନ । ଏହି ସତ୍ୟ କାବ୍ୟ-ଭାଷା ମାଧ୍ୟମରେ ପ୍ରକଟିତ ହୁଏ । ଏହି ଭାଷା ସାଧାରଣ କଥାବାର୍ତ୍ତା, ସମାଚାର, ସମ୍ବାଦ, ଦୋକାନବଜାର ଭାଷାଠାରୁ ପୃଥକ୍ । କାବ୍ୟଭାଷାରେ କବିତାର ବକ୍ତବ୍ୟର ଗୋଟିଏ ବିଶେଷ ସଂକେତ ରହିଥାଏ । ଏହା ପାଠକକୁ ଏକ ବୃହତ୍ତର ସଂକେତ ଦିଏ । ଯାହା ପାଠକ ହୃଦୟରେ ଲିପିବଦ୍ଧ ହୋଇଯାଏ । ଏହା ମଧ୍ୟ କୁହାଯାଏ କବିତା ସତ୍ୟକୁ ଗୁପ୍ତ ରଖେ ଓ ଏହାକୁ ଆବିଷ୍କାର କରିବା ନିମିତ୍ତ ପାଠକକୁ ଉତ୍ସାହିତ କରେ । ଏହି ଗୁଂଫିତ ଭାବ ନିମିତ୍ତ କବିତା ଆଦିରୂପ (metaphor) ପ୍ରତୀକ, ରୂପକକୁ, ଯାହାକୁ ଆମେ ବକ୍ରୋକ୍ତି କହୁ, ତାହାକୁ ହିଁ ଆବଶ୍ୟକ କରିଥାଏ । କବିତାର ସତ୍ୟ ଏକ ରୂପାନ୍ତରିତ ସତ୍ୟ, ଯାହା ବାସ୍ତବଜଗତର ସତ୍ୟଠାରୁ ଅଧିକ ଶକ୍ତିଶାଳୀ, ଆୟୁଷ୍ମାନ୍ ଓ ଅପରାଜେୟ ରହିଥାଏ ।

ଏପରି ବି ହୁଏ, କବି ବନ୍ଦ କୋଠରିର ଅନ୍ଧାର ଭିତରେ କବିତାକୁ ଖୋଜୁଥାଏ । କେବେ ପାଏ ତ କେବେ ପାଏ ନାହିଁ । ନ ପାଇଲେ ଆଖିରୁ ନିଦ ଉଭାନ୍ ହୋଇଯାଏ । ଏପରି ଏକ ସ୍ଥିତିରୁ କୋଉ କବି ଭଲା ରକ୍ଷା ପାଇପାରେ ? ଏହି ଅନ୍ଧାର କୋଠରିରେ ଘୁଷୁରୁଥିବା ବେଳେ ସେ ଭୁଲିଯାଏ କି, ତା' ବାହାରେ ଏ ସଂସାର ନିଜ ନିୟମ ଅନୁସାରେ ଚାଲୁଛି । ତଥାପି, ସେ ସବୁ ସମୟ ଚୋରାଇ ନେଇ କବିତାଠାରେ ମଗ୍ନ ହୋଇଯାଏ । ଏହି ପ୍ରକ୍ରିୟାରେ କବି କଠିନ ଅସହାୟତା ଭୋଗେ ।

କବିତାର ଭାବ ଓ ନିର୍ମାଣକୁ ଅଲଗା ଅଲଗା କରିହୁଏନା । ଶବ୍ଦ ଏକ ଶୃଙ୍ଖଳା । ଯଦି ଉଦ୍ଦେଶ୍ୟମୂଳକ ହୋଇ, ଆପଣା ନିଜସ୍ୱ ଅଧିକାର ବିସ୍ତାର କରିଲା, ଯେମିତି ଏହା ପ୍ରାଣହୀନ, କ୍ଲାନ୍ତିକର ମନେହୁଏ । ବାସ୍ତବରେ ଶବ୍ଦର ଶକ୍ତି ଅଛି, ଏହା ଜଳେ, ଜଳାଇ ବି ଦେଇପାରେ, ଶବ୍ଦ ଜଳଧାର ପରି ବହିପାରେ । ପୁନଶ୍ଚ ଚୁମ୍ବନଟିଏ ବି ଦେଇପାରେ । କବିର, କ'ଣ କହିବ, ତାହା ନୁହେଁ, କିପରି କହିବ ତାହା ହିଁ ମୁଖ୍ୟ ପ୍ରୟାସ । ଏଇଥିପାଇଁ କବି ଅଂଧାରରେ ଛଟପଟ ହୁଏ । ଭାବ ଯଥାର୍ଥ, ହେଲେ

ମଧ୍ୟ ଶବ୍ଦର ତୀକ୍ଷ୍ଣତା ଓ କଳାକୌଶଳ କବିତା-ନିର୍ମାଣ ନିମିତ୍ତ ଜରୁରୀ । କାରଣ କବିପାଇଁ କବିତା ଗୋଟିଏ ଉଦ୍ଦେଶ୍ୟ ନୁହେଁ, ଏକ ତୀବ୍ର ଅନୁଭବ – ପ୍ରେମର, ଘୃଣାର, କ୍ରୋଧର ବି ହୋଇପାରେ । ଭଲ କବିତାଟିଏ ଆରମ୍ଭ କଲାବେଳକୁ ତା'ର ଶ୍ୱାସପ୍ରଶ୍ୱାସ ଶୁଭିଯାଏ । ଶକ୍ତିଶାଳୀ କବିତା ଶବ୍ଦଠାରୁ ଶବ୍ଦକୁ ପଂକ୍ତିଠାରୁ ପଂକ୍ତିକୁ, କବିଠାରୁ ପାଠକ ଉପରକୁ କୁଦିପଡ଼େ । ଏସବୁ ଉଚ୍ଚସ୍ୱରରେ ଶୁଭେ ନାହିଁ । ଏହି କବିତା ଲୋକଗହଳିକୁ ପାଗଳ କରି ନ ପାରେ । ତଥାପି ଚୁପ୍‌ଚାପ୍ ନିଜର ଝଲକ ଦେଇପାରେ । ଏକ ବିଶାଳ ଅନ୍ଧାର ଭିତରେ ବୁନ୍ଦା ବୁନ୍ଦା ହୋଇ ଝରିପଡୁଥାଏ । ବିଶାଳ ଆକାଶ, ସମୁଦ୍ରର ଗଭୀର ପ୍ରଦେଶ ତଥା ସମଗ୍ର ପୃଥ୍ୱୀକୁ କବିତା ନିଜ ଭିତରେ ଏକୀଭୂତ କରିପାରେ ।

[ 'World Poetry Day' ରେ ଦିଲ୍ଲୀ ସାହିତ୍ୟ ଏକାଡେମୀ ସମ୍ମାନରେ ସଭାପତି ଭାବେ ପ୍ରଦତ୍ତ ହିନ୍ଦୀ ଭାଷଣର ଓଡ଼ିଆ ପ୍ରରୂପ ]



# ପଦ୍ମଭୂଷଣ କବି ରମାକାନ୍ତ ରଥଙ୍କ

## [ 'ଶ୍ରୀପଳାତକ' ଓ ମିଥ୍ ଚେତନା ]

କାଳେ କାଳେ କାବ୍ୟାଲୋଚନାର ନିର୍ଦ୍ଦିଷ୍ଟ କିଛି ଆଦର୍ଶ ରହିଥାଏ ଓ ଏକ ନିରପେକ୍ଷ କଷଟି ମଧ୍ୟ ରହିଥାଏ । ନାନା ମୁନିଙ୍କର ନାନା ମତ ସବୁକାଳେ ରହିଆସିଛି – ତଥାପି ସାହିତ୍ୟକୃତିର ଯୋଗ୍ୟତା ଓ ଉତ୍କର୍ଷର ଏକ କଷଟି ମଧ୍ୟ ରହିଛି, ଯେଉଁଥିରେ ସାହିତ୍ୟର କାବ୍ୟମୂଲ୍ୟ ପରୀକ୍ଷିତ ଓ ନିର୍ଣ୍ଣୀତ ହୋଇଥାଏ । ମାତ୍ର ସାହିତ୍ୟକୃତିର ମୂଲ୍ୟବୋଧ ଉପଯୁକ୍ତ ମନୋଭୂମିରୁ କରାଯିବା ବାଞ୍ଛନୀୟ । ଅପରପକ୍ଷରେ ଏହାକୁ ଯଦି କାବ୍ୟେତର କଷଟିରେ ପରଖାଯାଏ, ତାହା ନିଶ୍ଚୟ ଦୁର୍ଭାଗ୍ୟର ବିଷୟ ହେବ । କାରଣ ଏହାଦ୍ୱାରା କୃତିର ତଥା ସାହିତ୍ୟ ରୁଚିର ଅବମୂଲ୍ୟାୟନ ଘଟିଥାଏ । 'ଶ୍ରୀପଳାତକ'ର ସଂରଚକ କବି ରମାକାନ୍ତଙ୍କ ରଚିତ ଏହି କାବ୍ୟ ଓ ଏହାର ପୂର୍ବବର୍ତ୍ତୀ କାବ୍ୟ 'ଶ୍ରୀରାଧା'ର ଏକାଧିକ ଆଲୋଚନା ଏବଂ ସମୀକ୍ଷା ହୋଇସାରିଛି । ଗୋଟିଏ ଆଲୋଚନା ଯଥେଷ୍ଟ ବୋଲି ମନେ ହୋଇ ନାହିଁ । ଅତଏବ ଆଲୋଚକଗଣ ସ୍ୱବିଚାର ଦୃଷ୍ଟିରୁ ଏହାର ଆକଳନ କରିଛନ୍ତି । ବେଳେବେଳେ ଆଲୋଚନା ପରସ୍ପର ବିରୁଦ୍ଧାତ୍ମକ ମଧ୍ୟ ହୋଇଛି । ସେଥିରୁ ଏହା ପ୍ରମାଣିତ ହେବା ସ୍ୱାଭାବିକ ଯେ ଉପରୋକ୍ତ ଦୁଇଗୋଟି ଗ୍ରନ୍ଥ ମୂଲ୍ୟବାନ୍ । କେବଳ ମୂଲ୍ୟବାନ୍ ଗ୍ରନ୍ଥକୁ ନେଇ ମତଭେଦ ସୃଷ୍ଟି ହୋଇଥାଏ । ଏତାଦୃଶ ସମୀକ୍ଷାତ୍ମକ ଦୃଷ୍ଟିରୁ ସଂମତ ସଂଘାତ ଗଠନମୂଳକ ହେବା ସ୍ୱାଭାବିକ । ତେଣୁ ଆଲୋଚନାମାନ ପରସ୍ପର ବିରୁଦ୍ଧାତ୍ମକ ହେବା ମଧ୍ୟ ଆଦୌ ଅସ୍ୱୀକରଣୀୟ ନୁହେଁ । ବିରୁଦ୍ଧାତ୍ମକ ମୂଲ୍ୟାଙ୍କନ କାବ୍ୟକୃତିର ସାର୍ଥକ ଓ ପ୍ରସଙ୍ଗାନୁକୂଳ ପୁନର୍ମୂଲ୍ୟାୟନର ପ୍ରତିଷ୍ଠା ଦିଗରେ ସହାୟକ ହୋଇଥାଏ । ମତଭେଦର ସକ୍ରିୟତା ଦ୍ୱାରା ମତୈକ୍ୟର ବିକାଶ ସାଧିତ ହୋଇଥାଏ । ତେଣୁ ରମାକାନ୍ତଙ୍କ ମିଥ୍ଧର୍ମୀ କାବ୍ୟ 'ଶ୍ରୀରାଧା' ଓ 'ଶ୍ରୀପଳାତକ'ର ଏକାଧିକ ମୂଲ୍ୟାଙ୍କନ ହେବା ସ୍ୱାଗତଯୋଗ୍ୟ ।

'ଶ୍ରୀପଳାତକ'କୁ ପାଠକଲେ ଏହାର କାବ୍ୟ ସୌନ୍ଦର୍ଯ୍ୟ ସ୍ପଷ୍ଟ ହୁଏ । ଆଲୋଚନା କାଳରେ କାବ୍ୟ ସୌନ୍ଦର୍ଯ୍ୟ ସହ ତତ୍ତ୍ୱ ମୂଲ୍ୟ ଉଭୟକୁ ସମାନ ଗୁରୁତ୍ୱର ସହିତ ବିଚାର କରାଯିବା ଆବଶ୍ୟକ । ଏହି ପରିପ୍ରେକ୍ଷୀରେ 'ମହାଭାରତ'ର ନାୟକ କୃଷ୍ଣଙ୍କ ଜୀବନର ଅନେକ ଘଟଣା ଏହି କାବ୍ୟରେ ସୂଚନାତ୍ମକ ଭାବେ ଉତ୍କୀର୍ଣ୍ଣ ହୋଇଥିବାର ଜଣାପଡ଼ିବ । ଅଥଚ ପୃଷ୍ଠବନ୍ଧରେ କବି କୃଷ୍ଣଙ୍କ ସମ୍ବନ୍ଧରେ କିଛି ତଥ୍ୟ ପ୍ରତ୍ୟକ୍ଷଭାବେ

ଉଲ୍ଲେଖ କରି ନାହାନ୍ତି । 'ଶ୍ରୀରାଧା' କାବ୍ୟରେ ଯେଉଁ ରାଧାଙ୍କୁ ଚିତ୍ରଣ କରାଯାଇଛି, ତାହା ବୈଷ୍ଣବ କାବ୍ୟରେ ପ୍ରକୀର୍ତ୍ତିତା ରାଧା ନୁହନ୍ତି । ଏହାର ନାୟିକା ରାଧା ଜଣେ ମଧ୍ୟବୟସ୍କା ନାରୀ । ସେ ଜୀବନ ପ୍ରତି ଖୁବ୍ ସଚେତନ । ତେଣୁ ବ୍ୟର୍ଥତାର ଅବବୋଧର ଦିଗଗୁଡ଼ିକ ତାଙ୍କ ନିକଟରେ ଉନ୍ମୁକ୍ତ । ସାର୍ଥକତା ଦିଗକୁ ମଧ୍ୟ ତାଙ୍କ ଅନ୍ତଃକରଣ ଉନ୍ମୁଖ । ବୈଷ୍ଣବ ତତ୍ତ୍ୱର କିଶୋରୀ ପ୍ରେମିକା ରାଧା ସେଠାରେ ନାହାନ୍ତି । ତେବେ ପ୍ରେମର ବିଚାରରେ, ପ୍ରେମ ବିହ୍ୱଳତା ମୁଖ୍ୟତଃ କିଶୋର ମାନସର ବିହ୍ୱଳତାର ସମପର୍ଯ୍ୟାୟବାଚୀ ହୋଇପାରେ । 'ଶ୍ରୀରାଧା'ରେ ପ୍ରେମାନୁଭବ ତୀବ୍ର ଓ ଶାଣିତ, ତେଣୁ ଏହା ଏକ ପ୍ରେମକାବ୍ୟ । କିନ୍ତୁ 'ଶ୍ରୀପଳାତକ'ର ପରିସୀମା ବ୍ୟାପକ । ଏଥିରେ କାବ୍ୟନାୟକର ଦେଶ, କାଳ ପାତ୍ର ସହ ସମ୍ପର୍କର ବିବିଧତା ବର୍ଣ୍ଣିତ ହୋଇଅଛି । କାବ୍ୟନାୟକର ଆତ୍ମାବିଷ୍କାରର ଏକ ପ୍ରତ୍ୟକ୍ଷ ସ୍ୱୀକାରୋକ୍ତି ଏଥିରେ ଅଭିବ୍ୟକ୍ତ ।

'ଶ୍ରୀପଳାତକ'ରେ ବର୍ଣ୍ଣିତ ଜୀବନ ସଂଘର୍ଷ ଓ ପ୍ରେମ ମାନବୀୟ ସ୍ତରର ବୋଲି ସ୍ୱୀକାର କରିବାକୁ ହେବ । ନାୟକ ହୋଇପାରନ୍ତି ସ୍ୱୟଂ ଶ୍ରୀକୃଷ୍ଣ ବା ହୋଇପାରନ୍ତି ବିଂଶ ଶତକର ଉତ୍ତରାର୍ଦ୍ଧର ଜଣେ ସମର୍ଥ, ଅନୁଭବୀ ବ୍ୟକ୍ତି । ନିମ୍ନୋକ୍ତ ନ୍ୟାୟରେ ଉଭୟେ ଅବଲୀଳାକ୍ରମେ ଏକ ଓ ଅଭିନ୍ନ ହୋଇପାରନ୍ତି । ଶ୍ରୀକୃଷ୍ଣ ଦେବତା, ଅବତାର ଏହା ସତ୍ୟ । ଏକଥା ଯେତେ ତତ୍ତ୍ୱାନୁବନ୍ଧ ହେଲେ ହେଁ, ଦେବତା ଓ ଦେବୀଙ୍କର ଜୀବନଚର୍ଯ୍ୟା କେଉଁପରି, ତାହା ମଣିଷ ପ୍ରତ୍ୟକ୍ଷ କରିପାରେ ନାହିଁ । ସେ ଯାହା ପ୍ରତ୍ୟକ୍ଷ କରେ ତାହା ମାନବୀୟ ପ୍ରେମ, ମାନବ ଜୀବନଚର୍ଯ୍ୟା । ତେଣୁ ରାଧାକୃଷ୍ଣ ପ୍ରେମଲୀଳାର ଯେତେ ଭାବରେ ବର୍ଣ୍ଣନା ରହିଛି, ସେ ସବୁ ମାନବୀୟ, ପୁଣି ଯାହା ଅଧିକ ମାନବୀୟ, ତାହା ଅଧିକ ଆକର୍ଷଣୀୟ ହୋଇଉଠିଛି । 'ଶ୍ରୀପଳାତକ'ରେ ମିଥିକ୍ ଚରିତ୍ର ଶ୍ରୀକୃଷ୍ଣ କାବ୍ୟିକ ଉପାଦାନର ଉତ୍ସ । ଯେ କୌଣସି ସମୟରେ ମିଥ୍ ଉତ୍ସରୁ କବି ନୂତନ ଓ ସ୍ୱତନ୍ତ୍ର ଦିଗର ଉଦ୍‌ଘାଟନ କରିପାରନ୍ତି । ମିଥିକ୍ ଜୀବନଚର୍ଯ୍ୟା ଯେତେବେଳେ ମଣିଷର ସାମୂହିକ ଜୀବନଚର୍ଯ୍ୟାର ସମକକ୍ଷ ଓ ସମପର୍ଯ୍ୟାୟବାଚୀ ହୁଏ କବି ତାହାକୁ ହିଁ ପ୍ରତ୍ୟକ୍ଷ କରେ ଓ ରୂପାୟିତ କରେ । ମାନବୀୟ କଳ୍ପନାର ଅସୀମ ସୃଜନ କ୍ଷମତାରେ ମିଥ୍ ବିଶ୍ୱାସ ରଖେ । ଜଣେ ପ୍ରଖ୍ୟାତ୍ ଆଲୋଚକଙ୍କ ମତରେ- " The life of myths consists in reorganising traditional components in the face of new circumstances or correlatively in recognising new, imported components in the light of tradition." ନୂତନ ପରିସ୍ଥିତି ପରିପ୍ରେକ୍ଷୀରେ ପାରମ୍ପରିକ ଉପାଦାନର ପୁନର୍ଗଠନ କିମ୍ବା, ପରମ୍ପରାର ଆଲୋଚନାରେ ନବୀନ ତଥା ବହିରାଗତ ଉପାଦାନମାନଙ୍କର ସ୍ୱୀକୃତି ଉପରେ ମିଥିର ଆୟୁଷ ନିର୍ଭରଶୀଳ ହୋଇଥାଏ । ମିଥ୍ କାବ୍ୟଚେତନାକୁ ଦେଶକାଳର ନିଗଡ଼ରୁ ମୁକ୍ତିଦିଏ । ଅନ୍ୟ ଅର୍ଥରେ ଦେଶକାଳକୁ ଚିରନ୍ତନ ଓ ସର୍ବବ୍ୟାପକତ୍ୱର ମର୍ଯ୍ୟାଦା

ପ୍ରଦାନ କରେ । ପୁନଶ୍ଚ ମିଥ୍ ସହ ଇତିହାସର ସମ୍ପର୍କରେ ମଧ୍ୟ ଅଭିନ୍ନତା ରହିଛି । ମିଥ୍ ଓ ଇତିହାସ ଅସତ୍ୟ ବା ସତ୍ୟ ହୋଇପାରେ । ରାମାୟଣ, ମହାଭାରତ ଅବଶ୍ୟ ମିଥ୍ । କିନ୍ତୁ ଏଥିରେ ଇତିହାସ ନ ଥିବ ବୋଲି କିଏ ପ୍ରମାଣ କରିପାରିବ ? ଅତଏବ ଏଥିରେ ସତ୍ୟତା ଥିବା ଅସମ୍ଭବ ନୁହେଁ । ଏହି ପ୍ରକାର ସତ୍ୟ ଅସତ୍ୟ ସମ୍ପର୍କକୁ ଅନୁଶୀଳନ କରି ଅଭିନବ ଗୁପ୍ତ କହନ୍ତି, "ପ୍ରେକ୍ଷାଗୃହରେ ପ୍ରସ୍ତୁତ ଦୃଶ୍ୟ ଏକାନ୍ତ ସତ୍ୟ ନୁହେଁ, ଅସତ୍ୟ ମଧ୍ୟ ନୁହେଁ । ଦର୍ଶକ ସେଥିରୁ ସତ୍ୟାସତ୍ୟର ଅନୁଭୂତି ଲାଭକରିଥାଏ ।" ଏ ଯୁଗର ମିଥ୍‌ବାଦୀମାନେ ମିଥ୍‌ର ସ୍ୱରୂପରେ ସତ୍ୟାସତ୍ୟର ଏହି ଏକାତ୍ମ୍ୟ ଉପରେ ଗୁରୁତ୍ୱ ଦେଇ କଳା ଓ ମିଥ୍ ମଧ୍ୟରେ ଅଭିନ୍ନ ସମ୍ପର୍କ ପ୍ରତିଷ୍ଠା କରିଥାନ୍ତି । ଅତଏବ ଇତିହାସ ଓ ମିଥ୍ ମଧ୍ୟରେ ସଂଯୋଗ ନିବିଡ଼ । ଏହି ତାତ୍ପର୍ଯ୍ୟକୁ ପ୍ରକାଶ କରନ୍ତି ଆଲୋଚକ Trylor- "Myth is stronger than fiction, so myth may be more uniform than history." ତେବେ ଇତିହାସଠାରୁ ମିଥ୍‌ର ଅଭିବ୍ୟକ୍ତି ଅଧିକ ପରିବର୍ତ୍ତନସାପେକ୍ଷ ହୋଇପାରେ । "ଐତିହାସିକ ତଥ୍ୟ ଯେଉଁଭଳି ଭାବରେ ଥରେ ପ୍ରତିଷ୍ଠିତ ହୋଇଯାଇଛି, ସାହିତ୍ୟ ମାଧ୍ୟମରେ ତାହାର ବିରାଟ କିଛି ପରିବର୍ତ୍ତନ ହୋଇପାରିବାର ସମ୍ଭାବନା ନାହିଁ । ମାତ୍ର ମିଥ୍ ଅଭିବ୍ୟକ୍ତିର ପରିବର୍ତ୍ତନ ସମ୍ଭାବନା ରହିଛି ।" ('ପୁରାଖ୍ୟାନୋକା ନୟାପାଠ') ଏ ସମ୍ପର୍କରେ ଆଲୋଚକ ବେଦପ୍ରକାଶ ଭରଦ୍ୱାଜଙ୍କ ମତାମତକୁ ଗ୍ରହଣ କରାଯାଇପାରେ - "ଜୀବନ ବ୍ୟାପାରରେ ଭାରତରେ ସହସ୍ରାବ୍ଦୀ ଧରି ଧର୍ମ ନିର୍ଣ୍ଣାୟକ ଭୂମିକା ନେଇଛି, ପୁଣି ଏଠାରେ ଲିଖିତ ଇତିହାସର ସୁଦୀର୍ଘ ଓ ବ୍ୟାପକ ପରମ୍ପରା ନାହିଁ । ତେଣୁ ରାମାୟଣ, ମହାଭାରତର ଆଖ୍ୟାନ ପରି ପୁରାଖ୍ୟାନ ଓ ମିଥ୍‌ଗୁଡ଼ିକ ହିଁ ଶାଶ୍ୱତ ରୂପ ନେଇପାରେ ଏବଂ ଏହାର ନୂତନ ପ୍ରୟୋଗ ଓ ନିର୍ମାଣ ଏକ ଆହ୍ୱାନ ହୋଇପଡ଼େ । ତଥାପି ପ୍ରବାହ ବିରୋଧରେ ଯାଇ କବିମାନେ ନୂତନ ପ୍ରୟୋଗ ଦ୍ୱାରା ମିଥ୍‌ର ନବୀକରଣ କରିଥାନ୍ତି ।" ("ସମକାଳୀନ ଭାରତୀୟ ସାହିତ୍ୟ", ଜାନୁଆରୀ, ଫେବୃଆରୀ ୧୯୯୯) ।

ଯେଉଁମାନେ ଭାରତର ଆଞ୍ଚଳିକ ଭାଷାରେ ପୁରାଣର ପୁନର୍ଲିଖନ କରିଛନ୍ତି, ସେମାନେ ପ୍ରଚୁର ମୌଳିକତା ସହ ଅନେକ ଭାବେ ମୂଳକଥାକୁ ଅଧିକତର ପ୍ରକ୍ଷିପ୍ତ କରିଛନ୍ତି । ସ୍ଥଳ ବିଶେଷରେ ପରିବର୍ତ୍ତନ ମଧ୍ୟ କରିଛନ୍ତି । ଅଥଚ ସେହି କବିଗଣ ସେହି ସେହି ଭାଷାରେ ପ୍ରଚଣ୍ଡ ମୌଳିକତାଧାରୀ କବି ରୂପେ ସମ୍ମାନିତ ହୋଇଛନ୍ତି । ମାତ୍ର ମିଥ୍ ଏକ ନିର୍ଦ୍ଦିଷ୍ଟ ପରିଚୟ ବହନ କରିଥିଲେ ହେଁ ସମକାଳର ପ୍ରାସଙ୍ଗିକତା ନେଇ ଏହାର ନବୀକରଣ ଘଟିବା ଅବଶ୍ୟମ୍ଭାବୀ । ଆତ୍ମ-ଆବିଷ୍କାର ଦିଗରେ ମିଥ୍ ମଧ୍ୟ ପ୍ରୟାସ । ମାନବ ଅସ୍ତିତ୍ୱର ମୂଳ ସତ୍ୟକୁ ଉଦ୍‌ଘାଟନ କରିବା ମିଥ୍‌ର ଅନ୍ୟ ଏକ ଧର୍ମ । ସମସାମୟିକ ପ୍ରାସଙ୍ଗିକତାକୁ ନେଇ କବି ମିଥ୍‌କୁ ରୂପ ପ୍ରଦାନ କରିଥାଏ । ମଣିଷର ମୂଳ ଜୀବନଚର୍ଯ୍ୟା ଓ ତାହାର ଜଟିଳତା, ତୃପ୍ତି ଓ ଯନ୍ତ୍ରଣା ଚିରକାଳର । ପୁରାଣ ଯୁଗରେ ତାହା ଯଦି କୌଣସି ଚରିତ୍ରକୁ

ନେଇ ଗଢ଼ିଉଠିଥିଲା, ଏ ଯୁଗରେ ମଧ୍ୟ ଅନୁରୂପ ପରିସ୍ଥିତି ଓ ଚରିତ୍ର ରହିଛି । ସାମୂହିକ ସ୍ୱପ୍ନର ରୂପକଳ୍ପ ଭାବରେ ଏ ଯୁଗରେ ମିଥ୍ ପ୍ରତିଷ୍ଠା ପାଇପାରିଛି ।

ଏହି ପରିପ୍ରେକ୍ଷୀରେ 'ଶ୍ରୀପଳାତକ'କୁ ବିଚାରକଲେ ଶ୍ରୀକୃଷ୍ଣ ଓ ବିଂଶ ଶତକର କାବ୍ୟନାୟକ ସମପର୍ଯ୍ୟାୟର ବ୍ୟକ୍ତିତ୍ୱ ରୂପେ ପ୍ରତୀତ ହୁଅନ୍ତି । ସେହି ଯୁଦ୍ଧ, ଅନ୍ୟାୟ, ଅବିଚାର, ଯନ୍ତ୍ରଣା, ପୌରୁଷର ପ୍ରତିଷ୍ଠା, ଯାହା ଦ୍ୱାପରରେ ଘଟିଥିଲା, ବିଂଶ ଶତକରେ ପୃଥିବୀପୃଷ୍ଠରେ ତାହାହିଁ ବାରମ୍ବାର ସଂଘଟିତ ହୋଇଅଛି । ଯୁଦ୍ଧ କାଳେ କାଳେ ନାରକୀୟ ଘଟଣାର, ଅନ୍ୟାୟ, ଅବିଚାରର ମୂଳଭୂମି । ପୃଥିବୀର ଭବିଷ୍ୟତକୁ ଧ୍ୱଂସ କରିବାକୁ ଏହା ଅଭିପ୍ରେତ । କି କି ପ୍ରକାର ଅନ୍ୟାୟ ଏଥିରେ ସଂଘଟିତ ନ ହୁଏ: ମହାଭାରତ ଯୁଦ୍ଧରେ ଅଭିମନ୍ୟୁଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରିଦେଲା ପରି କାର୍‌ଗିଲ୍ ଯୁଦ୍ଧରେ ଯୁବଯୋଦ୍ଧା ସୌରଭ କାଲିଆ ସେହି ଜଘନ୍ୟତାର ଶିକାର ହୋଇଛନ୍ତି । ଏହି ମର୍ମନ୍ତୁଦ ଯନ୍ତ୍ରଣା ଓ ହତାଶା ଯୁଦ୍ଧର ଅନ୍ୟନାମ । ତାହା ହୋଇପାରେ ୨ୟ ବିଶ୍ୱଯୁଦ୍ଧ, ହୋଇପାରେ କୁରୁକ୍ଷେତ୍ର ବା କାର୍‌ଗିଲ୍ ସମର ।

ଅନ୍ୟଦିଗରେ ପ୍ରେମ ମଣିଷର ଏକ ତୀବ୍ରତମ ଭାବାବେଗ । ତାହା ଶ୍ରୀକୃଷ୍ଣଙ୍କ ଜୀବନରେ ଚରମ ତୃପ୍ତିଲାଭ କରିପାରି ନାହିଁ । 'ଶ୍ରୀପଳାତକ'ର କାବ୍ୟନାୟକ ମଧ୍ୟ ନିବିଡ଼ ପ୍ରେମ ଭୂମିରେ ସ୍ଥିର ରହିପାରି ନାହାନ୍ତି । ଅବଶ୍ୟ ପୃଷ୍ଠବନ୍ଧରେ କବି ଉଲ୍ଲେଖ କରିଛନ୍ତି ଯେ, ପ୍ରେମାସ୍ପଦଠାରୁ ଦୂରରେ ରହିବା କେତେକାଂଶରେ କାବ୍ୟନାୟକଙ୍କ ଇଚ୍ଛାକୃତ । ଜୀବନ ସଂଗ୍ରାମର ବାଧ୍ୟବାଧକତାରେ ହୁଏତ ସେ ପ୍ରେମଠାରୁ ଦୂରେଇଯାଆନ୍ତି, ମାତ୍ର ଏହି ଦୂରତ୍ୱ ରକ୍ଷା କରିବାର ଅନ୍ୟ ଏକ କାରଣ ମଧ୍ୟ ବେଶ୍ ବଳିଷ୍ଠ । "ଏମାନଙ୍କ ତୁଳନାରେ ପ୍ରେମାସ୍ପଦ ବ୍ୟକ୍ତିଠାରୁ ଦୂରେଇ ରହୁଥିବା, ଏପରିକି ଦିନକୁ ଦିନ ଦୂରତର ହେଉଥିବା ବ୍ୟକ୍ତିର ଜୀବନରେ ପ୍ରେମର ତାତ୍ପର୍ଯ୍ୟ ବେଶି, ଏତେ ବେଶି ଯେ ତାକୁ ତା'ର ଜୀବନର ସର୍ବଶ୍ରେଷ୍ଠ ଉପାଦାନ କୁହାଯାଇପାରେ । ତାହାହେଲେ ସେ ଚାଲିଯାଏ କାହିଁକି ? ପ୍ରେମାସ୍ପଦ ବ୍ୟକ୍ତିର ସାନ୍ନିଧ୍ୟର ଅନୁଭୂତିରୁ ନିଜକୁ ବଞ୍ଚିତ କରେ କାହିଁକି ? ଏହାର ଏକାଧିକ କାରଣ ଥାଇପାରେ, କିନ୍ତୁ ସମ୍ଭବତଃ ସର୍ବପ୍ରଧାନ କାରଣ ଏହା ଯେ ପ୍ରେମିକ ଯେଉଁ ପରିସ୍ଥିତିରେ ଅଛି ସେଥିରେ ସେ ତା'ର ପ୍ରେମିକାକୁ ସାକ୍ଷାତ କରିବାକୁ ସଂକୋଚବୋଧ କରେ । ପ୍ରେମିକାଠାରୁ ଖୁବ୍ ଦୂରରେ ରହି ଏକା ଏକା ମରିବା ପର୍ଯ୍ୟନ୍ତ ସବୁକିଛି କରିବାକୁ ପ୍ରସ୍ତୁତ ।" (ଶ୍ରୀପଳାତକ'ର ପୃଷ୍ଠବନ୍ଧ, ପୃ. ୧୩୫) ।

ପ୍ରେମ ସମ୍ପର୍କରେ କବି 'ଶ୍ରୀରାଧା'ରେ ଅନେକ ସୂକ୍ଷ୍ମ ଅନୁଭବର ଅଙ୍କନ କରିଛନ୍ତି । ଏଥିରେ ବର୍ଣ୍ଣିତ ଦିଗ୍‌ବିଦିଗ୍ ଜ୍ଞାନଶୂନ୍ୟ, ଶାଣିତ ପ୍ରେମାକୁଳତା ଅବଶ୍ୟ 'ଶ୍ରୀପଳାତକ'ରେ ଅଧିକ ସମାହିତ ଓ ଧୀରୋଦାତ୍ତ । ତଥାପି, ପ୍ରେମ ଯେ ଜରାମୃତ୍ୟୁ ଦ୍ୱାରା ପ୍ରଭାବିତ ନୁହେଁ, ଏହା ସ୍ପଷ୍ଟଭାବେ ସ୍ୱୀକୃତ । ସେଥିପାଇଁ ମୃତ୍ୟୁ ଶଯ୍ୟାରେ ଦେଖାଦିଏ ପ୍ରେମିକା ।

ଏଠାରେ କହିବାକୁ ହେବ ଯେ 'ଶ୍ରୀପଳାତକ'ର ନାୟକ ତତ୍ତ୍ୱର ଶ୍ରୀକୃଷ୍ଣ ନୁହନ୍ତି । ସେ କେତେକ ପରିମାଣରେ ଶାସ୍ତ୍ରାନୁସାରୀ ବ୍ୟକ୍ତି ନିଶ୍ଚୟ ଏବଂ ସାଧାରଣ ମଣିଷଠାରୁ ଅଧିକ ସମ୍ଭାବନାର ଶୀର୍ଷରେ ଅଧିଷ୍ଠିତ । କିନ୍ତୁ ସେ ଦେଶକାଳର ଖଣ୍ଡାଂଶ ଭିତରେ ଆସନ୍ତି, ପ୍ରେମିକାର ବିରହରେ ଛଟପଟ ହୁଅନ୍ତି, ଯୁଦ୍ଧବିଗ୍ରହରେ ପରିଶ୍ରାନ୍ତ ହୁଅନ୍ତି ଓ ଶେଷକୁ ଜାରା ଶବରର ବିଷାକ୍ତ ତୀରରେ ଜର୍ଜର ହୋଇ ମୃତ୍ୟୁଲାଭ କରନ୍ତି । ତେବେ ଏହି କାବ୍ୟରେ ଉତ୍‌କୀର୍ଣ୍ଣ ପ୍ରେମ ଚେତନାରେ ପ୍ରେମର ଜ୍ୱାଳା ଓ ଦ୍ୟୁତି ଉଭୟେ ସମସ୍ପର୍ଦ୍ଧୀ । କାବ୍ୟନାୟକ ପ୍ରେମ ପାଇଁ ବ୍ୟାକୁଳ, ମାତ୍ର ସେ ପ୍ରେମ ଦେହ ଛୁଇଁଦେଲେ ପରିତୃପ୍ତ ହୋଇଯାଏ ନାହିଁ । ସେଠାରେ ଶରୀର ମିଳନ ଯଥେଷ୍ଟ ନୁହେଁ । ଯୁଗେ ଯୁଗେ ମାନବ ପ୍ରେମର ଉତ୍ତରଣ ପଥରେ ଏହି ଅଭିବ୍ୟକ୍ତି ପ୍ରତିଷ୍ଠା ପାଇଛି । ପ୍ରସିଦ୍ଧ କବି ଉଦୟନ ବାଜପେୟୀ କହନ୍ତି- "ଥୋଡ଼ାସା ଶରୀର ବଚାରହା ଗୟା ହୈ ତୁମ୍ହାରେ ମେରେ ଆଲିଙ୍ଗନ ମେଁ ସମାନେକେ ବାଦ୍ ଭି..." ଶରୀର ନିବିଡ଼ ଆଲିଙ୍ଗନରେ ଧୃତ ହେଲେ ବି, ଶରୀରର କେଉଁ ଅଂଶ ପୁଣି ଆଲିଙ୍ଗନ ବହିର୍ଭୂତ ହୋଇ ରହିଯାଏ, ପ୍ରେମୀ ତାହା ପାଇଁ ଛଟପଟ ହୁଏ ।

ଏହା ସତ୍ତ୍ୱେ 'ଶ୍ରୀପଳାତକ'ରେ ଜୀବନ ସଂଘର୍ଷ, ପାରଙ୍ଗମତା, ଯୁଦ୍ଧବିଗ୍ରହ ଓ ନିଷ୍ଠୁରତା ଯେ ସବୁ ଉପରେ ପ୍ରେମର ଜୟଗାନ କରାଯାଇଛି । ହୋଇପାରେ, ସେ ଜୟପତାକା ଧାରଣ କରିବାପାଇଁ ନାୟକ ଆଉ ଜୀବିତ ରହି ନାହିଁ । ତଥାପି ଜୀବନର ଅନ୍ତିମକ୍ଷଣ ମଧୁରତର ହୋଇପାରିଛି ।

ଯାହା ସର୍ବଦା ରହିଥାଏ, ତାହା ନିତ୍ୟ, ଯାହା ନିରନ୍ତର ପରିବର୍ତ୍ତିତ ହୋଇଚାଲିଥାଏ, ତାହା ନୂତନ । ଯେତେବେଳେ ପରମ୍ପରା ଓ ଐତିହାସିକ ସମ୍ବନ୍ଧ ଗଠନମୂଳକ ଭାବେ ପରିବର୍ତ୍ତିତ ହେଉଥାନ୍ତି ସେତେବେଳେ ନିତ୍ୟନୂତନ ସୃଜନ ସମ୍ଭବ ହୁଏ । ସେଥିପାଇଁ 'ଶ୍ରୀପଳାତକ'ରେ ସଂଯୋଜିତ ମିଥ୍ ଚେତନା ନିତ୍ୟ ନୂତନ ରୂପେ ପ୍ରତୀତ ହୋଇଥାଏ । ଅତୀତ ଓ ବର୍ତ୍ତମାନର ଏକ ଭାବାତ୍ମକ ଓ ବାସ୍ତବ ସଂଯୋଗ ଏଥିରେ କ୍ରିୟାଶୀଳ ହୋଇଥିବାର ଲକ୍ଷ୍ୟ କରାଯାଏ ।



# ଉତ୍ତରିତ ଆକୁଳତାର ସିଂହାସନ 'ବାୟାରଜା'

## [ ପଦ୍ମଶ୍ରୀ, ବିଶିଷ୍ଟ କବି ଜୟନ୍ତ ମହାପାତ୍ରଙ୍କ କାବ୍ୟଜଗତ ]

ଏକଦା ଜୀବନ ଯନ୍ତ୍ରଣାରେ ଦଗ୍ଧ ଜଣେ କବିଙ୍କ ଅଭିମାନ ଓ ଅନୁଯୋଗଭରା ଆକୁଳ ଉଚ୍ଚାରଣ ଶୁଭିଯାଏ–

"ଦେ ମତେ ବାଇଆ କରି
ଆରେ ମୋର ବାଇଆ ରଜା..."

ଆଜି କବି ଜୟନ୍ତ ମହାପାତ୍ରଙ୍କର ମଧ୍ୟ ଏଇ ଆକୁଳ ଅଭିବ୍ୟକ୍ତି ଅଭିମାନ ଓ ଅନୁଯୋଗର । ତେବେ, ତାଙ୍କ ଅଭିବ୍ୟକ୍ତିର ସତ୍ୟ ହେଉଛି କିଛି ବି ନିଶ୍ଚିହ୍ନ ହେବାର ନୁହେଁ । କବିତାର କିୟଦଂଶ ରହିଯାଏ ଏଠି, ସ୍ୱରରୁ ବି ଖିଅଟିଏ ରହିଯାଏ ଚିରକାଳପାଇଁ 'ରହିଯାଉଥାଏ ତ କିଛି ନା କିଛି ସବୁବେଳେ / ବାପା ବଞ୍ଚିଥିବାବେଳର ହସରୁ ପାଉଁଶ ଟିକିଏ' ଏବଂ 'ଇତିହାସ ଟିକିଏ ରହିଯାଏ / ମରା ହୋଇଥିବା ଲୁଣଗଦା ପରି ଚିଲିକା କୂଳରେ କିଛି ନା କିଛି ରହିଯାଏ/ନଈବଢ଼ି ସରିଗଲେ କୂଳ ଦିଓଟି ବାଇଶପାହାଚ ଚଢ଼ିଆସିଲେ ଆଶ୍ରୟ ପରି ଟିକିଏ ଆଉ ମୋର ଜୀବନ ଶେଷ ଯେବେ ହବ / ସେମିତି ବୋଧେ ଟିକେ ରହିଯିବ ।' (ବାୟାରଜା, ପୃ. ୮୫ ଓ ୨୯)

ସ୍ୱର୍ଗତ ଲକ୍ଷ୍ମୀକାନ୍ତଙ୍କ ଗୀତ ଦୁଇଧାଡ଼ି ପିଲାଦିନେ ଆନନ୍ଦ ଦେଉଥିଲା–ଆଜି ବାୟାମନ ବି ସେଇ ଗୀତ ଗାଇବାକୁ ଆଗ୍ରହୀ । ମନଟି ବାୟା କାହିଁକି ? କବି ଜଣେ ସଚେତନ ସୃଜନଶୀଳ ବ୍ୟକ୍ତି–ଅତଏବ ତାଙ୍କ ମନ ବାୟା ହବ କାହିଁକି ? ବୋଧହୁଏ ଏଇଥିପାଇଁ ଯେ ପ୍ରଚଳିତ ସମୟ ଓ ସମାଜର ପରିପ୍ରେକ୍ଷୀରେ ସେ ବହୁ ଭାବରେ ଆନ୍ଦୋଳିତ ହୁଅନ୍ତି । ବେଳେବେଳେ ସମାଜର ପ୍ରଚଣ୍ଡ ବସ୍ତୁବାଦକୁ ଅସ୍ୱୀକାର କରୁଥିବା ବ୍ୟକ୍ତିକୁ 'ବାୟା' ବୋଲି କୁହାଯାଏ । ଅଧିକାଂଶ ବାୟା ଶବ୍ଦ ସ୍ନେହରେ ସିକ୍ତ ହୋଇଥାଏ । ଯେଉଁ ମନ ନିଖିଳ ପାଇଁ ସଂବେଦନଶୀଳ, ସେଇ ମନକୁ ଏଠାରେ 'ବାୟାରଜା' ଦ୍ୱାରା ପ୍ରତୀକିତ କରିଥିବାର ମନେହୁଏ । ଯାହା ନାହିଁ ଅଥଚ ଯାହା ଶ୍ଳାଘ୍ୟ ଓ କାମ୍ୟ, ତାକୁ ଯିଏ ଖୋଜେ, ଛଟପଟ ହୁଏ, ତା' ପାଇଁ ଲୁହ ରକ୍ତରେ ଜୁଡୁବୁଡୁ ହୁଏ, ସେ ବାୟାରଜା । କାବ୍ୟନାୟକ ଏଠାରେ ସମ୍ଭାବନା ପାଇଁ ଆକୁଳ ହୁଅନ୍ତି । ନିଜ କବି ଅସ୍ତିତ୍ୱର ଅପାରଗତାକୁ ତାଚ୍ଛଲ୍ୟ କରନ୍ତି, କେବେ ସର୍କସ ଜୋକର୍ ଭାବରେ ତ କେବେ ଏଣେ ତେଣେ ଧାଉଁଥିବା କୁକୁର

ଭାବରେ- "ଆଉ ମୁଁ ମୋ ନିଜର ମନଟିକୁ ସର୍କସ ଜୋକର୍ ଗୋଟିଏର୍ ନିର୍ବୋଧ ହସପରି / ଧରି, ସମୟ ସାରା ପହରା ଦିଏ" (ବାୟାରଜା-ପୃ. ୭୮) । ତଥାପି ମନର ଏଇ 'ରଜାପଣ' କବିଙ୍କର କାମ୍ୟ । ମନ କଦାପି ନିର୍ଜୀବ ବସ୍ତୁଟିଏ ନୁହେଁ । ମନ ଯଦି ସ୍ୱପ୍ନ ଗର୍ଭିତ ନ ହୁଏ- କେଉଁ ସମ୍ଭାବନା ରହିବ ଜୀବନପାଇଁ ? "ମନରୁ ସ୍ୱପ୍ନ ସବୁ ବାହାରିଗଲେ ପ୍ରଥମ ବର୍ଷା କ'ଣ ଓଦା କରିପାରିବ ଭୂଇଁକୁ ?" (ତତ୍ରୈବ-ପୃ-୮୦)

ବିଶୃଙ୍ଖଳ, ଅବ୍ୟବସ୍ଥିତ ଚିତ୍ତର ଦୃଷ୍ଟାନ୍ତ ମିଳେ ରାଜନୈତିକ ନେତାର ଭ୍ରଷ୍ଟାଚାରରେ, ଯୁବ ସମାଜର ନାରୀଧର୍ଷଣ ପ୍ରବୃତ୍ତିରେ । ତା'ରି ତାଡ଼ନାରେ ସାମ୍ପ୍ରଦାୟିକ ମନ୍ଦିର ମସଜିଦ୍ ଯୁଦ୍ଧରେ ଗାନ୍ଧିଜୀଙ୍କ ସ୍ୱପ୍ନ ରକ୍ତାକ୍ତ ହୁଏ । ବର୍ତ୍ତମାନର ସଂକଟମୟ କାଳରେ ସତ୍ୟ ସ୍ୱେଚ୍ଛାଚାରୀ ସମାଜର ଦାସ ପାଲଟିଛି । ଶିଶୁର ନିଷ୍ପାପତା, କଳ୍ପନାରଞ୍ଜିତ ଆବେଗ ଏଠାରେ ସମାଧି ନିଏ । ମାତ୍ର କବିର ହୃଦୟ ଶିଶୁର ହୃଦୟ ଭଳି, ସେ ବାୟା ସତ, ମାତ୍ର ଦୟାଳୁ ବାୟା ରଜାଟିଏ । ନିଖିଳ ପାଇଁ ଦରଦ ବିଗଳିତ ତା'ର ଚେତନା-ଅତୀତ, ପରମ୍ପରା, ଇତିହାସ, ପୁରାଣଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ସବୁକିଛି କବିଙ୍କ ଚେତନାରେ ସୁବିନ୍ୟସ୍ତ । କବି ସ୍ୱରଚନାରେ ମଣିଷକୁ ଏକ ବ୍ୟକ୍ତିବିଶେଷଭାବେ ନ ଦେଖି, ଦେଖିଛନ୍ତି ପରମ୍ପରା ଓ ଇତିହାସର ଏକ ଅଂଶ ଭାବେ । ସ୍ୱକବିତା ମାଧ୍ୟମରେ ସେ ଇତିହାସକୁ ଅଙ୍ଗୀଭୂତ କରିଛନ୍ତି । ଏକଦା ବିଖ୍ୟାତ କବି ଅକ୍ଟାଭିଓପାଜ୍ କହିଥିଲେ - Every poem is an attempt to reconcile history and poetry for the benefit of poetry. x x x The relationship between man and history is one of slavery and dependence. For if we are the only protagonists of history we are also its rawmaterials and its victims, it can only be fulfilled in our expense. Poetry radically transforms this relationship.

ଜ୍ଞାନୀଏ ମୂର୍ଖତା ଆଚରଣ କରିବାର ପରମ୍ପରା ଏ ଦେଶ ମାଟିରେ ବହୁ ଆଗରୁ ରହିଛି- "ଯୁଧିଷ୍ଠିରଙ୍କ ଜ୍ଞାନରୁ ଖଣ୍ଡେ ପରି / ଖୋଲା ଦରବାରରେ ଯେତେବେଳେ / ବାଜିରେ ହାରିବାର ଜ୍ୟାମିତିରେ ଆଶ୍ରୟ ନେଲୁ" (ତତ୍ରୈବ-ପୃ. ୮୫) । ଦରଦୀ କାବ୍ୟମାନସ ବଡ଼ ଅସମର୍ଥ । ଦେଶ କାଳ ପାତ୍ରର ସକଳ ଅସଙ୍ଗତି, ବିଶୃଙ୍ଖଳାକୁ ହୃଦୟଙ୍ଗମ କରି ମଧ୍ୟ ପ୍ରତିକାର କରିପାରେ ନାହିଁ; ଅଥଚ ତା'ର ଆଶା ଓ ସ୍ୱପ୍ନ ପରାହତ ନୁହେଁ । ତା'ର ଅସ୍ତିତ୍ୱ କେଉଁ ଜନ୍ମ ଅବଧି ଲମ୍ବିଆସିଛି-ସେ ନିଜକୁ ଆବିଷ୍କାର କରୁଛି ନଦୀଟିଏ ଭିତରେ-ଦେଶର ଦୁଇ ସୀମାକୁ ଛୁଇଁ ସେ ଜଳବାହୀ ନଦୀଟିଏ-ଫୁଲ, ରକ୍ତ ଓ ଅତ୍ୟାଚାରକୁ ବକ୍ଷରେ ଧରି ପ୍ରବହମାନ-ତୃଷାର ଉତ୍ତର ସେ-ପୁଣି ତା'ରିଠାରୁ ଜନ୍ମ ନିଏ ପଥର, ଅଗ୍ନି, ପବନ । ସେହି ନଦୀ ହେବ ସତ୍ୟର ଅକୁଣ୍ଠିତ ବର୍ତ୍ତମାନ ।

ଏହି ଆଶା ସ୍ୱପ୍ନର ସମ୍ମୁଖୀନ ହେବା ପୂର୍ବରୁ ବାୟାରଜାଙ୍କୁ ଘୂରିବାକୁ ପଡ଼େ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ, ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ । ବାସ୍ତବତାର ସୂକ୍ଷ୍ମ ପର୍ଯ୍ୟବେକ୍ଷଣରେ ଅବିରତ ନିୟୋଜିତ ହେବାକୁ ପଡ଼େ, କାରଣ ବାୟାରଜାର ସମ୍ବେଦନଶୀଳତା ଅପରିସୀମ । ଗଭୀର ମାନବିକ ମୂଲ୍ୟବୋଧରେ ସେ ବିଶ୍ୱାସୀ - ସେଇଥିପାଇଁ ସେ ଦୁଃଖୀ, ଯନ୍ତ୍ରଣାକାତର ଓ ଆପଣାର ଅସ୍ତିତ୍ୱକୁ ଆପେ ଧିକ୍‌କାର କରିବାକୁ ଉନ୍ମୁଖ । ତା'ଠାରେ ଭଲ ପାଇବା ନିମିତ୍ତ ପ୍ରଚୁର ସହାନୁଭୂତି; ନିର୍ଯାତିତା, ନିପୀଡ଼ିତା ନାରୀ ପାଇଁ ଆନ୍ତରିକ ସୁମନାସ । ଶାସନର ଶଠତା ପ୍ରତି ଘୃଣା ଭରି ରହିଛି । ନିଜ ସଂରଚନାର ବକ୍ତବ୍ୟ ନିର୍ବାଚନ ପ୍ରସଙ୍ଗରେ କବି ନିଜେ କହନ୍ତି, "ମୋ ମନ, ମୋ ହୃଦୟ ଯାହା କହେ ସେଇକଥା ମୁଁ ଲେଖେ । ଅନୁଭୂତିର ସତ୍ୟରୁ ହିଁ, ମୋ ଆବେଗ ଉପରେ ମୋର ବିଶ୍ୱାସରୁ ହିଁ କବିତା ମୋ ପାଇଁ ।" (କଥା-ଜାନୁଆରୀ ୯୮) ତେଣୁ କବି ପ୍ରାଣର ଅକପଟ ସହାନୁଭୂତି ହିଁ କବିତାମାନଙ୍କରେ ଉଚ୍ଚାରିତ ହୋଇଛି । ମାତ୍ର ଏହି ସହାନୁଭୂତି ମଣିଷକୁ ଦୁଃଖ ଯାତନାରୁ ବା ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଭ୍ରଷ୍ଟାଚାରରୁ ରକ୍ଷା କରିବା ନିମିତ୍ତ ଅସମର୍ଥ - ଏହି ଅବଶ୍ୟମ୍ଭାବୀ ସତ୍ୟକୁ ସେ ଗ୍ରହଣ କରିନେଇଛନ୍ତି । ଏହି ଅପାରଗତା ନିମିତ୍ତ ସ୍ୱ କବିତ୍ୱକୁ କମ୍ ଭର୍ତ୍ସନା ଓ ବିଦ୍ରୂପ କରି ନାହାନ୍ତି । ସେ ଜାଣନ୍ତି ସମ୍ବେଦନାର ବାକ୍ୟଟିଏ, ଲୁହ ବୁନ୍ଦାଏ କୌଣସି ଦୁଃସ୍ଥିତିର ପ୍ରତିକାର କରିବା ନିମିତ୍ତ ଅସମର୍ଥ । ତଥାପି ହୃଦୟର ଆକୁଳତାକୁ ନେଇ କାହିଁକି ସେ ଶବ୍ଦରୂପ ଦିଅନ୍ତି ? ବୋଧହୁଏ ଏଇଥିପାଇଁ ଯେ, ଅଶ୍ରୁ, ଆର୍ତ୍ତି ଓ ଆକୁଳତା ହୁଏତ ଦିନେ ନା ଦିନେ ମଣିଷର ଅନ୍ତଃକରଣକୁ ସ୍ପର୍ଶ କରିବ, ତାକୁ ପରିବର୍ତ୍ତନ କରିବାରେ ସାହାଯ୍ୟ କରିବ ।

କାବ୍ୟନାୟକଙ୍କ ଅବବୋଧରେ ଭଲପାଇବା ହିଁ ବଞ୍ଚିରହିବାର ନିଗୂଢ଼ ମନ୍ତ୍ର ରୂପେ ସ୍ୱୀକୃତ । ଏହି ଭଲପାଇବା ହେତୁ ମଣିଷର ସୁଖ-ସମୃଦ୍ଧି କ୍ଷେତ୍ରରେ ପ୍ରତିବନ୍ଧକ ରୂପେ ଠିଆ ହୋଇଥିବା ପ୍ରଚଳିତ ସମାଜ ଓ ଶାସନ ବିରୋଧରେ କବିଙ୍କର ଅଭିଯୋଗ ପ୍ରମୂର୍ତ୍ତ । ସ୍ନେହର, ସ୍ୱପ୍ନର ଏହି ବିପର୍ଯ୍ୟୟ କାଳରେ କେବଳ ଗୋଟିଏ ରାତି ହିଁ ସତ୍ୟ; ଅଥଚ ସେ ରାତିର ଆତ୍ମା ନ ଥାଏ । ରାଜନୀତିକ ପ୍ରାର୍ଥୀଟିଏ କଥା କହୁଥାଏ, ସେ କଣ୍ଢେଇଟିଏ, ତା'ର ଆତ୍ମା କାହିଁ ? ସତ ଓ ସ୍ନେହର ଖବର ସେ କଦାପି ରଖେ ନାହିଁ । "ଗୋଟିଏ ରାଜନୈତିକ ଦଳର/ଲୋକସଭା ପ୍ରାର୍ଥୀପରି/ଭିକ ମାଗୁଥିଲା ଭୋଟ ପାଇଁ, ଆଜିକାଲିର କଥା କହୁଥିବା ଅନ୍ୟ ଏକ କଣ୍ଢେଇ ଯାହାର / ମିଛ ସତ ଧନ ଯୌବନ ହତ୍ୟା, ସ୍ନେହ / କଥା ଜାଣିବା ସବୁବେଳେ ଅନାବଶ୍ୟକ ଥାଏ ।" (କଣ୍ଢେଇ-ପୃ.୪୪) ଅରୁନ୍ଧତୀ ନକ୍ଷତ୍ର ଆଜି ଅପହଞ୍ଚ, କାବ୍ୟନାୟକ ତା'ର ସାକ୍ଷାତ ପାଉ ନାହିଁ । ଆମ ଲୋକବିଶ୍ୱାସରେ ଅରୁନ୍ଧତୀ ନକ୍ଷତ୍ର ନ ଦିଶିଲେ ମଣିଷ ବଞ୍ଚିବ ନାହିଁ, ଅତଏବ ତାହା ଆୟୁଷର ପ୍ରତୀକ । ପୁନଶ୍ଚ ପୁରାଣ ତଥ୍ୟାନୁସାରେ ଅରୁନ୍ଧତୀ ବଶିଷ୍ଠଙ୍କ ପତ୍ନୀ-ସତ୍ୟ, ପ୍ରେମ, ନିଷ୍ଠାପରତାର

ଏକ ଅଦ୍ୱିତୀୟ ପ୍ରତୀକ । ଆଧୁନିକ ଜୀବନରେ ତା'ର ଅବର୍ତ୍ତମାନତା ଓ କବିପ୍ରାଣର ଗଭୀର ଅନୁସନ୍ଧିତ୍ସାକୁ ରୂପାନ୍ତରିତ କରି ସେଦିନ କବି ଗୁରୁପ୍ରସାଦ ଖୋଜିଥିଲେ - "ହେ ଉଦ୍ଧବ, ହେ ଅକ୍ରୂର, ସଖା ମୋର / ପିଠିରେ ମୋ ତୁମ ପରି ବୋଝ, ମୁଁ ଯିବି ତୁମରି ପରି ଚନ୍ଦ୍ର ଖୋଜି, ତାରା ଖୋଜି / ଖୋଜି ଖୋଜି ଝରଣାର ସୁଅ / ମୁଁ ଯିବି ତୁମରି ପରି ନିର୍ମୂଳୀ ଲଟାରେ ଖୋଜି ଅରୁନ୍ଧତୀ ତାରାର ଆଲୁଅ ।" ସେଇ ଅରୁନ୍ଧତୀକୁ ଏଠାରେ ଖୋଜିଚାଲିଛନ୍ତି କବି ଜୟନ୍ତ ମହାପାତ୍ର । କାହିଁ ସେ ? ବିଭିନ୍ନ ସ୍ଥାନରେ ଓ ନାନାବିଧ ଚେତନାର ସ୍ଥିତି ମଧ୍ୟରେ ତା'ର ଅନ୍ୱେଷଣ - "ନୀଳଗିରିର ସେଇ ତେରବର୍ଷର ଝିଅ ଶବରୁ / ରକ୍ତ ଗଡୁଥିବା ବାଟରେ ତାକୁ ଖୋଜୁଥାଏ / ଆଉ କେବେ ପହିଲିରଜର ବରଷା ଓଡ଼ିଆର ମାଟିକୁ ଅଭିଷେକ କଲାବେଳେ କେତେବେଳେ ବା ରାସ୍ତାରେ ଚାଲିଯାଉଥିବା / ସେ ଅପରିଚିତା ଝିଅର ମୁହଁର ବଗିଚାରେ / ପ୍ରଜାପତିଟି ପରି ମୁଁ ଏପଟ ସେପଟ ହୋଇ ଖୋଜେ" (ଅରୁନ୍ଧତୀ; କୌଣସି ପରିଚୟ ନୁହେଁ-ପୃ. ୪୦) । କାବ୍ୟନାୟକ ବୁଝୁଛି- ଅରୁନ୍ଧତୀର ସ୍ଥିତିପାଇଁ ଏଠାରେ ସମୟ ଓ ସମାଜ ଅନୁପଯୁକ୍ତ - "ତମର ଦୁଃସାହସିକ ଜୀବନପାଇଁ / ନାଇଁ ଜାଗା ଏଇଠି ଅରୁନ୍ଧତୀ / ନାଇଁ ବି ତମର ଦୁଃଖ ଧରିରଖିବାକୁ ଶ୍ମଶାନ ବା ମନ୍ଦିର ସେମିତି ବା ଘରଟିଏ ମିଥ୍ୟା ଘୃଣା ଲାଞ୍ଛନାର ବାହାରେ ।" (ତତ୍ରୈବ-ପୃ. ୪୧) ଅରୁନ୍ଧତୀକୁ ଏତକ ଜଣାଇ ଦେବା କମ୍ ଗ୍ଲାନିକର, କମ୍ ଯନ୍ତ୍ରଣାପ୍ରଦ ନୁହେଁ । ଏଣୁ ତୀବ୍ର ଆତ୍ମଧିକ୍କାର ଆସେ- "କିଛି ଶିଖାଇପାରିଲାନି କାହାକୁ / କେବଳ ଇଚ୍ଛାସବୁ ଧରି ଆଗେଇ ଯିବାର ଲୋକଟି/ ତାକୁ କବିତା କୁହ ବା ରାସ୍ତାରେ ବୁଲୁଥିବା ନୀରବ କୁକୁର ଗୋଟିଏ ।" ତତ୍ରୈବ- ପୃ-୪୧)

ନିପୀଡ଼ିତ ଜନତାର ପ୍ରତିନିଧି ଭାବରେ ଆସେ ମେହନ୍ତି ମଣିଷଟିଏ-ନାଆଁ, ତା'ର ବଳିଆ । ଗଭୀର ଆତ୍ମୀୟତାର ଭାଷାରେ କବି କଥା ହୁଅନ୍ତି-ନିଜ ଜୀବନର ସାମ୍ୟ ଦେଖନ୍ତି- "କୋଠାଘର ଆଉ ଚାଳିଆ ଅନ୍ଧାର ଭିତରେ ଏକ୍"-ଏହି ଅନ୍ଧାର ଯଥାର୍ଥରେ ଅନ୍ଧାର ନୁହେଁ-ଆତ୍ମୀୟତାର ଅନ୍ୟ ଏକ ଝଲକ, ଯାହା ମଣିଷକୁ ଆଶାନ୍ୱିତ କରି ଗଢ଼ିଥିଲା ଓ ବିବିଧ ଚମତ୍କାରିତା ଭିତରେ ଆସି ଦେଖାଦେଇଥିଲା । କୁରୁସଭା ତଳେ ଲାଞ୍ଛିତା ଦ୍ରୌପଦୀଙ୍କୁ ଯେ ରକ୍ଷା କରିଥିଲେ, ସେଇ ଈଶ୍ୱର ଆଜି କାହାନ୍ତି ? ମୃତନଦୀଟିଏ ପରି ସେ ବିଶ୍ୱାସ ଆଜି ଅନୁପସ୍ଥିତ-ସେହି ଅନୁପସ୍ଥିତିର ପ୍ରତୀକ ହେଉଛି ମୃତନଦୀ ଅନୁସୂପା - "ସେ ଆଲୁଅ ଆଜି ନାହିଁ / ଯାହାକୁ ଦେଖୁଥିଲୁ ଆମେ ଦୁହେଁ ନିଜ ନିଜ ଭିତରୁ ଯେତେବେଳେ ଦ୍ରୌପଦୀର ବାଳରେ ପଡ଼ି ଫେରିଥିଲା ଅଭିମାନରେ ରେଶମୀ ପରିସରରୁ" (ଅନ୍ଧାରକୁ ଗୁହାରି-ପୃ. ୩୦) ।

ଈଶ୍ୱର ବିଶ୍ୱାସ ତ ନାହିଁ, ନାହିଁ ମଧ୍ୟ ସେହି ସତ୍ୟନିଷ୍ଠ, ଗୁରୁଭକ୍ତି ବା ଆତ୍ମତ୍ୟାଗର ପ୍ରତିଜ୍ଞା । ଉପଭୋକ୍ତାବାଦୀ ଏଇ ପୃଥିବୀରେ ଆଜି କବି ପ୍ରଶ୍ନମନସ୍କ ହୋଇଛନ୍ତି-

"କାହିଁ ସେ ସୁନେଲି ସକାଳ / ଯିଏ ସତ୍ୟ ପାଇଁ କାଟିପାରିଥିଲା ଗୋଟିଏ ପିଲାର/ବୁଢ଼ା ଆଙ୍ଗୁଠି" (ତତ୍ରୈବ-ପୃ.୩୧) ।

କବିଙ୍କ ଭାଷାରେ ଭଲପାଇବା ମଣିଷକୁ ଉଦାର କରେ, ବିଶ୍ୱକୁ ଭଲ ପାଇଲେ ମଣିଷ ସାରା ବିଶ୍ୱର ଦୁର୍ଭାଗ୍ୟ ସହିତ ନିଜକୁ ଯୋଡ଼େ ଓ କାନ୍ଦେ । ମାତ୍ର ଏଇପ୍ରକାର ସମ୍ବେଦନାର କ୍ରିୟାଶୀଳତା କେଉଁଠି ? କାବ୍ୟନାୟକ ଯା' ମଧ୍ୟ ଜାଣେ ଯେ ତା'ର ସମ୍ବେଦନା, ଜ୍ଞାନ, ଗର୍ବ, କାତରତା ସବୁକିଛି ମୂଲ୍ୟହୀନ । ନିଜ ଦୁଃଖରେ ଛଟପଟ ହେବା ହିଁ ସତ୍ୟ । କ୍ଷୁଧା, ଦାରିଦ୍ର୍ୟ ଓ ଅସହାୟତାର ବୋଝ ବୋହି ଠିଆ ହୋଇଥିବା ପୃଥିବୀର – 'ନମ୍ର ଘୃଣା ଆଖିର ଚାହାଣି'ରୁ ଦୁଃଖ ଆହରଣ କରିନିଅନ୍ତି ସେ । ଅଥଚ ନକାରାତ୍ମକ ଅର୍ଥରେ ସେ ଉଚ୍ଚାରଣ କରନ୍ତି – "ସେଦିନ / ଚାରିଶହ ପିଲା ଜଳିପୋଡ଼ି ମରିଗଲେ ହରିଆଣାରେ / କିନ୍ତୁ କାହିଁ ମତେ ତ ସେମିତି କିଛି ଲାଗିଲା ନାହିଁ ? (ଛୋଟ କଥାର ଦୁଃଖ-ପୃ-୨୦) ନିବିଡ଼ ସମ୍ବେଦନଶୀଳତାର ସରଳ ଉଚ୍ଚାରଣ ଲେଖିହୋଇଯାଏ, ଗଭୀର ଶୁଭେଚ୍ଛାର ବାଣୀଟିଏ-ଆନ୍ତରିକ ସୁମନାସଟିଏ । ସ୍ନେହବନ୍ଧନହୀନ, ଅନାତ୍ମୀୟ ପରିବେଶପ୍ରତି ଏହି ସୁମନାସ- "ଯୋଉଠି ଆଜି / ପୃଥିବୀ ପିଂଜରାରେ ବନ୍ଦୀଥିବା କାକର/ ତା'ର ହାତଟିଏ ବି ବଢ଼ାଏ ନାହିଁ / ଛୁଇଁବାକୁ ମାଟି ଭିତରର କ୍ଳାନ୍ତ ବୀଜଟିକୁ" (ଚାଉଳ ଦାନାଟିଏ ହେବାକୁ ତୋହରି ମୁହଁରେ- ପୃ. ୧୬) । ଏଠାରେ ମଧ୍ୟ ଏହି ସୁମନାସଟି ନକାରାତ୍ମକ ଅର୍ଥ ନେଇ ଉଚ୍ଚାରିତ ।

ଦାରିଦ୍ର୍ୟ ନିପୀଡ଼ିତ ବ୍ୟକ୍ତିବିଶେଷର ଅଧିକାର ବୋଲି ଯଦି କିଛି ଥାଏ, ତା'ର ଅବଶିଷ୍ଟାଂଶ କେବଳ ବିକଳ ଓ ବୀଭତ୍ସ । ଭରତ ସେଠୀ ଗଣତନ୍ତ୍ର ଶାସନରେ ଏକ ଦରିଦ୍ର ଅଶିକ୍ଷିତ ବ୍ୟକ୍ତି । ବର୍ତ୍ତମାନର ଭୋଟ ପ୍ରତ୍ୟାଶୀ ନେତାଗଣ ତା'ର ଅଧିକାରକୁ ଲୁଟିନେବାକୁ ବ୍ୟଗ୍ର, ଲୋଲୁପ । କୌଣସି ଏକ ସ୍ୱାଧୀନଚେତା ପ୍ରବଞ୍ଚିତ ମଣିଷ କଣ୍ଠରେ ଭରତ ସେଠୀର ଏହି ଅଭିଯୋଗ- "ଘରେ ମୋର ଆଉ କ'ଣ ଅଛି / ଯେ ଆସିଛ ପୁଣି ନବାକୁ । ଖଣ୍ଡ ଖଣ୍ଡ ହେଇ ପଡ଼ିଛି / କେବଳ ଭଙ୍ଗା ଦୁନିଆଟି ମୋର" (କମଣ୍ଡଳୁ-ପୃ. ୮) ।

ଏ ଦେଶ ରକ୍ତରେ ଗଢ଼ା । ଆଜିର ଏହି ରକ୍ତପାତ ବର୍ତ୍ତମାନ ସଂଭୂତ ନୁହେଁ, ଅତୀତର ଇତିହାସରୁ ରକ୍ତପାତର ଭିତ୍ତିଭୂମି ଉପରେ ଠିଆ ହୋଇଛି ଧଉଳିର କଳିଙ୍ଗ ଯୁଦ୍ଧ, ବାରବାଟୀର ଦୁର୍ଗ ଓ ଗଡ଼ଖାଇ, ଢେଙ୍କାନାଳର ଯତନନଗର-ଏସବୁର ଯୁଦ୍ଧର, ଅତ୍ୟାଚାରର, ରକ୍ତପାତର, ଯନ୍ତ୍ରଣାର ଚିହ୍ନ ବହନ କରେ । ଓଡ଼ିଶା ଦେଶଟା ହିଁ ରକ୍ତ ଦ୍ୱାରା ନିର୍ମିତ । ଆଜି ବି ପଞ୍ଚାୟତ ଅଫିସ ହତାରେ ଅଚିହ୍ନା ଲୋକର ରକ୍ତ ବୋହିଯାଉଛି – ଏଥି ସହିତ ନିହତ ଭରତ ସେଠୀର ରକ୍ତ ମିଶିଯାଉଛି । ଓଡ଼ିଶା ମାଟିର ରକ୍ତାକ୍ତ ଇତିହାସକୁ ଓ ବର୍ତ୍ତମାନକୁ ଜଡ଼ିତ କରି କବି ବେଦନାଜର୍ଜର ହୁଅନ୍ତି । ଏଠାରେ ନ୍ୟାୟ ନାହିଁ–ରକ୍ତର ଗଭୀରତାରେ / କେତେ ଯେ ଖେଳ ଯଶର, ପ୍ରେମର, ଅଭିଶାପର, ସମୟର – / କିନ୍ତୁ ତା' ଭିତରୁ / ନ୍ୟାୟକୁ ପାଇବା ଆଜି କଷ୍ଟକର ।" (କିଏ କହିଲା ରକ୍ତରେ ଏ ଦେଶ ଗଢ଼ା ନୁହଁ – ପୃ. ୬) ।

ଓଡ଼ିଶା ଇତିହାସ ଓ ଭୂଗୋଳ ହିଁ ବାୟାରଜାର ପୃଷ୍ଠପଟ । ସମୟ ଓ ପରିବେଶ ହେଉଛି ବାୟାରଜାର ଅନ୍ୟ ଏକ ରୂପ । ନଦୀ, ନାରୀ, ଭିକାରି, ଚିଲିକା ଓ ଋଷିକୁଲ୍ୟା, ତାଳଚେର ଟ୍ରେନ୍, ଅଭିନେତ୍ରୀ ମହାଶ୍ୱେତା, ଅଗ୍ରଜ କବିଙ୍କ କୃତ୍ରିମ ଭାଷଣ, କଳାହାଣ୍ଡିର ଭୋକ, ଫାଇଲର ବିଳମ୍ବିତ ନିର୍ଦ୍ଦେଶ-ଏ ସବୁକିଛି ଓଡ଼ିଆ ମାଟିର ଜନଜୀବନର ସ୍ଥୂଳରୂପ । ଯା ଭିତରେ କାବ୍ୟନାୟକର ସମ୍ବେଦନଶୀଳ ପ୍ରେମପ୍ରବଣ ଆତ୍ମା ଛଟପଟ ହୁଏ । ଭ୍ରଷ୍ଟ ରାଜନୀତି ଓ ପ୍ରତିବାଦହୀନ ବ୍ୟକ୍ତିବିଶେଷଙ୍କୁ ଦେଖି ଏହି ଯନ୍ତ୍ରଣା ବହୁଗୁଣିତ ହୋଇଯାଏ ।

ଅନ୍ୟ ଏକ ପର୍ଯ୍ୟାୟରେ ଆସେ ନାରୀନିର୍ଯାତନା, ଧର୍ଷଣ, ଓ ଅତ୍ୟାଚାରର ସହିଷ୍ଣୁ ରୂପ ଏବଂ ଏଥିପ୍ରତି କବିଙ୍କର ଅସୀମ ସମବେଦନା, ପ୍ରଚୁର ସୁମନାସ । ଆଜି ନୁହେଁ, ଏହି ନାରୀ ସମାଜ ପରମ୍ପରାକ୍ରମେ ନିର୍ଯାତିତା ଓ ଭାରଗ୍ରସ୍ତା- "ନ ଥିବା ଝିଅଟି ମୋର ଆଜି ମୋ ଆଗର କ୍ଷୀଣ ମୁହଁ ନେଇ ଆସେ ।/ ଜାଣିପାରେ ମୁଁ / ମୋର କାନ୍ଥ ସେ ପଟେ କେମିତି / ନିଜର ଭଙ୍ଗା ଅଣ୍ଟା ଧରି ଅଣ୍ଡାଳୁଥାଏ ସେ ସୂର୍ଯ୍ୟଙ୍କୁ / ରାତିର ବାରମ୍ବାର ଧର୍ଷଣରେ" (ନ ଥିବା ଝିଅଟି-ପୃ.୪) । ଏହି ଅପ୍ରସ୍ତୁତ ସମୟର ଅବକାଶରେ ଅବହେଳିତ ନାରୀତ୍ୱକୁ ସମ୍ମାନ ଜଣାଇ ଆପାତତଃ ଆଶାର ବାଣୀ ଶୁଣାନ୍ତି କବି- "ଶୋଇଥା ଲୋ ଝିଅ / ସମୟର ମଇଳା ମସିଣାରେ-ତୋ ନିଦ / ଖାଲି ଚାଲୁଥାଉ / ତୋ ମାଆର ମଇଳା ସ୍ୱପ୍ନ / ଏକାକୀ / ତାରାମାନଙ୍କ ଭିତରେ ସୁଦୂର ପଥର ପ୍ରତୀକ୍ଷାରେ" (ପୃ.୧୩) । ଆଜି ବିଭୁକୃପା ତିରୋହିତ, ମଣିଷ ବି ଶକ୍ତିସାମର୍ଥ୍ୟହୀନ । ଝିଅଟିଏ ବଳିପଡ଼େ । ରକ୍ତାକ୍ତ ହୁଏ ନାନାଭାବରେ "କାହାର ବି ଅଦୃଶ୍ୟ ହାତ / ଆକାଶରୁ ଖସିନାଇଁ ତ / ଚିତ୍କାର କରୁଥିବା ଝିଅଟିକୁ ଘୋଷାରି ନେଲାବେଳେ ବାଧା ଦେବାକୁ ଆଉ ସେ ଛୋଟ ଝିଅଟିର ଶବରୁ / ଘାସ ବଢୁଥିଲା ମୋରି ଦେହରେ ।" (ଖରାବେଳ-ପୃ.୩୬) ।

ଯେତେବେଳେ ସମ୍ବେଦନଶୀଳତାର ସ୍ରୋତ ପ୍ରଖର ହୁଏ, ଅସମର୍ଥତାର ଖଂଜପଣ କାବ୍ୟନାୟକଙ୍କ ନିକଟରେ ପ୍ରତୀତ ହୋଇଯାଏ, ବିଶେଷକରି ଯେଉଁ ଶୁଦ୍ଧ ସହାନୁଭୂତି କବିତା ମାଧ୍ୟମରେ ପ୍ରକଟିତ ହୋଇଯାଏ, ତା'ର କ୍ରିୟାଶୀଳତା ବିଷୟରେ ପ୍ରଶ୍ନ ଉଠେ । ତାହା କ'ଣ ଏହି ଅନ୍ୟାୟ, ଅତ୍ୟାଚାର, ଭ୍ରଷ୍ଟନୀତିର ପ୍ରତିରୋଧ କରିବା ନିମିତ୍ତ ଯଥେଷ୍ଟ ? ବାୟାରଜାର ଏଇ ପୃଥିବୀ କ'ଣ କାବ୍ୟିକ ସମ୍ବେଦନାଦ୍ୱାରା ସୁସ୍ଥ ସୁନ୍ଦର ହୋଇପାରେ ? ସ୍ୱପ୍ନ ଓ ଅଭୀପ୍ସାର ଯୋଗ୍ୟ ଗୋଟିଏ ପୃଥିବୀ ନୂଆକରି ଗଢ଼ିତୋଳିହୁଏ ? ଆଜି ଈଶ୍ୱର ହୁଏତ ଥାଇପାରନ୍ତି, ମାତ୍ର ସେ କ୍ରିୟାରହିତ । ଈଶ୍ୱରନିର୍ଭରତା, ଅତଏବ ନାହିଁ ଓ ମଣିଷର ବିବେକ ମଧ୍ୟ ଅବ୍ୟବସ୍ଥିତ । କାବ୍ୟିକ ସହାନୁଭୂତିର ମଧ୍ୟ ଗଠନମୂଳକ ମୂଲ୍ୟ ନାହିଁ । ତେବେ ମଣିଷ ପାଇଁ ଆଶ୍ୱାସନା କାହିଁ ? କବିଙ୍କ ଅନୁଶୋଚନାର ଅନ୍ତ ନାହିଁ । ବୋଝ ବୋହି ବୋହି ତରୁଣୀ ବୟସରେ ଅଣ୍ଟା ଭାଙ୍ଗିଯାଉଥିବା ମୂଲିଆଣୀକୁ ଦେଖି ନିଜକୁ ଅସହାୟ ମନେ କରନ୍ତି କବି । ପ୍ରତିକାର କାହିଁ, ପରିତ୍ରାଣ ବି କାହିଁ ? ଶବ୍ଦର

ସହାନୁଭୂତି ଟିକ କେତେ ସାମାନ୍ୟ – "ତା' ପାଦ ଦୁଇଟି ଉପରେ ଆଖି ପଡ଼ିଲା ମୋର / ଫାଟି ଫାଟି ଆଁ କରିଥିବା ପାଦ ଦୁଇଟି / ସେ ପାଦ କେମିତି ମା-ଛେଉଣ୍ଡ ପରି ଲାଗିଲା / କେହି ତା'ର ନ ଥିବା ଭଳି/ ଯେମିତି ହୁକିଟୋଲା ଦ୍ୱୀପରେ / ଗଛମାନଙ୍କରେ ଭର୍ତ୍ତିଥିବା ପାଚିଲା ବରକୋଳି:" (ଭାବିଲି ଅକାରଣେ-ପୃ.୫୧) । ସେଇଥିପାଇଁ କବିତାର ଧାଡ଼ି ଛୋଟା ହୋଇଯାଇଛି – ଛନ୍ଦାୟିତ, ସ୍ୱାଭାବିକ ଗତିରେ ଆଗେଇପାରୁ ନାହିଁ । ଥରକୁ ଥର ଧକ୍କା ଖାଇ ଖାଇ ସେ ଖଞ୍ଜ । ମଲ୍ଲୀବୁଢ଼ୀର ଦିନ ଦିନ ଭୋକଶ୍ୱାସରେ ସେ ଧକ୍କା ଖାଉଛି କେବେ ତ ରାଜନୀତିକ ନେତାର ପ୍ରତାରଣାର ହସରେ କ୍ଷତାକ୍ତ ହେଉଛି । ପୂର୍ବକାଳରେ ଭୋକ ଥିଲା, ଦୟା ବି ଥିଲା । କବିତାର ଶବ୍ଦଗୁଡ଼ିକ ପ୍ରତାରଣାର ହାଓ୍ୱାରେ ମତ୍ତ ହୋଇଯାଉ ନ ଥିଲେ । ଆଜି କିନ୍ତୁ କବିର ସମ୍ବେଦନା ନିଷ୍ଠୁରତା ଓ ପ୍ରତାରଣା ସହ ଧକ୍କା ଖାଇ ଛୋଟା ହୋଇଯାଉଛି । ବର୍ତ୍ତମାନର ଛଳନା ଓ ପାରସ୍ପରିକ ଘୃଣାରେ କବିତାର ସୂକ୍ଷ୍ମଦେହ ଜର୍ଜର – ସେ ସାବଲୀଳତା ହରାଇଛି । ମାତ୍ର କବିତା ଯେ ସ୍ୱପ୍ନ ଓ ସଂଭାବନାର ସଂଜୀବନୀ ! ସେଥିପାଇଁ କବି କହନ୍ତି ଏଇ ଖଂଜ କବିତାର ଧାଡ଼ି ଭିତରେ ବି ପରିପୂର୍ଣ୍ଣତା, ସଂକଳ୍ପ ଓ ସଂଭାବନାର ଶବ୍ଦ ଗୋଟିଏ ଅଛି । ସେ ଗୋଟିଏ ବାଟବଣା ଘରଚଟିଆ ହୋଇପାରେ-ଯନ୍ତ୍ରଣାଜର୍ଜର ହୋଇପାରେ, ତଥାପି ସେ ଅଛି, "ଆଉ ସେଇ ଧାଡ଼ିର ଶବ୍ଦର ଗୋଟିଏ ଆଜି / ଘରଚଟିଆଟି ପରି / ଘର ଭିତରକୁ ଭୁଲରେ ପଶିଆସି / କେବଳ ଭୟରେ ବାଡ଼େଇ ହେଉଥାଏ / ଦୁନିଆର ହିତାହିତର କାଚଝରକାମାନଙ୍କରେ ।" (ଆଜି କବିତାର ଧାଡ଼ି ଗୋଟିଏ ହୋଇଛି ଛୋଟା-ପୃ.୭୪)

ଭଲ ପାଇବା ଭିତରୁ କବିତାର ଜନ୍ମ । ଅନୁଚ୍ଚାରିତ ଭଲପାଇବାର ଯନ୍ତ୍ରଣା କବିତାରେ ରୂପ ପରିଗ୍ରହଣ କରେ । ଏ କବିତା ତେଣୁ ପାଚିଲା ଶସ୍ୟ ପରି ଐଶ୍ୱର୍ଯ୍ୟମୟ – "ମତେ / କେବେ ବି ତୁମେ / କହି ନ ଥିବା ସେ କଥା ପଦପଦରେ ଅନ୍ଧାର / ଜମିଗଲା / ସହିଷ୍ଣୁ କାଗଜ ଉପରେ / ଧାନ ପୁଣି ପାଚିଲା ବିଲରେ ।" (ଯୂଇଟିଏ ଫୁଟିଛି ବାଡ଼ରେ-ପୃ.୭୫) ଏହି ଐଶ୍ୱର୍ଯ୍ୟମୟତା ସତ୍ତ୍ୱେ କବି ଏରିକ୍‌ଫ୍ରାଡ୍‌ଙ୍କ କବିତା ସ୍ମରଣକୁ ଆସେ, "କବିମାନଙ୍କ କଥା କେହି କେବେ ଶୁଣୁ ନ ଥିଲେ" । ବସ୍ତୁତଃ ସେଇଥିପାଇଁ କବି ଚେତନାରେ ଆତ୍ମଗ୍ଳାନିର ସ୍ୱାକ୍ଷର । ଗଭୀର ସମ୍ବେଦନା, ଶୁଭକାମନା ସତ୍ତ୍ୱେ କିଛି ବଦଳୁ ନାହିଁ, କବିତାର ମର୍ମବାଣୀ କେହି ଶୁଣୁ ନାହିଁ, ଶୁଣିବେ ନାହିଁ । କବି ଜାଣନ୍ତି କବିତାର ଜନ୍ମରହସ୍ୟ, ତା'ର ଅସହାୟତା, ତା'ର ଅସାମର୍ଥ୍ୟ । କବିତା ଯଦି ବୃଥା, ତେବେ ତା' ଶବକୁ ଫିଙ୍ଗିଦିଆଯାଉ । କିନ୍ତୁ କବିତାର ରହସ୍ୟଗୁଣ ଓ ଭୀଷଣତା ପ୍ରତି ସେ ସଚେତନ । କବିତା ବି ଅସୁର ହୋଇପାରେ- "ଯାହା ବି ହେଉ / କବିତାର ଶବକୁ ସେମିତି ଫିଙ୍ଗିଦେଲେ ଚଳିବ / ଶବ୍ଦକୁ ସେମିତି ଛାଡ଼ିଦିଅ, ବନ୍ଧୁ, ଅନ୍ଧାର ରାତିଟିରେ / କେବେ କେବେ ଦେଖିବ / ଅସୁର ଭଳି ଫେରିଆସି ମଣିଷଙ୍କୁ ଖାଇବା ଆରମ୍ଭ କରିବ ।" (ଶବ୍ଦର ସୀମା-ପୃ.୬୪) ।

ତେବେ, ଦେଶର ମାଟିଯାଏଁ ଲମ୍ବିଥିବା କବିଙ୍କ ହୃଦୟର ପାହାଚରେ ପାଦ ଦେଲେ ଯେ କେହି ପାଠକ ଭଲପାଇବାର ତିକ୍ତମଧୁର ସ୍ପନ୍ଦନ ଅନୁଭବ କରିପାରିବ । ଭଲ ପାଇବା ହିଁ ଚରମ ସତ୍ୟ-ମାଟି, ମଣିଷ ଓ ଶବ୍ଦ-ଏ ସକଳ ପାଇଁ ନିଃସର୍ତ୍ତ ଭଲପାଇବା । ସମୟ ଓ ସମାଜର ସକଳ ବିଘଟଣ ଓ ଅସୁନ୍ଦରପଣକୁ, ଆସୁରିକତାକୁ ସୁନ୍ଦର କରିପାରିବ ଏହି ଆତ୍ମୀୟତା । ଭଲ ପାଇବାର କୋମଳ, ସବୁଜ, କ୍ଷଣବଦଳ ସତ୍ୟଟିକୁ ଓ ପ୍ରତୀକ୍ଷାର ଅନ୍ତରାଳରେ ଥିବା ଅଭୀପ୍ସାକୁ କବି ରୂପାନ୍ତରିତ କରନ୍ତି- "କିନ୍ତୁ ଭଲପାଇବାର ସତ୍ୟ ପୁଣି କ'ଣ ? / ଶ୍ରାବଣର ଧାନକ୍ଷେତର ସବୁଜ କୋମଳ ରଙ୍ଗ ପରି କିଛି ? ନା ପ୍ରତ୍ୟେକ ମୁହୂର୍ତ୍ତରେ ସମୁଦ୍ରର ଭାଙ୍ଗୁଥିବା ଦେହସବୁ ?" (ଭଲପାଇବା ସାଦାସିଧା ଭାବେ-ପୃ. ୫୫ ।

କବି ଜୟନ୍ତ ମହାପାତ୍ର ବିଗତ ତିନି ଦଶନ୍ଧିଧରି ଇଂରାଜୀ କବିତା ରଚନା କରି ବହୁ ଯଶ ଓ ସ୍ୱୀକୃତିର ଅଧିକାରୀ ହୋଇଛନ୍ତି । ଓଡ଼ିଶା ପାଇଁ ପ୍ରଚୁର ଗୌରବ ଆଣିଛନ୍ତି । ସାରା ବିଶ୍ୱର କବି ଓ କବିତାପ୍ରେମୀ ଓ ଭାରତୀୟ କବିତା ପ୍ରେମୀମାନ୍ତେ ତାଙ୍କୁ ସମ୍ମାନ କରନ୍ତି । ତାଙ୍କ ଅନନ୍ୟ କାବ୍ୟପ୍ରତିଭା ବହୁମନ୍ତେ ସ୍ୱୀକୃତ । ଓଡ଼ିଆ ସାହିତ୍ୟର ବ୍ୟାପକ ଅନୁବାଦକରି ସେ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ତା'ର ପ୍ରସାର ଘଟାଇଛନ୍ତି । ଆମ ସାହିତ୍ୟକୁ ବାହାରେ ପହଞ୍ଚାଇବାର ପବିତ୍ର ଦାୟିତ୍ୱ ସେ ସ୍ୱେଚ୍ଛାରେ ବହନ କରିଛନ୍ତି । ତାଙ୍କ ଇଂରାଜୀ କବିତାରେ ଭାରତୀୟତା ସହ ଓଡ଼ିଆତ୍ୱର ସୁଗନ୍ଧ ବାରି ହୋଇପଡ଼େ । ବାରି ହୋଇପଡ଼େ ବୋଲି ହୁଏତ ବିଶ୍ୱପରିପ୍ରେକ୍ଷୀରେ ସେ ନିଜସ୍ୱ ମୌଳିକତା ନେଇ ବାରିହୋଇପଡ଼ନ୍ତି । କବିତା ସଂରଚନା ଓ କବିଚେତନା ସମ୍ପର୍କରେ କେତେକ ନିଗୂଢ଼ ତତ୍ତ୍ୱକୁ ସେ ଗଦ୍ୟମାଧ୍ୟମରେ ପ୍ରକାଶ କରିଛନ୍ତି । ବସ୍ତୁତଃ କଟକ ସହର ଓ ତା'ର ନଗ୍ନ ସୌନ୍ଦର୍ଯ୍ୟ, ତଥା ଓଡ଼ିଶାର ଅସହାୟତା ତାଙ୍କ କବିତାର କଥାବସ୍ତୁ । 'ବଳି', 'କହିବି ଗୋଟିଏ କଥା' ଓ 'ବାୟାରଜା'- ତିନିଗୋଟି ଓଡ଼ିଆ କବିତାର ସଂକଳନ ମଧ୍ୟରେ ତାଙ୍କର ଉନ୍ନତ ମାନବିକ ଦୃଷ୍ଟିକୋଣ ଓ ଆକୁଳ ସମ୍ବେଦନଶୀଳ ହୃଦୟକୁ ଅନୁଭବ କରିହୁଏ । ମାତୃଭୂମି, ତା'ର ଦୁର୍ଦ୍ଦଶା, ବିଡ଼ମ୍ବନା ଓ ନାରୀ ଜାତିର ନିର୍ଯାତନା ଓ ଅବହେଳା ନିମିତ୍ତ ତାଙ୍କର ହୃଦୟ ଆହତ ଓ ଯନ୍ତ୍ରଣାକ୍ତ । 'କହିବି ଗୋଟିଏ କଥା' ସଂକଳନରେ ଉପରୋକ୍ତ ଭାବବୋଧର ଗଭୀର ବାର୍ତ୍ତା-ସମବେଦନାର, ଆପଣାପଣର ଅନନ୍ୟ ଉଚ୍ଚାରଣ - ''ବୋହୂ ଦିନସାରା ବସନ୍ତ ପବନ ପରି ତା' ନିଜର ଖୋଲି ଦେଇଥିବା ଦେହକୁ / ଧରି କାମ କରିଯାଏ, ଆଉ ନିରେଖି ଦେଖିଲେ / ହାତ ପାଦରୁ ତା'ର / ମାଟି ବଢ଼ିଲା ପରି ମନେହୁଏ / ଅଥଚ ତା' ଚକୁଳିର ଆଣରେ ବାଲି ଟିକେ ବି ନ ଥାଏ ।" (ସମୟର ଆକାଶ-ପୃ.୧୩ । ଅବହେଳିତ ନାରୀତ୍ୱର ଚିତ୍ର ଉପରୋକ୍ତ ସଂକଳନଟିରେ ପ୍ରଚୁର । ନାରୀର ତ୍ୟାଗ ଓ ମହିମାକୁ ସେ ଈଶ୍ୱରଙ୍କଠାରୁ ଅଧିକ ନିର୍ଭରଯୋଗ୍ୟ ବୋଲି ବିଚାରନ୍ତି - ସେତେବେଳେ ଈଶ୍ୱର ବୋଧହୁଏ ପୁରୁଣା ଖବରକାଗଜ ପରି / ବିଷଣ୍ଣ ହୋଇ କୋଉଠି

ପଡ଼ିଥାନ୍ତି କେବଳ ଗୋଟିଏ / ଗୁଣବତୀ ସ୍ତୀର ଛାୟାର ଟୁକୁରା ସବୁ ଝୁଲୁଥାନ୍ତି ଶୂନ୍ୟ ଡାଳମାନଙ୍କରୁ ।" (କହିବି ଗୋଟିଏ କଥା-ପୃ-୨୨) ।

ପ୍ରକୃତରେ ଜୟନ୍ତଙ୍କ ଜୀବନ୍ତ ସଂବେଦନଶୀଳତାରୁ ତାଙ୍କ କବିତାର ଭାବାବେଗ ମଧ୍ୟ ଦେଇ ସଂଭାବନା କଅଁଳିଆସେ । ତଥାପି କେହି ଆଲୋଚକ ତାଙ୍କ କବିତାର ଭାବଭୂମି ଓ ଶବ୍ଦପ୍ରୟୋଗ କଳାକୁ ଆଲୋଚନା କରି କିଛି ଭିନ୍ନ ମନ୍ତବ୍ୟ ଦେଇଛନ୍ତି । ମାତ୍ର ମୋର ହୃଦ୍‌ବୋଧ ହେଉଛି ଯେ, କବି ଜୟନ୍ତ ମହାପାତ୍ରଙ୍କ କବିତାର ଭାବଭୂମି ଉଜ୍ଜ୍ୱଳ, ପରମ୍ପରାସିଦ୍ଧ ଓ ଗଭୀର ମାନବିକ ସଂବେଦନାରେ ପରିପୂର୍ଣ୍ଣ-ଏଠାରେ ଦ୍ୱିମତ ହେବା ବରଂ ଅବିମୃଶ୍ୟକାରିତା ହୋଇପାରେ । ତଥାପି ଶବ୍ଦ ପ୍ରୟୋଗ ଓ ପଂକ୍ତି ଗଠନରେ ସମୟେ ସମୟେ କିଛି ତ୍ରୁଟି ଦେଖାଯାଏ-ଏଗୁଡ଼ିକ ହୁଏତ ବହୁବର୍ଷ ଧରି ଏଯାବତ୍ ଇଂରାଜୀ କବିତା ରଚନା ନିଜସ୍ୱ ସଂଯମ ସହ ତାଙ୍କ କାବ୍ୟମାନସର ସମ୍ପୃକ୍ତିରୁ ଆସିଯାଇଥିବା ସଂଭବ । ମାତ୍ର ଗଭୀର ଆନ୍ତରିକତାର ଉଚ୍ଚାରଣ ଯେପରି ଅପରର ଅନ୍ତରକୁ ସିଧାସଳଖ ସ୍ପର୍ଶ କରିଯାଏ, ତାଙ୍କ କବିତା ସେହିପରି, ଭାବସଂପ୍ରେଷଣ ଦିଗରେ କୌଣସି ପ୍ରତିବନ୍ଧକ ରହେ ନାହିଁ । ଅନେକ ଅପାରମ୍ପରିକ, ନୂତନ ଓ ଶାଣିତ ଚିତ୍ରକଳ୍ପରେ ତାଙ୍କ କାବ୍ୟ ବକ୍ତବ୍ୟ ସମୃଦ୍ଧ । ଉଦ୍ଧୃତି ମଧ୍ୟରେ ସେଥିରୁ କେତେକ ଉଲ୍ଲେଖ କରାଯାଇଅଛି ।

ପୂର୍ବ ଦୁଇଗୋଟି ପୁସ୍ତକଠାରୁ ଏହି 'ବାୟାରଜା'ର ବିଶେଷତ୍ୱ ଏହି ଯେ, ଏଥିରେ କେତେଗୁଡ଼ିଏ ପୁରାଣକଳ୍ପର ସଫଳ ପ୍ରୟୋଗ ଘଟିଛି । ଏହାରି ମାଧ୍ୟମରେ ସଂବେଦନଶୀଳତା ଓ ଆକୁଳତା ହୋଇଛି ପ୍ରଗାଢ଼ ଓ ପରିପକ୍ୱ । ଏକଲବ୍ୟଙ୍କ ଗୁରୁଭକ୍ତି, ସତ୍ୟଶୀଳତା, ଯୁଧିଷ୍ଠିରଙ୍କ ଜ୍ଞାନ, ପାଞ୍ଚାଳୀଙ୍କ ବସ୍ତ୍ରହରଣ ଓ ତାଙ୍କର ମୁକ୍ତକେଶ ଆଦି ପୁରାଣ ଚେତନା ପ୍ରସଙ୍ଗକ୍ରମେ ସୁପ୍ରଯୁକ୍ତ ହୋଇ ଏହି କାବ୍ୟ ଚେତନାର ଭିତ୍ତିଭୂମିକୁ ପରମ୍ପରାସହ ସଂବଦ୍ଧ କରିପାରିଛି ।

'ବାୟାରଜା'ର ପ୍ରଚ୍ଛଦରେ, ବାୟାରଜାର ପ୍ରତୀକ ମାଧ୍ୟମରେ, ପ୍ରଚଳିତ ସମାଜବ୍ୟବସ୍ଥା ଓ ଅବ୍ୟବସ୍ଥିତତା ମଧ୍ୟରେ ମାନବିକତାର ଆକୁଳ ଦୀର୍ଘଶ୍ୱାସ ଓ ତା'ର ଅସହାୟତା ପ୍ରାଞ୍ଜଳ ହୋଇଅଛି । ବର୍ତ୍ତମାନ ଯୁଗର ଭୟଙ୍କର ଅନାତ୍ମୀୟତା ମଧ୍ୟରେ ଶ୍ରୀ ମହାପାତ୍ରଙ୍କ କବିତାଗୁଡ଼ିକର ଆନ୍ତରିକତା ଅନେକ ଆଶ୍ୱାସନା ପ୍ରଦାନ ନିମିତ୍ତ ସମର୍ଥ ।

❖❖❖

# ମୋ ଜୀବନ, ମୋ ସୃଜନ

ପ୍ରଖ୍ୟାତ ଲେଖକ, ଲେଖକ ସଙ୍ଗଠକ, ଜାତୀୟ ପୁସ୍ତକ ନ୍ୟାସର ସଂଯୋଜକ 'ସକାଳ ସିନ୍ଦୂର'ର କବି ଶ୍ରଦ୍ଧେୟ ପ୍ରମୋଦ ସର ଓ ପ୍ରିୟ ସଜ୍ଜନ ମଣ୍ଡଳୀ ।

କବିତା ରଚନା ମୋ ଚେତନା ନିମିତ୍ତ ଏକ ମୁକ୍ତି, ମୋ ଜୀବନର ଚରମ ଦୁର୍ଦ୍ଦିନକୁ ମୁକାବିଲା କରିବାର ସ୍ପର୍ଦ୍ଧା । ମଣିଷ ଓ ପ୍ରକୃତିସହ ଏକାତ୍ମ ହୋଇଯିବାର ଏକ ତୀବ୍ର ଅବବୋଧ । କ୍ଷୁଧାରେ ଶରୀର ଛଟପଟ ହେଲାଭଳି, ଉପଯୁକ୍ତ ପୁସ୍ତକ ପଠନ ଅଭାବରେ ମୋର ଚେତନା ଛଟପଟ ହୁଏ, ମୋତେ ଖୁବ୍ ଏକୁଟିଆ, ଫାଙ୍କାଫାଙ୍କା ଲାଗେ ।

ଏହି କୋରାପୁଟ ସହରରେ ମୋର ଶୈଶବର ପ୍ରାରମ୍ଭ- ତା'ର ପାହାଡ଼ିଆ ରାସ୍ତା, ପାହାଡ଼ ପର୍ବତ ନାଁ ଅଜଣା ବଣୁଆ ଫୁଲ, ମାଛକୁଣ୍ଡନଦୀ, ଗର୍ଜମାନ ପ୍ରପାତ । ମୋ ବାଲ୍ୟକାଳ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଅତିବାହିତ ମୋ ସ୍ମୃତିରେ ଏବେ ବି ଜୀବନ୍ତ ।

୧୯୭୬ର ମଧ୍ୟଭାଗ ପର୍ଯ୍ୟନ୍ତ ରେଭେନ୍ସା କଲେଜରେ ପାଠପଢ଼ା ଓ ଅଧ୍ୟାପନା, କଟକରେ ରହଣି । ୧୯୭୬ ମଧ୍ୟ ଭାଗରେ ଆସିଲି ଭୁବନେଶ୍ୱର-ସେଠାରେ ଜଳବିହୁନେ ମୀନପରି ମୋ ଅନ୍ତଃସତ୍ତା କଲବଲ ହେଉଥିଲା । ମାତ୍ର ଅଳ୍ପକାଳ ପରେ ଏହି ସହର ମୋର ଏକାନ୍ତ ପ୍ରିୟ ଭୂମି ପାଲଟିଗଲା ।

ପ୍ରିୟ ମଣ୍ଡଳୀ - ଆଜିଠାରୁ ୬୦ବର୍ଷ ତଳେ ଝିଅଟିଏ ମଫସଲ ଗାଁରେ ପଢ଼ିବା, ବଢ଼ିବା, ଏମିତି ସହଜ ନ ଥିଲା । ମୁହଁପୋତି ଘରୁ ସ୍କୁଲ, ସ୍କୁଲରୁ ଘର, ଦୃଷ୍ଟିର ଦିଗନ୍ତ ପ୍ରସାରିତ ହେବାର ଦିଗରେ ପ୍ରଚୁର ପ୍ରତିବନ୍ଧକ, ଅଳ୍ପ ବୟସରେ ମୋର ବିବାହ, ଚେତନାର ବ୍ୟାପ୍ତି ଦିଗରେ ମଧ୍ୟ ଅନ୍ତରାୟ ହୋଇଥିଲା । ମାତ୍ର ମୁଁ ଆତ୍ମ-ଆଲୋଚନା ନିମିତ୍ତ, ବିଡ଼ମ୍ବନାରୁ ମୁକୁଳି ଆସିବା ନିମିତ୍ତ, ପ୍ରଚେଷ୍ଟାରେ ବ୍ୟାପ୍ତ ରହିଲି । ଏହି ଆତ୍ମାଲୋଚନା ଯେତିକି ବ୍ୟାପ୍ତ ହୋଇଥିଲା, ସେତିକି ଗଭୀର ହୋଇଥିଲା । ନିଜ ଭିତରେ ମୁଁ ଗଢ଼ିବାକୁ ଲାଗିଲି ଏକ ଭିନ୍ନ ଜଗତ-ନିଷ୍ଠୁରତା ମୁକ୍ତ, ନୀଚତା, କ୍ରୂରତା ମୁକ୍ତ ଏକ ଅନ୍ତର୍ଜଗତ । ନ ହେଲେ, ତାରୁଣ୍ୟର ସେହି ତାଡ଼ନାମୟ ଭୂମିରେ ମୁଁ, ଠିଆହୋଇ ରହିପାରିଥାନ୍ତି କିପରି ?

ସେହି ଅନ୍ତର୍ଜଗତର ମହାର୍ଘ ଚିତ୍ର, ମୁଁ କବିତା ମାଧ୍ୟମରେ ଆଙ୍କି ଯିବାରେ ଲାଗିଲି । ମିଳିଲା, କିଛି କିଛି ପାଠକଙ୍କ ସ୍ୱୀକୃତି । ପରବର୍ତ୍ତୀ ସମୟରେ ଜୀବନର ମହାନ୍ ଐଶ୍ୱର୍ଯ୍ୟକୁ,

ଐକାନ୍ତିକ ପୀଡ଼ାକୁ, ଅନ୍ତର୍ଜଗତର ଆକର୍ଷଣକୁ ଆପଣା ରକ୍ତରେ ଗୋଳି ଦେଲି, ଲୁହର ସ୍ରୋତରେ ମିଶାଇ ଦେଲି ଏବଂ ଆନନ୍ଦର ଅସୀମତା ଭିତରେ ସନ୍ତରଣ କରିବାରେ ଲାଗିଲି ।

ମୋ କବିତାରେ, ମୋ ଜୀବନର ଅନ୍ତର୍ଧ୍ୱନି, ତିନିଗୋଟି ପ୍ରତୀକ ମାଧ୍ୟମରେ ଉଚ୍ଚାରିତ ହେବାର ଅନୁଭବ କଲି । ପ୍ରଥମଟି ଲୋକକଥାର 'ସାହାଡ଼ା ସୁନ୍ଦରୀ', ଦ୍ୱିତୀୟଟି ରାମାୟଣର ଶବରୀ ଓ ତୃତୀୟଟି 'ପରୀ' । ଅସୁନ୍ଦର ଅସ୍ତିତ୍ୱ ଭିତରେ, ଏକ ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ପ୍ରଥମଟିରେ ଅଭିବ୍ୟକ୍ତି ଲାଭ କଲା । 'ଶବରୀ' ରାମାୟଣର ଚରିତ୍ର, ଯାହାଙ୍କ ସମ୍ପର୍କରେ, ପୌରାଣିକତା ସଂକ୍ଷିପ୍ତ ମାତ୍ର । କିନ୍ତୁ, ଶବରୀ ମୋ ଜୀବନାନୁଭବର ଏକ ମୂର୍ତ୍ତ ଚିତ୍ର । କେତେକ ପାଠକ ପାଠିକା, ଏହି ପୁସ୍ତକଟିକୁ ସେମାନଙ୍କ ଉପାଧାନ ତଳେ ରଖି ନିଦ୍ରାଯାଉଥିବାର ଶୁଣିଥିଲି । 'ପରୀ' ଆମ ସ୍ୱପ୍ନ, କଳ୍ପନାରାଜ୍ୟର ଚରିତ୍ର, ଏକ କୁହୁକ ଚରିତ୍ର । ଏହାର କୁହୁକ ବାସ୍ତବତା ମୋର ପରିପାର୍ଶ୍ୱ ଓ ସାମାଜିକ ଅସଙ୍ଗତିକୁ ସୁଧାରି ନେବାର କଳ୍ପନାରେ ମଜ୍ଜିରହି ମୁଁ ବିଭୋର ହୋଇ ପଡ଼ିଲି । ଯାହା ହୋଇପାରିଥାନ୍ତି, ହୋଇପାରି ନାହିଁ । ଯାହା କରିପାରିଥାନ୍ତି, କରିପାରି ନାହିଁ । ସେସବୁକୁ, ଏହି ଅଲୌକିକ ଚରିତ୍ର ମାଧ୍ୟମରେ ସମ୍ଭବ କରିବାକୁ, ପ୍ରୟାସ କଲି । ପ୍ରୟାସ ସଫଳ ହେଲା କି ନାହିଁ ଭିନ୍ନ ପ୍ରସଙ୍ଗ, କିନ୍ତୁ ଯେ ପ୍ରୟାସ ଜୀବନ୍ତ ଓ ଗଠନମୂଳକ ଦୃଷ୍ଟିକୁ ଉତ୍ତୋଳିତ କଲା । ମୋ ଜୀବନ ଓ ଜଗତର ଦିନିଲିପି ବି ହୋଇପାରେ ମୋର କବିତା । ସତ କହିବାକୁ ଗଲେ ମୁଁ ନିବିଡ଼ ଭାବେ ଭଲପାଇଛି, ପ୍ରତିଦାନ ପାଇଛି ପ୍ରଚୁର । କବିତା ରଚନା କାଳରେ, ଏକାକୀ ବନ୍ଦଘର ଭିତରେ ବସିଲାବେଳେ ମତେ ଲାଗେ ମୁଁ ଏକା ନାହିଁ ମୋର ପ୍ରେମିକ, ମୋ ସାଥୀରେ ରହିଛି । ମୋ କବିତାରେ ଏହାର ମୂର୍ତ୍ତ ରୂପ –

"ଧରିଥିଲି ଛାତିରେ / ଗଛ ପତ୍ରଙ୍କୁ ଯେତିକି/ ମଣିଷଙ୍କୁ ସେତିକି / ପତଙ୍ଗଟିକୁ ବି ସେତିକି ନିବିଡ଼ରେ ।" 'ରକ୍ଷିବିସନା'– ଅଧାଅଧା ନକ୍ଷତ୍ର ।

ଭଦ୍ର ମହୋଦୟଗଣ– ମୋ କବିତା ମୋ ବଞ୍ଚିବାର ଅଯୋଗ୍ୟତାକୁ ପ୍ରାସଙ୍ଗିକ ନ କରି ଜୀବନ-ଭୂମିରୁ ରସ ସଙ୍ଗ୍ରହ କରିଛି । ମୋତେ ଦେଇଛି ବିପୁଳ ସ୍ୱୀକୃତି । ଶବ୍ଦ ଓ ଧ୍ୱନି ଓହ୍ଲାଇ ଆସିଛନ୍ତି ଜୀବନ-ବୃକ୍ଷର ଶାଖା ପ୍ରଶାଖାରୁ । ଜୀବନର ବାସ୍ତବତା ମୋତେ ଅଣନିଃଶ୍ୱାସୀ କରିପକାଇଲାବେଳକୁ କବିତା ସୁରଭିତ ଅମ୍ଳାନ ଭଳି ମୋତେ ବଞ୍ଚାଇ ରଖିଛି ଓ ତତ୍‌ସଂଗେ ସ୍ପର୍ଦ୍ଧାର ସହ ଆଗୁସାର ହେବାରେ ସମର୍ଥ କରିଛି । ଜୀବନ ଓ କବିତାରେ ସେହି ସୂକ୍ଷ୍ମ ସମ୍ପର୍କର ସୂତ୍ର ମୁଁ ଠିକ୍ ମତେ ପାଇ ନାହିଁ । କେମିତି ସେ ଦୁହେଁ ପରସ୍ପର ସନ୍ନଦ୍ଧ । ହୁଏତ କବିତା, କବିତା ଭଳି କିଛି ଆବେଗ ମତେ ଦୃଢ଼ସ୍ପର୍ଦ୍ଧିତ କରିଛି ।

ସୁଧୀବୃନ୍ଦ, ଶେଷରେ ମୁଁ ଦୃଢ଼ତାର ସହ କହିବି ଯେ, କବିତା ସଂରଚନା, କବିତାର ସମାଲୋଚନା, କବିତା ପଠନର ଗ୍ରହଣଶୀଳତା କ୍ଷେତ୍ରରେ ମୁଁ କୌଣସି ଚାଲାକିରେ ବିଶ୍ୱାସ

କରେ ନାହିଁ । ମୋର ପରମ ସୌଭାଗ୍ୟ, ଆପଣମାନଙ୍କ ସାନ୍ନିଧ୍ୟ ପାଇଲି, କ'ଣ ସବୁ କହିଗଲି ନିଜେ ବି ଜାଣେନା ।

କବିତାର ଶକ୍ତି ଓ ଲକ୍ଷ୍ୟ ସ୍ୱତନ୍ତ୍ର (absolute) ଜରୁରୀ, ଅଭିନ୍ନ ଓ ଭାବାତୀତ ।

ଶବ୍ଦଚୟନ ଓ ଶୈଳୀ ପାଠକକୁ ଘାରିଦିଏ ସତ, ଏହା ବ୍ୟତୀତ ଆହୁରି କିଛି ବି ରହିଛି । ଆମେ ମଣିଷମାନେ ଆମର ଅତି ଅନ୍ତରଙ୍ଗ, ମୂଲ୍ୟବାନ୍ ମୁହୂର୍ତ୍ତମାନଙ୍କରେ କବିତାଠାରୁ ଆଶ୍ୱାସନା ଖୋଜିଥାଉ, କବିତାଠାରେ ଆଶ୍ରୟ ଲୋଡ଼ିଥାଉ । କବିତା ଆମର ଘନିଷ୍ଠ ହୋଇଥାଏ – ଦୁଃଖସୁଖ, ଜନ୍ମ ମୃତ୍ୟୁ, ପ୍ରେମ ପ୍ରତାରଣା ଓ ପ୍ରାର୍ଥନା କାଳରେ, କବିତା ଆମ ଚାରିପାଖେ ରହିଛି - ଘୋଷଣାବିହୀନ ଭାବରେ । ଆମ ନିର୍ଜନତା ଓ ନୀରବତାରେ ସଖ୍ୟପ୍ରଦାୟୀ କବିତା - ଆମେ ତାକୁ ଶେଯ ତଳେ ରଖୁ । ସତ୍ କବିମାନେ ପ୍ରାୟ ପ୍ରଚାରବାଦୀ ନୁହନ୍ତି । ସେମାନଙ୍କ ଭିତରେ ସଂହତି, ସୌହାର୍ଦ୍ଦ୍ୟ ହୁଏତ ଥାଏ, ମାତ୍ର ତାହା ବାହାରକୁ ବିଶେଷ ପ୍ରକାଶ ପାଏ ନାହିଁ ।

ଆମ ଓଡ଼ିଆ କବିତାର ଭଲ ସମାଲୋଚନା ହେଉ ନାହିଁ । ଭଲ ସମାଲୋଚକ ବି କ୍ୱଚିତ୍ ଅଛନ୍ତି । ଶେଷରେ ଧନ୍ୟବାଦ ଆପଣମାନଙ୍କୁ । (ରାୟଗଡ଼ା ସାହିତ୍ୟ ସମ୍ମେଳନରେ ପ୍ରଦତ୍ତ ବକ୍ତବ୍ୟ)

❖❖❖

# ଓଡ଼ିଆ କବିତା ଓ ଅନିବାସୀ ପାଠକ

ଓଡ଼ିଆ କବିତାର ସ୍ୱରୂପ ବର୍ତ୍ତମାନ କେଉଁପରି ? ମୋତେ ବକ୍ତବ୍ୟ ରଖିବାକୁ ହେବ ସମୟ-୧୫-୨୦ ମିନିଟ୍ ମାତ୍ର । ଜୁଲାଇ ୩-୬ ତାରିଖ ପର୍ଯ୍ୟନ୍ତ ଓଡ଼ିଶା ସୋସାଇଟି ଅଫ୍ ଆମେରିକାନ୍‌ସ (ଓ.ଏସ୍.ଏ)ର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥାଏ । ୪ ଦିନ ବ୍ୟାପୀ ଏହି ଉତ୍ସବର ୩ୟ ଦିନ ଅର୍ଥାତ୍ ୫ ତାରିଖରେ ହେବାକୁ ଥାଏ କବିତା ଅଧିବେଶନ, ସକାଳ ୮ଟାରୁ ୧୦.୩୦ ପର୍ଯ୍ୟନ୍ତ । ଅନ୍ୟସବୁ ଅଧିବେଶନ ସମାଜ, ରାଜନୀତି, ବାଣିଜ୍ୟ ସମ୍ପର୍କରେ ଉଦ୍ଦିଷ୍ଟ ଥିବା ବେଳେ, କାର୍ଯ୍ୟକ୍ରମରେ ସାହିତ୍ୟ ସମ୍ପର୍କୀୟ ଅଧିବେଶନ ଏଇ ଗୋଟିଏ ମାତ୍ର । ଆମେରିକାର ନ୍ୟୁଜର୍ସି ରାଜ୍ୟର ପ୍ରିନ୍ସଟନ୍ ସହରସ୍ଥିତ ହୋଟେଲ୍ 'ଡୋରାଲ୍ ଫରେଷ୍ଟାଲ୍' ହଲ୍‌ରେ ଏହି କବିତା ଅଧିବେଶନ । ବହୁ ଆଗ୍ରହୀ ଶ୍ରୋତାଙ୍କ ସମାଗମ । ମୋତେ କି' ନୋଟ୍ ଆଡ୍ରେସ୍ ଦେବା ଓ 'ତନ୍ମୟଧୂଳି'ରୁ କବିତା ପଢ଼ିବା ନିମନ୍ତେ ନିମନ୍ତ୍ରଣ ଥାଏ ।

ସେମାନଙ୍କୁ କବିତା ସମ୍ପର୍କରେ କ'ଣ କହିବି ପ୍ରକୃତରେ ? ତଥାପି ମୁଁ ମୋର ବକ୍ତବ୍ୟ ଆରମ୍ଭ କଲି ଏହିପରି 'ଅନିବାସୀ ଓଡ଼ିଆ ବନ୍ଧୁଗଣ, ହିମାଳୟ ପରି ସୁଉଚ୍ଚ ଓ ପରିବ୍ୟାପ୍ତ ଓଡ଼ିଆ କାବ୍ୟ ପରମ୍ପରାର କି ପରିଚୟ ବା ମୁଁ ଏତେ କମ୍ ସମୟ ମଧ୍ୟରେ ଆପଣମାନଙ୍କୁ ଦେଇପାରିବି ? ଆପଣ, ଯେଉଁମାନେ କି ଅନେକ ଦିନ ଧରି ଓଡ଼ିଆ କବିତାର ପ୍ରତ୍ୟକ୍ଷ ସମ୍ପର୍କରେ ନାହାନ୍ତି, ନାନା କାରଣରୁ ଯୋଗାଯୋଗ କ୍ଷୀଣ ହୋଇଯାଇଛି, ସୁଦୂରରେ ଥିବାରୁ ପ୍ରତିନିୟତ ଓଡ଼ିଆ କବିତା ପଢ଼ିବାକୁ ପାଉ ନାହାନ୍ତି, ଆପଣମାନଙ୍କ ସମକ୍ଷରେ ଓଡ଼ିଆ କବିତାର ଗତି ଓ ସ୍ଥିତିକୁ ମୁଁ କିପରି ବା ଉପସ୍ଥାପିତ କରିପାରିବି ?' ପ୍ରତିବାଦ ଆସିଲା- 'ଆମେ ପଢ଼ୁ, ଆପଣ ସେପରି ମନେ କରନ୍ତୁ ନାହିଁ ଆଦୌ ।' ଅଗତ୍ୟା ମୁଁ ସୌଜନ୍ୟ ଦୃଷ୍ଟିରୁ କହିଲି: 'ମନା କରୁ ନାହିଁ, ହୁଏତ ପଢୁଥିବେ, ମାତ୍ର, କେତେଜଣ ? ଆପଣମାନେ ଆଗ୍ରହୀ ହେଲେ ବି ଆଗ୍ରହ ପରିତୃପ୍ତି ପାଇଁ ସୁବିଧା ସୁଯୋଗ ନ ଥିବ ।'

କେବଳ ଓଡ଼ିଆ ଭାଷାର କବିତା ନୁହେଁ, ସମଗ୍ର ଭାରତର ଆଞ୍ଚଳିକ ଭାଷାମାନଙ୍କରେ ରଚିତ କବିତାର ସ୍ୱରୂପ ଉଣାଅଧିକେ ସେହି ସମାନ ଭାବଧାରାର ଅନୁଗାମୀ । ସମସାମୟିକ କବିତାର ପର୍ଯ୍ୟାଲୋଚନା କରିବାକୁ ଯାଇ ମୁଁ ଆପଣମାନଙ୍କ ସମ୍ମୁଖରେ ମାତ୍ର ଦୁଇଟି ଦିଗକୁ ସ୍ପଷ୍ଟ କରିବାକୁ ଚାହେଁ । ପ୍ରଥମତଃ, ବର୍ତ୍ତମାନର କବିତା ମଧ୍ୟରେ ମଣିଷ ନିଜକୁ ଖୋଜିବାକୁ ବ୍ୟଗ୍ର । ମଣିଷର ଅନ୍ତରଙ୍ଗତା ପ୍ରତି କବିତା ଅଧିକ ଉନ୍ମୁଖ । ଜଗତୀକରଣ

ଦ୍ୱାରା ବ୍ୟକ୍ତି, ବସ୍ତୁ, ସ୍ଥାନ ଆଦି ସର୍ବସାଧାରଣ ହୋଇପଡ଼ିଲା ବେଳକୁ, ମଣିଷ ତା' ଜୀବନ, ପ୍ରିୟଜନ, ପ୍ରିୟ ପରିବେଶ ତଥା ଅଭିଳାଷ ପ୍ରତି ଅଧିକ ନିବିଡ଼ ହେବାକୁ ଚାହୁଁଛି । ସବୁ ଗତାନୁଗତିକତା ଓ ପାରମ୍ପରିକତା ଭାଙ୍ଗିପଡ଼ିବାର ଆଶଙ୍କା ବଳବତ୍ତର ହେବା ବେଳକୁ କବିତା ମାଧ୍ୟମରେ ସବୁକିଛିକୁ ନୂତନ ଭାବେ ଅର୍ଥାନ୍ୱିତ କରିବା ନିମିତ୍ତ କବିଗଣ ପ୍ରଯତ୍ନ କରୁଛନ୍ତି । ବ୍ୟକ୍ତିଗତତାକୁ ସର୍ବସାଧାରଣ କରିଦେବାର ଏଇ ଯୁଗରେ କବିଟି କାତର ହୋଇପଡୁଛି । ସମ୍ପର୍କହୀନତା ବ୍ୟାପିଯାଉଥିବା ବେଳେ ସେ ନିଜ ସମ୍ପର୍କର ଖୁଅକୁ ଜାବୁଡ଼ି ଧରି ତା'ର ଅନନ୍ୟତାକୁ ପ୍ରତିଷ୍ଠା ଦେବାକୁ ତତ୍ପର ହୋଇଉଠୁଛି । ମଣିଷର ଅନ୍ତର୍ବେଦନା ଓ ମନୋଭାବ ଏ ଦିଗରେ କିପରି କ୍ରିୟାଶୀଳ, ତାହା କବିମାନଙ୍କ ରଚନାରେ ପ୍ରମୂର୍ତ୍ତ ହେଉଛି ।' ଏହାର ନଜିର୍ ଦେବାକୁ ଯାଇ ମୁଁ ମୋର ବକ୍ତବ୍ୟରେ କବି ସୀତାକାନ୍ତଙ୍କ 'ପ୍ରଦକ୍ଷିଣ' ତଥା ଅନ୍ୟ କବିଙ୍କ ରଚନାରୁ କେତେକ ଉଦାହରଣ ଉପସ୍ଥାପନ କଲି । ସେଠାକାର ଶ୍ରୋତାବର୍ଗ ଏକଦା ଯଦିଓ ଓଡ଼ିଆ କବିତାପ୍ରେମୀ ଥିଲେ, କିନ୍ତୁ ବର୍ତ୍ତମାନର କବିତାର ଧାରାପ୍ରତି ବିଶେଷ ଅବହିତ ନୁହନ୍ତି । ତେଣୁ ସାମ୍ପ୍ରତିକ କବିତାର ନୂତନ ଧାରା ଓ ନୂତନ ସ୍ୱର ସମ୍ପର୍କରେ କିଛିଟା ସୂଚନା ପ୍ରଦାନ କରିବାକୁ ମୁଁ ପ୍ରାସଙ୍ଗିକ ମନେକଲି ।

୧୯୮୦ ପରବର୍ତ୍ତୀକାଳର କବିତାରେ ସ୍ପଷ୍ଟ ହୋଇଥିବା ନୂତନତ୍ୱକୁ ମୁଁ ମୋ ବକ୍ତବ୍ୟର ଦ୍ୱିତୀୟ ଦିଗ ଭାବେ ଚିହ୍ନିତ କରିବାକୁ ଯଥାର୍ଥ ଭାବିଲି । କହିଲି – 'ଏହି କାଳରେ ଓଡ଼ିଆ କବିମାନେ ଅସ୍ତିତ୍ୱର ବାସ୍ତବତା ପ୍ରତି ଅଧିକ ସଚେତନ ହୋଇଛନ୍ତି । ନାରୀର ଅନ୍ତର୍ମୂଲ୍ୟ ପ୍ରତିଷ୍ଠା, ନାରୀ ବ୍ୟକ୍ତିତ୍ୱର ବିଚାର ପ୍ରତି ନିବିଷ୍ଟତା ଏ ସମୟର କବିତାରେ ବେଶ୍ ଲକ୍ଷ୍ୟଣୀୟ । ଏହା ପାଶ୍ଚାତ୍ୟ ଦୃଷ୍ଟିର 'ଫେମିନିଜିମ୍' ପ୍ରଭାବରେ ଅବଶ୍ୟ ନୁହେଁ, ଏହା ଅଧିକ ଭାବେ ମାନବିକତା ଓ ଯୁଗବାର୍ତ୍ତା ଦ୍ୱାରା ଉଦ୍‌ବୋଧିତ ।

ଏହି ପରିପ୍ରେକ୍ଷୀରେ କହିବାକୁ ହେଉଛି ଯେ, କେବେ ବି ନାରୀକୁ ବାଦ୍‌ଦେଇ କବିତା ରଚନା କରାଯାଇ ନାହିଁ । କେବେ ଦେବୀ, କେବେ ପ୍ରେୟସୀ, କେବେ କେବେ ଛଳନାମୟୀ କେବେ ବା ସର୍ବଂସହା ଧରିତ୍ରୀ ଏଇସବୁ ନାରୀର ପ୍ରତୀକରୂପେ ସ୍ୱୀକୃତ ହୋଇଛନ୍ତି । କିନ୍ତୁ ଆଲୋଚ୍ୟ ସମୟର କବିଗଣ ଭିନ୍ନଭାବେ ସଚେତନ ଓ ସମ୍ବେଦନଶୀଳ ହୋଇଛନ୍ତି । ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠାଲାଭ କରିଥିବା ଦୁଇଟି ନାରୀଚରିତ୍ର 'ପ୍ରତିମା ନାୟକ' ଓ 'ଅଳକା ସାନ୍ୟାଲ୍'କୁ ବ୍ୟବଚ୍ଛେଦ କଲେ ଏ କଥାର ସଠିକ୍ ଅବଧାରଣା କରିହେବ । ଆଧୁନିକ କବିତା କ୍ଷେତ୍ରରେ ପ୍ରମୁଖ ମାନ୍ୟତାପ୍ରାପ୍ତ, ଉପରୋକ୍ତ କବିତାଦ୍ୱୟର ଦୁଇକବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଓ ଶ୍ରୀ ଗୁରୁପ୍ରସାଦ ମହାନ୍ତି ଆଧୁନିକ ନାରୀକୁ ନେଇ ଶ୍ଳେଷ ଓ ରସିକତା, ତଥା, 'ହାଲୋ, ହାଏ' ସଂଭାଷଣରେ କବିତାକୁ ଆକର୍ଷଣୀୟ କରିଛନ୍ତି । ଶ୍ଳେଷ ଓ ରସିକତା ଆଧୁନିକ କବିତାର ଦୁଇଟି ବିଶିଷ୍ଟ ଗୁଣ । କିନ୍ତୁ, ଜୀବନ ସଙ୍କଟର ଦୋମୁହାଣୀରେ ଛଟପଟ ନାରୀକୁ ନେଇ କବିଙ୍କର ସହାନୁଭୂତି ଓ ସମମର୍ମିତା ଏଥିରେ ପ୍ରକଟିତ ହୋଇ ନାହିଁ । ପଚାରିଲି, 'ଭଲ ଅଛ ?' କଣ୍ଠେ ତା'ର ବିଷଣ୍ଣ ଗୋଧୂଳି ।' (ପ୍ରତିମା ନାୟକ) କିମ୍ବା 'ମୁଁ ତୁମର ସ୍ୱପ୍ନଦେଖେ ମୋର

ଢିଲା ପାଇଜାମା, କାମିଜ୍‌ର ଅମରାବତୀରେ ।' (ଅଳକା ସାନ୍ୟାଲ) ଏଠାରେ ନାୟିକାର ଆତ୍ମିକ ଅସହାୟତାଠାରୁ କବି-ଚେତନାର ଦୂରତ୍ୱ ସହଜେ ପ୍ରତିପନ୍ନ ହୁଏ । ଆଧୁନିକ ନାରୀର ଏ ଚିତ୍ର ନୈର୍ବ୍ୟକ୍ତିକ ସତ୍ୟ, ମାତ୍ର ତା'ର ଅନ୍ତରାତ୍ମାକୁ, ଗ୍ଲାନିକୁ, ଲୁହବୁନ୍ଦାକୁ କବି ସ୍ପର୍ଶ କରିବାକୁ ଚାହିଁ ନାହାନ୍ତି । ଯଦିବା ରମାକାନ୍ତ ରଥଙ୍କ 'ଚନ୍ଦ୍ରମାର ଚୁଡ଼ି'ରେ କବିଙ୍କ ପରୋକ୍ଷ ଦରଦ ମର୍ମସ୍ପର୍ଶୀ ହୋଇପାରିଛି । ସେ ଯୁଗର ଦୃଷ୍ଟି ସେହିପରି ହିଁ ଥିଲା । କିନ୍ତୁ ବର୍ତ୍ତମାନର କବି ନାରୀର ଅନ୍ତର୍ନିହିତ ସତ୍ତା ଉଦ୍‌ଘାଟନ କରିବା ସହିତ, ତା'ର ଅନ୍ତରାତ୍ମାକୁ ଚିହ୍ନି, ତା'ର ପରାକ୍ରମ ଓ ପରାଜୟ ଉଭୟକୁ ଉପଲବ୍ଧି କରୁଛି । କବିର ନାରୀବ୍ୟକ୍ତିତ୍ୱ ପ୍ରତି ଏହି ଧ୍ୟାନଶୀଳତାର ପୃଷ୍ଠପଟରେ ରହିଛି ନାରୀର ନିଜସ୍ୱ ସଚେତନତା ଓ ନିରୀକ୍ଷଣ ଶକ୍ତି ତଥା ପ୍ରକାଶ ଦକ୍ଷତା । ଚିରନ୍ତନ ନାରୀର ଅଭୀପ୍‌ସା ପୁରାଣକଳ୍ପ ମାଧ୍ୟମରେ 'ଶ୍ରୀରାଧା' ଓ 'ଶବରୀ' ଆଦି କାବ୍ୟ ଚରିତ୍ରରେ ଚିହ୍ନିତ ହେଲା ବେଳକୁ, ପଲ୍ଲୀର ନିରିମାଖି ଝିଅର ଅନ୍ତଃସୌନ୍ଦର୍ଯ୍ୟ ... 'ଧାନ ସାଉଁଟା ଝିଅ' ଆଦି କବିତାରେ ବିଶିଷ୍ଟତା ଲାଭ କରିଛି । ପୁନଶ୍ଚ ବର୍ତ୍ତମାନ ଓଡ଼ିଆ କବିତା କ୍ଷେତ୍ରରେ ୨୫-୪୦ ବର୍ଷ ବୟସ ମଧ୍ୟରେ କେତେକ ନାରୀ ଅତ୍ୟନ୍ତ ମାର୍ମିକ, ଭାବଉଦ୍‌ବୋଧକ ଓ ବାସ୍ତବ ସଚେତନ ସ୍ୱର ପ୍ରକଟ କରୁଛନ୍ତି । ଏହା ଯେ ଏକ ନୂତନ ଦିଗର ସୂଚ଼ନା ଦେଉଛି, ସ୍ୱୀକାର ନ କରିବାର ଉପାୟ ନାହିଁ ।

ଓଡ଼ିଆ କବିତାରେ ୧୯୫୦ ବେଳକୁ ଏଲିଅଟ୍‌ଙ୍କ 'escape from personality, escape from emotion' ଖୁବ୍ ପ୍ରଭାବ ବିସ୍ତାର କରିଥିଲା । ତାଙ୍କ ମତ ଥିଲା, କବିତାରେ ଆବେଗ ରହିବ ନାହିଁ । ଅଥଚ, ଆବେଗ-ବିଯୁକ୍ତ ସଂରଚନା କବିତା ହୋଇ ନ ପାରେ, ଯଦିଓ କେବଳ ଆବେଗର ପ୍ରାଚୁର୍ଯ୍ୟ ମଧ୍ୟ କଦାପି କବିତା ନୁହେଁ । ଏହା ମୋର ବ୍ୟକ୍ତିଗତ ମତ । ଏହାସତ୍ତ୍ୱେ ଏଲିଅଟ୍‌ଙ୍କ ପ୍ରଭାବିତ ଆଧୁନିକ କବିମାନେ ଆବେଗକୁ ଅପ୍ରକଟ ରଖିବାକୁ ଯତ୍ନଶୀଳ ଥିଲେ । ଏହା ଥିଲା ସେହି ସମୟର କବିତାର ଯଥାର୍ଥ ସ୍ଥିତି, ଯାହା ପରବର୍ତ୍ତୀକାଳର କବିତାରେ କ୍ରମଶଃ ଏକ ଭିନ୍ନ ରୂପ ଗ୍ରହଣ କରିଛି । ମୋର ବକ୍ତବ୍ୟ ସରିଆସୁଥାଏ । ଉପସ୍ଥିତ ଶ୍ରୋତାଙ୍କ ତରଫରୁ ମୋତେ ଅନୁରୋଧ ଆସିଲା, ଗୁରୁପ୍ରସାଦଙ୍କର କବିତାଟିଏ ଆବୃତ୍ତି କରିବା ଲାଗି । ଦୈବକ୍ରମେ ମୋ ସ୍ମୃତି ଅନୁକୂଳ ଥିବାରୁ ମୁଁ ସହସା ଗୁରୁପ୍ରସାଦଙ୍କର 'ଚମ୍ପାଫୁଲ' କବିତାଟି ଆବୃତ୍ତି କରିପାରିଲି । ପ୍ରକାଶ ଥାଉକି ସଚ୍ଚି ରାଉତରାୟଙ୍କର 'ଛୋଟ ମୋର ଗାଁଟି' ଆବୃତ୍ତିରୁ କବିତା ପାଠୋତ୍ସବ ଆରମ୍ଭ ହୋଇଥିଲା । ମୋର ସୌଭାଗ୍ୟ ଯେ, ଶ୍ରୋତାମାନେ ସଚ୍ଚି ରାଉତରାୟ, ଗୁରୁପ୍ରସାଦ ଓ ରମାକାନ୍ତଙ୍କ କବିତା ସମ୍ପର୍କରେ କିଛିଟା ଅବଗତ ଥିଲେ ଓ ସେ ଦିଗରେ କେତେକ ପ୍ରଶ୍ନୋତ୍ତର ମଧ୍ୟ ହେଲା । ଶେଷକୁ ଯୁବକବିମାନଙ୍କର ଏକ ଇଂରାଜୀ କବିତା ପ୍ରତିଯୋଗିତାରେ ପୁରୋଧା ରୂପେ ମୁଁ ପୁରସ୍କାର ବିତରଣ କଲି । ବର୍ତ୍ତମାନର କବିତା ପ୍ରତି ଅନିବାସୀ ଓଡ଼ିଆ କବିତାପ୍ରେମୀମାନଙ୍କର ଥିବା ଔତ୍ସୁକ୍ୟ ସମ୍ପର୍କରେ ପାଠକବର୍ଗଙ୍କୁ କିଛି ଅବହିତ କରାଇବା ଲକ୍ଷ୍ୟରେ ସେଠାରେ ପ୍ରଦାନ କରିଥିବା ମୋର ବକ୍ତବ୍ୟର ଯେ କ୍ଷୁଦ୍ର ଅବତାରଣା ।



# ଭଲ କବିତାର ମାନଦଣ୍ଡ ସମ୍ପର୍କରେ...

କବିତାର ଉଜ୍ଜ୍ୱଳତା ଓ ସଦ୍‌ଗୁଣ ବିଚାର କରିବାପାଇଁ ଆମେ କେଉଁ ମାନକ ନେଇପାରିବା ? ମୂଳକଥା କବିତା କଅଣ ଓ କେଉଁ କବିତାକୁ କହିପାରିବା ଯେ ଯେ ଏକ ଭଲ କବିତା । କବିତା କିଛି ନିରପେକ୍ଷ ବା ସାଧାରଣ ବର୍ଣ୍ଣନାତ୍ମକ ପଦ୍ଧତି ନୁହେଁ, ବରଂ ଏହା ମୂଲ୍ୟବୋଧଭିତ୍ତିକ ଅଭିବ୍ୟକ୍ତି । ଗୋଟିଏ ପଦ୍ୟାକାର ବା ଗଦ୍ୟାକାର ଲେଖାର କେଉଁ ଗୁଣ ଏହାକୁ କବିତା ସ୍ତରକୁ ନେଇଯାଏ ? ଯେତେବେଳେ ଆମେ ଗୋଟିଏ ଦି'ଟି ଲେଖାକୁ ବିଚାର କରୁ, ଆମର ନିର୍ଣ୍ଣୟାତ୍ମକ ମାନଦଣ୍ଡ ବିଷୟରେ କ୍ୱଚିତ୍ ଆଲୋଚନା କରିଥାଉ ।

ଏହା ଖୁବ୍ ସତ ଯେ, କବିତାଟି କେଉଁଥିପାଇଁ ଭଲ କବିତା, ତାହାର କାରଣ ନିର୍ଦ୍ଦେଶ କରିବାଠାରୁ, ଗୋଟିଏ ବିଶୁଦ୍ଧ କବିତାକୁ ଚିହ୍ନିନେବା ଅଧିକତର ସହଜ ହୋଇଥାଏ । କେତେକ ଆଲୋଚକ କହନ୍ତି, "କବିତାକୁ ବୁଝିବା କଠିନ ହୋଇପାରେ, କିନ୍ତୁ ତାକୁ ଭଲ ପାଇଯିବା ଖୁବ୍ ସହଜ । ଯଥାର୍ଥ ଶବ୍ଦଗୁଡ଼ିକୁ ସର୍ବୋତ୍ତମ ବାଗରେ ସଜାଇବା ହେଉଛି କବିତା । ସର୍ବୋତ୍ତମ ଅର୍ଥବହ ଓ ସ୍ମରଣୀୟ ବକ୍ତବ୍ୟକୁ ଆମେ କବିତା ଭାବେ ଗ୍ରହଣ କରିଥାଉ । (ଅବଶ୍ୟ, ଏଠାରେ ୱାର୍ଡସ୍‌ୱର୍ଥ ଓ ଇଲିଅଟ୍‌ଙ୍କ ସଙ୍ଗାକୁ ବିଚାରକୁ ନେଇପାରୁ । ଏମାନଙ୍କ ମତାମତ ପରସ୍ପରର ବିପରୀତ । କାରଣ, ଜଣେ କବି ରୋମାଣ୍ଟିକ୍ ତ ଆଉ ଜଣେ ଆଧୁନିକ କାବ୍ୟାନ୍ଦୋଳନର ପ୍ରବକ୍ତା ଅର୍ଥାତ୍ ରୋମାଣ୍ଟିକ୍ ଚିନ୍ତାଧାରା ପ୍ରତି ପ୍ରତିକ୍ରିୟାଶୀଳ । ହେଲେ ବି ଦୁଇ ଜଣଙ୍କ ବକ୍ତବ୍ୟ ଯୁକ୍ତିଯୁକ୍ତ ମନେହୁଏ, ନିଜ ନିଜ ବାଟରେ । କବିତାର ସମ୍ପୂର୍ଣ୍ଣ ସଙ୍ଗା ତେବେ କ'ଣ ହେବ ? କବିତାକୁ ଚିହ୍ନିବା, ନିଶ୍ଚୟ, ଚିହ୍ନି ନ ଚିହ୍ନିବା, ନ ଚିହ୍ନି ଚିହ୍ନିବା ଭଳି ଏକ ବ୍ୟାପାର । ପ୍ରେମ ପରି ଏକ ବିପୁଳ ଭାବାନୁଭୂତିର ସମପର୍ଯ୍ୟାୟବାଚୀ ଏକ ଅବବୋଧ । ଭଲ କବିତାକୁ ଚିହ୍ନିପାରିବାରେ ସମସ୍ୟା ତେଣୁ ରହିବ ହିଁ ରହିବ । ଏହା କବିର ପରିତ୍ରାଣର ଏକ ଉପାୟ । ଏହା ପାଠକ ସହ ଯୋଗାଯୋଗ ପ୍ରତିଷ୍ଠା କରିଥାଏ । (ତାହାକୁ ବୁଝିପାରିବା ଆଗରୁ, ପାଠକ ଯଦି ପଢ଼ିବସେ, ସେପରି ପଢ଼ିବା ହେଉଛି କୌଣସି ନିହିତାର୍ଥ ନ ଥିବା ଅର୍ଥକୁ କବିତାରୁ ଖୋଜି ଲାଗିବା ।)

ଛନ୍ଦ, ପଦ, ଧ୍ୱନି, ସଂହତି, ପରିଚ୍ଛନ୍ନତା ଓ ନିର୍ଦ୍ଦିଷ୍ଟ ଗ୍ରହଣଯୋଗ୍ୟତା ତଥା କାଞ୍ଚନିକ ପରିମଣ୍ଡଳର ଏକ କଳାତ୍ମକତା କବିତା ଦ୍ୱାରା ଫଳପ୍ରଦ ଭାବେ ନିୟୋଜିତ ହୋଇଥାଏ । ଏସବୁ ସତ୍ତ୍ୱେ ଯଦି ଆମେ କବିତାକୁ ଚିହ୍ନିବା ନିମିତ୍ତ ବସ୍ତୁବାଦୀ ମାନଦଣ୍ଡ

ରଖିବା, ତେବେ ଆମ ଉଦ୍ୟମ ବିଫଳ ହେବ । କବିତା ପଢ଼ିବା ଏକ ବ୍ୟକ୍ତିକ ଅଭିଜ୍ଞତା, ତା'ର ତାତ୍‌କାଳିକ ଲକ୍ଷ୍ୟ ହେଉଛି, ଆନନ୍ଦାନୁଭବ । ଏଠାରେ ପାଠକର ଭୂମିକା ରହିଛି । ତୁମେ ପଢ଼ିସାରି ନିଜର ଜନ୍ମଗତ ସଂସ୍କାରଦ୍ୱାରା ହିଁ ତାହାର ମୂଲ୍ୟ ବିଚାର କରିବ । ତୁମ ପ୍ରତିକ୍ରିୟାର ଗଠନମୂଳକ ଭାବ ବିଷୟରେ ସଚେତନ ହେବ । ତେଣୁ ନିର୍ଦ୍ଧାରଣ କରିବା ପୂର୍ବରୁ କବିତାଟି ଭଲ କି ମନ୍ଦ, ତୁମେ ଜାଣିପାରିବ । ଏସବୁ ପୂରାପୂରି ବ୍ୟକ୍ତିକ ବିଚାର । କବିତାକୁ ଚିହ୍ନିବାପାଇଁ, କବିତା ପଠନର ଅଭିଜ୍ଞତାଠାରୁ ପ୍ରକୃତରେ ଅନ୍ୟ କିଛି ନିର୍ଭରଯୋଗ୍ୟ ବିକଳ୍ପ ନାହିଁ । ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ, କବିତା ପଠନ ଦ୍ୱାରା ପାଠକ ନିଜ ସୂକ୍ଷ୍ମାନୁଭବକୁ ଦୀକ୍ଷିତ କରିବ ଓ ଅଭିଜ୍ଞତାର ମୁକ୍ତ ପ୍ରବାହକୁ ବେଗଗାମୀ କରିପାରିବ । ଜଣେ ପାଶ୍ଚାତ୍ୟ ଆଲୋଚକ ଓ କବି ଥରେ ନିଜକୁ ପଚାରିଲେ, "ମୋ ଉପରେ ଯେ କବିତାଟି କି ପ୍ରଭାବ ପକାଇଲା ? ମତେ- ଆନନ୍ଦ ଦେଲା ? ଯଦି ଦେଲା, କେତେ ବେଶି ଆନନ୍ଦ ଦେଇପାରିଲା ? ଯାକୁ ପଢ଼ି, ଯା' ଦ୍ୱାରା ପ୍ରଭାବିତ ହୋଇ ମୋର ସ୍ୱଭାବରେ କେଉଁ ପ୍ରକାର ପରିବର୍ତ୍ତନ ଆସିପାରିଲା ?" ଏସବୁ ପ୍ରଶ୍ନର ଉତ୍ତର ନିଶ୍ଚୟ ବ୍ୟକ୍ତି-ନିର୍ଭର, ତେଣୁ ଅନୁଭବପ୍ରବଣତାକୁ ନେଇ ସ୍ଥିରୀକୃତ ହୋଇପାରିବ ।

ଭାରତରେ, ବିଭିନ୍ନ ଆଞ୍ଚଳିକ ଭାଷାରେ କବିତା ବହୁ ସଂଖ୍ୟାରେ ଲେଖାଯାଉଛି । ଏ କବିତାମାନଙ୍କର ଅନେକତ୍ୱ ମଧ୍ୟ ରହିଛି । ବେଳେବେଳେ ଉନ୍ନତ କବିତାରେ କଳାତ୍ମକ ମାନର ଅସଂହତି ମଧ୍ୟ ପ୍ରତିଫଳିତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ଯଦି କବିତାର ଆକାଡେମିକ୍ (ପାଠ୍ୟକ୍ରମ ଉଚିତ) ଆଲୋଚନା କରାଯାଏ, ତେବେ ଏଥିରେ ବିଭିନ୍ନ ଆନ୍ଦୋଳନ, ଚିନ୍ତାଧାରା, ବାଦ (ism) ଆସିଯାଏ । ଯେପରି ଦଳିତ କବିତା, ନାରୀବାଦୀ କବିତା, ସମାଜ ସଚେତନମୂଳକ କବିତା ଇତ୍ୟାଦି । ଜଣେ ପାଠକ କେବଳ ତା'ର ନିଜସ୍ୱ ଅଭିଜ୍ଞତାକୁ ଛାଡ଼ିଦେଲେ, ଏସବୁ ପ୍ରତି ଆଦୌ ଭୃକ୍ଷେପ କରେ ନାହିଁ । ଭଲ କବିତା ପଠନର ଧର୍ମ ବା ଦାନ ହେଲା ଆନନ୍ଦ । ଆଗ୍ରହକୁ ଧରି ରଖିବା ଓ ପୁନର୍ବାର ପଢ଼ିବାକୁ ବାଧ କରିବା ହେଉଛି ଭଲ କବିତାର ଗୁଣ ।

ଅତି ଉନ୍ନତ ମାନର କବିତାଠାରୁ ଆମେ କ'ଣ ଆଶା କରୁ ? କୌଣସି ଭଲ କବିତା ପାଠକମାନଙ୍କର ସକଳ ଆଶାକୁ ପୂରଣ କରିପାରିବା ସମ୍ଭବ ନୁହେଁ । କବିତାର ମୂଳଦାନ ହେଲା ଜୀବନକୁ ସହିନେବା, ଏବଂ ଉପଭୋଗ କରିବା ନିମିତ୍ତ ପାଠକକୁ ପ୍ରେରଣିତ କରିବା । କବିତାରେ ଯଥାଯଥ ସାନ୍ଦ୍ରତା ଦରକାର । ବହୁ କବିତା ବିଶ୍ୱକୁ ପରିବର୍ତ୍ତନ କରିବା ଚେଷ୍ଟାରେ ଅସଫଳ କବିତା ପଦବାଚ୍ୟ ହୋଇଯାଆନ୍ତି । କିନ୍ତୁ ଏକଥା ସତ ଯେ, କବିତା ନିଶ୍ଚୟ କିଛି ଘଟାଏ । ଚିରନ୍ତନ ବାର୍ତ୍ତା ଥିବା କବିତାଠାରୁ, ସମୟର ଦାବିରେ ଲେଖାଯାଉଥିବା ଅନେକ କବିତା, କଳାତ୍ମକତା ହରାଇବା ଅବଶ୍ୟମ୍ଭାବୀ । ମୋଟାମୋଟି, ଆମେ ଭାବଗଭୀରତାର ସଞ୍ଚରଣ ଓ ପରମ୍ପରାର ଗୁଣକୁ କାବ୍ୟିକ ଯୋଗ୍ୟତା

ବୋଲି ଗ୍ରହଣ କରୁ । କବିତାର ଏପରି କିଛି ଗୁଣ ମଧ୍ୟ ଥିବା ଉଚିତ, ଯାହା ସଂରଚନାରେ ଥିବା ତ୍ରୁଟିକୁ ବାଷ୍ପୀଭୂତ କରିଦେଇପାରିବ । ଭଲ କବିତାର ଚିତ୍ରପ୍ରକଟନ-କ୍ଷମତା ପ୍ରଚୁର । ଏହି ଚିତ୍ର ଜୀବନ୍ତ ଓ କ୍ରିୟାଶୀଳ । ଶବ୍ଦଗତ ସତ, ମାତ୍ର ଶବ୍ଦ ବାହାରେ ମଧ୍ୟ ତିଷ୍ଠି ରହିପାରେ ।

ମନନଶୀଳ ବିମ୍ବର ପ୍ରଭାବ ମୁଖ୍ୟତଃ ଇନ୍ଦ୍ରିୟଗ୍ରାହୀ । ଏହା ଦର୍ଶନେନ୍ଦ୍ରିୟ ସ୍ପର୍ଶେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ ଓ ଘ୍ରାଣେନ୍ଦ୍ରିୟ ତଥା ସ୍ୱାଦେନ୍ଦ୍ରିୟକୁ ପ୍ରଭାବିତ କରିଥାଏ । ଆଖି ସାମ୍ନାରେ ଦୃଶ୍ୟଟିଏ ହୋଇ ଫିଟିପଡ଼େ, ମଧୁର ସ୍ପର୍ଶ ହୋଇ ରୋମାଞ୍ଚ ସୃଷ୍ଟି କରେ, କାନରେ ମୂର୍ଚ୍ଛନା ତୋଳେ, ନାସାରେ ମଧୁର ସୁବାସ ଚହଟାଏ ଓ ଜିହ୍ୱାରେ ସ୍ୱାଦ ଭରିଦିଏ । ଶବ୍ଦମାନଙ୍କ ମାଧ୍ୟମରେ ଭାଷାର ସଂହତି ମଧ୍ୟରେ, ଏହା ଇନ୍ଦ୍ରିୟଗ୍ରାହୀ ହୁଏ, ପୁଣି ଇନ୍ଦ୍ରିୟର ଗ୍ରହଣ ଯୋଗ୍ୟତା ଓ ବିମ୍ବର ସାମର୍ଥ୍ୟ ହେତୁ ଶବ୍ଦ ଓ ଭାଷା ଅନ୍ତର୍ହିତ ହୋଇଯାଆନ୍ତି-ରହେ ଚିତ୍ରର ନିର୍ଯ୍ୟାସ । ଉନ୍ନତ କବିତାର ଗୁଣ ହେଉଛି, ଆଶ୍ଚର୍ଯ୍ୟଭାବ, ତଥା ଅସାଧାରଣତ୍ୱର ପ୍ରକଟନ । ନିଜର ସାର୍ଥକ ରଚନା ସମ୍ଭାର ରହିଥିବା ସତ୍ତ୍ୱେ ପ୍ରତ୍ୟେକ ସତ୍‌କବି, ଶବ୍ଦ ଶକ୍ତିର ଶେଷ ସୀମାରେ ପହଞ୍ଚିଯିବାକୁ ଅଭିଳାଷ ପୋଷଣ କରିଥାନ୍ତି । ଆମ କବି ଉପେନ୍ଦ୍ରଭଂଜ ତ ଗର୍ବ କରି ଉଚ୍ଚାରିଥିଲେ- "କହେ ଉପଇନ୍ଦ୍ର ଭଂଜ ମୁଁ ଲିଭିଛି / ଶବଦ ସାଗର ପାର ।" ସେ ଅବଶ୍ୟ ଏଠାରେ ଶବ୍ଦସଂଖ୍ୟାକୁ ଓ ଅର୍ଥବୈଭିନ୍ନ୍ୟକୁ ନେଇଥିବେ । ମାତ୍ର ଏହା ଯଥେଷ୍ଟ ନୁହେଁ । ଶବ୍ଦର ସାମର୍ଥ୍ୟକୁ ଅଧିକ ଜୀବନ୍ତ ଓ ଗତିଶୀଳ କରାଇବା ସତ୍‌କବିର ଲକ୍ଷ୍ୟ । ଶବ୍ଦ ଶକ୍ତିକୁ ଶେଷ ପର୍ଯ୍ୟନ୍ତ ଆବିଷ୍କାର କରିବା ଓ ସୁନିୟୋଜିତ କରିବା ଦିଗରେ କବି ଚେଷ୍ଟାରତ ହୋଇଥାଏ ।

କବିତା ଅଚିନ୍ତନୀୟ । କବିତା ଲେଖିବାର ଇଚ୍ଛା ଖୁବ୍ ମୂଲ୍ୟବାନ୍ । ଏହି ଇଚ୍ଛା ଯେତିକି ଆବଶ୍ୟକ ସେତିକି ଅଭ୍ୟାସଗତ । ଏହି ଇଚ୍ଛା ସଂଜୀବିତ ରହିଲେ ହିଁ କବିତା ସଂରଚିତ ହେବାର ସମ୍ଭାବନା ଥାଏ । ବଞ୍ଚି ରହିବାର କାରଣଗୁଡ଼ିକୁ, ଆମେ ଯଦି କେବେ ପରୀକ୍ଷା କରିବାର, ଆବଶ୍ୟକତା ଅନୁଭବ କରୁ, ତା'ହେଲେ ଏହି ତାଲିକାରେ କବିତା ବଡ଼ ସମ୍ମାନାସ୍ପଦ ସ୍ଥାନ ପାଇବ ନିଶ୍ଚୟ । ଆଜିର ସମୟ ବଡ଼ ଚତୁର । କାବ୍ୟାତ୍ମକ ସୃଜନ ଓ ସମାଜର ଦାବି ମଝିରେ ଯେଉଁ ଆର୍ଥିକ- ଭୌତିକ ଦୂରତ୍ୱ (ଖାଇ) ଗଡ଼ଖାଇ ଭଳି ରହିଛି ତାହା ବରାବର ପ୍ରଶସ୍ତ ହୋଇଚାଲିଛି । ଏହି ବାର୍ତ୍ତା-ପ୍ରଧାନ ଯୁଗରେ, ଶବ୍ଦର ଆବେଗିକ ମୂଲ୍ୟ ଭାଙ୍ଗି ଭାଙ୍ଗି ପଡୁଥିବା ବେଳେ ଆମେ ଯେ, କବିତା ପଢ଼ିବାକୁ, ଆଗ୍ରହ ପୋଷଣ କରିପାରୁଛେ, କବିତା ବାଛିପାରୁଛେ, ଚିହ୍ନିପାରୁଛେ, ପଢ଼ିପାରୁଛେ ଓ ତାହାଦ୍ୱାରା ପ୍ରଭାବିତ ହୋଇପାରୁଛେ, ଏହା ଖୁବ୍ ଆଶାପ୍ରଦ ଅବସ୍ଥା । ସବୁ ସ୍ତରରେ, ଧନୀ ଦରିଦ୍ର ନିର୍ବିଶେଷରେ, କବିତାର ପାଠକ ମହଜୁଦ ରହିଛନ୍ତି ।

ଶବ୍ଦର ଦାନ ବଡ଼ କଷ୍ଟ ଦିଏ, ଜଞ୍ଜାଳରେ ପକାଏ । ଠିକ୍ ପ୍ରେମର ବିହ୍ୱଳ ଦାନ ପରି । ନାଁ ତାକୁ ତ୍ୟାଗ କରିହୁଏ, ନାଁ ତାକୁ ଆଲିଙ୍ଗନ କରି, ସହଜରେ ବଞ୍ଚିହୁଏ ।

ସତ୍ କବି ଚାହେଁ ନିର୍ଜନତା, ଏକାକୀତ୍ୱ, ସେ ଚାହେଁ କେହି ନ ଦେଖୁ ତାକୁ । ଶୀତ ସନ୍ଧ୍ୟାରେ ଗହଳ ତୋଟା ତଳେ ସେ ଏକାକୀ ଘୂରୁଥାଉ ବୋଲି ଇଚ୍ଛା କରେ । ଚେତନାର ବନ୍ଧନ ସେ ପସନ୍ଦ କରେ ନାହିଁ । ସେଥିରୁ ମୁକୁଳିଯିବାକୁ ସେ ପ୍ରତିବାଦର ସ୍ୱର ଉଠାଏ, ବା ଭାଗ୍ୟକୁ ନିନ୍ଦେ । ନ ହେଲେ, ଏଇ ଅସହ୍ୟ ଦୃଶ୍ୟଜଗତ ବାହାରେ, ଏକ କାମ୍ୟ ଅଦୃଶ୍ୟ ଜଗତ ଗଢ଼େ । ଯେ ଜଗତ ଚକ୍ଷୁକୁ ଦିଶେ ନାହିଁ, ମାତ୍ର ଚେତନା ସ୍ତରରେ ସ୍ପଷ୍ଟ ହୋଇଉଠିଥାଏ । ଭଲ କବିତାଟିରେ ସ୍ୱର, ଶୈଳୀ, ଭାବବସ୍ତୁ, ମିତବାକ୍ତ୍ୱ ଓ ସଫଳ ହେବାର ଅଭିଳାଷ, ଭିତରେ ଏକକତ୍ୱ ପ୍ରତିଷ୍ଠିତ ହୋଇଥାଏ । ବିଶ୍ୱ ସମସ୍ୟା, ନାରୀ ସମସ୍ୟା, ପ୍ରେମ ଏବଂ ସର୍ବତଗିଲାସ୍ ଓ ମଲ୍ଲୀଫୁଲ-ଯେ ସକଳ ଉପାଦାନ ବା ଭାବରାଜି କବିତାର ଚମତ୍କାର ଓ ଶକ୍ତିଶାଳୀ ଉପଜୀବ୍ୟ ହୋଇପାରନ୍ତି । ସର୍ବଶେଷରେ କୁହାଯାଇପାରେ ଯେ କବିତାର ମୂଲ୍ୟ ନିର୍ଦ୍ଧାରଣର ନାନାବିଧ ମାନଦଣ୍ଡ ରହିବ ଓ ଏହି ନିର୍ଦ୍ଧାରଣ ଆଦୌ ସହଜ ନୁହେଁ । ହୁଏତ ସଠିକ୍ ନିର୍ଦ୍ଧାରିତ କରାଯାଇ ନ ପାରେ । କାରଣ, ମୂଲ୍ୟର ନିର୍ଦ୍ଦିଷ୍ଟତା ସବୁବେଳେ ଉର୍ଦ୍ଧ୍ୱ ଓ ଅଧଃକୁ ଗତି କରୁଥିବ, ନାନାବିଧ ପରିବର୍ତ୍ତିତ ହେଉଥିବ ।

(ବାଲେଶ୍ୱରଠାରେ ୪ ଫକୀରମୋହନ ସାହିତ୍ୟ ସଂସଦର ଏକ ସମ୍ମାନରେ ପଠିତ ଓ ଆଲୋଚିତ)



# କବି ସିଲ୍‌ଭିଆ ପ୍ଲାଥ୍‌ଙ୍କ ଶେଷଦିନ

କବି ସିଲ୍‌ଭିଆ ପ୍ଲାଥ୍ ବିଂଶ ଶତକର ବିସ୍ମୟ । ମାତ୍ର ୩୧ ବର୍ଷ ବୟସରେ ସେ ନିଜ ଜୀବନଦୀପକୁ ଲିଭାଇ ଦିଅନ୍ତି ନିଜେ । ସେହି ତରୁଣୀ ଅଦ୍ଭୁତ କବିତ୍ୱର ଅଧିକାରିଣୀ । ଆମେରିକାନ୍ ଭାବେ ଜନ୍ମିତା ଏହି କବି ଇଂରାଜୀରେ ଲେଖି ଓ ଇଂଲଣ୍ଡରେ ରହି ଜଣେ ଇଂରେଜ କବିଙ୍କୁ ବିବାହ କରି କାବ୍ୟ ଜୀବନକୁ ଦୀକ୍ଷିତ କରିଥିଲେ । ଜୀବନର ଶେଷ ୨/୩ ମାସରେ ସେ ପ୍ରଚୁର ଅର୍ଥମୟ, ତୀକ୍ଷ୍ଣଧାର କବିତା ରଚନା କରନ୍ତି । ୧୯୫୭ରେ ବିବାହ କରି, ୨ଟି ସନ୍ତାନର ଜନନୀ, ସ୍ୱାମୀ ପରିତ୍ୟକ୍ତା ହୋଇ ୧୯୬୩ ପ୍ରାରମ୍ଭରେ ଆତ୍ମହତ୍ୟା କରନ୍ତି । ତାଙ୍କର ଜନ୍ମ ୧୯୩୨ ମସିହାରେ । ଆମେରିକା ବୋଷ୍ଟନ୍‌ର ସ୍ମିଥ୍ କଲେଜରୁ ଫୁଲ୍ ବ୍ରାଇଟ୍ ସ୍କଲାର୍‌ସିପ୍ ପାଇ ୧୯୫୬ରେ ସେ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟକୁ ଆସନ୍ତି । ପତ୍ନୀ ଭାବରେ ସେ ଯେପରି ପ୍ରେମଶୀଳା ଓ ଅଧିକାର-ପ୍ରବଣା ଥିଲେ, ମାଆ ଭାବରେ ସେହିପରି ଥିଲେ ଗର୍ବିତା ଓ କର୍ତ୍ତବ୍ୟପରାୟଣା । କିନ୍ତୁ ମାଆ ଭାବରେ ସେ ଆଉ କର୍ତ୍ତବ୍ୟ ସମ୍ପାଦନ କଲେ କେବେ ? ଝିଅ ଫ୍ରିଡାକୁ ୩ ବର୍ଷ ଓ ପୁଅ ନିକୋଲାସ୍‌କୁ ମାତ୍ର ୧୩ ମାସ, ସେ ମୃତ୍ୟୁକୁ ବରଣ କରିନେଲେ । ମୁଖ୍ୟତଃ ସେ ଥିଲେ କବି । ମୃତ୍ୟୁକାଳକୁ ସେ କବି ଭାବେ ପରିଚିତା ହୋଇଥିଲେ ମଧ୍ୟ ବିଶେଷ ପ୍ରସିଦ୍ଧି ପାଇ ନ ଥିଲେ । ବରଂ କେତେକ ସ୍ଥଳେ ଲଘୁ ମନ୍ତବ୍ୟ ଓ ହତାଦରର ଶିକାର ହୋଇଥିଲେ । ତାଙ୍କ ଆତ୍ମଜୀବନୀ 'The Bell Jar'ରେ ସେ ଅନେକ ନଗ୍ନ ସତ୍ୟ ନିଜ ସମ୍ପର୍କରେ ଲେଖି ସମାଲୋଚନାର ଶରବ୍ୟ ହୋଇଥିଲେ । ଭାରତୀୟ ସମାଜଠାରୁ ବ୍ରିଟିଶ୍ ସମାଜ କିଛିଟା ଅଲଗା ସତ, ମାତ୍ର ତରୁଣୀଟିଏ ତା'ର ସାହସିକ ଜୀବନଧାରାକୁ ଗ୍ରହଣ କରିନେବାରେ ଉଭୟ ସମାଜ, ସେତେବେଳେ କ'ଣ, ଏବେ ଯାଏ ବି ଉଦାର ହୋଇପାରି ନାହିଁ । ଏହି ଆତ୍ମଜୀବନୀରେ ସେ ୧୯/୨୦ ବର୍ଷରେ ମାନସିକ ରୋଗର ଶିକାର ହୋଇ କିଛି ଦିନ ମେଣ୍ଟାଲ୍ ହସ୍ପିଟାଲ୍‌ରେ ରହିଥିବାର ଉଲ୍ଲେଖ କରିଥିଲେ । ବହିଟି ପ୍ରକାଶ ପାଇଥିଲା ୧୯୬୩ ଜାନୁଆରୀରେ । ପ୍ରକାଶ ମାତ୍ରେ ବହିର ସମୀକ୍ଷା ମଧ୍ୟ ଗୁରୁତ୍ୱ ପାଇ ନ ଥିଲା ଓ ତତ୍କାଳର ଲଣ୍ଡନ ସାହିତ୍ୟିକ ମହଲରେ ତାଙ୍କୁ ପରିହାସ ଓ ତାଚ୍ଛଲ୍ୟ ବି କରାଯାଇଥିଲା । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ନିଜ ପୁସ୍ତକର ଏତାଦୃଶ ବିପର୍ଯ୍ୟୟ ତାଙ୍କୁ ହତାଶ କରିଥିଲା । କହିବା ବାହୁଲ୍ୟ, ତାଙ୍କ ମୃତ୍ୟୁ ପରେ ଏଯାବତ୍ 'The Bell Jar'ର ଅସଂଖ୍ୟ ସଂସ୍କରଣ ପ୍ରକାଶିତ ହୋଇ ପ୍ରଚୁର ଲୋକପ୍ରିୟତା ଲାଭ କରିଛି ।

ମୃତ୍ୟୁ କାଳକୁ ସିଲ୍‌ଭିଆ ପତି ଟେଡ୍‌ହ୍ୟୁଗ୍‌ସଙ୍କ ଦ୍ୱାରା ପରିତ୍ୟକ୍ତା ହୋଇଥିଲେ ଓ ବିବାହ-ବିଚ୍ଛେଦ ପାଇଁ ଓକିଲ ପରାମର୍ଶ କରୁଥିଲେ । ମାତ୍ର ଡିଭୋର୍ସ ହେବା ପୂର୍ବରୁ ତାଙ୍କର ଆତ୍ମଘାତ ହୋଇଥିଲା । ତାଙ୍କ ପତି ଟେଡ୍ ତାଙ୍କଠାରୁ ୨ ବର୍ଷ ବଡ଼ ଥିଲେ । ପରବର୍ତ୍ତୀକାଳରେ ଇଂରାଜୀ କବି ଓ ଲେଖକ ଭାବେ ପ୍ରଚୁର ଯଶ ଅର୍ଜନ କରିଥିଲେ ମଧ୍ୟ ସିଲ୍‌ଭିଆଙ୍କ ମୃତ୍ୟୁକାଳକୁ ଟେଡ୍ (Ted)ଙ୍କ କବିତ୍ୱ ସିଲ୍‌ଭିଆଙ୍କ ରଚନାଶୀଳତାଠାରୁ କମ୍ ସ୍ୱୀକୃତ ହୋଇଥିଲା ।

୧୯୫୦ ବେଳକୁ ପାଶ୍ଚାତ୍ୟ ସମାଜରେ ଯୁବକକୁଳ ପ୍ରେମ ଓ ବହୁ ବିବାହକୁ ମନ୍ଦ ଭାବୁ ନ ଥିଲେ । ପ୍ରେମ ସମ୍ପର୍କ ମୁଖ୍ୟତଃ ଶରୀର ସୁଖକୁ ଗୁରୁତ୍ୱ ଦେଉଥିଲା । ସେହି ମର୍ମରେ ବିବାହ ପୂର୍ବରୁ ଉଭୟେ ସିଲ୍‌ଭିଆ ଓ ଟେଡ୍‌ଙ୍କର ଏକାଧିକ ପୁରୁଷ ଓ ନାରୀବନ୍ଧୁଙ୍କ ସହ ସମ୍ପର୍କ ରହିଥିଲା । ୱେଲସ୍‌ଲି, ମାସାଚୁସେଟ୍‌ସରେ ଥିବା କାଳରେ ୧୯୫୫/୫୬ ବେଳକୁ ସିଲ୍‌ଭିଆଙ୍କର ଏକ ସମବୟସ୍କ ଆମେରିକୀୟ ଧନିକପୁତ୍ରଙ୍କ ସହ ପ୍ରେମ ସମ୍ପର୍କ ଥିଲା । ତାଙ୍କ ନାମ ରିଚାର୍ଡ ସାସୁନ୍ । ସୁନ୍ଦର ଓ ପିଲାଳିଆ ଚେହେରା ବିଶିଷ୍ଟ ଏହି ଯୁବକ ସିଲ୍‌ଭିଆଙ୍କ ପାଇଁ ଆଗ୍ରହୀ ଥିଲେ ମଧ୍ୟ ବିବାହ କରିବାକୁ ପ୍ରସ୍ତୁତ ନ ଥିଲେ । ସିଲ୍‌ଭିଆ ତେଣୁ ୧୯୫୬ରେ କ୍ୟାମ୍ବ୍ରିଜ୍ ଆସିଲା ବେଳକୁ ବିବାହ କରିବା ନିମିତ୍ତ ମନସ୍ଥ କରିସାରିଥିଲେ ।

୧୯୫୬ରେ ଲଣ୍ଡନ ଆସିବା ପରେ ପରେ ସିଲ୍‌ଭିଆ 'Newnham May Weak Fashion' ପତ୍ରିକାରେ ନିଜର ଏକ ଅର୍ଦ୍ଧ-ଅନାବୃତ ଫଟୋ ଛପାଇ ଚର୍ଚ୍ଚାର କେନ୍ଦ୍ର ହୋଇପଡ଼ିଥିଲେ । ଏଣେ ସେ ସମୟକୁ କ୍ୟାମ୍ବ୍ରିଜ୍‌ରେ କେତେକ ସମସାମୟିକ ଟେଡ୍‌ଙ୍କୁ 'The biggest seducer in Cambridge' ବୋଲି କହୁଥାନ୍ତି । ତେବେ ଉଭୟେ ସେତେବେଳକୁ କବିତା ରଚନା କରି ତରୁଣ ମହଲରେ ବିଶ୍ୱବିଦ୍ୟାଳୟରେ ପରିଚିତ ହୋଇସାରିଥାନ୍ତି । କ୍ୟାମ୍ବ୍ରିଜ୍ ଆସିବା ଅଳ୍ପ କେତେ ମାସ ପରେ ୧୯୫୬ ମସିହାରେ ୟୁନିଭର୍ସିଟିର ତରୁଣ ମହଲରେ ଫାଲ୍‌କନ୍‌ୟାର୍ଡଠାରେ ଏକ ଭୋଜିସଭା ହୋଇଥିଲା । ମୁଖ୍ୟତଃ ଏହା ଥିଲା ବିଶ୍ୱବିଦ୍ୟାଳୟର ସାହିତ୍ୟ-ସଂରଚକ ଛାତ୍ରଛାତ୍ରୀମାନଙ୍କର ଆଡ୍‌ଡାସ୍ଥଳୀ । ସେହିଠାରେ ଟେଡ୍ ଓ ସିଲ୍‌ଭିଆଙ୍କର ପ୍ରଥମ ସାକ୍ଷାତ ହୋଇଥିଲା । ଉଭୟେ କବିତା ମାଧ୍ୟମରେ ପରସ୍ପରକୁ କିଛିଟା ଜାଣିଥିଲେ । ପ୍ରଥମ ସାକ୍ଷାତରେ ପାଗଳପ୍ରାୟ ପରସ୍ପରକୁ ଗ୍ରହଣ କରିଥିଲେ । ଟେଡ୍ ହ୍ୟୁଗ୍‌ସ ଥିଲେ ଅସାମାନ୍ୟ ସୁନ୍ଦର ଚେହେରାର ତରୁଣ ଓ ନାରୀମାନଙ୍କୁ ବଶୀଭୂତ କରିବାର କୌଶଳରେ ଧୁରନ୍ଧର । ସିଲ୍‌ଭିଆ ସୁନ୍ଦରୀ ନ ଥିଲେ ମଧ୍ୟ ନାରୀ ଜନୋଚିତ ଚେହେରାବିଶିଷ୍ଟା ଥିଲେ । ତାଙ୍କ ମୁକ୍ତମନ ଓ କାବ୍ୟସୃଜନକୁ ଟେଡ୍ ପସନ୍ଦ କରୁଥିଲେ । ସିଲ୍‌ଭିଆଙ୍କ ବିବାହ-ଇଚ୍ଛାକୁ ସେ ସ୍ୱୀକାର କଲେ ଓ ୧୯୫୭ରେ ଉଭୟେ ବିବାହ କଲେ । ଟେଡ୍‌ଙ୍କର ପ୍ରାୟ କିଛି ଆୟ ନ ଥିଲା । ସିଲ୍‌ଭିଆଙ୍କ ଫୁଲ୍‌ବ୍ରାଇଟ୍ ସ୍କଲାର୍‌ସିପ୍ ଓ ବିଭିନ୍ନ ପତ୍ରପତ୍ରିକାରେ ଟେଡ୍‌ଙ୍କ ଲେଖାଲେଖିରୁ (ମୁଖ୍ୟତଃ ଗଦ୍ୟ) ଯାହା

ମିଳୁଥିଲା, ଯଥେଷ୍ଟ ନ ଥିଲା । ତଥାପି କିଛିକୁ ଖାତିର୍ ନ କରି ସିଲ୍‌ଭିଆ ବିବାହ କରିଥିଲେ ଓ କଷ୍ଟେମଷ୍ଟେ ଚଳୁଥିଲେ । ସିଲ୍‌ଭିଆଙ୍କ ପଢ଼ା ସମୟରେ ସେ ଦୁହେଁ ଆମେରିକାର ବୋଷ୍ଟନ୍‌କୁ ଚାଲିଗଲେ ଓ ନିଜ ପଢ଼ା କଲେଜ 'ସ୍ମିଥ୍'ରେ ସିଲ୍‌ଭିଆ ଅଧ୍ୟାପନା କଲେ । ଟେଡ୍ ମଧ୍ୟ କିଛି ରୋଜଗାର କଲେ । ଆର୍ଥିକ ଅବସ୍ଥା ସୁଧୁରିଲେ ବି ଉଭୟେ ଲଣ୍ଡନରେ କେବଳ ଲେଖାଲେଖିରେ ସମୟ ଅତିବାହିତ କରିବାକୁ ସ୍ଥିର କଲେ । ଚାକିରି ଓ ନିର୍ଦ୍ଦିଷ୍ଟ ଆୟର ନିଶ୍ଚିତତାକୁ ଜଳାଞ୍ଜଳି ଦେଲେ । ଉଭୟଙ୍କର ପରସ୍ପରର ସୃଜନଶୀଳତା ପ୍ରତି ସମ୍ମାନ ଓ ଆସ୍ଥା ଥିଲା । ଫଳରେ ସେ ଦୁହେଁ ଲଣ୍ଡନ ଆସି ବିଭିନ୍ନ ପତ୍ରପତ୍ରିକାରେ ଲେଖାଲେଖି କରି କିଛିଟା ଆୟ କଲେ । ସେହି ସୀମିତ ଆୟରେ ସିଲ୍‌ଭିଆ ବହୁ ଅସୁବିଧା ଭିତରେ ଲଣ୍ଡନରେ ପରିବାର ଚଳାଇଲେ । ଛୋଟ ଘର, ପଢ଼ିବା ଲେଖିବାକୁ ଜାଗା ଅଭାବ, ଫ୍ରିଜ୍ ନାହିଁ । ଆଧୁନିକ ଚଳଣିର କିଛି ଆସବାବ ନାହିଁ, ତଥାପି ଖାଇବା ଟେବୁଲ୍‌କୁ ଲେଖିବା ଟେବୁଲ୍ କରି ସିଲ୍‌ଭିଆ ଟେଡ୍‌ଙ୍କ ପ୍ରେମରେ ମଜ୍ଜି ରହିଲେ ଓ କବିତା ଏବଂ ନିଜ ଦିନଲିପି ଲେଖିବାରେ ବ୍ୟାପୃତ ରହିଲେ ।

ପ୍ରଥମ ସନ୍ତାନର ଜନ୍ମ ପରେ ପରେ ଲଣ୍ଡନରୁ କିଛି ଦୂର 'ଡେଭନ୍'ଠାରେ ସିଲ୍‌ଭିଆ 'କୋର୍ଟଗ୍ରିନ୍' ନାମକ ଏକ ଘର କିଣିଲେ, ଘରଟି ଦୁଇ ମହଲା, ଉଭୟେ ଟେଡ୍ ଓ ସିଲ୍‌ଭିଆ ଲେଖାଲେଖି କରି ଅଧିକ ପରିଚିତି ଲାଭ କଲେ । କିନ୍ତୁ ଏହି ବିବାହ ଓ ବନ୍ଧନ ଟେଡ୍‌ଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ନ ଥିଲା । ୧୯୬୨ ବେଳକୁ ସେ ଜଣେ ଇଂରାଜୀ ମହିଳାଙ୍କ ପ୍ରେମରେ ଉବୁଟୁବୁ ହେଲେ । ସେ ମହିଳାଙ୍କ ନାମ ଆସିଆ ଉଇଭିଲ୍-ସେ ସୁନ୍ଦରୀ ଥିଲେ, ଥିଲେ ଟେଡ୍‌ଙ୍କଠାରୁ ଦୁଇ ବର୍ଷ ବଡ଼ । ଆସିଆ କଳା, ସାହିତ୍ୟ ପ୍ରତି ଅନୁରକ୍ତା ଥିଲେ, ମାତ୍ର ସୃଜନଶୀଳ ଲେଖାରେ ପାରଦର୍ଶୀ ନ ଥିଲେ । ଆସିଆ ୧୯୬୨ ବେଳକୁ ଦୁଇଟି ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ, ତୃତୀୟ ସ୍ୱାମୀ (ନିଜଠାରୁ ୮ ବର୍ଷ ସାନ)ଙ୍କ ସହ ରହୁଥିଲେ । ତାଙ୍କର ସନ୍ତାନ ନ ଥିଲା । ପ୍ଲାଥ୍ ଏହା ଜାଣି ଘୋର ପ୍ରତିବାଦ କଲେ ଓ ଭାଙ୍ଗିପଡ଼ିଲେ ।

ପ୍ରକାଶ ଥାଉକି, ସୁନ୍ଦରୀ ଆସିଆ, ସିଲ୍‌ଭିଆ ପ୍ଲାଥ୍‌ଙ୍କ ମୃତ୍ୟୁ ପରେ ଟେଡ୍‌ଙ୍କ ସହ ଅବାଧ ମିଳାମିଶା କଲେ । ୩ୟ ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ ନ ଥିଲେ ମଧ୍ୟ ଟେଡ୍‌ଙ୍କ ସହ ରହିଲେ । କିନ୍ତୁ ଟେଡ୍ ତାଙ୍କୁ ବିବାହ କରି ନ ଥିଲେ । ଟେଡ୍‌ଙ୍କ ଔରସରୁ ଆସିଆଙ୍କର ଝିଅଟିଏ ଜନ୍ମ ହେଲା ଓ ସେ ତା' ନାମ ରଖିଥିଲେ 'ଶୁରା' । ପ୍ଲାଥ୍‌ଙ୍କ ଡେଭନ୍‌ର ଘରେ ଟେଡ୍‌ଙ୍କ ବାପା, ମାଆ, ଫ୍ରିଡା ଓ ନିକୋଲାସ୍ ସହ ଆସିଆ ଝିଅ 'ଶୁରା'କୁ ଧରି କିଛି ବର୍ଷ ରହୁଥିଲେ । ମାତ୍ର ୬ ବର୍ଷ ଯାଏଁ ଆସିଆ ଟେଡ୍‌ଙ୍କ ସହ ରହିଲେ । ଟେଡ୍‌ଙ୍କ ନାରୀ ସଂସର୍ଗ ଓ ଉଦାସୀନତା ଦ୍ୱାରା ହତାଶାଜର୍ଜର ହୋଇ ଆସିଆ ୪ ବର୍ଷର ଝିଅ ଶୁରାକୁ କୋଳରେ ଧରି, ନିଦ ବଟିକା ଖାଇ, ଝିଅକୁ ଖୁଆଇ ଗ୍ୟାସ୍ ଚାମ୍ବର୍‌ରେ ଶୋଇଗଲେ ଓ ୧୯୬୯ରେ ଏହି ରୂପେ ଆତ୍ମହତ୍ୟା କଲେ । ଏହାପରେ ସାଧାରଣ ସମାଜ ଓ ସାହିତ୍ୟିକ ମହଲରେ

ଟେଡ୍ ଘୃଣାର ପାତ୍ର ହୋଇ ଲୁଚି ରହିବାକୁ ଚେଷ୍ଟାକଲେ । କିନ୍ତୁ ସିଲ୍‌ଭିଆଙ୍କ ମୃତ୍ୟୁ ପରେ ଟେଡ୍ ତାଙ୍କ ସମଗ୍ର ଜୀବନ ପ୍ଲାଥ୍‌ଙ୍କ ରଚନାକୁ ସମ୍ପାଦନା, ଉପସ୍ଥାପନା, ଆଲୋଚନା କରି ପ୍ଲାଥ୍‌ଙ୍କ ରଚନାର ଅଭିବୃଦ୍ଧି ଘଟାଇଲେ । କହିବା ବାହୁଲ୍ୟ ପ୍ଲାଥ୍‌ଙ୍କ ରଚନାରୁ ଟେଡ୍ ପ୍ରଚୁର ଅର୍ଥ ଆଦାୟ କରୁଥିଲେ ।

ଟେଡ୍‌ଙ୍କ ସହ ଆସିଆଙ୍କ ପ୍ରେମ ସମ୍ପର୍କର ପ୍ରାଥମିକ କାଳ ୧୯୬୨ ସେପ୍ଟେମ୍ବର ମାସ ବେଳକୁ ପ୍ଲାଥ୍ ଅସହିଷ୍ଣୁତା ପ୍ରକାଶ କଲେ । ଫଳରେ ଟେଡ୍ ଘର ଛାଡ଼ି ଲଣ୍ଡନ ଚାଲିଯାଇ ଆସିଆଙ୍କ ଘନିଷ୍ଠତା ଲାଭକଲେ । ଶେଷକୁ ୧୯୬୨ ଅକ୍ଟୋବର ମାସରେ ଟେଡ୍ ତାଙ୍କ ଜିନିଷପତ୍ର ନେଇ, କୋର୍ଟଗ୍ରିନ୍ ଗୃହ ପରିତ୍ୟାଗ କରି ଲଣ୍ଡନ ଚାଲିଗଲେ । ସେତେବେଳେ ସିଲ୍‌ଭିଆଙ୍କ ଦ୍ୱିତୀୟ ସନ୍ତାନ, ପୁତ୍ରକୁ ନଅ ମାସ ହୋଇଥିଲା । ଆସିଆଙ୍କ ପ୍ରେମ ପାଗଳ ଟେଡ୍ ଗୃହତ୍ୟାଗ କରି ଚାଲିଯିବା ପରେ ସିଲ୍‌ଭିଆ କିନ୍ତୁ ଖୁବ୍ ଭଲ କବିତା ଲେଖିବାକୁ ଲାଗିଲେ । ଟେଡ୍‌ଙ୍କ ପ୍ରତି ପ୍ରେମ ସିଲ୍‌ଭିଆଙ୍କୁ କ୍ଷୁବ୍ଧ କଲା ଓ କ'ଣ ପାଇଁ ସେ ପରିତ୍ୟକ୍ତା ହେଲେ ବୁଝିପାରିଲେ ନାହିଁ । ବନ୍ଧୁ ମହଲରେ 'deserter and philanderer' ବୋଲି ଟେଡ୍‌ଙ୍କୁ କହିଲେ ଓ ଡିଭୋର୍ସ କରିବାକୁ ନାନା ଉପାୟ ଚିନ୍ତା କରି ଓକିଲ ପରାମର୍ଶ ଆରମ୍ଭ କରିଥିଲେ । ଏହି କାଳରେ ପ୍ଲାଥ୍‌ଙ୍କର 'ଏରିଏଲ୍' ପୁସ୍ତକର ସମସ୍ତ କବିତା ରଚିତ । ଇଂରାଜୀ ଆଲୋଚକ ଓ ପାଠକଙ୍କ ମତରେ 'ପ୍ଲାଥ୍, ଇଲିଅଟ୍'ଙ୍କ ପରେ ହିଁ ଏତେ ବେଶି ପ୍ରସିଦ୍ଧି ପାଇଲେ ।

ମାତ୍ର ଡେଭନ୍‌ର 'କୋର୍ଟଗ୍ରିନ୍' ଗୃହରେ ସିଲ୍‌ଭିଆ ରହିବାକୁ ପସନ୍ଦ କଲେ ନାହିଁ । ୧୯୬୨ ନଭେମ୍ବରରେ ସେ ଲଣ୍ଡନର ସାରସ୍ୱତ ପରିବେଶକୁ ଫେରିବାକୁ ଚାହିଁଲେ । ନିଜ ଚେହେରାକୁ ନୂଆ ଭାବରେ ସଜାଇବାକୁ ଲାଗିଲେ । ଯା' ଭିତରେ ପିଲାଜନ୍ମ, ପାଳନ ଓ କବିତା ରଚନା ଭିତରେ ନିଜକୁ ସଜାଇବାକୁ ଭୁଲିସାରିଥିଲେ । ନଭେମ୍ବରରେ ପିଲା ଦୁହିଁଙ୍କୁ ଧରି ସେ ଲଣ୍ଡନର '୨୩, ଫିଜରୟ' ରୋଡ୍‌ର ଦୁଇ ମହଲା ଘରକୁ ଆସି ଭଡ଼ାରେ ରହିଲେ । ପୂର୍ବରୁ ମଧ୍ୟ ସେହି ଭଡ଼ାଘରେ ତାଙ୍କର ପ୍ରଥମ ସନ୍ତାନ ଝିଅଟି ଜନ୍ମ ହୋଇଥିଲା । ବହୁ ପୂର୍ବରୁ କବି ୟେଟ୍‌ସ ମଧ୍ୟ ସେହି ଘରେ ତାଙ୍କ ପିଲାଦିନ କଟାଇଥିଲେ । ବାହାରକୁ ଯେତେ କଠୋରତା ଓ ଆତ୍ମଗତ ଦୃଢ଼ତା ଦେଖାଉଥିଲେ ବି ସିଲ୍‌ଭିଆ ଛଟପଟ ହେଉଥିଲେ । ଡିସେମ୍ବର ୧୨ ତାରିଖରେ ସେ ଲଣ୍ଡନ ଆସିଲେ । ଗୋଟିଏ ସହରରେ ହେଲେ ବି ଟେଡ୍‌ଙ୍କ ରହିବା ସ୍ଥାନରୁ ଦୂରରେ ରହିଲେ, ଭାବିଲେ "I am out of Ted's Shadow". ନୂଆ ପରିବେଶକୁ ସୁନ୍ଦର ଭାବେ ସଜାଇ ଚଳିବାକୁ ଆରମ୍ଭ କଲେ । ମାତ୍ର ତାଙ୍କର ଯଥେଷ୍ଟ ଅର୍ଥ ନ ଥିଲା । ଟେଡ୍ ଓ ତାଙ୍କର ମିଳିତ ଆକାଉଣ୍ଟକୁ ଟେଡ୍ ତାଙ୍କୁ ସମୁଦାୟ ଛାଡ଼ି ଦେଇଥିଲେ ଓ ପିଲାଙ୍କ ପାଇଁ ସାମାନ୍ୟ କିଛି ଅର୍ଥ ମଧ୍ୟ ଦେଉଥିଲେ । ମାତ୍ର ତାହା ସାମାନ୍ୟ । ସେତିକିବେଳେ ଟେଡ୍‌ଙ୍କୁ ଡିଭୋର୍ସ କରିବାକୁ ଓକିଲ ପରାମର୍ଶ

କରୁଥିଲେ ସିଲ୍‌ଭିଆ । ପିଲା ଦୁଇଟିଙ୍କପାଇଁ ଗର୍ବ ଅନୁଭବ କରୁଥିଲେ ସିଲ୍‌ଭିଆ । ଯାହାହେଲେ ବି ଅର୍ଥାଭାବରୁ ମୁକୁଳିବାକୁ, ସ୍ୱଚ୍ଛଳ ହେବାକୁ ତାଙ୍କୁ କିଛି ଆୟ କରିବାକୁ ପଡ଼ିବ । ହେଲେ ପିଲା ଦୁଇଟିଙ୍କୁ କାହା ପାଖରେ ଛାଡ଼ି ସେ ବାହାରକୁ ଯିବେ ? ସେଥିପାଇଁ ଗୋଟିଏ ନର୍ସ ରଖିଲେ । ଭୋର୍ ୪ଟାରୁ ଉଠି ସକାଳ ୮ଟା ଯାଏଁ ଲେଖାଲେଖିରେ ଲାଗିପଡ଼ିଲେ । ସାର୍ଥକ, କାଳଜୟୀ, ନିବିଡ଼ ଭାବୋପଲବ୍ଧିର କବିତା ପରେ କବିତା । ଦିନଲିପି ମଧ୍ୟ ଲେଖୁଥିଲେ ନିୟମିତ - କିଛି ସେଥିରୁ ପ୍ରକାଶ ପାଉଥିଲା । ପିଲା ଦୁଇଟି ୮ଟା ବେଳେ ନିଦରୁ ଉଠିଲେ ସିଲ୍‌ଭିଆଙ୍କର ଘରକାମ ଆରମ୍ଭ ହୋଇଯାଉଥିଲା । ନର୍ସଟି ରଖିଲେ ସିନା, ଦିନେ ଦେଖିଲେ ନର୍ସଟି ପିଲାଙ୍କୁ ଅବହେଳା କରି ନିଜ ବୟଫ୍ରେଣ୍ଡ୍ ସହ ତା' କୋଠରିରେ ଶୋଇଛି । ଫଳରେ ତାକୁ ବିଦା କରିଦେଲେ ।

ସିଲ୍‌ଭିଆ ସ୍ଥିର କଲେ, ଲେଖାଲେଖିରୁ ଯଦି ଆୟ କରିବେ ତ ଗଦ୍ୟ ଲେଖିବା ଦରକାର । ପଦ୍ୟରୁ ବିଶେଷ ଆୟ ହେବାର ସମ୍ଭାବନା ନାହିଁ । ତାଙ୍କ ଆତ୍ମଜୀବନୀ 'ଦି ବେଲ୍ ଜାର୍' ଜାନୁଆରୀରେ ଛପାହେଲା । ମାତ୍ର ସେତେବେଳେ ସେ ବହିଟି ବିଶେଷ ଆଦର ପାଇଲା ନାହିଁ । (ପରବର୍ତ୍ତୀକାଳରେ ସେ ବହିଟିର ଅସଂଖ୍ୟ ମୁଦ୍ରଣ ହୋଇ ଟେଡ୍‌ଙ୍କୁ ବିଶିଷ୍ଟ ଧନୀ କରାଇଥିଲା) କିନ୍ତୁ ପ୍ରକାଶ ମାତ୍ରେ ବହିର ରିଭ୍ୟୁ ଅଣହେଳା ପାଇଲା ଓ ସିଲ୍‌ଭିଆ ବ୍ୟଥିତ ହୋଇପଡ଼ିଲେ । ଆତ୍ମଜୀବନୀରେ ସେ ମାନସିକ ରୋଗଗ୍ରସ୍ତା ଥିଲେ ବୋଲି ସତ୍ୟପ୍ରକାଶ କରିଥିଲେ । ତାହା ତତ୍କାଳର ଇଂରାଜୀ ସମାଲୋଚକମାନଙ୍କୁ ପସନ୍ଦ ହୋଇ ନ ଥିଲା । ସିଲ୍‌ଭିଆ ମଧ୍ୟ ଆତଙ୍କିତ ହୋଇପଡ଼ିଲେ ଯେ, ସେ ମାନସିକ ରୋଗଗ୍ରସ୍ତା ବୋଲି ଲେଖିଥିବାରୁ, ହୁଏତ ପିଲାଦୁଇଟିଙ୍କ ଅଭିଭାବକତ୍ୱ ତାଙ୍କଠାରୁ କାଢ଼ି ନିଆଯିବ । ସେଥିପାଇଁ ସେ ଆତଙ୍କିତ ହୋଇପଡ଼ିଲେ । ମାନସିକ ଅବସାଦ ଭିତରେ ଭିତରେ ବଢ଼ିବାକୁ ଲାଗିଲା । ଆମେରିକାରେ ତାଙ୍କୁ ପୂର୍ବରୁ ଚିକିତ୍ସା କରୁଥିବା ଡାକ୍ତରଙ୍କୁ ସେ ପରାମର୍ଶ କଲେ । ଲଣ୍ଡନର ମାନସିକ ରୋଗ ଚିକିତ୍ସକ ଡକ୍ଟର ଜନ୍ ହର୍ଡ଼ର୍‌ଙ୍କ ପରାମର୍ଶ କ୍ରମେ ଔଷଧ ଖାଇଲେ । ନିଜ ଏକାକୀତ୍ୱ ସିଲ୍‌ଭିଆ ସିନା ଲୁଚାଇଥିଲେ, ମାତ୍ର ଯେତେ ଚେଷ୍ଟା କଲେ ମଧ୍ୟ, ତିନି ବର୍ଷର ଝିଅ ଫ୍ରିଡ଼ା ମୁହଁରେ ବାପାଙ୍କୁ ହରାଇଥିବାର ଦୁଃଖ ସ୍ପଷ୍ଟ ହୋଇଯାଉଥିଲା । ଅବଶ୍ୟ ସିଲ୍‌ଭିଆ ଲଣ୍ଡନ ଆସିବା ପରେ ଟେଡ୍ ମଝିରେ ମଝିରେ ଝିଅକୁ ଦେଖିବାକୁ ଅଳ୍ପ ସମୟପାଇଁ ଆସୁଥିଲେ । ସିଲ୍‌ଭିଆ ଟେଡ୍‌ଙ୍କ ସହ ଉଚ୍ଚବାଚ କରୁ ନ ଥିଲେ । କିନ୍ତୁ ଅର୍ଥାଭାବ ଓ ପିଲା ଦୁହିଁଙ୍କର ଯତ୍ନ ନେବାକୁ ନର୍ସଟିଏ ପାଉ ନ ଥିବାରୁ ହଇରାଣ ହେଉଥିଲେ । ଏହି ଚିକିତ୍ସା ସମୟରେ, ଡକ୍ଟର ହର୍ଡର୍ ସିଲ୍‌ଭିଆଙ୍କୁ ହସ୍ପିଟାଲ୍‌ରେ ରଖିବା ଜରୁରୀ ବୋଲି ପିଲା ଦୁଇଟିଙ୍କୁ କେଉଁଠି ରଖିବାକୁ ବ୍ୟବସ୍ଥା କରିବାକୁ ଚାହୁଁଥିଲେ । ମାତ୍ର, ସେପରି କିଛି ବ୍ୟବସ୍ଥା ହୋଇପାରିଲା ନାହିଁ । ତେଣୁ ସିଲ୍‌ଭିଆଙ୍କୁ କିଛି ଦିନ ନିଜ ଘରେ ରଖିବାକୁ ବାନ୍ଧବୀ ଲିଲିଆନ୍ ନେଇଗଲେ । କିନ୍ତୁ ୩/୪ ଦିନ ପରେ 'ନିଜକୁ ସୁସ୍ଥ ଲାଗୁଛି' କହି ସିଲ୍‌ଭିଆ ପିଲା

ଦୁହିଁଙ୍କୁ ଧରି ନିଜ ଘରକୁ ଫେରିଆସିଲେ । ସେଦିନ ଫେବୃଆରୀ ୧୦ ତାରିଖ, ୧୯୬୩ ମସିହା । ସେହିଦିନ ସନ୍ଧ୍ୟାରେ ତାଙ୍କୁ ପରୀକ୍ଷା କରିବାକୁ ଡାକ୍ତର ହର୍ଡର୍ ତାଙ୍କ ଘରକୁ ଆସିଥିଲେ । ସେହିଦିନ ଉତ୍ତୀର୍ଣ୍ଣ ସନ୍ଧ୍ୟାରେ, ତାଙ୍କ ତଳମହଲାରେ ରହୁଥିବା ପଡ଼ୋଶୀଙ୍କ କବାଟରେ ନକ୍ କରି ସିଲ୍‌ଭିଆ ତାଙ୍କୁ ଡାକଟିକେଟ୍ ମାଗିଥିଲେ । ପଡ଼ୋଶୀଙ୍କ ଭାଷାରେ 'ସେ ଦିଶୁଥିଲେ ନିଶାଗ୍ରସ୍ତ, ସ୍ୱପ୍ନାଚ୍ଛନ୍ନ ଓ ଖୁବ୍ ରୁଗ୍ଣ' । ପ୍ରାୟ ସାରାରାତି ସିଲ୍‌ଭିଆ ନିଜ ଘରର କାଠଚଟାଣରେ ଘୂରି ବୁଲୁଥିବାର, ପଡ଼ୋଶୀ ଜଣକ ସ୍ପଷ୍ଟ ଭାବେ ଶୁଣି ପାରିଥିଲେ । ସେହି ରାତିର ବିଦାୟ କାଳରେ ଅର୍ଥାତ୍ ଫେବୃଆରୀ ୧୧ ତାରିଖ ପାହାନ୍ତାରେ ସିଲ୍‌ଭିଆ ଆତ୍ମହତ୍ୟା କଲେ ।

କିନ୍ତୁ ସେ କାହିଁକି ଯା' କଲେ ? ଇଂରାଜୀ ସାହିତ୍ୟିକଙ୍କ ମହଲରେ ଯା'ର ଗୋଟିଏ ସରଳ ଓ ନିଦା ଉତ୍ତର ବହୁବର୍ଷ ଧରି ଖୋଜାଚାଲିଛି । ଲୋକେ ଟେଡ୍‌ଙ୍କ ବିଶ୍ୱାସଘାତକତାକୁ ଦୋଷ ଦେଉଛନ୍ତି । କେତେକ କହିଛନ୍ତି ସିଲ୍‌ଭିଆ ଅକାରଣ ଭୟଭୀତା ହୋଇପଡ଼ିଥିଲେ । କଥା ଥିଲା, ୧୧ ତାରିଖ ସକାଳେ ଡକ୍ଟର ହର୍ଡର୍ ନର୍ସଟିଏ ଘରକୁ ପଠାଇଥାନ୍ତେ, ସେ ପିଲାଙ୍କ ଯତ୍ନ ନେବା ସହ ସିଲ୍‌ଭିଆଙ୍କୁ ଜଗିରହି ଥାଆନ୍ତା, ପୁଣି ସେଇ ସକାଳେ ସିଲ୍‌ଭିଆଙ୍କ ପରିଚିତା କାଥେରିନ୍ ଫ୍ରାଙ୍କ୍‌ଫର୍ଟ ଘରକୁ ଆସି ପିଲାଙ୍କ ନିକଟରେ ରହିଥାନ୍ତେ ଓ ସିଲ୍‌ଭିଆ ଜଣେ ସମ୍ପାଦକଙ୍କ ନିମନ୍ତ୍ରଣ କ୍ରମେ ମଧ୍ୟାହ୍ନ ଭୋଜିକୁ ଯାଇଥା'ନ୍ତେ । ଅଥଚ ଭୋରୁ ଭୋରୁ ତାଙ୍କର ପ୍ରସ୍ଥାନ । ଟେଡ୍ କହନ୍ତି, ସେ ବୁଝିଛନ୍ତି ଯେ ଡାକ୍ତର ହର୍ଡର୍ ଦେଇଥିବା ଆଣ୍ଟି ଡିପ୍ରେସାଣ୍ଟ୍ ମେଡିସିନ୍ ପ୍ରତି ସିଲ୍‌ଭିଆଙ୍କର ଆଲର୍ଜି ଥିଲା । ଏକଥା ସେ ତାଙ୍କ ଆମେରିକାନ୍ ଡାକ୍ତରଙ୍କଠାରୁ ଜାଣିବାକୁ ପାଇଛନ୍ତି । ସିଲ୍‌ଭିଆଙ୍କ ମାଆ ଅରେଲିଆ ପ୍ଲାଥ୍ କହନ୍ତି, "ତାକୁ ଏକା ଛାଡ଼ିବା ଉଚିତ ନ ଥିଲା । ଏହି ଆତ୍ମହତ୍ୟା ପୂର୍ବ ସ୍ଥିରୀକୃତ ନୁହେଁ, ହୁଏତ ଔଷଧ ପ୍ରଭାବରୁ ।"

ଏଣେ ସିଲ୍‌ଭିଆ ନାନା ଦୁର୍ଦ୍ଦଶା ଦେଇ ଗତି କରୁଥିଲେ । ୧୯୬୨ କ୍ରିସ୍‌ମାସ୍ ବେଳକୁ ମାଆ ପିଲା ଭୟଙ୍କର ଫ୍ଳୁରେ ପୀଡ଼ିତ ହୋଇଥିଲେ । ଡାକ୍ତର ହର୍ଡର୍ ନର୍ସଟିଏ ପଠାଇବାରୁ ସେ ଏକ ସପ୍ତାହ ଧରି ମାଆ ଓ ପିଲାଙ୍କ ଯତ୍ନ ନେଇଥିଲା । ସିଲ୍‌ଭିଆ ଦୁର୍ବଳ ହୋଇ ପଡ଼ିଥିଲେ । ଦୁଇଟି ଛୋଟ ଛୁଆଙ୍କ ଜଞ୍ଜାଳରୁ ସମୟ ବଞ୍ଚାଇ ଲେଖାଲେଖି କରିପାରୁ ନ ଥିଲେ । ଘରେ ଫୋନ୍‌ଟିଏ ବି ନ ଥିଲା । ଦୁଇ ମାସ ଧରି, ଆସିଲା ପରଠାରୁ ଚେଷ୍ଟାକରି ମଧ ସେ ଯାଏଁ ଫୋନ୍‌ଟିଏ ଘରେ ଲାଗି ନ ଥିଲା । ସେ ବର୍ଷ ଲଣ୍ଡନରେ ନାହିଁ ନ ଥିବା ଶୀତ ଓ ତୁଷାରପାତ ହୋଇଥିଲା । ୫୦ ବର୍ଷ ଭିତରେ ଏପରି ଭୟଙ୍କର ଥଣ୍ଡା ପଡ଼ି ନ ଥିଲା । ପାଇପ୍ ଲାଇନ୍ ଭିତରେ ପାଣି ବରଫ ପାଲଟି ଯାଇ, ପାଇପ୍ ଫାଟି ଯାଉଥିଲା, ପାଣି ଆସୁ ନ ଥିଲା । ରାସ୍ତାରେ ଗଦା ଗଦା ବରଫ, ଗାଡ଼ି ଚାଲିବା ସହଜ ନ ଥିଲା । ତେଣୁ ବଜାରରେ ଖାଦ୍ୟପଦାର୍ଥ ବି ଯଥେଷ୍ଟ ଭାବେ ମିଳୁ ନ ଥିଲା । ବରଫଭର୍ତ୍ତି ରାସ୍ତାରେ 'ପ୍ରାମ୍' ଟାଣି, ଦୁଇଟି ବାଳୁତ ପିଲାଙ୍କୁ ଧରି ସିଲ୍‌ଭିଆ ଟେଲିଫୋନ୍ ବୁଥ୍ ଓ ଦୋକାନ ସାମ୍ନାରେ ଧାଡ଼ି ଦେଉଥିଲେ । ବେଳେବେଳେ ରାତିରେ ଲାଇଟ୍ ବି ରହୁ ନ ଥିଲା ।

ନିତ୍ୟନୈମିତ୍ତିକ ଜୀବନର ଏହି କଠୋର ବାସ୍ତବତା ଓ ଶାରୀରିକ ଦୁର୍ବଳତା ତାଙ୍କୁ ଅଧିକରୁ ଅଧିକ ବିଷାଦଗ୍ରସ୍ତ କରିପକାଇଥିବା ସ୍ୱାଭାବିକ । ଫେବୃଆରୀ ପ୍ରଥମ ସପ୍ତାହରେ ସେ ଲେଖିଥିବା ଚିଠିଗୁଡ଼ିକରୁ ତାଙ୍କ ଅବସ୍ଥାର ସ୍ୱରୂପ ସ୍ପଷ୍ଟ ହୁଏ । ଫେବୃଆରୀ ୪ ତାରିଖରେ ନିଜ ମାଆଙ୍କୁ ସେ ଲେଖିଲେ "କେମିତି ବିଷଣ୍ଣ ଲାଗୁଛି - "Seeing finality of it all and being catapulated from the cow like happiness of maternity into loneliness" ସେହିଦିନ ସେ ତାଙ୍କ କଲେଜ ସହପାଠିନୀ ମାର୍ସିଆ ବ୍ରାଉନ୍‌ପ୍ଲମର୍‌ଙ୍କୁ ଲେଖିଲେ - "Everything has blown and bubbled and warped and split." ପୁଣି ବୋଷ୍ଟନ୍‌ରେ ଥିବା ତାଙ୍କର ପୂର୍ବତନ ମାନସିକ - ରୋଗ ଚିକିତ୍ସକଙ୍କୁ ଲେଖିଲେ - "I can feel my mind disintegrating again." ଏହା ବ୍ୟତୀତ ସେ ପ୍ରତିଦିନ ଲେଖୁଥିବା ଡାଇରୀରେ ସେଦିନ କ'ଣ ଲେଖିଥିଲେ, ତାହା କେହି ଜାଣିଲେ ନାହିଁ । କାରଣ, ଟେଡ୍ ହ୍ୟୁଗ୍ସ କାହାକୁ ନ ଜଣାଇ ଡାଇରୀଟିକୁ ପୋଡ଼ି ଦେଇଥିଲେ ।

୧୯୬୩ ମସିହା ଫେବୃଆରୀ ୧୧ ତାରିଖ ଭୋର୍‌ରୁ ସିଲ୍‌ଭିଆ ରୋଷେଇ ଘରୁ କପ୍‌ରେ କ୍ଷୀର ଢାଳି, ପାଉଁରୁଟିକୁ ଛୋଟଛୋଟ ଖଣ୍ଡକରି ସେ ପିଲାଙ୍କ ଶୋଇଲା ଘର (ଉପର ମହଲା)କୁ ଗଲେ, ପିଲାଦୁହିଁଙ୍କ ହାତପାଆନ୍ତାରେ ଖାଇବା ଜିନିଷତକ ରଖିଲେ । ବିଛଣା ନିକଟରେ ଥିବା ଝରକାକୁ ପୂରା ଖୋଲିଦେଲେ । ପିଲାଙ୍କ ଶୋଇବା କୋଠରିର କବାଟକୁ masking paperରେ ଭଲକି' ବନ୍ଦ କରିଦେଲେ । ଖଣ୍ଡେ ଚିରାକାଗଜରେ ପିଲାଙ୍କ ଡାକ୍ତରଙ୍କୁ ଚିଠି ଲେଖି, ସେଥିରେ ଡାକ୍ତରଙ୍କ ଫୋନ୍ ନମ୍ବର ଲେଖିଲେ ଓ ସେ ଚିଠିଟିକୁ ଶୋଇବାଘରର ପାଖଘରେ ଥିବା 'ପ୍ରାମ୍' ଉପରେ ଅଠା ମାରି ଲଗାଇଦେଲେ । ତା'ପରେ ସେ ତଳମହଲାକୁ ଓହ୍ଲାଇ ରୋଷେଇ ଘରକୁ ଗଲେ । ଝରକା ଓ ଦୁଆରକୁ ବନ୍ଦ କରି ତଉଲିଆ କନା ଆଦିରେ ନିବୁଜ କରିଦେଲେ । ଓଭନ୍‌କୁ ଖୋଲି ଗ୍ୟାସ୍ ପାଖରେ ଆଣ୍ଠେଇ ପଡ଼ିଲେ । ଛୋଟ ଖଣ୍ଡେ କନାକୁ ଭାଙ୍ଗି ନିଜ ଗାଲ ତଳେ ରଖିଥିଲେ - ଶେଷ ନିଃଶ୍ୱାସ ନେଲାବେଳେ କାଳେ ଆରାମ ଲାଗିବ । ଏହିପରି ଜଣେ ଉଚ୍ଚାଭିଳାଷିଣୀ, ଶାଣିତ କବିତ୍ୱର ଅଧିକାରିଣୀ, ପ୍ରେମିକା, ପତ୍ନୀ ଓ ମାଆଙ୍କର ମୃତ୍ୟୁ ଘଟିଥିଲା ।

(Viking Publishers ଦ୍ୱାରା ପ୍ରକାଶିତ (୨୦୦୩), ଡାଏନା ମିଡ୍‌ଲବୃକ୍‌ଙ୍କ ଦ୍ୱାରା ଲିଖିତ 'Her Husband' ପୁସ୍ତକରୁ ତଥ୍ୟାବଳୀ ସଙ୍ଗୃହୀତ ।) (ପ୍ରାୟ ୩୭ ବର୍ଷ ତଳେ କବିଙ୍କଦ୍ୱାରା ପ୍ରଭାବିତ ହୋଇ, କଲିକତା ପୁସ୍ତକ ମେଳାରୁ ଭିଡ଼ ଭିତରେ ଅଣନିଃଶ୍ୱାସୀ, ଭଲକି ନ ଦେଖି ଖଣ୍ଡେ ବହି ତାଙ୍କ ନାମ ଥିବାରୁ କିଣି ପକାଇଥିଲି । ପରେ ଦେଖିଲି, ସେଇଟା ତାଙ୍କ ବିଷୟରେ ପୁସ୍ତକ ନୁହେଁ । ପୁଣି, ଏବେ ଆର୍ଲିଂଟନ୍ ଲାଇବ୍ରେରୀରେ ୨୦୦୩ରେ ଦେଖିଲି - 'Her Husband', ଲାଗିଲା ଓଡ଼ିଆ କବି ଓ ପାଠକଙ୍କଦ୍ୱାରା ତାଙ୍କର ଏହି ଛୋଟ ଜୀବନ - ତଥ୍ୟଟି ଆଦର ପାଇବ ।)



# କୋମଳ ଓ ବିପଜ୍ଜନକ ସ୍ୱର

## [ କବି ରବର୍ଟ ଲୋଏଲ୍ ]

ଯେଉଁ କବି ଅତି ଅଳ୍ପ ବୟସରେ ଅସାଧାରଣ ବୁଦ୍ଧିଦୀପ୍ତ, ଆନ୍ତରିକତା-ଓତପ୍ରୋତ କବିତା ଲେଖି ବରିଷ୍ଠ ଆମେରିକୀୟ କବିର ଦାବି ଓ ମର୍ଯ୍ୟାଦା ହାସଲ କରିପାରିଲେ, ସେ ରବର୍ଟ ଲୋଏଲ୍ । ପ୍ରାପ୍ୟ ସମ୍ମାନ ପାଇବାପାଇଁ କେଶ ଧବଳ ହେବାଯାଏ ସେ ଅପେକ୍ଷା କରି ନ ଥିଲେ । ୩୦ ବର୍ଷ ବୟସ ପରେ ପରେ, ଯେତେବେଳେ କି ଅନେକ କବିଙ୍କ କଲମ ଠିକଣାବାଟ ଖୋଜି ପାଇ ନ ଥାଏ, ସେତିକିବେଳେ ସେ ଗୋଟିଏ ବର୍ଷ ମଧ୍ୟରେ ପାଇଗଲେ ପୁଲିଜ୍‌ର ପ୍ରାଇଜ୍ ଓ ଗନେହସ୍ ଫେଲୋଶିପ୍ ଏବଂ ଆମେରିକୀୟ ଏକାଡେମୀର 'କଳା ଓ ସାହିତ୍ୟ' ତରଫରୁ ସମ୍ମାନଜନକ ପୁରସ୍କାର । ପୁଣି ଲାଇବ୍ରେରୀ ଅଫ୍ କଂଗ୍ରେସର 'କବିତା ପରାମର୍ଶଦାତା' ଭାବେ ସ୍ୱୀକୃତି ପାଇଲେ । ୬୦ ବର୍ଷ ବୟସରେ ସେ ମୃତ୍ୟୁ ଲଭିଲେ, ମାତ୍ର ସେତେବେଳକୁ କେତେ କେଜାଣି ପୁରସ୍କାର ଓ ସମ୍ମାନ ତାଙ୍କ ଉପରେ ଅଜାଡ଼ି ପଡ଼ିଥାଏ । ଯଦି ଆଉ ଗୋଟିଏ ଦଶକ ସେ ବଞ୍ଚିଥାଆନ୍ତେ, ନୋବେଲ୍ ପୁରସ୍କାର ତାଙ୍କ ହାତକୁ ଆସିଯାଇସାରିଥାନ୍ତା ନିଶ୍ଚୟ । ତାଙ୍କ ସମୟର ବିଖ୍ୟାତ ସମାଲୋଚକ ଇରୱିନ୍ ଇରେନ୍ ପ୍ରିସ୍, 'The Age of Lowel' 'ଲୋଏଲଙ୍କ ଯୁଗ' ନାମରେ ଏକ ପ୍ରବନ୍ଧ ସଂକଳନ ପ୍ରକାଶ କରିସାରିଥିଲେ ।

୧୯୧୭ ମାର୍ଚ୍ଚ ପହିଲାରେ ବୋଷ୍ଟନ୍ ସହରରେ ରବର୍ଟ ଟ୍ରେଲ୍ ସ୍ପେନ୍‌ସ ଲୋଏଲ୍ ଜୁନିଅର୍ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାର 'ନ୍ୟୁ ଇଂଲଣ୍ଡ'ରେ ଖୁବ୍ ମର୍ଯ୍ୟାଦାସମ୍ପନ୍ନ ଥିଲେ । ତାଙ୍କ ପୈତୃକ ସମ୍ପର୍କୀୟମାନେ ଥିଲେ କଳାଶିଳ୍ପ ଇତ୍ୟାଦିରେ ଧୁରନ୍ଧର-ଆମି ଲୋଏଲ୍, ଜେମ୍ସ ରସେଲ୍ ଲୋଏଲ୍ ଓ ଏ. ଲରେନ୍ସ ଲୋଏଲ୍ । ଏ. ଲରେନ୍ସ ଲୋଏଲ୍ ହାର୍ଭାର୍ଡର ପ୍ରେସିଡେଣ୍ଟ ଥିଲା ବେଳେ ଏହି ଯୁବକ ରବର୍ଟ ସେଠାରେ ଦୁଇ ବର୍ଷ କଟାଇଥିଲେ । ଘରେ ହାକିମ୍ କରୁଥିବା (dominating) ମାଆ ଓ ପ୍ରାୟ ଅନୁପସ୍ଥିତ ରହିଥିବା ବାପାଙ୍କର ଏକମାତ୍ର ସନ୍ତାନ ରବର୍ଟ । ସ୍ୱରଚିତ କବିତାରେ ମା' ଓ ବାପାଙ୍କ ଏହି ଅମେଳ (mismatch) ସମ୍ପର୍କରେ ମନୋବୈଜ୍ଞାନିକ ବିଶ୍ଳେଷଣ କରି ସେ ନିଜ 'Life Studies' 'ଜୀବନଲେଖ' ପୁସ୍ତକରେ ଲେଖିଥିଲେ । ଏ ପ୍ରକାର ସାହସିକ ଓ ଯଥାର୍ଥ ରଚନା ସେପର୍ଯ୍ୟନ୍ତ ଆଉ କେହି ଲେଖି ନ ଥିଲେ । ହାର୍ଭାର୍ଡ ପରେ କେନିଅନ୍

କଲେଜରେ ସେ ପାଠ ସାରିଲେ । ସାଉଥ୍ ବରୋ, ମାସାଚ୍ୟୁସେଟ୍‌ସ୍‌ର ବିଶପ୍‌ମାନଙ୍କ ଶାସିତ ସେଣ୍ଟ ମାର୍କ୍ସ ବୋର୍ଡିଂ ସ୍କୁଲ୍‌ରେ ପଢ଼ିଲାବେଳେ ଏହି ଦୁଷ୍ଟ, ସୁସ୍ଥସବଳ ବାଳକକୁ ଅନ୍ୟମାନେ ('Cal') କାଲ୍ ବୋଲି ଡାକୁଥିଲେ 'କାଲିବାନ୍' ଅର୍ଥରେ । ମାତ୍ର ରବର୍ଟ ତାକୁ 'କାଲିଗୁଲା' ଅର୍ଥରେ ଗ୍ରହଣ କରିଥିଲେ ଓ ପସନ୍ଦ କରୁଥିଲେ । ଯାହାହେଲେ ବି ସାରା ଜୀବନ ଏହି ଡାକ ନାମ 'କାଲ'କୁ ସେ ରଖିଥିଲେ । ଲୋଏଲ୍ ଜଣେ ଅତି ଭଲ ଶିକ୍ଷକ ଥିଲେ ଓ ସୁଶିକ୍ଷିତ ଲେଖକ ଥିଲେ । ସେ ନିଜ ଲେଖା ମାଧ୍ୟମରେ କ୍ରୋଧାନ୍ୱିତ ଭାବ ସହ ଐତିହାସିକ ଓ ସାହିତ୍ୟିକ ସୂଚନାକୁ ପ୍ରକଟ କରୁଥିଲେ ।

ଲେଖକ ବନ୍ଧୁ ବେରିମାନ୍ ତାଙ୍କ ଚେହେରା ଉପରେ 'Matine Idol Look' ମନ୍ତବ୍ୟ ଦେଇଥିଲେ । କବି ଆନ୍ ସେକ୍ସଟନ୍ କହିଥିଲେ, 'ରବର୍ଟଙ୍କ ସ୍ୱର କୋମଳ ଓ ବିପଜ୍ଜନକ' । ରବର୍ଟଙ୍କର ଅସଂଖ୍ୟ ପ୍ରଶଂସକ ଥିଲେ । ପ୍ରଥମ ପତ୍ନୀ 'ଜନ୍ ଷ୍ଟାଫର୍ଡ', ଦ୍ୱିତୀୟ ଏଲିଜାବେଥ୍ ହାଡଓ୍ୱିକ୍ ଓ ତୃତୀୟ କାରୋଲିନ୍ ବ୍ଲାକ୍‌ଉଡ୍ । କାରୋଲିନ୍ ବ୍ଲାକ୍‌ଉଡ୍‌ଙ୍କଠାରୁ ତାଙ୍କ ପୁତ୍ର 'ସରିଦାନ' ଜନ୍ମିଥିଲା । ତାଙ୍କ କନ୍ୟା 'ହାରିଏଟ୍' ଏଲିଜାବେଥ୍‌ଙ୍କଠାରୁ ଜନ୍ମିଥିଲା । ଧୁରୀଣ ସମାଲୋଚିକା ଏଲିଜାବେଥ୍ ରବର୍ଟଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ, ବୌଦ୍ଧିକ ବାନ୍ଧବୀ ଥିଲେ । ଯଦିଓ ଶାରୀରିକ ଭାବେ ବଳିଷ୍ଠ କିନ୍ତୁ ରବର୍ଟ ମାନସିକ ଅବସାଦର ଶିକାର ହୋଇଥିଲେ । ମଝିରେ ମଝିରେ ହସ୍ପିଟାଲ୍‌ରେ ସକ୍ ଟ୍ରିଟ୍‌ମେଣ୍ଟ ନେଉଥିଲେ । ୩୨ ବର୍ଷ ବୟସରେ ସେ ପ୍ରଥମେ ହସ୍ପିଟାଲ୍‌ରେ ଭର୍ତ୍ତି ହେଲେ ଠିକ୍ ପତ୍ନୀ ଜିନ୍‌ଙ୍କଠାରୁ ବିଚ୍ଛେଦ ଘଟିବା ପରେ ପରେ । ପ୍ରାୟ ପ୍ରତିବର୍ଷ ସେ ମାନସିକ ରୋଗର ଚିକିତ୍ସାରେ ଥିଲେ । ବହୁବାର ଗଭୀର Sedativ(ଶାନ୍ତିପ୍ରଦ ଔଷଧ) ନେଇଥିଲେ । ତାଙ୍କ ଆତ୍ମାର କଳାତ୍ମକ କାଳିମାମୟ ସୌନ୍ଦର୍ଯ୍ୟକୁ 'Walking in the Blue' ଓ 'Man and Wife' କବିତାରେ ପ୍ରମୂର୍ତ୍ତ କରିଥିଲେ । ଜୀବନର ଶେଷ ଆଡ଼କୁ ନିଜଦ୍ୱାରା ସେବିତ 'ଲିଥିୟମ୍ କାର୍ବୋନେଟ୍'କୁ ଜାଣିନେବା ପରେ ସେ ବନ୍ଧୁ ରବର୍ଟ ଜିରକ୍ସଙ୍କ ସମକ୍ଷରେ ତାଙ୍କ ପୀଡ଼ାଦାୟକ ଉପଲବ୍ଧିକୁ ପ୍ରକାଶ କରିଥିଲେ । ସେ କହିଥିଲେ, "ବବ୍, ମୁଁ ଯାହା ଯନ୍ତ୍ରଣା ଭୋଗିଛି, ସେ ବିଷୟରେ ଭାବିଲେ ଭୟଙ୍କର ଲାଗେ । ଆଉ ଯେତେକ ଯନ୍ତ୍ରଣା ମୁଁ ନିଜେ ଦିଆଇଛି, ଲାଗେ, ମୋ ମସ୍ତିଷ୍କରେ ଟିକିଏ ଲୁଣ ଅଭାବରୁ ସବୁ କିଛି ଏପରି ଘଟିଛି ।"

ସାହିତ୍ୟିକ ପିଟରକନ୍ କହନ୍ତି, "ନ୍ୟୁ ଇଂଲଣ୍ଡର କବିମାନଙ୍କର ଦଶଗୋଟି ପ୍ରଜନ୍ମର କୃତିତ୍ୱ ରବର୍ଟ ଏଇ ଗୋଟିଏ ଜନ୍ମରେ ଲାଭ କରିଛନ୍ତି । ୧୯୫୦ ପରେ ସାହିତ୍ୟିକ ଡେଭିଡ୍ ପରକିନ୍ସ କହନ୍ତି- "ଲୋଏଲ୍‌ଙ୍କ ବିଶ୍ୱରେ ଈଶ୍ୱର ନ ଥାନ୍ତି, ଯଦିଓ ବେଳେବେଳେ ସେ ବିପକ୍ଷବାଦୀ ହୋଇ ଈଶ୍ୱରଙ୍କ କଥା ଉଲ୍ଲେଖ କରିଥାନ୍ତି ।"

ଅନ୍ୟଦେଶର ସାଧାରଣ ଜନତାଙ୍କ ଉପରେ ଆମେରିକାର ବୋମା ବର୍ଷଣ କର୍ମକୁ ବିରୋଧ କରି ସେ ୧୯୪୩ରେ ବିପକ୍ଷ ମତ ଦିଅନ୍ତି । ସେଥିପାଇଁ ୬ ମାସ ଜେଲ୍‌ରେ

ରହନ୍ତି । 'ବୋଷ୍ଟନ୍'ର 'ନ୍ୟୁୟର୍କ ଟାଇମ୍ସ'ରେ ରବର୍ଟ 'draft dodger' 'ବାଧ୍ୟତାମୂଳକ ଭାବେ ସେନାବାହିନୀକୁ ନେବାର ନୀଚ କୌଶଳକାରୀ' ଶୀର୍ଷକରେ ଲେଖାଟିଏ ଲେଖନ୍ତି । ୧୯୬୫ରେ ଭିଏତ୍‌ନାମର ଯୁଦ୍ଧକୁ ବିରୋଧ କରି ସେ ହ୍ୱାଇଟ୍ ହାଉସ୍‌ରେ ଅନୁଷ୍ଠିତ କଳା ଉତ୍ସବର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରନ୍ତି । ପ୍ରେସିଡେଣ୍ଟ ଜନ୍‌ସନ୍‌ଙ୍କୁ ଲିଖିତ ତାଙ୍କର ପତ୍ର Times ର ପ୍ରଥମ ପୃଷ୍ଠାରେ ପ୍ରକାଶ ପାଏ । ପେଣ୍ଟାଗନ୍‌ଠାରେ ୧୯୬୪ରେ ହୋଇଥିବା ଭିଏତ୍‌ନାମ ଯୁଦ୍ଧବିରୋଧୀ ପଦଯାତ୍ରାରେ ଯୋଗଦେଇ ସେ ଅନେକ ପ୍ରକାର ମନ୍ତବ୍ୟର ଶିକାର ବା ମନ୍ତବ୍ୟରେ ଭୂଷିତ ହୁଅନ୍ତି । ମନରେ ଲାଖି ରହିବା ପରି ଋଷିପ୍ରାଣତା (Unwilling haunted saintliness) ଥିବା ସେ ଜଣେ କବି, ଯେ କି ଅତି ସୁନ୍ଦର ଶାଣିତ ସ୍ୱରରେ କହିଥାନ୍ତି ଯେ "ଜୀବନ ତାଙ୍କ ପାଖକୁ ମାଳେ ପ୍ରତିବନ୍ଧକ ହୋଇ ମାଡ଼ି ଆସିଛି । କିଛି ପ୍ରତିବନ୍ଧକକୁ ଡେଇଁ ପଡ଼ିବାରେ ସେ କୃତକାର୍ଯ୍ୟ ହୋଇଛନ୍ତି ତ କେତେଟାରେ କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଲୋଏଲ୍ ଜଣେ ପୂର୍ଣ୍ଣାଙ୍ଗ (Consummate) ଶିଳ୍ପୀ, କାବ୍ୟକୁଶଳୀ, ଆଙ୍ଗିକରେ ମାଷ୍ଟର । ଶୈଳୀରେ ବା ପ୍ରକାଶ ଭଙ୍ଗୀରେ ସାଙ୍ଗୀତିକତା, ଛନ୍ଦମୟତା ଓ ଛନ୍ଦହୀନତାକୁ ବ୍ୟବହାର କରିବାରେ ତାଙ୍କ କୃତିତ୍ୱ ଅତୁଳନୀୟ । କ୍ଷଣିକ ଅଭିଜ୍ଞତାକୁ ସମୟାତୀତ କଳାବବୋଧରେ ରୂପାନ୍ତର କରିବାରେ ସେ ଧୁରନ୍ଧର । Sylvia Plath କହନ୍ତି, "ତାଙ୍କ କାବ୍ୟିକ ବାକ୍ୟାଂଶ, କଠିନ ଗ୍ରନ୍ଥି ଯୁକ୍ତ, ଜ୍ୱଳନ୍ତ ରଙ୍ଗ ଓ କ୍ରୋଧର ସ୍ୱାଦ ଦେବାରେ ବିଶିଷ୍ଟତା ଦାବି କରେ ।"

ଯଥାକ୍ରମେ: ରବର୍ଟଙ୍କ ପ୍ରଥମ ତିନୋଟି ପୁସ୍ତକ Land of Likeness-୧୯୪୪, Lord Weary's Castle-୧୯୪୬, The Mills of the Kavanaughs-୧୯୫୧,ମାନଙ୍କରେ ସେ କ୍ଷିପ୍ର ନାଟକୀୟ ଗତିରେ କାବ୍ୟିକ ରୀତିକୁ ବଦଳାନ୍ତି । ତାଙ୍କ ପ୍ରକାଶଭଙ୍ଗୀ ଅଟଳ, ଜିଦ୍‌ଖୋର ଓ ପରୋକ୍ଷଭାବେ ହିଁ ସୂଚିତ ହୋଇଥାଏ । ମନୋରମ ପ୍ରକାଶଭଙ୍ଗୀଗୁଡ଼ିକରୁ ସେ ଗୋଟିକଠାରୁ ଅନ୍ୟଟିକୁ ଦୂରେଇ ଯାଆନ୍ତି ବାରମ୍ବାର । ସେ ନିଜେ କହନ୍ତି, ମୋ ବହିଗୁଡ଼ିକ 'ପଦ୍ୟରେ ଲେଖା ମୋ ଆତ୍ମଜୀବନୀ' (My Autobiography Verse) ରବର୍ଟ ଲିଖିତ କବିତାକୁ ବହୁବାର ବଦଳାନ୍ତି, ପୁନର୍ଲିଖନ କରନ୍ତି, ପ୍ରକାଶିତ ପୁସ୍ତକରୁ ବି କାଟିପକାନ୍ତି, ସତେ କି ତାହା ପାଣ୍ଡୁଲିପି ହୋଇ ରହିଛି ।

ବିଶିଷ୍ଟ ସମାଲୋଚକମାନଙ୍କ ମତରେ ଆମେରିକୀୟ କବିମାନଙ୍କ ମଧ୍ୟରେ Stevens, Frost, Williams, Moorର ଓ ଏଲିଅଟ୍‌ଙ୍କ ଭଳି ତୁଙ୍ଗ କବିଙ୍କ ପରେ ରବର୍ଟ ଲୋଏଲ୍‌ଙ୍କୁ ଗ୍ରହଣ କରାଯିବା ଅବଧାରିତ । ତାଙ୍କ ବିଶିଷ୍ଟତା ଲାଭ କରିଥିବା କବିତା 'Man and Wife'ର ଓଡ଼ିଆ ରୂପାନ୍ତର 'ଭିନ୍ନ ଦେଶ : ଭିନ୍ନ ଭାଷା'ରେ ସ୍ଥାନିତ ହୋଇଛି ।



# 'ସାହିତ୍ୟ ଭାରତୀ' ସମ୍ମାନରେ ମୋର ବକ୍ତବ୍ୟ

(ଆଜିର ଏହି ଭବ୍ୟ ସମାରୋହରେ, ଉପସ୍ଥିତ ଶ୍ରୀ ଗଙ୍ଗାଧର ରଥ ଫାଉଣ୍ଡେସନ୍‌ର ସଭାପତି ଡାକ୍ତର ଜୟନ୍ତ ରଥ, ସମ୍ପାଦିକା, ଲେଖିକା ସୁସ୍ମିତା ରଥ, ମୁଖ୍ୟ ଅତିଥି, କବି-ସରସ୍ୱତୀ ରମାକାନ୍ତ ରଥ, ମୁଖ୍ୟବକ୍ତା ଲେଖକ ଶ୍ରୀ ବିଶ୍ୱରଂଜନ, ବିଜୟାନନ୍ଦ ସିଂ, ପୁରସ୍କାର ପ୍ରାପ୍ତି ନିମିତ୍ତ ଯୋଗ୍ୟ ବ୍ୟକ୍ତିବୃନ୍ଦ ଏବଂ ପ୍ରେକ୍ଷାଗୃହରେ ଉପସ୍ଥିତ ସଜ୍ଜନ ମଣ୍ଡଳୀ ।)

ଏହି ମଞ୍ଚରେ ଛିଡ଼ା ହେଲା ବେଳକୁ ମୋର ଦୃଷ୍ଟିପଥାରୂଢ଼ ହେଉଛନ୍ତି- ବିଖ୍ୟାତ ଆଇନଜୀବୀ, ସୁଲେଖକ, ଏକଦା ବିପ୍ଳବୀ ସ୍ୱର୍ଗତ ଗଙ୍ଗାଧର ରଥ- ମୋର ସୃଜନ କର୍ମ ପ୍ରତି, ସେ ଥିଲେ ଶ୍ରଦ୍ଧାଶୀଳ । ଆଜିର ଅବସରରେ ମୁଁ ତାଙ୍କ ଉଦ୍ଦେଶ୍ୟରେ ସଭକ୍ତି ପ୍ରଣିପାତ ଜଣାଉଛି । 'ଭଦ୍ରମଣ୍ଡଳୀ' ମୋର ପ୍ରତିଟି କବିତାର ପ୍ରାରମ୍ଭ ନୂତନ ଓ ପରିସମାପ୍ତି, ଅସାଧାରଣ । ଏହା ମୋର ବିଶ୍ୱାସ । ମୋ କବିତାକୁ ଆପଣ କହିପାରନ୍ତି କାଠଯୋଡ଼ି, ବିରୂପା, ମହାନଦୀ ବା ଦୟାନଦୀ ପରି ବହମାନ, କହିପାରନ୍ତି କ୍ଷୀର ଢୋକୁଥିବା ସୁବିସ୍ତୃତ ଧାନକିଆରି, ଅଥବା ଛାତି ଭିତରର ସ୍ତବ୍‌ଧତାକୁ ଆନ୍ଦୋଳିତ କରୁଥିବା ଏକ ତୀବ୍ର ସ୍ୱର । ଆଜିଠାରୁ ଅନେକ ବର୍ଷ ପୂର୍ବରୁ, ଯେବେ, ବିନିଦ୍ର ରାତି ଅଧରେ, ଶେଯରୁ ଉଠିଯାଇଛି ମୁଁ, ଅନ୍ଧାରରେ, ଖାତା କଲମ ଧରି, ଡ୍ରଇଂ ରୁମ୍‌ରେ, ଅତି ସନ୍ତର୍ପଣରେ, ଆଲୁଅ ଜଳାଇଛି, କ୍ରମଶଃ ପାହି ପାହି ଆସିଛି ରାତି । ଏହା, ଏକ ପ୍ରକାର ଅଭିସାର । ଏଭଳି ଅଭିସାରର ରାତିରେ, ମୁଁ ସୃଜନଧର୍ମ ସହ, ଏକାତ୍ମ ହୋଇଛି । ଚୁପ୍‌ଚାପ୍, ଏକୁଟିଆ । କାହିଁକି ଯେ ଦଣ୍ଡକୁ, ବରଣ କରିନେଇଛି କେଜାଣି । ତଥାପି, ଆପଣମାନଙ୍କ ସମ୍ମୁଖରେ ସ୍ୱୀକାର କରୁଛି ଯେ, ପାର୍ଥିବ ଜୀବନର ଆଡ଼ମ୍ବରକୁ ଆଡ଼େଇ ଦେଇ, ଆତ୍ମାଲୋଚନା ମାଧମରେ, ମୁଁ ଖୋଜି ଆଣିଛି କବିତ୍ୱର ଅପାର୍ଥିବ ରତ୍ନ, ଯାହାର ଉଜ୍ଜ୍ୱଳତା, ମୋର ଆତ୍ମବୋଧକୁ ଶାଣିତ, ସ୍ୱଚ୍ଛ କରିବାରେ ସହାୟକ ହୋଇଛି ।

ସାହିତ୍ୟ-ରସିକ-ବୃନ୍ଦ,

ଅନଭିବ୍ୟକ୍ତ, ଶୂନ୍ୟଚାରୀ, ସେ କବିତାକୁ, ମୁଁ ଆହ୍ୱାନ କରେ । ନିଜ ଅନ୍ତଃକରଣରେ, କବିଟିଏ, ନାରୀଟିଏ, ଶୂନ୍ୟକୁ ହାତ ବଢ଼ାଇ, ଯାଚନାର ମୁଦ୍ରାରେ, ଠିଆ ହୋଇଥିବାର, ମୁଁ ପ୍ରତ୍ୟକ୍ଷ କରିପାରେ । କବି କଳାକାର ପାଇଁ ପ୍ରେରଣା ଆସିଥାଏ । କିଏ ଯେମିତି ଡାକିଦିଏ, କହେ- 'କିଛି କହିଯାଆ'- ହୁଏତ, ଅନ୍ଧାରରୁ, କବିଟିର ଅନ୍ୟ ଏକ ସ୍ଥିତିରୁ ।

ଯେଉଁ ସ୍ଥିତି, ଜହ୍ନର ଆର ପାଖ ପରି, ଅନ୍ଧକାରାଚ୍ଛନ୍ନ, ସେହିଠାରୁ ଯେ ତାକ ଉଚ୍ଚାରିତ ହୁଏ । ଏହି ଆଶ୍ଚର୍ଯ୍ୟ, ସୁନ୍ଦର ପ୍ରେରଣାରେ, ବିସ୍ମିତ ନ ହୋଇ ସେହି, ଅନଭିବ୍ୟକ୍ତକୁ, ନୂଆ ଶୈଳୀରେ ବାନ୍ଧି ରଖିବାର ପ୍ରଯତ୍ନ କରେ କବି । କେବେ ତତ୍କାଳରେ, କେବେ ବା ଚେତନା ମଧ୍ୟରେ ମାସ ମାସ ଧରି ଗଢ଼ିହେଉଥିବା ସେ ସୁକୁମାର ମୂର୍ତ୍ତି, କାଗଜ ଉପରକୁ ଓହ୍ଲାଇଲେ, କବି କେବେ ବିହ୍ୱଳ ହୁଏ, ତ କେବେ, ଭାଙ୍ଗିଯାଏ ତା'ର ମନ ନାଁ, ଯେ ହେଲା ନାହିଁ, ଯେ ନୁହେଁ"-

ଯତ୍କିଞ୍ଚିତ ମୋର ଏଇ ସାଧନା ପଥରେ ଠାଏ ଠାଏ ହତାଶାର ଅନ୍ଧାର ମାଡ଼ି ଆସିଛି- ସେସବୁକୁ ବାମହାତର ତର୍ଜନୀରେ ପୋଛି ପକାଇଛି ମୁଁ । ନିଃସର୍ତ୍ତ ଭଲ ପାଇବାରେ, ଆଲିଙ୍ଗି ନେଇଛି ସଚରାଚର ବିଶ୍ୱକୁ । ଏହାର ଉଚ୍ଚାରଣ ମୋ କବିତାରେ- "ଜାକି ଧରିଛି ଛାତିରେ/ ମଣିଷଙ୍କୁ ଯେତିକି,/ ଗଛପତ୍ରଙ୍କୁ ସେତିକି, / ପତଙ୍ଗଟିକୁ ବି, ସେତିକି, ନିବିଡ଼ରେ ।"

ତେବେ, ମୁଁ ଅନୁଭବ କରିଛି, ମୋ କବିତାର ପଂକ୍ତିମାନଙ୍କ ମଧ୍ୟରେ ଛପିରହିଛି ଯେଉଁ ନୀରବତା, ସେଇ ନୀରବତାକୁ ଲଘିଂଯିବାକୁ ମୋର ପ୍ରୟାସ ଜାରି ରହିଛି । ଘାସ ବଢୁଥିବାର ଖୁବ୍ ଅନୁଚ୍ଚ ଶବ୍ଦକୁ ଶୁଣିବା, କଢ଼ଟିଏ, ଫୁଟିବାର, ଶବ୍ଦକୁ କାନେଇବା, ଏପରିକି, ଗୁଣ୍ଡୁଚିଟିର ହୃତ୍ସ୍ପନ୍ଦନକୁ, ଶୁଣିବା ନିମିତ୍ତ, ଝୁରି ହେବା- ମୋର, ଉପରୋକ୍ତ, ପ୍ରୟାସର ମୁଖ୍ୟ ଅଂଶ ।

ଭଦ୍ରମଣ୍ଡଳୀ,

ସତେ, ମଣିଷ ସାହିତ୍ୟ ପଢ଼େ କାହିଁକି ? କିଛି ପାଏ ବୋଲି ସେ ପଢ଼େ- ଆବହମାନ କାଳରୁ ଏଯାବତ୍ ସେ କବିତା ପଢ଼ିଆସିଛି । ବିଶ୍ୱ କବି ରବୀନ୍ଦ୍ରନାଥ କହିଥିଲେ- "କବିତାର ଆନନ୍ଦ, ଅପ୍ରୟୋଜନ ଆନନ୍ଦ ।" ଅବଶ୍ୟ, ସାଂସାରିକ ବିଚାରରେ, ସେ ଆନନ୍ଦ ଅପ୍ରୟୋଜନ, ମାତ୍ର ମଣିଷର ଆତ୍ମାନିମିତ୍ତ, ଚେତନା ନିମିତ୍ତ, ଏହି ଆନନ୍ଦ, ନିତାନ୍ତ ପ୍ରୟୋଜନ । ଏହି କାବ୍ୟ ପଠନ, ବରଫ ହାଣିପାରୁଥିବା ଏକ କୁରାଢ଼ି ଭଳି- ହୃଦୟ ଭିତରେ, ବରଫ ପାଲଟିଯାଇଥିବା ସ୍ଥାଣୁ, ଅନୁଭବ ପ୍ରବଣତାକୁ, ଏହା କାଟି ପକାଇବାରେ ଲାଗିଥାଏ । ହୃଦୟକୁ ସମ୍ବେଦନଶୀଳ ଓ ଆବେଗମୟ କରିଥାଏ । ଫୁଲ ପାଇଁ, ସୂର୍ଯ୍ୟାଲୋକ ଭଳି, ହୃଦୟ ପାଇଁ, ଏହି ଦିବ୍ୟ ଆନନ୍ଦ ଅପରିହାର୍ଯ୍ୟ । କବିତା ପଠନ, ଏକାକୀତ୍ୱରୁ ମୁକ୍ତି ଦିଏ, ପାଠକ ନିଜକୁ କମ୍ ଏକୁଟିଆ ମନେ କରେ । ବେଳେବେଳେ, ଚମକି ଉଠେ, ଜୀବନର, ବୃହତ୍ତର, ସତ୍ୟୋପଲବ୍ଧିର ସାମ୍ନାସାମ୍ନି ହୁଏ । ପାଠକକୁ, ଏ ପ୍ରକାର ଆନନ୍ଦ ପ୍ରଦାନ କରିବା ହିଁ କବିର ସୁକୃତ ।

ଏକଦା ବୌଦ୍ଧଭିକ୍ଷୁ ଆନନ୍ଦ, ପଥଶ୍ରାନ୍ତ ଓ ତୃଷାର୍ତ୍ତ ହୋଇ, ଚାଲିଥାଆନ୍ତି । ପଥ ମଧ୍ୟରେ ଭେଟନ୍ତି, ଚଣ୍ଡାଳିକା ନାମ୍ନୀ ତରୁଣୀଙ୍କୁ, ସେ କୂପରୁ ଜଳ ଉତ୍ତୋଳନ କରୁଥାଆନ୍ତି ।

ଆନନ୍ଦ ଜଳ ମାଗନ୍ତି ଓ ଚଣ୍ଡାଳିକା ଜଳଦାନ କରି ତାଙ୍କ ତୃଷା ନିବାରଣ କରନ୍ତି । ଆନନ୍ଦ ଜଳପାନ ଦ୍ୱାରା ଯେଉଁ ତୃପ୍ତି ଲାଭ କରନ୍ତି, ତାହା ହିଁ କବିର ସୁକୃତ । କବିତା ପାଠକରି ପଠନେଚ୍ଛୁ ଯେଉଁ ତୃପ୍ତି ଲାଭ କରେ, ସେହିଭଳି ତୃପ୍ତି ପ୍ରଦାନ ହିଁ କବିତାର ସାମର୍ଥ୍ୟ ।

ଜଣେ, ମହାମନୀଷୀ କହିଛନ୍ତି - ଯେଉଁଦିନ, ସବୁ ସାମାଜିକ ତତ୍ତ୍ୱ ଭୁଷୁଡ଼ି ପଡ଼ିବ, ବୈଷୟିକ ଜ୍ଞାନ ଓ ଯୁଦ୍ଧ ବିପ୍ଳବ, ନିହାତି ମନୁଷ୍ୟକୁ ଧ୍ୱଂସର ଗହ୍ୱର ଆଡ଼କୁ ଆଗେଇନେବ, ସେତେବେଳେ କବି (ଯାହାକୁ ପ୍ଲାଟୋ ତାଙ୍କ ଆଦର୍ଶରାଜ୍ୟରୁ ନିବାର୍ସନ ଦେବାକୁ କହିଥିଲେ) ସେ ହିଁ ତ୍ରାଣକର୍ତ୍ତା ରୂପେ ଠିଆ ହେବ ଓ ମଣିଷ ଆଡ଼କୁ ସହାୟତାର ହାତ ବଢ଼ାଇଦେବ ।

ସଜ୍ଜନମଣ୍ଡଳୀ,

ମୋର କବିତା ଓ ସଂରଚନା ଆପଣମାନଙ୍କର ଶ୍ରଦ୍ଧାଭାଜନ ହୋଇପାରିଛି- ଏହା ମୋର ସୌଭାଗ୍ୟ । ଏହି ଅବସରରେ ଏଠାରେ ସମ୍ମାନପ୍ରାପ୍ତ ହୋଇଥିବା ଆଇନଜୀବୀ, କବି ଓ ଲେଖକଗଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

'ସାହିତ୍ୟ ଭାରତୀ ସମ୍ମାନ' ର ଚୟନକର୍ତ୍ତାମାନଙ୍କ ନିକଟରେ ମୁଁ କୃତଜ୍ଞ । ଏହି ସ୍ୱୀକୃତି ଓ ସମ୍ମାନପ୍ରାପ୍ତ ହୋଇ ଏକବିଂଶ ଶତାବ୍ଦୀର ଓଡ଼ିଆ କବିତା ଗୌରବାନ୍ୱିତ ହୋଇଛି । ଏହା ଅନୁଭବ କରି ମୁଁ ଫାଉଣ୍ଡେସନର ଏହି ସମ୍ମାନକୁ ନମ୍ରତାର ସହ ଗ୍ରହଣ କରୁଛି ।

ସୁଧୀବୃନ୍ଦ,

ଆପଣ ମୋର ବକ୍ତବ୍ୟକୁ ଧୈର୍ଯ୍ୟ ସହକାରେ ଶୁଣିଥିବାରୁ ଆନ୍ତରିକ ଧନ୍ୟବାଦ ଗ୍ରହଣ କରନ୍ତୁ । ଧନ୍ୟବାଦ ।

❖❖❖

# ମୋର ବକ୍ତବ୍ୟ ଓଡ଼ିଆଭାଷା ସମ୍ପର୍କରେ-

Tafla's session 'whither odia language'

## [ ଇଂରାଜୀରେ ପ୍ରଦତ୍ତ ବକ୍ତବ୍ୟର ଓଡ଼ିଆ ପ୍ରରୂପ ]

ସୁଦୀର୍ଘ ପରମ୍ପରା ଓ ଐତିହ୍ୟସମ୍ପନ୍ନ, ଓଡ଼ିଆ ଆମର ମାତୃଭାଷା । ଆମେ ତାକୁ ହତାଦର କରି ବହୁତ କ୍ଷତି ଘଟାଇଲୁଣି । ମହାତ୍ମାଗାନ୍ଧୀ କହିଥିଲେ, ଏବେ ଶିକ୍ଷିତ ଲୋକଙ୍କର ପ୍ରଥମ କର୍ତ୍ତବ୍ୟ ଯେ, ମାତୃଭାଷାକୁ ଆଦର କରି, ତାହା ମାଧ୍ୟମରେ ଶ୍ରେଷ୍ଠ ଚିନ୍ତା ପ୍ରକାଶ କରିବା । ପ୍ରାୟ ଏକଶତ ବର୍ଷ ପୂର୍ବେ ପ୍ରଖ୍ୟାତ ବ୍ୟକ୍ତିତ୍ୱ କବି ଫକୀରମୋହନ, ତାଙ୍କର 'ଉତ୍କଳ ଭ୍ରମଣଂ' ଦୀର୍ଘ କବିତାରେ ଯାହା ଲେଖିଥିଲେ, ତାହା ଅନୁଧ୍ୟାନ କରାଯାଉ- ମାତୃଭାଷାର ଅନାଦରକୁ ନେଇ ତାଙ୍କର କଟାକ୍ଷ- ଏହାଦ୍ୱାରା ସେ ସେତେବେଳର ଇଂରାଜୀ ଭାଷାର ପ୍ରଭାବ ତଥା ଅର୍ଦ୍ଧ-ଶିକ୍ଷିତ ଓଡ଼ିଆଙ୍କର ଓଡ଼ିଆ ଭାଷାପ୍ରତି ହତାଦରକୁ ପରିହାସ କରିଥିଲେ- "କେତେ ରାଜାଙ୍କର ଅଛି ଇଂରାଜୀ ନଲେଜ୍ / ନ ଛୁଇଁବେ ଭେରି ଡାର୍ଟି ଓଡ଼ିଆ ଲାଙ୍ଗୁଏଜ୍ / Consequenty (ପରିଣାମତଃ) ଓଡ଼ିଆ ଷଡ଼ି Sadly neglected (ଓଡ଼ିଆ ପାଠ, ଦୁଃଖଦ ଭାବେ ଅବହେଳିତ) କିନ୍ତୁ ଆଜିର ସମସ୍ୟା ଭିନ୍ନ - ଇଂରାଜୀ ବିପକ୍ଷରେ ଓଡ଼ିଆକୁ ଠିଆ କରାଇବାର ପ୍ରାସଙ୍ଗିକତା ଆଜି ନାହିଁ - ଇଂରାଜୀ ବିଶ୍ୱସ୍ତରର ଭାଷା, ପ୍ରଯୁକ୍ତି ବିଜ୍ଞାନର ଭାଷା, ଏହା ସ୍ୱୀକାର କରିବାକୁ ହେବ । ଏହା ସତ୍ତ୍ୱେ ଓଡ଼ିଆ ଭାଷାର ଶକ୍ତି ଓ ସାମର୍ଥ୍ୟ ବଢ଼ାଇବା ନିମିତ୍ତ ଦୃଢ଼ ଉଦ୍ୟମ ଆବଶ୍ୟକ । ଫକୀରମୋହନଙ୍କ ଠାରୁ ଏବେ ଓଡ଼ିଆ ଅଧିକତର ସଂକଟରେ । କିନ୍ତୁ ଆମର 'ସଂକଟ' 'ସଂକଟ' ଦିଗହରା ଚିତ୍କାରରେ ସଂକଟ ଦୂର ହେବ ନାହିଁ, ହୁଏ ନାହିଁ ମଧ୍ୟ । ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ଦିଗକୁ ଗଠନମୂଳକ ଦୃଷ୍ଟିଦ୍ୱାରା ହିଁ ମୁକାବିଲା କରିବାକୁ ହେବ ।

ଓଡ଼ିଆ ଭାରତର ମୁଖ୍ୟ ଭାଷା ମଧ୍ୟରୁ ଗୋଟିଏ । ଭାଷା ଓ ଜାତିର ପ୍ରାଣସ୍ପନ୍ଦନ ହୋଇ, ଭାଷା ଅବହେଳିତ ହେଲେ, ସଂସ୍କୃତି ଅବହେଳିତ ହୁଏ । ବିସ୍ତୃତ ଦୃଷ୍ଟିକୋଣ ସଂକୁଚିତ ହୋଇଯାଏ । ସର୍ଜନଶୀଳ ଧାରା ଶୁଖିଯାଏ, କ୍ରମଶଃ ଜାତି ମୃତ୍ୟୁର ପଥିକ ହୁଏ ।

ଆଜି ଓଡ଼ିଆମାନେ ପ୍ରଗତିପଥରେ ଧାଉଁଥିବାବେଳେ ପ୍ରଗତିର ରେଳଗାଡ଼ିରେ ଚଢ଼ିବାକୁ ଗଲାବେଳେ ସାହିତ୍ୟ, କଳା, ସଂସ୍କୃତିକୁ ଅଖା ବସ୍ତାରେ ବାନ୍ଧି ଷ୍ଟେସନ୍‌ର ଅନ୍ଧାରି କୋଣରେ ଫିଙ୍ଗି ଦେବାକୁ ଉଦ୍ୟତ । ଏପରିସ୍ଥଳେ, ଆମେ ହୃଦୟଙ୍ଗମ କରୁଛୁ ଯେ, ଆଜିର ଓଡ଼ିଆ ଭାଷା ଜ୍ଞାନର ଓ ବିକାଶର ଭାଷା ହୋଇ ରହି ନାହିଁ-ସାଧାରଣ କ୍ଷେତ୍ରରେ ଓଡ଼ିଆ ଭାଷାର ମଧ୍ୟ ବ୍ୟବହାର ନାହିଁ ।

କିନ୍ତୁ ଓଡ଼ିଆ ଭାଷାର ଶିଥିଳ, ଶୀର୍ଣ୍ଣ ଶିରାପ୍ରଶିରାରେ ସତେଜ ରକ୍ତ ପ୍ରବାହିତ କିପରି ହେବ, ତାହା ବିଚାର କରିବାର ସମୟ ଆସିଛି । ପରିବର୍ତ୍ତନ ହେଉଛି ସଂସ୍କୃତିର ନାଭିକେନ୍ଦ୍ରୀୟ ଅଂଶ । ପରିବାର ମଧ୍ୟରେ ଭାଷା ହତାଦର ପାଇଲେ, ସନ୍ତାନଗଣ ଭାଷାକୁ ଆଦର କରନ୍ତି ନାହିଁ । ପରିବାର ଅର୍ଥାତ୍ ଏବେ କେବଳ ପିତାମାତାଙ୍କୁ ବୁଝାଏ ଏବଂ ସେମାନେ ପିଲାଙ୍କ ସହ ଓଡ଼ିଆ ଭାଷାରେ କଥାବାର୍ତ୍ତା ହେବା, 'ଗୁଡ୍ ବୟ' ନ କହି 'ସୁନାପିଲା' କହିବା, ସ୍ନେହ ଜଣାଇବା, ଫୁଲ, ଫଳ, ଗଛ ପତ୍ର, ପଶୁପକ୍ଷୀଙ୍କୁ ଚିହ୍ନାଇବା, ନିହାତି ଜରୁରୀ । ଇଂରାଜୀ ସ୍କୁଲରେ ଇଂରାଜୀ ସହିତ ସମାନ ମାନକ (ଷ୍ଟାଣ୍ଡାର୍ଡ)ର ଓଡ଼ିଆ ଭାଷା ପଢ଼ାଇବା ବାଞ୍ଛନୀୟ । ଓଡ଼ିଆ ସ୍କୁଲମାନଙ୍କରେ ଯୋଗ୍ୟ ଭାଷା ଶିକ୍ଷକ ନିଯୁକ୍ତ ହେବା ଆବଶ୍ୟକ । ଓଡ଼ିଆ ଲୋକ ଓଡ଼ିଆରେ କଥାଭାଷା ହେବା, ଓଡ଼ିଆ ଭାଷା ସାହିତ୍ୟ ପଢ଼ିବା ଦରକାର । ରାଜ୍ୟରେ ୬ଲକ୍ଷ ୫୦ ହଜାର ଛାତ୍ରଛାତ୍ରୀ ଓଡ଼ିଆ ସ୍କୁଲରେ ପଢୁଛନ୍ତି । ଏମାନେ ହତାଦରର ଶିକାର । ଏ କ୍ଷେତ୍ରରେ ଓଡ଼ିଆ ଭାଷା ଦିଗହରା ହେଉଛି ନିଶ୍ଚୟ, ମାତ୍ର ତାକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ସମସ୍ତ ସମର୍ଥ ଓଡ଼ିଆଙ୍କର କର୍ତ୍ତବ୍ୟ । ଉନ୍ନତ ଗବେଷକ, ଉଚ୍ଚମାନର ସାହିତ୍ୟ ସୃଷ୍ଟି, ନୂତନ ଲାଇବ୍ରେରୀ ସ୍ଥାପନ, ଅଭିଧାନ ପ୍ରଣୟନ, ଶାସନ କ୍ଷେତ୍ରରେ ଓଡ଼ିଆ ଭାଷାର ଗୁରୁତ୍ୱ ସ୍ୱୀକାର, ନିଶ୍ଚୟ ବର୍ତ୍ତମାନ ଆବଶ୍ୟକ । କେରଳ ରାଜ୍ୟରେ ୫ ହଜାର ଲାଇବ୍ରେରୀ ରହିଛି । କନ୍ନଡ଼ ଭାଷା କର୍ଣ୍ଣାଟକରେ ପ୍ରଥମ ଶ୍ରେଣୀଠାରୁ ଇଂରାଜୀ ସହ ପଢ଼ାହେଉଛି ।

ମାତ୍ର ସବୁଠାରୁ ବଡ଼ ଆବଶ୍ୟକତା ହେଉଛି ଓଡ଼ିଆ ଭାଷାର ଭବିଷ୍ୟତ ଗଠନ । ସ୍କୁଲମାନଙ୍କରେ ଯଦି ପାଠ୍ୟପୁସ୍ତକ ସରଳ ଓ ଭାବଗ୍ରାହୀ ହୋଇପାରିବ, ତେବେ ପିଲାଏ ଓଡ଼ିଆ ଭାଷା ପ୍ରତି ଆଗ୍ରହୀ ହେବେ- ଦେଖାଯାଉଛି ପାଠ୍ୟ ବିଷୟ କ୍ଳିଷ୍ଟତାରେ ପୂର୍ଣ୍ଣ । ଆଜିଠାରୁ ୫୦/୬୦ ବର୍ଷ ତଳେ ସ୍କୁଲ୍‌ରେ ଓଡ଼ିଆ ପାଠ୍ୟ ଉନ୍ନତ ମାନର ଥିଲା, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ଗୋଲୋକ ବିହାରୀ ଧଳ, ଉଦୟନାଥ ଷଡ଼ଙ୍ଗୀ, ଆଦି ବହୁ ଲେଖକଙ୍କର ରଚନା ଦ୍ୱାରା ପିଲାଏ ଦୀକ୍ଷିତ ହେଉଥିଲେ । ଏ ଦିଗରେ, ପାଠ୍ୟପୁସ୍ତକ ପ୍ରଣୟନ ନିମିତ୍ତ ବିଚାରକମଣ୍ଡଳୀ ଧ୍ୟାନ ଦେବା ଦରକାର । ସ୍କୁଲ୍‌ମାନଙ୍କରେ ଲାଇବ୍ରେରୀ ରହିବା ଓ ଉପଯୋଗୀ ପୁସ୍ତକ ପିଲାମାନେ ପଢ଼ିବାକୁ ପାଇବା ଦରକାର । ସରକାରଙ୍କୁ ଆମେ କେବଳ ସରକାରୀ ଟ୍ୟାକ୍ସ ଦେଉଛୁ କର୍ତ୍ତୃତ୍ୱକୁ ଚାହିଁ ବସିଲେ ହେବ ନାହିଁ । ବ୍ୟକ୍ତିଗତ ପ୍ରଚେଷ୍ଟାରେ ମଧ୍ୟ ଅନେକ କିଛି କରାଯାଇପାରିବ । ୨୦୦୨ର ଲାଇବ୍ରେରୀ ଆକ୍ଟ ପ୍ରତି ସରକାର ଉଦାସୀନ । କର୍ପୋରେଟ୍ ସେକ୍ଟର ସାହିତ୍ୟ ପୁରସ୍କାର ପ୍ରଦାନ କରିବାରେ କେବଳ ସୀମିତ ରହିଲେ ହେବ ନାହିଁ । ବର୍ଷକୁ ଥରେ ସାହିତ୍ୟ ସଭା କରିଦେଲେ ଯଥେଷ୍ଟ ହେବ ନାହିଁ । ସେମାନେ ଓଡ଼ିଆ ଭାଷାକୁ ବଞ୍ଚାଇବା ଓ ବିକଶିତ କରିବା ଦିଗରେ ମଧ୍ୟ କିଛି ଅର୍ଥ ଓ ପ୍ରଚେଷ୍ଟା ବିନିଯୋଗ କରନ୍ତେ । ଅନ୍ତତଃ ସ୍କୁଲମାନଙ୍କରେ ଲାଇବ୍ରେରୀଟିଏ ରଖିବାର ବ୍ୟବସ୍ଥା, ଏବଂ ପ୍ରତି ମାସରେ ଥରେ ହେଲେ ଓଡ଼ିଆ ତର୍କ ପ୍ରତିଯୋଗିତା କରିବା ଦିଗରେ ଅର୍ଥ ସାହାଯ୍ୟ କରିପାରନ୍ତେ ।

ବିଗତ ୫୦ ବର୍ଷ ତଳେ ଯାହା ଥିଲା, ଆମେ ସ୍କୁଲ୍‌ରେ ପଢ଼ିଲାବେଳେ, ତାହା ଆଜି ବିପର୍ଯ୍ୟସ୍ତ, ଆଜି ସେସବୁ ସୁଯୋଗ ଅନୁପସ୍ଥିତ । ଓଡ଼ିଆ ସ୍କୁଲ ଅସଂଖ୍ୟ ଖୋଲୁଛି, ପାଠପଢ଼ା ବିପର୍ଯ୍ୟସ୍ତ ଓ ଭାଷା ଅବସ୍ଥା ଶୋଚନୀୟ । ଯାହାକୁ ଉଦ୍ଧାର କରିବା ଦିଗରେ ଉପରୋକ୍ତ ପାଠାଗାର ଓ ତର୍କ ପ୍ରତିଯୋଗିତା ପିଲାଙ୍କୁ ଉତ୍ସାହିତ କରିପାରିବ ।

ଓଡ଼ିଆ ଭାଷାକୁ ସାଧାରଣତଃ ଆଜି ଜୀବିକାଠାରୁ ଅସମ୍ପୃକ୍ତ ବୋଲି ଧାରଣା କରାଯାଇଛି । ଏହାକୁ ଜୀବିକାସହିତ ସମ୍ପୃକ୍ତ କରିବା ଦିଗରେ ଆନ୍ତରିକ ଉଦ୍ୟମ କରିବା ଅପରିହାର୍ଯ୍ୟ ହୋଇପଡ଼ିଛି । ପୁନର୍ବାର କହିବାକୁ ହେଉଛି ଉପଯୁକ୍ତ ଭାଷାଜ୍ଞାନଧାରୀ ଓଡ଼ିଆ ଶିକ୍ଷକ ସ୍କୁଲମାନଙ୍କରେ ନିଯୁକ୍ତ ହେବା ଦରକାର । ଅନ୍ୟ ଦିଗରେ ଦେଖନ୍ତୁ ପଡ଼ୋଶୀ ବଙ୍ଗଳା ଭାଷାର 'ଆନନ୍ଦ ବଜାର ପତ୍ରିକା' ଲେଖକ କବିମାନଙ୍କୁ ସମ୍ମାନ ସହ ଜୀବିକା ଯୋଗାଇ ଭାଷା ସାହିତ୍ୟର ଉନ୍ନତି କରିଛନ୍ତି । ସୁନୀଲ, ଶକ୍ତି, ଶୀର୍ଷେନ୍ଦୁ ଆଦି ବିଶିଷ୍ଟ କବି ସାହିତ୍ୟିକ ସେହି ସଂସ୍ଥାରେ ସମ୍ମାନଜନକ କର୍ମସଂସ୍ଥାନ ପାଇ ଉନ୍ନତ ସାହିତ୍ୟ ସୃଷ୍ଟି କରିପାରିଛନ୍ତି । ଆମ ଓଡ଼ିଶାରେ ସେହିପରି ବିଭିନ୍ନ ଗଣମାଧ୍ୟମ ସଂସ୍ଥା ଭାଷା ସାହିତ୍ୟକୁ ପ୍ରୋତ୍ସାହନ ଦେଇ ଓଡ଼ିଆକୁ ଜୀବିକା ଦିଗରେ ଉନ୍ମୁଖ କରାଇବାର ଉଦ୍ୟମ କରିବା ଦରକାର । ଏ ଦିଗରେ 'ସମ୍ବାଦ' ସଂସ୍ଥା ଅବଶ୍ୟ ପ୍ରଶଂସନୀୟ, କାରଣ ୩ଜଣ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରଧାରୀ ଲେଖକ ଏହି ସଂସ୍ଥାରେ ସମ୍ମାନଜନକ ଆସନରେ ରହିପାରିଛନ୍ତି । ଅନ୍ୟ ସଂସ୍ଥାମାନେ ଓଡ଼ିଆ ଭାଷାକୁ ଜୀବିକା ସହ ଯୁକ୍ତ କରିବାକୁ ପ୍ରଚେଷ୍ଟା କରିବା ବାଞ୍ଛନୀୟ । ଓଡ଼ିଆ ଭାଷା ଜୀବିକା ସହ ସମ୍ପୃକ୍ତ ହେଉ, ଏବଂ ଏହା ଦ୍ୱାରା ଓଡ଼ିଆ ଭାଷାକୁ ଜନସାଧାରଣ ନିର୍ଭରଯୋଗ୍ୟ ମନେ କରିବେ ଓ ଏହାର ଶିକ୍ଷା ଗବେଷଣା ଦିଗରେ ମନୋନିବେଶ କରିବେ । ଯଦି ଭାଷା ଗଠନ ସହ ଜୀବିକାର ସମ୍ପୃକ୍ତି ରହିବ ନାହିଁ, ଭାଷାର ଆଦର ନିଶ୍ଚୟ ହ୍ରାସ ପାଇବ । ଓଡ଼ିଆ ଭାଷା ସଂକଟରେ ପଡ଼ିଛି ସତ, ମାତ୍ର ଶିକ୍ଷିତ, ସଚେତନ, ସମର୍ଥ ଓଡ଼ିଆଗଣ ଉପରୋକ୍ତ ଦିଗମାନଙ୍କରେ ଧ୍ୟାନ ଦେଇ ଆପଣାର ମାତୃଭାଷା ଓଡ଼ିଆକୁ ବିକାଶପଥରେ ଅଗ୍ରସର କରାଇବାରେ ସହାୟକ ହୋଇପାରିବେ ।

ଏହି ପରିପ୍ରେକ୍ଷୀରେ ମୁଁ ଆଶା ରଖୁଛି ଯେ, ଓଡ଼ିଆ ପିଲାଏ ଅନ୍ୟ ଭାଷାରେ ପାରଙ୍ଗମ ହୁଅନ୍ତୁ । ଶବ୍ଦର ବୁନ୍ଦା ବୁନ୍ଦା ମହୁଠୋପାରେ ତିଆରି ଆମ ଓଡ଼ିଆ ଭାଷା, ସେମାନଙ୍କ ମୂଳଦୁଆ ହେଉ ଓ ତାହାର ଆଧାରରେ, ସେମାନେ ଇଂରାଜୀ ଶିଖନ୍ତୁ । ଅନ୍ୟ ଭାରତୀୟ ଭାଷା ଶିଖନ୍ତୁ । ଅନ୍ତତଃ ମାତୃଭାଷା, ଇଂରାଜୀ ଓ ଅନ୍ୟ ଏକ ଭାରତୀୟ ଭାଷା– ଏହିପରି ତିନିଗୋଟି ଭାଷାରେ ପାରଙ୍ଗମ ହୁଅନ୍ତୁ । ଏହା ଆଶା କରିବା ଓ ଏହି ଆଶାର ସଫଳ ରୂପାୟନ କରାଇବା ଆମ୍ଭମାନଙ୍କର ଧ୍ୟେୟ ହେଉ ।

ଧନ୍ୟବାଦ ।



## ଅଭିବ୍ୟକ୍ତି

# ଦ୍ୱିତୀୟ ସରସ୍ୱତୀ ସମ୍ମାନ ବିଜେତା
# କବି ରମାକାନ୍ତ ରଥଙ୍କ ସହ ଏକ ସାରସ୍ୱତ ଆଳାପ

'ସରସ୍ୱତୀ ସମ୍ମାନ' ପ୍ରାପ୍ତି ଅବସରରେ ଏହି ଅପ୍ରତିଦ୍ୱନ୍ଦ୍ୱୀ କାବ୍ୟ-ସ୍ରଷ୍ଟାଙ୍କ ସହ ମୋର ସାରସ୍ୱତ-ଆଳାପଟିଏ ହୋଇଥିଲା । ପ୍ରଜାତନ୍ତ୍ର 'ସାହିତ୍ୟ' ପାଠକମାନଙ୍କପାଇଁ ତାହା ପ୍ରଜାତନ୍ତ୍ରରେ ସ୍ଥାନିତ ହୋଇଥିଲା ।

- ପ୍ରତିଭା ଶତପଥୀ

ଦ୍ୱିତୀୟ 'ସରସ୍ୱତୀ ସମ୍ମାନ' ବିଜେତା କବି ରମାକାନ୍ତଙ୍କ ସହ ସେହି ସାରସ୍ୱତ ଆଳାପ ଏଠାରେ ପତ୍ରସ୍ଥ କରାଗଲା ।

ପ୍ରଶ୍ନ- ସାମ୍ପ୍ରତିକ ଓଡ଼ିଆ କବିତାପାଇଁ 'ଶ୍ରୀରାଧା'ର 'ସରସ୍ୱତୀ ସମ୍ମାନ' ପ୍ରାପ୍ତି ବଡ଼ ଉଲ୍ଲାସଜନକ । ଏହି ସମ୍ବାଦ ପାଇବାରେ ଆପଣଙ୍କର ପ୍ରଥମ ଅନୁଭବ କ'ଣ ?

ଉତ୍ତର - ଆତଙ୍କ । 'ଶ୍ରୀରାଧା' ପାଇଁ ଏ ସ୍ୱୀକୃତି ପରେ ମୋର ପାଠକମାନେ ଆଶା କରିବେ ଯେ ପୁଣି ସେପରି କିଛି ବା ତା'ଠାରୁ ଭଲ କବିତା ମୁଁ ଲେଖିବି । କେହି ମୋର କବିତ୍ୱର ସ୍ୱଳ୍ପତା ବୁଝିବେ ନାହିଁ, ତା'ର ଦିଗନ୍ତ ଆହୁରି ବ୍ୟାପ୍ତ ବୋଲି ଧାରଣା କରି ବସିବେ । ସେ ଧାରଣା କାଳକ୍ରମେ ଭୁଲ୍ ପ୍ରତିପ୍ରାଦିତ ହୋଇଯିବା ପରେ ସେମାନେ କେତେ ହତାଶ, କେତେ ଅନୁତପ୍ତ ହେବେ ।

ପ୍ରଶ୍ନ - ଶ୍ରୀରାଧା ରଚନା କାଳର କିଛି ଅଭିଜ୍ଞତା କୁହନ୍ତୁ ।

ଉତ୍ତର - ସତ କହିଲେ ମୁଁ 'ଶ୍ରୀରାଧା' ଲେଖି ନାହିଁ । ତା'ର ଅଧିକାଂଶ ଆପେଆପେ ଲେଖି ହୋଇ ଯାଇଛି । କେବଳ କେତେ ରାତି କେତେ ଦିନ ପାଇଁ ମୁଁ ମୋର ହାତ ଭଡ଼ା ଦେଇଥିଲି ଯାହା, ତାଙ୍କ ସହିତ ଆଉଥରେ ଦେଖାହେଲେ କହନ୍ତି, "ଆପଣ ମୋ ହାତ ଥରେ ଭଡ଼ା ନେଇଥିବାରୁ ମୁଁ କୃତାର୍ଥ ହୋଇଛି, ଆଉ ଥରେ ନେଲେ ଆହୁରି କୃତାର୍ଥ ହୁଅନ୍ତି ।" ମୋର ନିବେଦନ କିନ୍ତୁ ଗ୍ରାହ୍ୟ ହେଲାପରି ମନେ ହେଉ ନାହିଁ ।

ପ୍ରଶ୍ନ - 'ଶ୍ରୀରାଧା' ଆପଣଙ୍କ ପୂର୍ବ ରଚନାମାନଙ୍କଠାରୁ ବ୍ୟତିକ୍ରମ କି ? ଯଦି ବ୍ୟତିକ୍ରମ କିପରି ?

ଉତ୍ତର- ମୋ ବିଚାରରେ ପ୍ରତ୍ୟେକ କବି ଜୀବନସାରା ଗୋଟିଏ ହିଁ କବିତା ଲେଖେ । ଭିନ୍ନ ଭିନ୍ନ ଶୀର୍ଷକ ଦେଇ ସେ ନିଜକୁ ଓ ଅନ୍ୟମାନଙ୍କୁ ନାନାଦି କବିତା ଲେଖିଛି ବୋଲି

ପ୍ରତାରିତ କରିବାକୁ ଚେଷ୍ଟା କରେ । ଯଦି କବିର ଅନ୍ତରାତ୍ମା ତା'ର କବିତା ସହିତ ଜଡ଼ିତ ହେଉ ନ ଥାନ୍ତା, ସେ ଅଲଗା ଅଲଗା କବିତା ଲେଖିପାରୁଥାନ୍ତା । ଅନ୍ତରାତ୍ମାରେ ଘଟୁଥିବା ଘଟଣାଗୁଡ଼ିକ ଅଲଗା ହୋଇପାରନ୍ତି, କିନ୍ତୁ ସବୁ ଘଟଣା ଅନୁଭବକାରୀ ଜଣେ ଏବଂ ତା'ର ଅନୁଭବ ହିଁ କବିତାର ମୂଳପିଣ୍ଡ । ଶୈଳୀ ଅଲଗା ହୋଇପାରେ । କେତୋଟି କବିତା ଅପରିପକ୍ୱ ହୋଇପାରନ୍ତି, କିନ୍ତୁ ସବୁ କବିତା ସେଇ ଜଣେ ଲୋକର ନିଜକୁ ବ୍ୟକ୍ତ କରିବାର ଉଦ୍ୟମ ।

ପ୍ରଶ୍ନ – 'ଶ୍ରୀରାଧା' ଏକ ମିଥ୍‌ଧର୍ମୀ କାବ୍ୟ ବୋଲି ଆପଣ ଭାବୁଛନ୍ତି କି ? ପାରମ୍ପରିକ ଶ୍ରୀରାଧା ଓ ଆପଣଙ୍କ ଶ୍ରୀରାଧା ମଧ୍ୟରେ ତଫାତ୍ କେଉଁଠି ?

ଉତ୍ତର– 'ଶ୍ରୀରାଧା' ମିଥ୍‌ଧର୍ମୀ କାବ୍ୟ ବୋଲି ମୁଁ ଭାବୁ ନାହିଁ । ଯେଉଁ ଦୁଇ ତିନିଟି କବିତା ପରେ ଅବଶିଷ୍ଟ କବିତା ଲେଖାହେଲା ସେଗୁଡ଼ିକ ଲେଖିଲାବେଳେ ରାଧା ମୋର କଳ୍ପନାରେ ନ ଥିଲେ । ସେତେବେଳେ ମରଣଶୀଳ ଜୀବନରେ ନିଜର ଅନ୍ତହୀନ ଭଲପାଇବାର ସ୍ଥାନ ଭାବି ଭାବି ଆନନ୍ଦିତ ହୋଇଯାଉଥିବା ଲୋକଟିଏ ସେ ଅନୁଭବ କରୁଥିବା ଆତଙ୍କ ଓ ଆକୁଳତାର ଅଭିବ୍ୟକ୍ତି ମୋର ଲକ୍ଷ୍ୟ ଥିଲା । କ୍ରମେ କ୍ରମେ ଲାଗିଲା ଯେ ରାଧାଙ୍କର ଭଲପାଇବା ପରି ଭଲପାଇବାରେ ଏପରି ଚେତନା ନିଶ୍ଚୟ ବିଶିଷ୍ଟ ଉପାଦାନଟିଏ ହୋଇଥିବ । ସେ ଭଲ ପାଇବା କଳ୍ପନା କଲାବେଳେ ଏପରି ଏକ ଚରିତ୍ରର ରୂପରେଖ ଦେଖାଗଲା ଯାହାଙ୍କର ଜୀବନ କାହାଣୀ କେତୋଟି ପ୍ରଚଳିତ ଆଖ୍ୟାୟିକା ଜରିଆରେ କହିହେବ ନାହିଁ, ଯାହାଙ୍କ ଅନୁଭୂତି କାଳର ଗୋଟିଏ ପର୍ଯ୍ୟାୟରୁ ଅନ୍ୟ ପର୍ଯ୍ୟାୟକୁ ଅବଲୀଳାକ୍ରମେ ସଞ୍ଚରି ଯାଏ । ମୁଁ ଯେଉଁ ରାଧାଙ୍କୁ କଳ୍ପନା କରିବାକୁ ଚେଷ୍ଟା କରିଛି ସେ ସାହିତ୍ୟ ବା ଧର୍ମତତ୍ତ୍ୱର ପରମ୍ପରାରେ ପ୍ରତିଷ୍ଠିତ ରାଧା ନୁହନ୍ତି; ସେ ଜଣେ ପ୍ରେମିକା ଯାହାଙ୍କର ପ୍ରେମାନୁଭୂତି ଏତେ ପ୍ରଗାଢ଼ ଯେ, ପ୍ରେମ ସହିତ ଅସଂଲଗ୍ନ ତାଙ୍କର ଜୀବନର ପ୍ରତ୍ୟେକ ଦିଗ, ଏପରିକି ମୃତ୍ୟୁ ଅବାନ୍ତର ।

ପ୍ରଶ୍ନ – ମିଥ୍‌କୁ ନେଇ କାବ୍ୟ କବିତା ରଚନା କଲାବେଳେ ପ୍ରତିଷ୍ଠିତ ମିଥ୍‌କୁ ଲଂଘନ ଓ ରୂପାନ୍ତର (transform) କରିବାର ଅଧିକାର କବିର ରହିଚି କି ?

ଉତ୍ତର– ଖାଲି ଯେ ଅଧିକାର ଅଛି ତାହା ନୁହେଁ, ଏପରି ଲଂଘନ ଓ ରୂପାନ୍ତର ନ ରହିଲେ କବିତା ଆବେଦନଶୂନ୍ୟ ହୋଇପଡ଼ିବ । ଏ ପ୍ରଶ୍ନର ଉତ୍ତର ଆପଣ ଗ୍ରୀକ୍ କବି ସଫେରିସଙ୍କ ନିମ୍ନୋକ୍ତ ମନ୍ତବ୍ୟରେ ପାଇବେ– 'ମିଥ୍‌ର ଚରିତ୍ରମାନେ' କାଳେ କାଳେ ସେହି ସେହି ଦାନବମାନଙ୍କୁ ଭେଟୁଥାନ୍ତି, ସେହି ସେହି ବ୍ୟାକୁଳତା ଅନୁଭବ କରୁଥାନ୍ତି । ଆମେ ତେଣୁ ମିଥ୍‌ର ଗୂଢ଼ାର୍ଥ ଓ ଚରିତ୍ରମାନଙ୍କର ନାଆଁ ଅପରିବର୍ତ୍ତିତ ରଖିଲାବେଳେ ବି ଜାଣିଥାଉଁ ଯେ ସମୟର ପ୍ରବାହ ଓ ସଂସାରର ପରିବର୍ତ୍ତିତ ପରିସ୍ଥିତି ଅନୁଯାୟୀ ଚରିତ୍ରମାନେ ବଦଳି ଯାଇଛନ୍ତି । ନିଜକୁ ବ୍ୟକ୍ତ କରିବାକୁ ଚାହୁଁଥିବା ପ୍ରତ୍ୟେକ ବ୍ୟକ୍ତି ସେ ପରିସ୍ଥିତିରେ ଅବସ୍ଥିତ ।'

ପ୍ରଶ୍ନ - ପୁରାଣ ଅନୁଯାୟୀ ରାଧାଙ୍କ ମୃତ୍ୟୁ କୃଷ୍ଣଙ୍କ ମୃତ୍ୟୁ ପୂର୍ବରୁ ଘଟିଥିଲା । 'ଶ୍ରୀରାଧା କାବ୍ୟରେ ରାଧାଙ୍କ ପୂର୍ବରୁ କୃଷ୍ଣଙ୍କର ମୃତ୍ୟୁ ଘଟିଛି-ଏହାର ତାତ୍ପର୍ଯ୍ୟ କ'ଣ ?

ଉତ୍ତର - ପୁରାଣ ବର୍ଣ୍ଣିତ ରାଧା ମୋ କାବ୍ୟର ନାୟିକା ନୁହନ୍ତି, ସୁତରାଂ ପୁରାଣ ଅନୁଯାୟୀ ତାଙ୍କର ଦେହାନ୍ତ କେବେ ହୋଇଥିଲା ତାହା ମୋ ପକ୍ଷରେ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ସତ କହିଲେ ରାଧାଙ୍କ ମୃତ୍ୟୁ ବର୍ଣ୍ଣନା କରିଥିବା କୌଣସି ବହି ମୁଁ ପଢ଼ି ନାହିଁ । ମୁଁ ଏପରି ପରିସ୍ଥିତିଟିଏ କଳ୍ପନା କରିବାକୁ ଚେଷ୍ଟା କରିଛି ଯେଉଁଥିରେ ମୃତ୍ୟୁ ଓ ଭଲପାଇବା ଭିତରେ ସଂଘର୍ଷ ଏବଂ ବିଜୟଦୀପ୍ତ ଭଲ ପାଇବାକୁ ଅବଲମ୍ବନ କରି ବ୍ୟକ୍ତି ତା'ର ଅବଶିଷ୍ଟ ଜୀବନ ବତାଇ ଦେଇଛି ।

ପ୍ରଶ୍ନ - 'ଶ୍ରୀରାଧା' ତୁଳନାରେ 'ଶ୍ରୀପଳାତକ' ସହ ଆପଣ ଅଧିକ ଏକାତ୍ମତା (identification) ଲାଭ କରିପାରିବେ ବୋଲି ଭାବୁଛନ୍ତି ?

ଉତ୍ତର - ଏପରି କୌଣସି ଲକ୍ଷ୍ୟ ରଖି 'ଶ୍ରୀପଳାତକ' ଲେଖୁ ନାହିଁ । ଶ୍ରୀରାଧାରେ ଅଭିଜ୍ଞତାର ଗୋଟିଏ ଦିଗ ଅନୁଶୀଳନ କରିବାକୁ ଚେଷ୍ଟା କରିଛି । 'ଶ୍ରୀପଳାତକ'ରେ ଆଉ ଗୋଟିଏ ଦିଗ ଅନୁଶୀଳନ କରିବାର ଆଗ୍ରହ ରହିଛି । ଏ ଦୁଇଟି ଦିଗ ପରସ୍ପର ଠାରୁ ପୂରାପୂରି ଅଲଗା ନୁହନ୍ତି ବୋଲି ମୁଁ ଜାଣେ, ତେବେ ପୂରାପୂରି ସମାନ ବି ନୁହନ୍ତି । କାହାର ଦୀର୍ଘଶ୍ୱାସ ବର୍ଷାରାତିର ବତାସପରି ତ କାହାର ମରୁଭୂମିର ଉତପ୍ତ ଝଞ୍ଜା ପବନ ପରି ।

ପ୍ରଶ୍ନ - ଆପଣଙ୍କୁ ଜଣେ ସ୍ଥିତିବାଦୀ କବି ବୋଲି ନାମିତ କରାଯାଇପାରିବ କି ? ଯଦି ହଁ, ତେବେ ଏହାର କେଉଁ କେଉଁ କାରଣ ରହିଛି ?

ଉତ୍ତର - ଅନ୍ୟ ପ୍ରଶ୍ନକୁ ଚାଲନ୍ତୁ, ଏ ପ୍ରଶ୍ନର ଉତ୍ତର ଦେବାକୁ ହେଲେ ମତେ ସ୍ଥିତିବାଦ ଉପରେ କିଛି ବହି ପଢ଼ିବାକୁ ହେବ ଓ ମୋ କବିତାର ଗୁଣ ଉଦ୍‌ଭାବନ କରିବାକୁ ହେବ । ବର୍ତ୍ତମାନ ବହୁତ କିଛି ପଢ଼ିବାକୁ ଅଛି, ସୁତରାଂ ପ୍ରଥମ କାମ ଏବେ କରିପାରିବି ନାହିଁ । ଦ୍ୱିତୀୟ କାମରେ ମୋର ଆଗ୍ରହ ନାହିଁ ।

ପ୍ରଶ୍ନ - 'ଶ୍ରୀରାଧା' ନିଶ୍ଚିତଭାବେ ଆପଣଙ୍କର ସର୍ବଶ୍ରେଷ୍ଠ ରଚନା । ଏହାର ପାଖାପାଖି ଆପଣ ସ୍ୱରଚିତ ଆଉ କେଉଁ ସଂକଳନକୁ ରଖିବେ ?

ଉତ୍ତର - 'ସଚିତ୍ର ଅନ୍ଧାର' ବି ମୋର ପ୍ରିୟ ରଚନା ।

ପ୍ରଶ୍ନ - ଦୀର୍ଘ ଦିନର ସଫଳ କାବ୍ୟିକ ଜୀବନ ଆପଣଙ୍କର । ଏହାର ଅନ୍ତର୍ନିହିତ ପ୍ରେରଣାଟି କ'ଣ ?

ଉତ୍ତର - କବିତା ଲେଖିବାର ପ୍ରଥମ ଅବସ୍ଥାରେ ପ୍ରେରଣା ଦରକାର ହୋଇପାରେ । ତା'ପରେ କବିତା ଲେଖି ନିଜର ଅପଦାର୍ଥତାର ଚେତନାରୁ ନିଷ୍କୃତି ପାଇବାର ବିଫଳ ପ୍ରଚେଷ୍ଟା କରାଯାଏ ।

ପ୍ରଶ୍ନ - ମୃତ୍ୟୁ ଆଉ ଅନ୍ଧାର ଭିତରେ ପ୍ରେମକୁ ଆପଣ କେଉଁ ଭାବରେ ଆବିଷ୍କାର କରିଛନ୍ତି ।

ଉତ୍ତର – ଆବିଷ୍କାର କଲି ଆଉ କେତେବେଳେ ? ଏଣିକି ଅନ୍ଧାର ଆହୁରି ଆହୁରି ଘନ ହେବ, ମୃତ୍ୟୁ ନିକଟତର ହେବ, ଏବଂ ପ୍ରେମ ଯେତିକି ଦୂରରେ ଥିଲା ସେତିକି ଦୂରରେ ରହିଥିବ । ବେଳେବେଳେ କିନ୍ତୁ ସେ ଖୁବ୍ ପାଖରେ ଥିଲାପରି ଲାଗିଛି, ତା'ର ନିଃଶ୍ୱାସ ମୋ ଦେହରେ ବାଜିଛି । ଓଲଟି ଚାହିଁଲା ବେଳକୁ ସେ ଦିଶି ନାହିଁ । ସେଥିପାଇଁ ମୁଁ ଦାୟୀ, ସେ ନୁହେଁ । ଏକଦା ସେ ମୋର ଏତେ ପାଖକୁ ଆସିଥିଲା, ସେତିକି ମୋ ପକ୍ଷରେ ଯଥେଷ୍ଟ । ଅନେକ ତ ସେତିକି ବି ନ ପାଇ ଅନ୍ଧାର ଭିତରେ ଯାଆନ୍ତି ।

ପ୍ରଶ୍ନ – ସ୍ୱରଚିତ କବିତାରେ ପ୍ରେମର ନୂତନ ସଂଜ୍ଞା କିଛି ଖୋଜି ପାଇଛନ୍ତି କି ?

ଉତ୍ତର – କବିତାରେ କ'ଣ ପ୍ରେମର ସଂଜ୍ଞା ଖୋଜା ହୁଏ ? ପ୍ରେମର ସଂଜ୍ଞା ଖୋଜି ସମୟ ଅପଚୟ କରନ୍ତି !

ପ୍ରଶ୍ନ – ସମୟ କ୍ରମେ କେତେକ କବିଙ୍କର ଆଙ୍ଗିକରେ ପରିବର୍ତ୍ତନ ଘଟିଥାଏ, ଆପଣ ' ଯେଉଁ ଆଙ୍ଗିକ ପ୍ରୟୋଗ କରିଛନ୍ତି, କେବେ ତାକୁ ବଦଳେଇବାକୁ ବା ତାକୁ ନେଇ ପରୀକ୍ଷା-ନିରୀକ୍ଷା କରିବାପାଇଁ ଭାବିଛନ୍ତି ?

ଉତ୍ତର – କବିତାର ଆଙ୍ଗିକ ବିଷୟରେ ମୁଁ ସଚେତନ ନୁହେଁ । କେତେକ ଯଥାର୍ଥରେ କହନ୍ତି ଯେ ମୋର କବିତାର ଶୈଳୀରେ ବୈଚିତ୍ର୍ୟ ନାହିଁ । ଯାହା କହିବାକୁ ହେବ ତା'ର ମୋ ଉପରେ ଓଜନ ଏତେ ବେଶି ଯେ କିପରି କହିବାକୁ ହେବ ସେ ଦିଗରେ ମୁଁ ଦୃଷ୍ଟି ଦେଇ ନାହିଁ ।

ପ୍ରଶ୍ନ – ଆପଣଙ୍କ ପ୍ରଶାସନିକ ଜୀବନ କାବ୍ୟ ସୃଷ୍ଟିରେ କେଉଁ ପ୍ରକାର ବାଧା ଉପୁଜାଇଛି ?

ଉତ୍ତର – ବାଧା ଉପୁଜାଇଛି, ସହାୟକ ମଧ୍ୟ ହୋଇଛି । ଏ ବୃତ୍ତିରେ ନ ଥିଲେ ମୁଁ ଯେଉଁ ଯେଉଁ ଜାଗାକୁ ଯାଇପାରିଛି ସେଠାକୁ ଯାଇପାରି ନ ଥାନ୍ତି, ଯେଉଁମାନଙ୍କୁ ଭେଟିଛି ସେମାନଙ୍କୁ ଭେଟିପାରି ନ ଥାନ୍ତି । ଏ ବୃତ୍ତିରେ ଥିବା ଯୋଗୁଁ ଯେତେ ନଗଣ୍ୟ ହେଉ ପଛକେ କେତୋଟି ଲୋକହିତକର କାମ କରିପାରିଛି । ପ୍ରଶାସକ ହିସାବରେ ମୋର ଯାହା ଅଭିଜ୍ଞତା ହେଲା ତା' ବ୍ୟତିରେକେ ମୁଁ ଯେଉଁ ପ୍ରକାରର କବିତା ଲେଖିଚି ତାହା ଲେଖିପାରି ନ ଥା'ନ୍ତି । ତା' ସଙ୍ଗେ ସଙ୍ଗେ ଏହା ବି କହିବି ଯେ କାମର ଜଞ୍ଜାଳ ଏତେ ବେଶି ହୋଇଛି ଯେ ଅନ୍ୟ କିଛି କରିବାପାଇଁ ଏପରିକି ପରିବାରର ଦେଖାଶୁଣା କରିବାପାଇଁ, ସମୟ ଅଭାବ ହୋଇଛି । କୌଣସିମତେ ଏ ପ୍ରକାରର ଜୀବନ ଭିତରେ ଏତେ ବର୍ଷ କଟାଇ ଦେଲି ଏବଂ ମୋର ବୃତ୍ତି ପ୍ରତି ନିଷ୍ଠା ରଖିବା ସାଙ୍ଗେ ସାଙ୍ଗେ କିଛି କବିତା ମଧ୍ୟ ଲେଖିପାରିଲି ।

ପ୍ରଶ୍ନ – ଆପଣଙ୍କ କବିତାର ଶକ୍ତି ବିଷୟରେ ଉପଲବ୍ଧିଶୀଳ ପାଠକ ମାତ୍ରେ ଅବଗତ । କିନ୍ତୁ, ଏହି ଶକ୍ତିମତୀ କବିତାର ଦୁର୍ବଳତା କେଉଁଠି ?

ଉତ୍ତର – ଦୁର୍ବଳତା ଅନେକ । ଉପଲବ୍ଧି ଆହୁରି ଗଭୀର ହୋଇପାରିଥାନ୍ତା, ଶବ୍ଦ ସମ୍ଭାର ବୃହତ୍ତର ହୋଇପାରିଥାନ୍ତା, ଶୈଳୀରେ ବିଭିନ୍ନତା ଓ ଚମତ୍କାରିତା ଆସିପାରିଥାନ୍ତା, ଜୀବନର ଗତାନୁଗତିକତାର ଉପରକୁ ଉଠିବାପାଇଁ ପାଠକର ବେଶି ସହାୟକ ହୋଇପାରିଥାନ୍ତା । ଜୀବନ ପ୍ରବାହରୁ ଉଠିବାକୁ ଇଚ୍ଛାକରି ମଧ୍ୟ ଉଠିପାରି ନାହିଁ, ସେଥିରେ ଭାସିଯାଇଛି ।

ପ୍ରଶ୍ନ – ବହୁ ବୌଦ୍ଧିକ, ଜଟିଳ ବ୍ୟକ୍ତିଗତ ଉପଲବ୍ଧିକୁ ନେଇ କବିତା ରଚନା କରିଥିଲେ ବି ଆପଣଙ୍କ 'ଚନ୍ଦ୍ରମାର ଚୁଡ଼ି' ର ଆବେଦନ ଏବେ ବି ତୀବ୍ର ଓ ଉଦାର – ଏହାର ପୃଷ୍ଠପଟରେ କେଉଁ ରହସ୍ୟ ରହିଛି ?

ଉତ୍ତର – ସେତେବେଳେ ନିଜ ଉପରେ ଭରସା ଥିଲା ଆଶା ଥିଲା ଯେ, ଦିନେ ନା ଦିନେ ମୁଁ ଖୁବ୍ ଉତ୍ତୀର୍ଣ୍ଣ କବିତା ଲେଖିପାରିବି, ତା' ଛଡ଼ା, 'ଚନ୍ଦ୍ରମାର ଚୁଡ଼ି' ସମ୍ଭବତଃ ସେ ସମୟର କବିତାର ପରିପ୍ରେକ୍ଷୀରେ ଅଲଗା କବିତାଟିଏ ବୋଲି କେତେକଙ୍କୁ ଲାଗିଥିବ ।

ପ୍ରଶ୍ନ – ସବୁକାଳେ ତ କବିତାର ପାଠକ ସଂଖ୍ୟା ସୀମିତ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ କବିତାର ଭବିଷ୍ୟତ କ'ଣ ?

ଉତ୍ତର – ଭବିଷ୍ୟତ ଉଜ୍ଜ୍ୱଳ ନୁହେଁ । କବିତା ଯେଉଁ ବାସ୍ତବତା ଅନୁଶୀଳନ କରେ ଓ ଯେପରି କରେ ତା'ର ହୃଦ୍‌ବୋଧ ପାଇଁ ପ୍ରୟୋଜନ ସମୟ ପାଠକ ପାଖରେ ନାହିଁ; ବା ସେ ଦେବାକୁ ନାରାଜ । ତୁରନ୍ତ ଆମୋଦ ଲାଭର ଅଭିଳାଷ ଏଡ଼େ ବ୍ୟାପକ ଯେ, କବିତାର ଆଦର କମିଯାଉଛି । କାରଣ ହେଉଛି ଆମର ସାମାଜିକ ଜୀବନରେ କୋଳାହଳ ଓ କୋଳାହଳକାରୀଙ୍କର ପ୍ରତିପତ୍ତି । ବାତାବରଣ ଟିକିଏ ନିସ୍ତବ୍ଧ ହେଲେ ସିନା କିଏ କବିତା ଶୁଣିବ ।

ପ୍ରଶ୍ନ – ଆପଣଙ୍କ ପାଇଁ କବିତାର ବିକଳ୍ପ କିଛି ଅଛି କି ?

ଉତ୍ତର – ଯେଉଁଦିନ ଯାଏଁ ମୋର ପରିତ୍ରାଣ ସମ୍ଭବ ବୋଲି ପ୍ରହେଳିକା ରହିଥିବ, ସେତେଦିନ ଯାଏ କବିତାର ବିକଳ୍ପ ନାହିଁ । ସେ କବିତା ଲିଖିତ ହୋଇ ନ ପାରେ, ତାହା ଅନ୍ତକରଣକୁ ଆଚ୍ଛନ୍ନ କରି ରଖିଥିବା ଭାବଟିଏ ହୋଇପାରେ, କିନ୍ତୁ ସେଥିରେ ସେ ପ୍ରହେଳିକାର ଚିକ୍‌ଚିକ୍ ଦୀପ୍ତି ରହିଥିବ ।

[ବିଶେଷ ଦ୍ରଷ୍ଟବ୍ୟ – ମୋର ଏହି ସାକ୍ଷାତକାରଟି ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥିଲା, ସରସ୍ୱତୀ ସମ୍ମାନ ପାଇବା ଅବସରରେ କବିଙ୍କ ସହ ସଂଳାପ/ସମୀକ୍ଷାରେ । ଏବେ ଦେଖୁଛି ପ୍ରାୟ ୯୦ ପ୍ରତିଶତ ମୋର ଏହି ସାକ୍ଷାତକାରକୁ ଜଣେ ଭଦ୍ରବ୍ୟକ୍ତି (ଓଡ଼ିଆ ଅଧ୍ୟାପକ) ତାଙ୍କର ପୁସ୍ତକ (୧୯୧୩ରେ ପ୍ରକାଶିତ) 'ସରସ୍ୱତୀ ରମାକାନ୍ତ'ରେ ପୂରା ନକଲ କରି ଛପାଇଛନ୍ତି । ସ୍ୱୀକାରୋକ୍ତି ବି ଦେଇ ନାହାନ୍ତି । ସତେକି ତାଙ୍କର ନିଜସ୍ୱ ।]

– ପ୍ରତିଭା ଶତପଥୀ



# ସ୍ପର୍ଦ୍ଧା ଓ ବିନୟର କବି ପ୍ରତିଭା ଶତପଥୀ
# 'ସମ୍ବାଦ କଳିକା'

**- ସାକ୍ଷାତକାର - ଶ୍ରୀମତୀ ଲକ୍ଷ୍ମୀ ଚାନ୍ଦ**

ଓଡ଼ିଆ ସାହିତ୍ୟର ଏକ ସ୍ପର୍ଦ୍ଧିତ ନାଁ ପ୍ରତିଭା ଶତପଥୀ । ଓଡ଼ିଆ କବିତା ମନକୁ ଆସିଲେ ଏହି ନାଁଟି ସମସ୍ତଙ୍କ ମନରେ ଉଦ୍‌ଭାସିତ ହେବା ସହ ଏକ ସୁନ୍ଦର କମନୀୟ ମୁହଁ ଭାସିଉଠେ ଆଖି ସାମନାରେ । ପ୍ରତିଭାଙ୍କ କବିତାରେ ଥାଏ ଗଭୀର ଉପଲବ୍ଧି, ଥାଏ ମଧ୍ୟ ତନ୍ମୟତା । ନିଜର ଏକ ସ୍ୱତନ୍ତ୍ର ଶୈଳୀ ଦ୍ୱାରା ସେ ପାଠକଙ୍କୁ ସମ୍ମୋହିତ କରି ରଖନ୍ତି । ଯିଏ ଥରେ ତାଙ୍କ କବିତା ମାୟାରେ ପଡ଼େ ସେ ଆଉ ମୁକୁଳିପାରେ ନାହିଁ । ତାଙ୍କ କବିତା ପୁସ୍ତକଗୁଡ଼ିକ ମଧ୍ୟରେ ମହାମେଘ, ଗ୍ରସ୍ତ ସମୟ, ତୁମ ପାଇଁ ଥରେ-ସବୁଥର, ଅସ୍ତ ଜହ୍ନର ଏଲିଜି, ସାହାଡ଼ା ସୁନ୍ଦରୀ, ଶବରୀ, ତନ୍ମୟ ଧୂଳି, ଅଧା ଅଧା ନକ୍ଷତ୍ର, ଜବା କୁସୁମ ସଂକାଶଂ ଇତ୍ୟାଦି ମୁଖ୍ୟ ଥିଲାବେଳେ ପ୍ରବନ୍ଧ ଓ ଆଲୋଚନା ମଧ୍ୟରେ 'କଞ୍ଚନାର ଅଭିଷେକ', 'ସ୍ପନ୍ଦନର ଭୂମି', 'ପ୍ରତିଫଳନ', 'ଉତ୍ତର-ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ଅନ୍ୟତମ । ତାଙ୍କର ଅନୁବାଦଗୁଡ଼ିକ ମଧ୍ୟରେ ରହିଛି ଅରଣା ସ୍ୱପ୍ନର ରାତି, କ୍ରୀତଦାସ, ସୁବ୍ରମଣିୟମ ଭାରତୀ, ସହସ୍ର ଶିଖା ଏବଂ ଆହୁରି ଅନେକ । ପ୍ରତିଭାଙ୍କ ପ୍ରତିଭାକୁ ମିଳିଛି ଅଜସ୍ର ସମ୍ମାନ, ସମ୍ବର୍ଦ୍ଧନା ଏବଂ ସ୍ୱୀକୃତି । ମିଳିଛି ମଧ୍ୟ ପାଠକଙ୍କ ଭଲପାଇବା । ସମୟକ୍ରମେ ସେ ପାଇଛନ୍ତି ପ୍ରଜାତନ୍ତ୍ର ଯୁବ କବି ସମ୍ମାନ, ବିଷୁବ ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ଶାରଳା ପୁରସ୍କାର, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ରାଜୀବ ଗାନ୍ଧି ସଦ୍‌ଭାବନା ପୁରସ୍କାର, ସେଲ୍ କବିତା ସମ୍ମାନ, ନାଲକୋ କବିତା ସମ୍ମାନ, ସାହିତ୍ୟ ଭାରତୀ ସମ୍ମାନ ଏବଂ ଆହୁରି ଅନେକ ଓ ରାଷ୍ଟ୍ରୀୟ କବୀର ସମ୍ମାନ ।

ପ୍ରଶ୍ନ - କବିତାକୁ ନେଇ କେତେ ଯତ୍ନଶୀଳ ଆପଣ ? କବିତାଟି କିଭଳି ମାନ୍ୟତା ପାଇଲେ ଆପଣଙ୍କୁ ଖୁସି ଲାଗେ ? ପାଠକଙ୍କ ମତ/ମନ୍ତବ୍ୟକୁ ଆପଣ କିପରି ଗ୍ରହଣ କରନ୍ତି ?

ଉତ୍ତର - ଆରମ୍ଭ କାଳରେ କବିତା ଆକାଶକୁ ବଉଦ ଆସିଲା ଭଳି ଆସୁଥିଲା । ସେଗୁଡ଼ିକ ସେ ସମୟରେ ସବୁ ଦୈନିକ କାଗଜରେ ଛପା ଯାଉଥିଲା । ତେଣୁ କିଭଳି

ଯତ୍ନ କଲେ ହେବ ତା' ମୋତେ ଭାବିବାକୁ ଅବସର ନ ଥିଲା । ଷୋଳ ବର୍ଷ ବୟସରେ କଲେଜକୁ ଆସିଲା ବେଳକୁ (ରେଭେନ୍ସା) ମୋର ସହପାଠୀ ଓ ବିଜ୍ଞାନ ଶିକ୍ଷକମାନେ ମୁଁ କବି ବୋଲି ଖୁବ୍ ଭଲ ଚିହ୍ନିଥିଲେ । ପାଠକକୁ କବିତାଟି ଯଦି ଭଲ ଲାଗିଲା ତାହା କବିର ଭାଗ୍ୟ ବୋଲି ମୁଁ ମନେକରେ । ପ୍ରାୟ ୧୫ ଦିନ ଭିତରେ 'ପ୍ରମେୟ', 'ସମ୍ବାଦ', 'ଧରିତ୍ରୀ' ଏହାର ସାପ୍ତାହିକ କବିତା ପୃଷ୍ଠାରେ ମୋର କେତୋଟି ଛୋଟ ଛୋଟ କବିତା ପ୍ରକାଶ ପାଇଥିଲା । ସାରା ଓଡ଼ିଶାରୁ, ଭାଇଜାଗ ଠାରୁ ବମ୍ବେ କେତେ ଯେ ପ୍ରଶଂସାସୂଚକ ଫୋନ୍ ଆସିଲା ମୁଁ ଅଭିଭୂତ ହୋଇପଡ଼ିଲି ।

ପ୍ରଶ୍ନ - ଲେଖକଟି କୌଣସି ନା କୌଣସି ପ୍ରକାରେ ବାଦବିବାଦକୁ ଟାଣି ହୋଇଯାଏ । ତେବେ ଏହି ବାଦବିବାଦ ଭୟରେ ସେ ଲେଖା ଛାଡ଼ିଦେବ ନା ଆହୁରି ଲେଖିବା ଉଚିତ ?

ଉତ୍ତର - ମୁଁ କେବେ ବାଦବିବାଦକୁ ଟାଣି ହୋଇଯାଇ ନାହିଁ । ତେବେ କବିର ସାହସ ଥିବା ଉଚିତ ଯେ ବାଦବିବାଦକୁ ଭୟ ନ କରି ସେ ତା' ରଚନାକୁ ଅଧିକରୁ ଅଧିକ ମାର୍ଜିତ କରୁ । କବିତାକୁ ବୁଝିଲେ, ଉପରେ ତ କହିଲି, ସୌଭାଗ୍ୟ ବୋଲି ଲାଗେ ନ ବୁଝିଲେ କେହି ତ ମୁହଁରେ କହେନି, ଜାଣିଲେ ଦୁଃଖ ଲାଗେ ।

ପ୍ରଶ୍ନ - କବିତାଟିଏ ଲେଖିବାକୁ ହେଲେ ବହୁତ ବେଶି ଘାରିହେବାକୁ ହୁଏ, ଅନ୍ୟଥା ଲେଖାଟି ଠିକ୍ ଭାବେ ଫୁଟିପାରେ ନାହିଁ । ଏ ବିଷୟରେ ଆପଣଙ୍କ ମତ କ'ଣ ?

ଉତ୍ତର - କବିତାଟି ଲେଖିବାକୁ ଗଲେ ତା'ର ବକ୍ତବ୍ୟ, ଶୈଳୀ ଓ ପରିମିତତା ଭିତରେ ସମନ୍ୱୟ ରହିଲେ ଏବଂ ଏ ଉପରୋକ୍ତ ତିନୋଟି ପରସ୍ପରର ଭିନ୍ନ ଅସ୍ତିତ୍ୱକୁ ଭୁଲିଗଲେ କବିତାରେ ପ୍ରାଣପ୍ରତିଷ୍ଠା ହୁଏ ।

ପ୍ରଶ୍ନ - ବର୍ତ୍ତମାନ ଅନେକ କବିତା ଲେଖା ଯାଉଛି । କିନ୍ତୁ ସେଥିରୁ ପାଠକ କିଛି ବୁଝିପାରୁ ନାହାନ୍ତି । ସେଗୁଡ଼ିକ କ୍ଲାନ୍ତିକର ମନେ ହେଉଛି । ସାହିତ୍ୟର ଆଦର ବି କମିଗଲାଣି ଧୀରେ ଧୀରେ । ଏଥିପାଇଁ କ'ଣ କରାଯିବା ଉଚିତ ?

ଉତ୍ତର - କବି ବେଳେବେଳେ ଉପର ଠାଉରିଆ ଭାବେ ଯଶପ୍ରାର୍ଥୀ ହୋଇ ଲେଖିଯାଏ । ପାଠକ ସହିତ ତା'ର ଯୋଗଯୋଗ ନ ଥାଏ । ତେଣୁ କ୍ଲାନ୍ତିକର ତ ମନେହେବ । ଘରେ ଘରେ ଓଡ଼ିଆ ଭାଷାର ଆଦର କମିଗଲାଣି । ପରିବାରରେ ବାପା ମା' ବି ମାତୃଭାଷା ପ୍ରତି ପିଲାଙ୍କୁ ସଚେତନ କରୁ ନାହାନ୍ତି । ଓଡ଼ିଆରେ କଥା କହିବା, ପଶୁପକ୍ଷୀ, ଗଛଲତାଙ୍କୁ ଓଡ଼ିଆରେ ଚିହ୍ନାଇବା ଏହା ଆଉ ପାରିବାରିକ ସ୍ତରରୁ ମଧ୍ୟ ଘଟୁ ନାହିଁ । ଏଥିପ୍ରତି ପରିବାର, ସ୍କୁଲ ଓ ସାଧାରଣ ଜନତା ସଚେତନ ହେଲେ ଭଲ ହେବ ।

ପ୍ରଶ୍ନ - କବିତାକୁ ନେଇ ଜୀବନର କିଛି ସ୍ୱତନ୍ତ୍ର ଅନୁଭୂତି ଅଛି କି ? ଆପଣଙ୍କ ପ୍ରିୟ ପାଠକମାନଙ୍କ ସହ ତା' ମଧ୍ୟରୁ ଗୋଟେ ଦୁଇଟା ଭାଗ କରନ୍ତୁ ।

ଉତ୍ତର - ମୁଁ ଯେଉଁଦିନ ୧୯୬୨ ବିଷୁବ ମିଳନରେ ପ୍ରଜାତନ୍ତ୍ର 'ନାରୀ ଜଗତ'ର କବିତା ପୁରସ୍କାର ପାଇଲି, ହଷ୍ଟେଲ୍‌ରେ ଥିଲି । ସୁପରିଣ୍ଟେଣ୍ଡେଣ୍ଟ ନାସ୍ତି କଲେ ଯିବାକୁ ହେବ ନାହିଁ । ଆଜି ଫିଜିକ୍ସ ପରୀକ୍ଷା ଅଛି ସେକେଣ୍ଡ ସିଟିଂ । ମୁଁ କିନ୍ତୁ ଲୁଚିକି ଚାଲିଗଲି । ପୁରସ୍କାର ଆଣି ଠିକ୍ ସମୟରେ ପହଞ୍ଚି ପରୀକ୍ଷା ଦେଲି ଏବଂ ପରୀକ୍ଷାରେ ଭଲ ନମ୍ବର ରଖିଲି । ଏମିତି ତ ଅନେକ ସ୍ୱତନ୍ତ୍ର ଅନୁଭୂତି ଅଛି । ଆଉ ଗୋଟେ ହେଲା-୧୯୭୫ରେ ସର୍ବଭାରତୀୟ ଲେଖିକା ସମ୍ମିଳନୀରେ ଓଡ଼ିଶା ପ୍ରତିନିଧିମାନଙ୍କ ସହ ଲେଖିକା (ବୀଣାପାଣି ମହାନ୍ତିଙ୍କ ସମେତ) ଆମେ ନୈନିତାଲ ଯାଇଥିଲୁ । କବିତା ପାଠ ଉତ୍ସବରେ ପ୍ରଥମ କବି ଭାବରେ ମୋତେ ସେମାନେ ସୁଯୋଗ ଦେଲେ ଏବଂ ମୁଁ ହିନ୍ଦୀରେ କବିତା ପଢ଼ିଲି । ସେଠାରେ ଉପସ୍ଥିତ ଶ୍ରୋତାଗଣ ମୋ କବିତାର ଧନ୍ୟ ଧନ୍ୟ ପ୍ରଶଂସା କଲେ । ଏପରିକି ଫେରିଲାବେଳେ ଟ୍ରେନ୍‌ରେ ମୋତେ ସାବାସି ଦେଲେ । କବିତାଟି ଭାରତର ଉତ୍ତର-ଦକ୍ଷିଣ ସୀମା ଉପରେ ଲେଖା ହୋଇଥିଲା । ତା' ଶୀର୍ଷକ ଥିଲା 'ଉତ୍ତର ଦକ୍ଷିଣ ।'

ପ୍ରଶ୍ନ - ପ୍ରେମ, କବିତାର ଅଂଶବିଶେଷ । ପ୍ରେମ ନ ଥିଲେ କବିତା ରଚନା କରିହୁଏ ନାହିଁ । ଏ ବିଷୟରେ ଆପଣଙ୍କ ମତାମତ କ'ଣ ?

ଉତ୍ତର - ପ୍ରେମ ବିନା କବିତା ନାହିଁ । ନିଜେ ପ୍ଲାଟୋ କହିଥିଲେ 'ଲଭ୍ ମେକ୍‌ସ ଏ ମ୍ୟାନ୍ ଏ ପୋଏଟ ।' ଏବେ ନୋବେଲ ପୁରସ୍କାରପ୍ରାପ୍ତ ଶ୍ୱେତଲାନା କହିଥିଲେ ସାହିତ୍ୟ, ମଣିଷର ସମ୍ବେଦନାକୁ, ଭଲପାଇବାକୁ ତ୍ୱରାନ୍ୱିତ କରେ । ମୁଁ ଏଥିରେ ସମ୍ପୂର୍ଣ୍ଣ ଏକମତ । ମୃତ୍ୟୁ ଠାରୁ ଜୀବନ ଆଡ଼କୁ ଯେଉଁ ବିଷାକ୍ତ ସ୍ରୋତ ବୋହୁଥାଏ କବିତାର ଯାଦୁକରୀ ଶକ୍ତି ସେହି ସ୍ରୋତକୁ ସୁବର୍ଣ୍ଣ ସ୍ରୋତରେ ପରିଣତ କରିଥାଏ । ପ୍ରେମ ଭରିଦେଇଥାଏ ।

ପ୍ରଶ୍ନ - ପରିବେଶ ଓ ପରିସ୍ଥିତିର ଚାପରେ ବେଳେବେଳେ ମଣିଷକୁ ଦୁଇ ନାବରେ ପାଦ ଦେବାକୁ ହୁଏ । ଏହା ସେ ଜାଣି ଜାଣି କରି ନ ଥାଏ । ସାଧାରଣ ମଣିଷ ଅପେକ୍ଷା ଯଦି ଲେଖକଟିର ଭାଗ୍ୟରେ ଏହା ହେଲା ତା'ର ସର୍ଜନା ଉପରେ ଗଭୀର ପ୍ରଭାବ ପଡ଼େ । ଏଥିରୁ ମୁକୁଳିବାକୁ କିଛି ବାଟ...

ଉତ୍ତର - ମୁଁ ବହୁଦିନ ଯାଏ ଦୁଇ ନାବରେ ଗୋଡ଼ ଦେଇଥିଲି । କିନ୍ତୁ ମୋ' ସନ୍ତାନମାନେ ବଡ଼ ହେଲାପରେ ଏବଂ ସର୍ବଦା ମୋ ନିକଟରେ ମୋ ବୋଉ, ଶାଶୂ, ନଣନ୍ଦ ରହୁଥିଲାବେଳେ ସେମାନଙ୍କର ସହାନୁଭୂତି ପାଉଥିଲି ତ ସେଥିପାଇଁ କେବଳ କବିତା ନାବରେ ହିଁ ବସିଲି ଏବଂ ତାକୁ ଚଳାଇନେଲି । ମୁକୁଳିବାର ବାଟ କବିକୁ ହିଁ ନିର୍ଣ୍ଣୟ କରିବାକୁ ପଡ଼ିବ ।

ପ୍ରଶ୍ନ - ଆପଣ କବିତା ରଚନାପାଇଁ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ପାଆନ୍ତି ନା କେବେକେବେ ବାଧ୍ୟବାଧକତାରେ ଲେଖନ୍ତି ? ସାହିତ୍ୟିକଟିଏ ଅନ୍ତପ୍ରେରଣା ଆସିବା ଯାଏଁ ଅପେକ୍ଷା କରିବା ଉଚିତ କି ଚେଷ୍ଟା କରି ଲେଖିବା ଆବଶ୍ୟକ ?

ଉତ୍ତର - ପ୍ରଥମରୁ ପ୍ରେରଣା ସ୍ୱତଃସ୍ଫୂର୍ତ୍ତ ଆସୁଥିଲା କିନ୍ତୁ ସ୍ୱତଃସ୍ଫୂର୍ତ୍ତତା ସବୁବେଳେ ଭଲ କବିତାର ଲକ୍ଷଣ ନୁହେଁ । କବି ପାଇଁ ଅନ୍ତଃପ୍ରେରଣା ସବୁଠୁ ବଡ଼ । ଜଣେ କବି ଏହି ପ୍ରେରଣାକୁ ଅପେକ୍ଷା କରି ରହିବା ଉଚିତ । ପ୍ରକୃତରେ ଅଲିଖିତ କବିତା ଶୂନ୍ୟରେ ଥାଏ । ଯେଉଁ କବିର ହୃଦୟ ସେଥିପାଇଁ ଉନ୍ମୁଖ ସେଇଠିକି ସେଇ କବିତା ଓହ୍ଲାଇଆସେ ।

ପ୍ରଶ୍ନ - ଆମେ ବାସ କରୁଥିବା ପୃଥିବୀର ସୌନ୍ଦର୍ଯ୍ୟ ଅତୁଳନୀୟ । ତାକୁ କବିଟିଏର ଆଖି ନେଇ ଦେଖିଲେ ତା'ର ସୌନ୍ଦର୍ଯ୍ୟ ଆହୁରି ବୃଦ୍ଧି ପାଇବ ତେବେ ଏହି ସୌନ୍ଦର୍ଯ୍ୟ ଅପେକ୍ଷା ଏବେ ହିଂସା, ଈର୍ଷା, ହତ୍ୟା, ରକ୍ତପାତରେ ଭରପୂର ହୋଇଗଲାଣି ପୃଥିବୀ । କବିଟିଏ ଆଜି ବ୍ୟତିବ୍ୟସ୍ତ । ଏହାର ସମାଧାନ କ'ଣ ?

ଉତ୍ତର- ଆଜିକାର ହିଂସା, ଈର୍ଷା, ଦ୍ୱେଷ, ହତ୍ୟା, ଧର୍ଷଣ, ରକ୍ତପାତ, ଭୟଙ୍କର ଭାବେ ପୃଥିବୀକୁ, ତା'ର ସୌନ୍ଦର୍ଯ୍ୟକୁ ଭ୍ରଷ୍ଟ କରିଚାଲିଛି । କବି ଗଭୀରଭାବେ ମର୍ମାହତ, ମାତ୍ର ସମାଧାନ ତ ତା' ହାତରେ ନାହିଁ । ସେ କେବଳ ତା' ଲେଖା ମାଧ୍ୟମରେ ପାଠକମାନଙ୍କ ଭିତରେ ଏହାର ସମାଧାନ ନିମିତ୍ତ ଗୋଟେ ସଚେତନତା ସୃଷ୍ଟି କରିପାରିବ ।

ପ୍ରଶ୍ନ - ଜଣେ ସୁପ୍ରତିଷ୍ଠିତ କବି ହିସାବରେ ଆପଣ ବର୍ତ୍ତମାନ ତରୁଣ କବିମାନଙ୍କୁ ଏମିତି କିଛି କୁହନ୍ତୁ ଯାହାଦ୍ୱାରା ତାଙ୍କର ପୁରସ୍କାରର ମୋହ ଭାଙ୍ଗି ସେମାନେ ସାରସ୍ୱତ ସାଧନାରେ ମନଦେବେ ।

ଉତ୍ତର - ମୋର ଅସଂଖ୍ୟ ସାକ୍ଷାତକାର ଭିତରେ ସଭାସମିତିରେ ମୁଁ ତରୁଣ କବିମାନଙ୍କୁ କହିଛି ଯେ, ସେ ଯଶଲିପ୍ସା ଛାଡ଼ନ୍ତୁ । ହୁଏତ ମୋ କଥାରେ ସେମାନେ ମନ ନ ଦେଇ ପାରନ୍ତି । କିନ୍ତୁ ପ୍ରକୃତରେ କବି ଭାବରେ ପ୍ରତିଷ୍ଠା ପାଇବାପାଇଁ ଅନ୍ୟ ସର୍ଟକଟ୍ (ସହଜ) ଉପାୟ କିଛି ନାହିଁ ।

ପ୍ରଶ୍ନ - ଏବେ ପୁରସ୍କାରରେ ଯେଉଁ କଳଙ୍କ ଲାଗିଛି ତାହା କେମିତି ପୋଛିହେବ ? ପୁରସ୍କାର କ୍ଷେତ୍ରରେ ସତରେ କ'ଣ ଏପରି ହେଉଛି କି ? ଯିଏ ପୁରସ୍କାର ପାଇଲା, ଲୋକ ଧରି ନେଉଛନ୍ତି ସେ ଧରାଧରି କରି ପାଇଛି । ଏଭଳି ମାନସିକତାର ସମାପ୍ତି କେବେ ହେବ ?

ଉତ୍ତର - ପୁରସ୍କାର କ୍ଷେତ୍ରରେ ସ୍ଥାନେ ସ୍ଥାନେ କଳଙ୍କ ଲାଗିଛି । ଏହା ବୋଧେ ସବୁ କାଳରେ ଊଣାଅଧିକେ ଥିଲା । ସାହିତ୍ୟର ବିଚାରକ ଯଦି ନିଷ୍ପାପର ଓ ଗୁଣ ଚିହ୍ନରା ହୁଏ ତା'ହେଲେ କଳଙ୍କ ଲିଭିବ ।

ପ୍ରଶ୍ନ - ଆପଣଙ୍କର କେଉଁ ଲେଖା ଆପଣଙ୍କୁ ତୃପ୍ତି ଦେଇଛି ? ଆପଣଙ୍କୁ କେବେ ଲାଗିଚି ଯାହା ଚାହୁଁଥିଲେ ଲେଖିପାରିଛନ୍ତି ? କି ଆଉ କିଛି ଅବସୋସ ରହିଯାଇଛି ?

ଉତ୍ତର - ମୋର କେତେଗୋଟି କବିତା ମୋତେ ଗଭୀର ଆତ୍ମସନ୍ତୋଷ ଦେଇଛି । ଯାହା ତା' ଦେଇପାରିନି, ସେସବୁ ମୋର ସୃଷ୍ଟି, ମୋର ତ୍ରୁଟି, ତା' ବିଷୟରେ କେମିତି କ'ଣ କହିପାରିବି ? ସନ୍ତାନର ଦୁର୍ବଳତା ସ୍ରଷ୍ଟା ଜାଣିଲେ ବି କ'ଣ କରିପାରିବ ? ଯାହା ଚାହିଁଥିଲି, ଚାହିଁଛି ମଧ୍ୟ ତା' କରିପାରି ନାହିଁ । ଅବସୋସ ରହିଛି ଏବଂ ରହିବ ।

ପ୍ରଶ୍ନ - ଈଶ୍ୱରଙ୍କୁ କେତେଦୂର ବିଶ୍ୱାସ କରନ୍ତି ? କୌଣସି ବିପଦ ବେଳେ ତାଙ୍କୁ ଡାକନ୍ତି କି ?

ଉତ୍ତର - ଈଶ୍ୱରଙ୍କୁ ବିଶ୍ୱାସ କରେ । ପ୍ରତ୍ୟେକ ଦିନ ପ୍ରାର୍ଥନା କରେ । ସେ ତାହା କେତେଦୂର ଗ୍ରହଣ କରନ୍ତି ମୁଁ ତ କହିପାରିବି ନାହିଁ ।

ପ୍ରଶ୍ନ - ଜୀବନବ୍ୟାପୀ ଆପଣଙ୍କର ସାହିତ୍ୟ ସାଧନାପାଇଁ ଆଜିଯାଏଁ ଆପଣ ଯାହା ପାଇଛନ୍ତି ସେଥିରେ ଖୁସି ନା ଆଉ କିଛି ଅଧିକା ପାଇଥାନ୍ତେ ବୋଲି ଆପଣଙ୍କୁ ଲାଗେ ?

ଉତ୍ତର - ବାର ବର୍ଷ ବୟସରୁ ଏଯାବତ୍ ସାହିତ୍ୟ ଯାହା ଦେଇଛି ମୋର ପ୍ରତ୍ୟାଶାଠୁଁ ବହୁ ଅଧିକ ।

ପ୍ରଶ୍ନ - ଲେଖକଟିଏ ତା' କାଳଖଣ୍ଡରେ ବଞ୍ଚି ଯାହା ତା'ର ଅନୁଭବ ହୁଏ ଲେଖିଯାଏ । ଏହା କିନ୍ତୁ ଯୁଗ ଯୁଗକୁ ଲିପିବଦ୍ଧ ହୋଇ ରହିଯାଏ । ସେଥିପାଇଁ କ'ଣ ଲେଖକକୁ ମାପିଚୁପି ଲେଖିବା ଆବଶ୍ୟକ ନା ସରଳ, ସାବଲୀଳ ଭାବରେ ତାକୁ ଯାହା ଆସିଲା ଲେଖାଯିବା ଉଚିତ ?

ଉତ୍ତର - ଲେଖକ ତା'ର ଅନ୍ତଃଚେତନାକୁ ପ୍ରକଟିତ କରେ, ଅନ୍ତର୍ବେଦନାକୁ, ପୀଡ଼ାକୁ ଓ ସାହସିକତାକୁ ରୂପ ପ୍ରଦାନ କରେ । ହୃଦୟବତ୍ତା ତା'ର ମୂଳଧନ, ସେହି ଦୃଷ୍ଟିରୁ ମାପିଚୁପି କଳା ସୃଷ୍ଟି କରାଯାଇପାରିବ ନାହିଁ ।

ପ୍ରଶ୍ନ - ସାହିତ୍ୟ ସହ ଯୋଗ୍ୟତାର ମାପକାଠିକୁ ତୁଳନା କରାଯିବା ଉଚିତ କି ? ସାହିତ୍ୟ ମଣିଷର ଅନ୍ତର୍ମନର ପରିପ୍ରକାଶ । କେବଳ ଜଣେ ଉଚ୍ଚଶିକ୍ଷିତ କିମ୍ବା ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହେଲେ ତା' ସାହିତ୍ୟକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଯିବା ଉଚିତ କି ?

ଉତ୍ତର - ନିଜର ବୃତ୍ତିକୁ, ପଦପଦବୀକୁ, ଚାକିରିକୁ ଉତ୍ତମ ସାହିତ୍ୟର ଯୋଗ୍ୟତା ବୋଲି ତୁଳନା କରାଯିବା ଦୁଃଖଦାୟକ ।

ପ୍ରଶ୍ନ - କବିତା ଲେଖିବାପାଇଁ କବିକୁ କେବେ ଲହୁଲୁହାଣ ତ କେବେ ମହୁମୁହାଣ ହେବାକୁ ପଡ଼ିଥାଏ । ବିଷୟବସ୍ତୁ ଓ ଚରିତ୍ର ଚୟନପାଇଁ ସେ ଶ୍ରମକ୍ଳାନ୍ତ ହୋଇଯାଏ, ତେବେ ଯାଇ ଲେଖିହୁଏ କବିତାର ଧାଡ଼ି । ଆପଣ କେମିତି ଲେଖନ୍ତି କବିତା ? ଚରିତ୍ରମାନଙ୍କୁ କେମିତି ମନାନ୍ତି କାଗଜରେ ଉତୁରିବା ପାଇଁ ?

ଉତ୍ତର - ଏକଥା ସତ କବିତା ଲେଖିବାପାଇଁ କବିକୁ ଲହୁଲୁହାଣ ହେବାକୁ ପଡ଼େ । ଅନ୍ଧାର ଘରେ ଘୁଷୁରିବାକୁ ପଡ଼େ । କେବେ କେବେ ବିନିଦ୍ର ରାତି ପୁହାଇବାକୁ ପଡ଼େ । ଚରିତ୍ରମାନଙ୍କୁ ମୁଁ ଅନୁନୟ କରେ, ଆହ୍ୱାନ କରେ । ଶବ୍ଦମାନଙ୍କୁ ହାତ ପାତି ଭିକାରୁଣୀ ପରି ଡାକେ ।

ପ୍ରଶ୍ନ - ଆପଣ କବିତାମନସ୍କ ଥିଲାବେଳେ ବାରମ୍ବାର କେହି ବିବ୍ରତ କଲେ କିପରି ପ୍ରତିକ୍ରିୟା ପ୍ରକାଶ କରନ୍ତି ?

ଉତ୍ତର - କବିତାମନସ୍କ ଥିଲାବେଳେ, ଏବେ ତ ପ୍ରାୟ କେହି ବିବ୍ରତ କରନ୍ତି ନାହିଁ; କିନ୍ତୁ କିଶୋର ବୟସର ସନ୍ତାନମାନଙ୍କୁ ମୁଁ କହିଥାଏ ଯଦି କେବେ ଦେଖ, ମୁଁ ଘରର ଗୋଟେ ନିରୋଳା ସ୍ଥାନରେ ଖାତା କଲମ ଧରି ବସିଛି, ସେଠିକି ଯିବ ନାହିଁ କି ମୋତେ ଡିଷ୍ଟର୍ବ କରିବ ନାହିଁ ଏବଂ ସେମାନେ ବହୁ ଭାବରେ ମୋ' କଥା ମାନନ୍ତି ।

ପ୍ରଶ୍ନ - ଆପଣ ସମ୍ବାଦ କଳିକା ପଢ଼ନ୍ତି କି ? ଏହାର ପାଠକପାଠିକାମାନଙ୍କୁ ଆପଣ କିଛି ସ୍ୱତନ୍ତ୍ର ବାର୍ତ୍ତା କୁହନ୍ତୁ ।

ଉତ୍ତର - ସମ୍ବାଦ କଳିକା, କଥା କଳିକା ମୁଁ ପଢ଼େ । ଏହା ଦିନକୁ ଦିନ ଉତ୍ତରୋତ୍ତର ଉନ୍ନତି କରୁଛି । ବିଶେଷକରି ଏହାର ସମ୍ପାଦକ ଏବଂ ଏହାର ପରିବାର ଏକ ବିଶିଷ୍ଟ ସାହିତ୍ୟିକ ପରମ୍ପରାରୁ ଆସିଛନ୍ତି । ସ୍ୱର୍ଗତ ଗୌରୀଶଙ୍କର ରାୟଙ୍କୁ କିଏ ନ ଜାଣେ ? ଓଡ଼ିଆ ସାହିତ୍ୟପାଇଁ ତାଙ୍କର ଅବଦାନ ପ୍ରଚୁର । ତାଙ୍କ ସ୍ମୃତି ପ୍ରତି ମୁଁ ପ୍ରଣାମ ଜଣାଉଛି ।



# 'ଧରିତ୍ରୀ ସାହିତ୍ୟାୟନ'- ପ୍ରଥମ ବହି

ମୋର ପ୍ରଥମ ପ୍ରକାଶିତ କବିତା ସଂକଳନର ଶୀର୍ଷକ 'ଅସ୍ତଜହ୍ନର ଏଲିଜି' । ଏହା ଜୁଲାଇ, ୧୯୭୦ରେ ପ୍ରକାଶ ପାଇଥିଲା । ଏହାର ପ୍ରକାଶନ ପାଇଁ ଉଦ୍‌ଯୋଗ କରିଥିଲେ ମୋର ଦଦେଇ (ବାପାଙ୍କ ସିଦ୍ଧେଶ୍ୱରପୁରର ପିଉସୀପୁଅ ଭାଇ) ଖ୍ୟାତନାମା ପେପର ଟେକ୍ନୋଲୋଜିଷ୍ଟ ଇଂ ପ୍ରାଣକୃଷ୍ଣ ନନ୍ଦ ଓ ଡଃ ନିତ୍ୟାନନ୍ଦ ଶତପଥୀ । ପ୍ରଚ୍ଛଦ ଅଙ୍କନ କରିଥିଲେ ଅସିତ୍ ମୁଖାର୍ଜୀ । ମୁଖବନ୍ଧ (ଅନୁପ୍ରବେଶ) ରେ ମତାମତ ରଖିଥିଲେ ପ୍ରଖ୍ୟାତ ଗଦ୍ୟଶିଳ୍ପୀ ସୁରେନ୍ଦ୍ର ମହାନ୍ତି । ସବୁକଥା ଖୁବ୍ ସୁନ୍ଦରଭାବେ ସମ୍ପାଦିତ ହୋଇଥିଲା ।

ବହିଟି ପ୍ରକାଶନ ପରେ ମୋ' ଭିତରେ ଏକ ଗୌରବବୋଧ ସ୍ୱତଃ ଜାଗ୍ରତ ହୋଇଥିଲା । ତଥାପି ଲାଗୁଥିଲା 'ମୁଁ କ'ଣ ସତକୁ ସତ କବି ?' ଏ ସଂକଳନରେ ସ୍ଥାନିତ କବିତାଗୁଡ଼ିକ ଥିଲା ମୋର କଲେଜ ପଢ଼ା ବେଳର ଓ କିଛିଟା ନୂଆ ନୂଆ ଚାକିରି ଜୀବନର ରଚନା । ଏହା ସତ୍ତ୍ୱେ ସମସ୍ତେ ମୋତେ 'କବି' ବୋଲି କହୁଥିଲେ । କିନ୍ତୁ ମୋତେ ଏହା ଖଟ୍‌କା ଲାଗୁଥିଲା । ପୂରା ପ୍ରତୀତ ହେଉ ନ ଥିଲା ଯେ 'ମୁଁ କବି' । 'ଅସ୍ତଜହ୍ନର ଏଲିଜି'ର ପ୍ରକାଶନ କବିତା ରଚନା-କର୍ମଟି ସହ ମୋର ଅନ୍ତର୍ଗତ ସମ୍ପର୍କକୁ ଯୋଡ଼ି ଦେଇଥିଲା ।

ବେଳେବେଳେ ଲାଗୁଥିଲା ସତେ କି ମୁଁ ଆକାଶରେ ଭାସି ବୁଲୁଛି, ମନ ଫୁଲିଉଠୁଛି ଗର୍ବରେ । ମିଶ୍ର ଏକ ଅନୁଭବର ରାଗିଣୀ ବାଜୁଥିଲା ବ୍ୟକ୍ତିତ୍ୱରେ, ହୃଦୟରେ । ଦର୍ପଣ ସାମ୍ନାରେ ଠିଆହୋଇ କହୁଥିଲି- 'ମୁଁ ଜଣେ କବି ।' ଠିକ୍ ମୋ' ସାମ୍ନାରେ ଜଣେ ଠିଆ ହୋଇପଡ଼ି କହୁଥିଲା- 'ମୁଁ କବି, କବି' । କ୍ରମଶଃ ମୋ ସାମ୍ନାର ଲୋକ ମତେ ଜଡ଼େଇ ଧରିଥିଲା, ଏକାତ୍ମ କରିଥିଲା କବିତା ସହିତ ।

ଏଭଳି ଅଦ୍ଭୁତ ସବୁ ଅନୁଭବ । ମୋର ପୁଣି ରେଭେନ୍ସା କଲେଜରେ ଚାକିରି । ମୁଁ ଛନ୍ଦି ଧନ୍ଦି ହୋଇପଡୁଥିଲି । କବିତା କେବେ ଉଙ୍କି ମାରି ଫେରିଯିବାକୁ ଉଦ୍ୟତ ହେଉଥିଲା ତ ମୁଁ ମରିଯାଉଥିଲି । ସାଧି ପାରୁ ନ ଥିଲି ତାକୁ ଧରି ରଖିବାର ଉପାୟ । ଛଟପଟ ତ ହେଉଥିଲି, ଆନନ୍ଦରେ ବୁଡ଼ି ଯାଉଥିଲି ବି ।



## 'ଧରିତ୍ରୀ ସାହିତ୍ୟାୟନ'-ପ୍ରଥମ କବିତା ଓ ରାଷ୍ଟ୍ରୀୟ କବୀର ସମ୍ମାନର ଫଟୋ

ପ୍ରଶ୍ନ - ଆପଣ ଏବେ ଭାରତୀୟ କବିତାର ଶିଖରରେ । ମନେପକାଇ ପାରିବେ ସେହିଦିନ, ସେହି ଲଗ୍ନକୁ ଯେଉଁଦିନ ଆପଣ ଆପଣଙ୍କର ପ୍ରଥମ କବିତା ଲେଖିଥିଲେ ?

ଉତ୍ତର - ମୁଁ ଏବେ ଭାରତୀୟ କବିତାର ଶିଖରରେ ? ସତେ ନା କ'ଣ ! ମୁଁ କେବେ ସେପରି ଭାବି ନାହିଁ । ପ୍ରଥମ କବିତା ରଚନାର ଲଗ୍ନ ତ ଠିକ୍ ମନେ ନାହିଁ । ତେବେ ସପ୍ତମ ଶ୍ରେଣୀରେ ପଢ଼ିଲାବେଳେ ମୁଁ ଗୋଟିଏ ଗୀତ ଲେଖିଥିଲି । ତାକୁ ସ୍କୁଲରେ ଦେଖାଇଲି ଓ ରେଡ଼ିଓରୁ ଟିପି ଆଣିଛି ବୋଲି ମିଛ କହିଲି । ଗୀତଟି ସମସ୍ତଙ୍କୁ ଭଲ ଲାଗିଲା । ଗୀତଟିର ସୌଭାଗ୍ୟ ଯେ ସେ ବର୍ଷ ବାର୍ଷିକ ଉତ୍ସବରେ ତାହା ନୃତ୍ୟାୟିତ ହେଲା । ତହିଁର ସ୍ୱର ସଂଯୋଗ କରିଥିଲେ ମୋ' ଶିକ୍ଷୟିତ୍ରୀ । ମୁଁ ଏଥିରେ ନାଚି ଥିଲି, ମୋର ଅନ୍ୟ ତିନିଜଣ ସାଙ୍ଗ ସହ । ଗୀତର ଧାଡ଼ିଟିଏ ଆଜି ବି ମନେ ଅଛି - "ବନ ସେପାରେ ଲୋ, ଚାନ୍ଦିନୀ ରାତିରେ / ମହୁଲ ଫୁଲର ବାସ ଭାସେ...ସହୀ...ମହୁଲ...।"

ପ୍ରଶ୍ନ - କବିତାର ସ୍ଥିତାବସ୍ଥାରୁ ଘୁଞ୍ଚି ଆସିବା ଓ ନିଜ ପ୍ରତିଭାର ଦୀପ୍ତିରେ ତାକୁ ନୂଆ କରିବା ଯଦି ମହତ୍ତର କବିତାର ଧର୍ମ ହୁଏ, ତେବେ କୁନ୍ତଳା, ବିଦ୍ୟୁଲ୍ଲତା, ନିର୍ମଳା ('ଧୂପ'ର ନାୟିକା) ଓ ବ୍ରହ୍ମୋତ୍ରୀ ନିର୍ମାଣ କରିଥିବା ଓଡ଼ିଆ କବିତାର ଧାରାଠାରୁ ଆପଣଙ୍କ କବିତା କିଭଳି ଅଲଗା ?

ଉତ୍ତର - ହଁ, ସ୍ଥିତାବସ୍ଥାରୁ ମୁଁ କିଛି ଘୁଞ୍ଚି ଆସିଛି । ଏହାର କାରଣ ହୋଇପାରେ ସମୟର ପ୍ରଭାବ । ସେ କାଳରେ ନାରୀଟିଏ କବିତା ଲେଖିବା ଖୁବ୍ ଗୋଟେ ବାହାଦୁରିଆ କଥା ନ ଥିଲା - ପରିବାର କି ସମାଜରେ । ନିତାନ୍ତ ଆଧୁନିକ, ସୁଶିକ୍ଷିତ ପରିବାର ହୁଏତ ଏହାକୁ ଗ୍ରହଣ କରୁଥିଲେ । ମୁଁ ପ୍ରଥମେ ବ୍ୟକ୍ତିଗତ ପ୍ରେମ କବିତା ଲେଖିଲି । 'ନାବିକ ବିଳୟ' (ଅସ୍ତଜହ୍ନର ଏଲିଜି), 'ଅନ୍ତର୍ଲିପି' (ଗ୍ରସ୍ତ ସମୟ) ଆଦି ଏହାର ଉଦାହରଣ । ହୃଦୟର ପ୍ରେମକୁ ପ୍ରକଟ କଲି । ଛନ୍ଦରେ କିଛି ଭିନ୍ନତା ରହୁ ବୋଲି ଚାହିଁଲି । ପୁରୁଣା ଗୀତି କବିତାର ଛନ୍ଦକୁ ଆଶ୍ରୟ କରିବା, ସ୍ୱପ୍ରେମକୁ ଅନ୍ତରାଳରେ ରଖିବା କିମ୍ବା ବିଭୁ ପ୍ରେମରେ ବ୍ୟକ୍ତିଗତ ଶରୀରୀ ପ୍ରେମକୁ ଲୁକ୍କାୟିତ ରଖିବାକୁ ଶ୍ରେୟ ମଣିଲି

ନାହିଁ । ଝୁଙ୍କ୍ ରହିଲା-ନିଜ ଆବେଗକୁ ରୋକ୍‌ଠୋକ୍ ଉଚ୍ଚାରିବି ଓ ନିଜ କଥା ନିଜେ କହିବି । ନିଜ ପରିଚୟରେ ସତ୍ୟବାକ୍ ହେବାକୁ ଚେଷ୍ଟା କଲି । ଯେଉଁ କବିମାନଙ୍କ କଥା କୁହାଯାଇଛି, ସେମାନେ ଖୁବ୍ ଆନ୍ତରିକତାପୂର୍ଣ୍ଣ କବିତା ଲେଖୁଥିଲେ; ଯଦିଓ ତା'ର ତରିକା ଭିନ୍ନ ଥିଲା । ଅଭିବ୍ୟକ୍ତିରେ ସଂକୋଚ ବି କିଛି କମ୍ ନ ଥିଲା 'ନାବିକ ବିଳୟ' ଓ 'ଅନ୍ତର୍ଲିପି' କଥା କହୁଥିଲି ନା, ଦେଖନ୍ତୁ ତହିଁରେ ଏ ଉଦ୍ଧୃତି ଦୁଇଟିକୁ-

୧. "ଆଜି ଯେବେ ମୋ ପଥରେ ଘୂର୍ଣ୍ଣିବାୟୁ ବିପଥ ଆସର
ଆକାଶରେ କୁହୁଡ଼ିର ଭଙ୍ଗା ଭଙ୍ଗା ଘନ ଆସ୍ତରଣ,
ଆଲୋକ ସଂକେତ ନାଇଁ, ବତିଖୁଣ୍ଟ ଅସ୍ପଷ୍ଟ ଦିଶୁଚି,
ଏ ବେଳେ ମୋ' ଅନ୍ତରର ନିଭୃତରେ ତା' ସ୍ମୃତି ଉଜ୍ଜଳ
ଫେରିଗଲା ଯିଏ ଦିନେ ତା' ଲାଗି ମୁଁ ଆଶାରେ ଆହତ ।"

('ନାବିକ ବିଳୟ'- 'ଅସ୍ତଜହ୍ନର ଏଲିଜି')

୨. "ତୁମେ ଜାଣ ମୁଁ କିପରି ଏକୁଟିଆ
ଘନ ଜଙ୍ଗଲର ଏକ ପଥଚାରୀ ଭଳି ଆଶଂକିତ ।
ଅନେକ ମୃତ ପକ୍ଷୀଙ୍କର ଡେଣା ଚାରିପାଖେ
ଓ ମୋର ଆଖିରେ
ସାତ ସମୁଦ୍ରର ଜଳ । ସ୍ମୃତି ମୋର ଅମାର ଅମାର-
ଏମନ୍ତ ସମୟେ ଦେଖେ ତୁମେ ଆସି ମୋ' ଆଗରେ ଛିଡ଼ା ।
ଓଠରେ ଧରିଛ ଚାପି ଚତୁର୍ଥୀର ଜହ୍ନ ଚିରୁଡ଼ାଏ ।
ଆମ ଗାଁ ଦେବୀମେଢ଼ କାର୍ତ୍ତିକେୟ ପରି
ତୁମ ଦୁଇ ଭୂରୁର କଳାରେ
ମୁଁ ହେଲି ନିର୍ବାକ୍ ଓ ମୁଗ୍‌ଧ ।"

(ଅନ୍ତର୍ଲିପି - ଗ୍ରସ୍ତ ସମୟ)

- ନିଜ ପ୍ରେମର କଥା ନିଜ କଣ୍ଠରେ ସିଧାସଳଖ, ଅନାବୃତ ।

ପ୍ରଶ୍ନ - 'ସାହାଡ଼ା ସୁନ୍ଦରୀ' ଓ 'ଶବରୀ'- ଦିହେଁ ଯାକ ପୁରୁଷ କର୍ତ୍ତୃତ୍ୱାଧୀନ ପ୍ରେମ ଓ ପୁରୁଷର ଗତି ମୁକ୍ତି ଯାଚକତା ପ୍ରତି ସମର୍ପିତା ନାରୀ । ନିଜର କୌଣସି ନାଁ ନ ଥିବା (nameless), ମୁହଁ ନ ଥିବା (faceless)ଏଇ ଦୁଇ ନାରୀ କ'ଣ ଓଡ଼ିଆ କବିତାରେ ପ୍ରତିଭା ଶତପଥୀଙ୍କ ବାଟ ଦେଇ ନିଜ ପରିଚୟ ସଂକଟକୁ ଅତିକ୍ରମ କରିବାକୁ ଉଦ୍ୟତା ?

ଉ -'ସାହାଡ଼ା ସୁନ୍ଦରୀ' ଲୋକକଥାର ଚରିତ୍ର । ମୋ' ନିଜର ଅସ୍ତିତ୍ୱ ଭିତରେ ଏକ ଉନ୍ନତ, ସଚେତନ ସତ୍ତା ରହୁଥିବାର ମୁଁ ଆବିଷ୍କାର କଲି । 'ଶବରୀ' ପୁରାକଳ୍ପର ଚରିତ୍ର । ଉଭୟେ କିନ୍ତୁ ପୁରୁଷର ପ୍ରତୀକ୍ଷାରେ ଜୀବନକାଳ ବିତାଇ ଦେଇଛନ୍ତି । ପ୍ରକୃତରେ ଏମାନେ ନାମହୀନ । ନିଜେ ଶବରୀ କହୁଛନ୍ତି - "ମୋର କ'ଣ ନାଆଁ ଅଛି ? ଋଷିଋଷି-ମହାକବିଙ୍କର ଏପରି ଶବ୍ଦ ସମ୍ଭାର କାହିଁ ଯେ / ସେ ନାମକରଣ କରିବେ...ଆଦି ଅନ୍ତହୀନ ଏକ ପ୍ରତୀକ୍ଷାକୁ... ?" ନାରୀତ୍ୱ ହିଁ ଏମାନଙ୍କର ପରିଚୟ । ମାତ୍ର ଚିରାଚରିତ ପୁରାଣର ଗୁଳାରେ ନ ଯାଇ ମୋ' ଶବରୀ ନିଜକୁ ଭିନ୍ନ ରୂପେ ସାହସିନୀ ରୂପେ ପ୍ରତିଷ୍ଠିତା କରିଛନ୍ତି । 'ସାହାଡ଼ା ସୁନ୍ଦରୀ'ର ଏକ ଅସ୍ତିତ୍ୱ ରହିଛି । ସେ ରାଜକନ୍ୟା, ରାଜପୁତ୍ରର ସେବାକାରିଣୀ । ତାଙ୍କର ବିଶେଷତ୍ୱ ହେଉଛି - ନିୟତିକୁ ସେ ତାଚ୍ଛଲ୍ୟ କରିଛନ୍ତି । କହିଛନ୍ତି - "ଭାଗ୍ୟ, ସେ କି ଉତ୍ତର ଦେବ ?"

ଶବରୀ ରାମଚନ୍ଦ୍ରଙ୍କୁ ସ୍ୱଚକ୍ଷୁରେ ଦର୍ଶନ ନ କରି ମଧ୍ୟ ଏକ ରାଗାତ୍ମିକ ସମ୍ପର୍କରେ ତାଙ୍କ ସହ ଆବଦ୍ଧ ହୋଇଛନ୍ତି । ରାମଚନ୍ଦ୍ରଙ୍କୁ ଈଶ୍ୱରଙ୍କ ଅହଂକାରଠୁଁ ଭିନ୍ନ କରିଦେଇ ନବଜନ୍ମ ଦେବାକୁ ଚାହିଁଛନ୍ତି । ଏ ନବଜନ୍ମ ଅବଶ୍ୟ କୁକ୍ଷିଗତ ଜନ୍ମ ନୁହେଁ, ବରଂ ଉତ୍ତରଣମୁଖୀ ଏକ ଚେତନାର । କଷ୍ଟେମଷ୍ଟେ ଉତ୍ତର ସିନା ଦେଲି, ହେଲେ ଏ ପ୍ରଶ୍ନଟି ବଡ଼ ଜଟିଳ ।

ପ୍ରଶ୍ନ - ଆପଣ 'ପ୍ରେମ' ଓ 'କରୁଣା'ର କବି । କୁହନ୍ତୁ କେଉଁଟି ଶ୍ରେଷ୍ଠ- 'ଚରିତାର୍ଥ ହେଉ ନ ଥିବା ପ୍ରେମ' ନା 'ଅଚରିତାର୍ଥ ରହିଯାଉଥିବା ପ୍ରେମ'? (ଆପଣଙ୍କ କବିତାରୁ ଗୋଟିଏ ଯୋଡ଼ିଏ ନଜିର୍ ସହ)

ଉତ୍ତର - ପ୍ରେମ ଓ କରୁଣା ମୋ' କାବ୍ୟ ଚେତନାର ମୁଖ୍ୟ ସ୍ୱର । ଅନେକ ପ୍ରେମ ଚରିତାର୍ଥ ହୁଏ ନାହିଁ । ପ୍ରେମ ଏକ ଚଞ୍ଚଳ ଓ ଅସ୍ଥିର ଭାବାବେଗ । ଏହାର ସ୍ଥାୟିତ୍ୱ ମଧ୍ୟ କ୍ଷଣକାଳ । ସବୁ ସତ୍ତ୍ୱେ ଏହା ବିଭଙ୍ଗ । ସେଥିପାଇଁ ପ୍ରେମୀଯୁଗଳଙ୍କୁ ଆବଦ୍ଧ କରି ରଖିବା ନିମିତ୍ତ 'ବିବାହ'ର ପ୍ରଚଳନ । ଅଚରିତାର୍ଥ ରହିଯାଉଥିବା ପ୍ରେମ ଯୁଗେ ଯୁଗେ ପ୍ରେମ ଚେତନାକୁ ମହାର୍ଘ କରି ତୋଳିଛି । ପ୍ରେମୀଯୁଗଳଙ୍କୁ ଚିରନ୍ତନ ଏକ ଭାବାବେଗରେ ବାନ୍ଧିଦେଇଛି । ମୋ' କବିତାରେ ପ୍ରକଟିତ ପ୍ରେମର ଏ ଦୁଇଟିଯାକ ଧାରା, ହେଲେ, ମୁଁ କୋଉ ତା'ର ତର୍ଜମା କରିପାରିବି ? ପୁଣି ପ୍ରେମାବେଗ, ଉଦ୍‌ବେଳନ, ଅହରହ ଝୁରିହେବା, ଅନାଇଁ ରହୁଥିବା, ପାଉ ନ ଥିବା - ଏସବୁ କ'ଣ ବିଶ୍ଳେଷଣ ସାପେକ୍ଷ ?

'ତନ୍ମୟ ଧୂଳି'ରୁ ତଥାପି ଏ ଦୁଇଟି ଉଦ୍ଧୃତି । ଜାଣେନା, ମନକୁ ଯିବ କି ନା -

୧. "ମୁଁ ତୁମ କୋଳରେ ଥିଲାବେଳେ
ଚକ୍ରବାଳ ଧାରେ / କାହାର ଅସ୍ପଷ୍ଟ ହାତ
ଶୂନ୍ୟ ଉଲୁସାଇ କହିଦିଏ - 'ନାହିଁ ।' (ଅନଧିକାର)

୨. "ବୃନ୍ଦାଏ ଭଲ ପାଇବାକୁ ସେଦିନ / ଠାବ ଦେବାକୁ
ପ୍ରସ୍ତୁତ ହେଲା ନାହିଁ ଆକାଶ
ସମୁଦ୍ର ଅମଙ୍ଗ ହେଲା, ନାସ୍ତିକଲା
ଆଉ ଆଜି, ଯୋଉଠି ଖାଲି
ପ୍ରୟୋଜନ, ନିର୍ଲଜ୍ଜ ଗରଜ
ସନ୍ତର୍ପଣ ଦେବାନେବା, ସେଇଠି
ହୁରି ପଡ଼ିଚି
ଭଲପାଇବା, ଭଲପାଇବା ।"

(ଭଲପାଇବା)

ପ୍ରଶ୍ନ- ଓଡ଼ିଆ ପତ୍ରପତ୍ରିକାର ଇତିହାସରେ 'ବିଜୁଳି' ପରି ସ୍ୱଳ୍ପ ସ୍ଥାୟୀ ହେଲେ ବି 'ଇନ୍ଦ୍ରଧନୁ' ପରି ଅଭୁଲା ଆପଣଙ୍କ ସମ୍ପାଦିତ 'ଉଦ୍‌ଭାସ' । ଏ ସମ୍ପର୍କରେ ଆପଣଙ୍କ ଅନୁଭବ କ'ଣ ?

ଉତ୍ତର- ଭଲ ପ୍ରଶ୍ନଟିଏ । ଆଠବର୍ଷ କାଳ 'ଉଦ୍‌ଭାସ'ର 'ସମ୍ପାଦକୀୟ' ଲେଖିଲି । ରାତିରାତି ଅନିଦ୍ରା ହୋଇ ତା'ର ନାମକରଣ କଲି । ବିଜ୍ଞଜନଙ୍କ ଚେତନାରେ ଦାନା ବାନ୍ଧିଲା ପତ୍ରିକାଟି । ଉଚ୍ଚାଙ୍ଗ କବିତା (ସାହିତ୍ୟ) ର ଏହା ଥିଲା ଏକ ଉଚ୍ଚାଙ୍ଗ ପତ୍ରିକା । ସମସ୍ତେ ଏହା ସ୍ୱୀକାର କରୁଥିଲେ । ନୂଆ ନୂଆ ବିଭାଗମାନ ଏଥିରେ ସଂଯୋଜିତ ହୋଇଥିଲା । ମୁଦ୍ରଣ ତ୍ରୁଟି ଯେପରି ନ ରହେ, ସେଥିପ୍ରତି ଆମେ ସଜାଗ ଥିଲୁ । ମୋର ସହଯୋଗିଗଣ ବିନା ସ୍ୱାର୍ଥରେ ସମୟ ଓ ଶ୍ରମ ଦେଇ ପତ୍ରିକାଟିର ଅପ୍ରତିହତ ପ୍ରକାଶନରେ ବେଶ୍ ମନୋଯୋଗୀ ଥିଲେ । ମୁଖ୍ୟ ସମ୍ପାଦିକା ଭାବେ ମୁଁ ସେମାନଙ୍କଠାରେ ଋଣୀ ।

❖❖❖

# କବି ପ୍ରତିଭାରେ ପ୍ରତିଭାତ ପ୍ରତିଭା ଶତପଥୀ

## [ 'ସତ୍ୟବାଦୀ' ପକ୍ଷରୁ - ମମତା ବିଶୋଇ ]

ଆଧୁନିକ ଓଡ଼ିଆ କବିତା ଜଗତରେ ଜଣେ ପ୍ରତିସ୍ପର୍ଦ୍ଧୀ ପ୍ରଖ୍ୟାତ ଯଶସ୍ୱୀ କବିଭାବେ ଡକ୍ଟର ପ୍ରତିଭା ଶତପଥୀ ବେଶ୍ ପରିଚିତ । ଜୀବନର ଯାତନା, ଦୁଃଖକୁ ବେଶ୍ ପାଖରୁ ଅନୁଭବ କରିଥିବା କବି ଆଜି ଯେଉଁଠି ପହଞ୍ଚିଛନ୍ତି ତା' କେବଳ ନିଜ ଜିଦ୍, ଅଧ୍ୟବସାୟ ବଳରେ । ପିଲାବେଳର ଖୁବ୍ ଅଲିଅଳ ଗେହ୍ଲି ଝିଅଟିଏ ଯେ ଦିନେ ସଂସାରୀ ଜୀବନରେ ଅଭାବ ଅନଟନ ଭିତରେ ନିଜକୁ ପେଷି ଦେବ, ଏକଥା ନିଜର ଆଦ୍ୟ-ଯୌବନରେ କ'ଣ କେବେ ଚିନ୍ତା କରିଥିଲା ? ସେଦିନ ୪ବର୍ଷର ଝିଅ ପ୍ରତିଭାଙ୍କ ହାତ ଦେଖି ବୋଉ ହରିପ୍ରିୟାଙ୍କୁ, ଅଜା ଜ୍ୟୋତିଷଗଣନା କରି କହିଥିଲେ "ତୋର ଯେ ଝିଅ ବହୁତ କିଛି ଲେଖିବ । ଖାଲି କଲମ ଧରି ଚୌକି ଉପରେ ବସି ଲେଖିଯିବ ।" ସେତେବେଳର ଝିଅମାନଙ୍କୁ ଗୁରୁତ୍ୱ ଦିଆଯାଉ ନ ଥିବା ଚିନ୍ତାଧାରାରେ ବୋଉ ମନରେ ସୃଷ୍ଟି ହୋଇଥିଲା, ଝିଅପିଲାଟା କ'ଣ ଲେଖିବ ? ମାତ୍ର ପରବର୍ତ୍ତୀ ଜୀବନରେ ଏ କଥାକୁ ସତ୍ୟ ପ୍ରମାଣିତ କରିଥିବା ପ୍ରତିଭାଙ୍କୁ ନେଇ ବାପା ମା' ବେଶ୍ ଖୁସି ହୋଇଥିଲେ ।

ସାରସ୍ୱତ ସୃଷ୍ଟିର ପ୍ରଥମ ସୋପାନ ସମ୍ପର୍କରେ ଡଃ ଶତପଥୀ କହିଥିଲେ, ତାଙ୍କ ଅଜା ଥିଲେ ଅତ୍ୟନ୍ତ ବିଦ୍ୱାନ୍, ସେତେବେଳେ ଯଦିଓ ଝିଅମାନେ ପାଠ ପଢୁ ନ ଥିଲେ ତଥାପି ବୋଉକୁ ଅଜା ପାଠ ପଢ଼େଇଥିଲେ । ବୋଉ ସଂସ୍କୃତଠାରୁ ଆରମ୍ଭ କରି ଅନେକ ପୁରାଣ, ସାହିତ୍ୟ, ଶ୍ଳୋକ ଇତ୍ୟାଦି ପଢ଼ିଥିଲା । ତା'ର ପ୍ରଭାବ ମୋ ଉପରେ ପଡ଼ିଥିବ । ମୁଁ ସପ୍ତମ ଶ୍ରେଣୀରେ ପଢ଼ିଲାବେଳେ ରେଡ଼ିଓରୁ ଗୀତ ଶୁଣୁଶୁଣୁ ନିଜେ ଗୋଟିଏ କବିତା ଲେଖିଥିଲି । ମାତ୍ର ସଂକୋଚରେ ଶ୍ରେଣୀରେ ଶିକ୍ଷୟିତ୍ରୀଙ୍କୁ ମିଛ କହିଥିଲି ଯେ ରେଡ଼ିଓରୁ ଗୀତଟି ଟିପିଛି । ତାହା ଶିକ୍ଷକଶିକ୍ଷୟିତ୍ରୀ ସମସ୍ତଙ୍କୁ ଭଲ ଲାଗିଥିଲା, ସେଥିରେ ଜଣେ ଶିକ୍ଷୟିତ୍ରୀ ସ୍ୱର ଦେଇଥିଲେ ଓ ଆମେ ସବୁ ବାର୍ଷିକ ଉତ୍ସବରେ ସେହି ଗୀତକୁ ନେଇ ନୃତ୍ୟ ପରିବେଷଣ କରିଥିଲୁ । ମଧୁବାବୁଙ୍କ ପ୍ରତିଷ୍ଠିତ ବାଳିକା ସ୍କୁଲରୁ ପାଠ ପଢ଼ା ଆରମ୍ଭ କରିଥିଲି । ମାଇନର ପଢ଼ିଲି ଗୋପୀନାଥପୁର ସ୍କୁଲରେ । ତା'ପରେ ବହୁଗ୍ରାମ ବିବେକାନନ୍ଦ ବିଦ୍ୟାପୀଠରେ ପାଠ ପଢ଼ିଲି । ସେଠାରେ ବହୁ ମହାପୁରୁଷଙ୍କ ସମ୍ପର୍କରେ ସଭାସମିତି, ବକ୍ତୃତା, କବିତା ପ୍ରତିଯୋଗିତା ହେଉଥିଲା ଯାହା ଆମକୁ ଉଦ୍‌ବୁଦ୍ଧ କରୁଥିଲା । ମୁଁ ସେଥିରେ ଗୋଟିଏ

କବିତା ପାଠକରି ପୁରସ୍କୃତ ହୋଇଥିଲି ଏବଂ ସମ୍ପାଦକ ଜାନକୀ ପଟ୍ଟନାୟକ ମୋର ସେହି କବିତାକୁ ଆଣି 'ପ୍ରଜାତନ୍ତ୍ର'ର ନାରୀଜଗତରେ ପ୍ରକାଶ କରିଥିଲେ । ପ୍ରି ୟୁନିଭରସିଟିରେ ଯୋଗ ଦେବାବେଳକୁ ଦେଖିଲି ସମସ୍ତେ ମତେ କବି ବୋଲି ଚିହ୍ନି ଯାଇଛନ୍ତି । 'କଳିଙ୍ଗ' ଓ 'ପ୍ରଜାତନ୍ତ୍ର', 'ସମାଜ'ରେ ମୋର କବିତା ବାହାରୁଥିଲା । ମାଟ୍ରିକ ଫାଷ୍ଟ୍ ଡିଭିଜନରେ ପାସ୍ କରିଥିଲି, ଆଇ.ଏସ୍‌ସି. ରେ ଫାଷ୍ଟ୍ ହୋଇଥିଲି । ତା' ସହିତ କବିତା ଲେଖା ମଧ୍ୟ ଚାଲିଥିଲା । କମ୍ ବୟସରେ ଜଣେ କବିର ପରିଚୟ ପାଇଥିବାରୁ ମୁଁ ବେଶ୍ ଗୌରବ ଅନୁଭବ କରୁଥିଲି ।

ତା' ପରେ ପରେ ମୋର ବିବାହ ହୋଇଗଲା । ଶାଶୂଘର ବନ୍ଧୁକୁଟୁମ୍ବୀ ହେତୁ ମୁଁ ଆଉ ପାଠ ପଢ଼ିପାରିଲି ନାହିଁ; କିନ୍ତୁ ପରବର୍ତ୍ତୀ ସମୟରେ ଅଭାବ ଅନଟନ ମୋ ମନରେ ଅଧିକ ପଢ଼ିବାର ନିଶାକୁ ଜାଗ୍ରତ କରିଥିଲା, ଜିଦ୍ ମଧ୍ୟ ବଢ଼ାଇଥିଲା ଯେ, ମୁଁ ପାଠ ପଢ଼ିବି । ଘରୋଇଭାବେ ମୁଁ ବି.ଏ. ଏବଂ ଏମ୍.ଏ. ପାସ୍ କରିବା ପରେ ସରକାରୀ କଲେଜରେ ଚାକିରି ମଧ୍ୟ ପାଇଲି । ମୋର ଅନୁଭବ ଥିଲା ଯେ ପୃଥିବୀର ବଡ଼ ବଡ଼ ପ୍ରତିଭାମାନେ ମଧ୍ୟ ଅର୍ଥାଭାବ ଓ ଖାଦ୍ୟାଭାବରେ ଭାଙ୍ଗି ନ ପଡ଼ି କିଛି ଚମତ୍କାରିତା ପ୍ରଦର୍ଶନ କରିଯାଇଛନ୍ତି । ଯାହା ତାଙ୍କୁ ତାଙ୍କ ଜିଦ୍‌ରେ ଅଟଳ ରହିବାକୁ ପ୍ରୋତ୍ସାହିତ କରିଥିଲା ଏବଂ ଘରେ ରହି ସଂସାର ଚଳାଇବା ସହିତ ପାଠ ପଢ଼ିଥିଲେ ।

ସାରସ୍ୱତ ସୃଷ୍ଟି, ଅଧ୍ୟାପନା ଓ ପରିବାର, ଏ ତିନି ସଂସାରକୁ କିଭଳି ପରିଚାଳନା କରନ୍ତି ପଚାରିବାରେ ସେ କହନ୍ତି ଯେ ମୁଁ ସବୁପ୍ରକାର କାମ କରିପାରେ । ଗୁହାଳ ସଫା ଠାରୁ ରୋଷେଇ, ସିଲେଇ, ଠାକୁର ପୂଜା, ସେବା କାମ ପର୍ଯ୍ୟନ୍ତ ସବୁ କଥା ବୋଉ, ଜେଜେମା' ଆମକୁ ଶିଖାଇଥିଲେ । ଏସବୁ ଥିଲା ପରିବାରର ସଂସ୍କାର । ଜେଜେମା' କହୁଥିଲେ ଘରକାମ ସହଜ, ପାଠପଢ଼ା କଷ୍ଟ । ମୁଁ କିନ୍ତୁ ଭଲ ପଢୁଥିଲି । ମୁଁ ବଡ଼ହେବା ପରେ ମୋ ବୋଉକୁ କହୁଥିଲି, ଯିଏ ଭଲ ପାଠ ପଢ଼େ, ସେ ସବୁ କାମ ଭଲ କରିପାରିବ । ଏଥିପାଇଁ ଖାଲି ଯାହା ସୁବିଧା ଟିକେ ଦରକାର ।

କବିତା ଲେଖିବାକୁ ମନବଳାଇବା ସମ୍ପର୍କରେ ସେ କହନ୍ତି, କେମିତି କାହିଁକି ଲେଖିଲି କାରଣଟା ଠିକ୍ ଭାବେ କହିପାରିବିନି । ଗୋପାଳଚନ୍ଦ୍ର ପ୍ରହରାଜ ମୋର ଜେଜେ, ମନେହୁଏ ଭାଷା ସହିତ୍ୟର ପ୍ରଭାବ ବଂଶଗତ ହୋଇପାରେ । ଏହା ଭିନ୍ନ ବୋଉ ସେତେବେଳେ ମାଇନର ପଢ଼ିଥିଲା, ଓଡ଼ିଆ, ବଙ୍ଗଳା, ସଂସ୍କୃତଭାଷାରେ ସେ ଖୁବ୍ ଧୁରୀଣ ଥିଲା ଏବଂ ଅନେକ ବହି ପଢୁଥିଲା, ଆମକୁ ଶୁଣାଉଥିଲା, ଖରାବେଳେ ବାହାରକୁ ବୁଲିବାକୁ ଛାଡୁ ନ ଥିବାରୁ ମୁଁ ମଧ୍ୟ ବୋଉ ପାଖରେ ବସି ଅନେକ ବହି ପଢ଼ିଛି । ଯାହା, ମନରେ କଲମ ଚଳାଇବାର ଭାବ ସୃଷ୍ଟି କରିଛି । ବାପା ମଧ୍ୟ ଅନେକ ବହି କିଣି ରଖିଥିଲେ ପଢ଼ିବାକୁ ।

ସାଂସାରିକ ଜଞ୍ଜାଳ ଭିତରେ ଅଧ୍ୟାପନା ବୃତ୍ତି ଓ ସାହିତ୍ୟ ସୃଷ୍ଟିରେ କିଛି ପ୍ରତିବନ୍ଧକ ଦେଖାଦେବା ସମ୍ପର୍କରେ କହନ୍ତି ଯେ ବିବାହ ଓ ସଂସାରୀ ଜୀବନପରେ ଲେଖାଲେଖିରେ ବାଧା ସୃଷ୍ଟି ହେଲା । ମାତ୍ର କିଛିଦିନ ପରେ ପୁଣି ଲେଖା ଆରମ୍ଭ କଲି । ପ୍ରଥମେ ପ୍ରଥମେ ସ୍ୱାମୀ ଲେଖାଲେଖିରେ କିଛି ଦିନ ଉତ୍ସାହିତ କରିଥିଲେ, ମାତ୍ର ପର୍ବତ ଆରୋହୀଟିଏ ଯେତେ ଶୀର୍ଷଦେଶକୁ ଆରୋହଣ କରେ ସେ ଯେତେ ନିଃସଙ୍ଗବୋଧ କଲାଭଳି ମୁଁ କାବ୍ୟସାଧନାକ୍ଷେତ୍ରରେ ଯେତିକି ଆଗକୁ ଅଗ୍ରସର ହେଲି ସେତିକି ନିଃସଙ୍ଗ ବୋଧକଲି । ପରିବାର ପକ୍ଷରୁ ଏପରିକି ସ୍ୱାମୀଙ୍କ ପକ୍ଷରୁ ସେତିକି ଉତ୍ସାହ ମିଳିଲାନି; କିନ୍ତୁ ମୁଁ ନିଜ ଭିତରେ ଗୋଟିଏ ସତ୍ତାକୁ ଅନୁଭବ କରିପାରିଲି, ଚିହ୍ନିପାରିଲି । ପ୍ରସଙ୍ଗକ୍ରମେ 'ସାହାଡ଼ା ସୁନ୍ଦରୀ'ର ଉଦାହରଣ ଦେଇ କହିଲେ ଯେ ସାହାଡ଼ା ସୁନ୍ଦରୀ ଗଛଟି ଦେଖିବାକୁ ଆବୁଡ଼ାଖାବୁଡ଼ା । ତାକୁ ନେଇ ମୁଁ ଗୋଟିଏ 'ସାହାଡ଼ା ସୁନ୍ଦରୀ' କବିତା ଲେଖିଥିଲି । ମୁଁ ବାହାରକୁ ଗୋଟିଏ ଆବୁଡ଼ା ଖାବୁଡ଼ା ଜୀବନ ବଞ୍ଚିଛି ସତ । ବାଲ୍ୟ ଜୀବନ, ଯୌବନ, ବିବାହ, ପରିବାର, ସଂସାର ଜଞ୍ଜାଳ, ଅଭାବ ଅନଟନ ସବୁ ଭିତରେ ଗୋଟିଏ ଅନ୍ତର୍ନିହିତ ସତ୍ତା ରହିଥିବାର ଅନୁଭବ କଲି । ଯେଉଁ ସତ୍ତା ନିଜକୁ, ନିଜ ଭାଗ୍ୟକୁ ମଧ୍ୟ ଆହ୍ୱାନ ଦେଇପାରେ । ତୁ ମତେ କ'ଣ ଦେଇଛୁ, କ'ଣ ଦେଇପାରିବୁ ? ତା' ପରେ ମୁଁ କବିତା ଦିଗରେ ବିଭିନ୍ନ ଦିଗନ୍ତ ଉନ୍ମୋଚନ କରିବାରେ ଲାଗିଲି, ସେଥିରେ ପୂରା ନିମଜ୍ଜିତ ହୋଇଗଲି । ପରବର୍ତ୍ତୀ ସମୟରେ ମୋ ଶାଶୂ, ବୋଉ ଓ ନଣନ୍ଦମାନେ ମୋର କାବ୍ୟିକ ରଚନାରେ ବିଶେଷ ସହାୟକ ହୋଇଥିଲେ । ସେମାନେ କିଛିଟା ଘର ଦାୟିତ୍ୱ ନେବା ଫଳରେ ମୁଁ ଲେଖାରେ ମନୋନିବେଶ କରିବାରେ ସମର୍ଥ ହୋଇପାରିଛି । ଏକପଟେ ସାରସ୍ୱତ ସାଧନା, ଅନ୍ୟପଟେ ସଂସାର ଦାୟିତ୍ୱ । ପିଲାମାନଙ୍କୁ ସମସ୍ତ ପ୍ରକାର ସୁଯୋଗ ଦେଇଛି, ସେମାନେ ନିଜର ରୁଚି ଅନୁସାରେ ନିଜ ନିଜର ବାଟ ବାଛି ନେଇ ପ୍ରତିଷ୍ଠିତ ହୋଇଛନ୍ତି । ସଂସାର ସହିତ ସମାନ୍ତରାଳ ଭାବରେ ଗତି କଲାବେଳେ ଅଧିକ ଦ୍ରୁତ ଗତିରେ ମୋ କାବ୍ୟିକ ଜୀବନ ଗତି କରିଥିଲା । କବିତା ଲେଖିଲି । ଅଭାବ ଅନଟନର ସଂସାର ଭିତରେ ବିଭିନ୍ନ ପରିସ୍ଥିତିର ସାମ୍ନା କଲାବେଳେ ତାଙ୍କ ମନ ଭିତରକୁ ଝଡ଼ଭଳି ପଶିଆସିଥିବା କବିତା 'ହରାଇବାପରେ', 'ସାହାଡ଼ା ସୁନ୍ଦରୀ', 'କହିହୁଏନା', 'ଆଜି ଆସ ଏଇଲେ', 'ପରୀ', 'ବସ୍ତ୍ରହରଣ ନୁହେଁ', 'ଡରିଯାଆନ୍ତି ଈଶ୍ୱର', 'ତୁମପାଇଁ ଥରେ'... ଇତ୍ୟାଦି ଅନେକ କବିତା ସୃଷ୍ଟି ସେ କରିଛନ୍ତି ।

ବିଶେଷକରି ଏ ମୋହମାୟା ସଂସାରରେ ଧନ, ଦଉଲତ, ଟଙ୍କା ସୁନା ଗୋଟେ ନିଶା । ଯାହାକୁ ରଖି ସଞ୍ଚୟ କରି ସମ୍ଭାଳୁ ସମ୍ଭାଳୁ ବେଳ ସରିଯାଏ । ହେଜ ହୁଏ ନାହିଁ ଯେ ଏସବୁ ଛାଡ଼ି ଯିବାକୁ ହେବ । ଏ କଥା ମୁଁ ଅନୁଭବ କରେ; କିନ୍ତୁ ଅନୁଭବକୁ ନେଇ

ମୋର ଯେଉଁ ନିଶା ଥାଏ, ସେସବୁକୁ ବିଭିନ୍ନ ବାଗରେ ସଜେଇ ବସେଇ ମୂର୍ତ୍ତି କରିବାର ଜିଦ୍‌ଖୋର ଭାବ ମୋର ଅନ୍ତଃକରଣକୁ ଶକ୍ତିଯୁକ୍ତ କରିଛି । ମୋର ବିଶ୍ୱାସ, ଏସବୁକୁ ମୁଁ ଛାଡ଼ିଯିବି ନାହିଁ ।

କବିତା ବ୍ୟତୀତ ଅନ୍ୟାନ୍ୟ ସୃଷ୍ଟି ସମ୍ପର୍କରେ ଡଃ ଶତପଥୀ କହନ୍ତି, ବହୁ ବଡ଼ ବଡ଼ ଔପନ୍ୟାସିକଙ୍କ ଉପନ୍ୟାସ ଓ ବିଦେଶୀ କବିଙ୍କ କବିତା ମୁଁ ଅନୁବାଦ କରିଛି । ଫେଲୋସିପ୍‌ରେ ମୁଁ ସ୍ଥିର କରିଥିବା ବିଷୟଟି ଥିଲା 'ରିଏଲିଟି ଅଫ୍ ଓମେନ୍ ଏକ୍‌ଜିଷ୍ଟେନ୍‌ସ'... । ସେତେବେଳେ ନାରୀ ବିଷୟରେ ସରଳା ଦେବୀଙ୍କ ପରେ ନାରୀ ଅସ୍ତିତ୍ୱ ସମ୍ପର୍କରେ କୌଣସି ବହି ନ ଥିଲା । ସେ ବହି ଲେଖିଲାବେଳେ ମୁଁ ହିନ୍ଦୀ, ଇଂରାଜୀର ଅନେକ ବହି କିଣି ପଢ଼ିଥିଲି ଏବଂ ନାରୀର ଅସ୍ତିତ୍ୱ ସମ୍ପର୍କରେ ସେ ପୁସ୍ତକଟିକୁ ରଚନା କରିଥିଲି । ବର୍ତ୍ତମାନ ନାରୀକୁ ନେଇ ଅନେକ ବହି ବାହାରିଥିଲେ ମଧ୍ୟ, ମୋ ବହିର ଉଦ୍ଧୃତି ସେହିସବୁ ବହିରେ ଦେଖିବାକୁ ମିଳୁଥିଲେ ମଧ୍ୟ ଉଦ୍ଧୃତ କରାଯାଇଥିବ । ମୋର ପୁସ୍ତକର ମୂଳ ନାମକୁ ଲେଖିକାମାନେ ଉଲ୍ଲେଖ କରି ନାହାନ୍ତି । ମୁଁ ଗୁରୁତ୍ୱ ଦେଇ ନାହିଁ କାରଣ 'ନଲେଜ୍ ଇଜ୍ ଅଲୱେଜ୍ ଟୁ ସେୟାର' ।

ଆପଣଙ୍କ ସୃଷ୍ଟିରେ 'ଶବରୀ' ଏକ ଭିନ୍ନସ୍ୱାଦର କାବ୍ୟ ଯାହାକୁ ନେଇ ଆପଣ ଖୁବ୍ ଚର୍ଚ୍ଚିତ ହୋଇଥିବା ସମ୍ପର୍କରେ ଡଃ ଶତପଥୀ କହନ୍ତି ବାଣୀବିହାରରେ ଗୋଟିଏ ଜିଆକୁ ଦେଖି ନିଜକୁ ତା' ସହିତ ତୁଳନା କରିଥିଲି । ସେତେବେଳେ ଦୁଇଟି କବିତା ଲେଖିଥିଲି ଶ୍ରମଣା-ଏକ ଓ ଶ୍ରମଣା-ଦୁଇ; ଯାହା 'ଝଙ୍କାର'ରେ ବାହାରିଥିଲା କିନ୍ତୁ ଶବରୀ ତା' ଚଉଦ ବର୍ଷ ପରେ ମନଭିତରେ ଉଦୟ ହେଲେ । ଏହି କାବ୍ୟକୁ ରୂପ ଦେବା ପାଇଁ ମୁଁ ସମସ୍ତ ରାମାୟଣ ଅଧ୍ୟୟନ କରିଥିଲି । ପ୍ରତ୍ୟେକ ରାମାୟଣରେ ଶବରୀଙ୍କ ବିଷୟରେ ମାତ୍ର ଧାଡ଼ିଏ ଲେଖାଁ ଉପସ୍ଥାପନ କରାଯାଇଛି ଏବଂ ପରିଶେଷରେ ଶବରୀ ମୋକ୍ଷ ପାଇଯାଇଛନ୍ତି । ଏଭଳି ଜଣେ ମହିଳା ରାମ ଭକ୍ତ ବୋଲି ସମସ୍ତେ ସ୍ୱୀକାର କରିଥିଲେ ମଧ୍ୟ ତାଙ୍କ ସମ୍ପର୍କରେ ଅଧିକ କେହି ଲେଖି ନାହାନ୍ତି କାହିଁକି ବୋଲି ମନରେ ପ୍ରଶ୍ନ ଆସିଲା । ସେ ଜଣେ ଅରଣ୍ୟବାସିନୀ, ଆଦିବାସୀ ଭଳି ମହିଳା ହୋଇଥିବେ ନିଶ୍ଚୟ, ସେଥିପାଇଁ ବୋଧହୁଏ ଅଧିକ ଗୁରୁତ୍ୱ ଦିଆଯାଇ ନାହିଁ ବୋଲି ଅନୁଭବ ଆସିଲା । ଯାହାଙ୍କ ବିଷୟରେ କିଛି ନାହିଁ, ତାଙ୍କ ବିଷୟରେ ଲେଖିବାକୁ ସୁବିଧା ହେବ ଅନୁଭବ କରି ଆରମ୍ଭ କରିଥିଲି 'ଶବରୀ' ।

ରାମାୟଣରେ ଶବରୀ ମୋକ୍ଷ ପାଇଛନ୍ତି, ମାତ୍ର ମୋ 'ଶବରୀ' ମୋକ୍ଷ ଚାହିଁ ନାହାନ୍ତି । ସେ କହୁଛନ୍ତି ରାମଚନ୍ଦ୍ର ରାଜପୁତ୍ର, ରାଜ୍ୟରୁ ବିତାଡ଼ିତ, ତାଙ୍କ ସ୍ତ୍ରୀକୁ ରାକ୍ଷସ ନେଇଛି, ରାମଚନ୍ଦ୍ର ତାଙ୍କୁ ଖୋଜି ପାଉ ନାହାନ୍ତି, ସୂର୍ପଣଖାର ନାକ କାଟିଛନ୍ତି, ସେ କ'ଣ

ମୋତେ ମୋକ୍ଷଦେବେ ? ମୁଁ କେବଳ ବାରମ୍ବାର ଜନ୍ମ ହେବାକୁ ଚାହେଁ, ଏହି ଦଳିତ ନିଷ୍ପେଷିତ ଲୋକଙ୍କ ସେବାରେ ନିଜକୁ ନିୟୋଜିତ କରୁଥାଏଁ । ଲୁହ ପୋଛି ଦେବା ମୋର ବ୍ରତ । ରାମଚନ୍ଦ୍ରଙ୍କୁ କହୁଛନ୍ତି ହେ ରାଜପୁତ୍ର, ତୁମେ ବହୁତ ଅହଂକାରୀ, ତମଠି ଦେବତାର ଅହଂକାର ମଧ୍ୟ ଅଛି । ସବୁକୁ ମୁଁ ପୋଛି ଦେଇ ତୁମକୁ ମୁଁ ନୂଆ ମଣିଷଭାବେ ଗଢ଼ିଦେବି । ଯା'ର ହୃଦୟବତ୍ତା ଥିବ, ନିଷ୍ଠୁରତା ନ ଥିବ, ଅନ୍ୟମାନଙ୍କର ଦୁଃଖକୁ ବୁଝିପାରୁଥିବ, ଅହଂକାର ନ ଥିବ, ସେଭଳି ଏକ ପୁରୁଷକୁ ଜନ୍ମ ଦେବି; କିନ୍ତୁ ଏହା ଗର୍ଭଧାରଣଜନିତ ଜନ୍ମ ନୁହେଁ, ମୁଁ ତୁମ ଚେତନାକୁ ପରିବର୍ତ୍ତିତ କରିଦେବି । ଏଥିରେ ଭକ୍ତି ସମର୍ପଣ ଅଛି, ଏଥିରେ ରାଗାତ୍ମିକ ସମ୍ପର୍କ ରହିଛି ଯେ ଜଣଙ୍କୁ ନ ଦେଖି, ଗଭୀର ଭାବେ ତାଙ୍କ ପ୍ରତି ଆଚ୍ଛନ୍ନ ହୋଇପଡ଼ି ଭକ୍ତିପ୍ରେମ ନିବେଦିତ ସମର୍ପଣ ଭାବ ନାରୀର୍ ଏକ ନୂଆକଥା ଯାହା ଆଉ କେହି ଲେଖି ନାହାନ୍ତି । ଏହା ଥିଲା ଶବରୀଙ୍କର ମାତୃରୂପ । ଏଥିରେ ଆସୁଛି ଭକ୍ତିସମର୍ପଣ ସହିତ ଭଲ ପାଇବା, ମାତ୍ର ସେ ମୋକ୍ଷ ଚାହୁ ନାହାନ୍ତି । ମୁଁ ଏହି ଅରଣ୍ୟବାସୀଙ୍କ ସହିତ ରହି ତାଙ୍କ ଦୁଃଖ ମୋଚନ କରିବି । ଯାହା କୌଣସି ରାମାୟଣକାର ଶବରୀ ଚରିତ୍ରରେ ପ୍ରକାଶ କରି ନାହାନ୍ତି । ଏହି କାବ୍ୟକୁ ଓଡ଼ିଆ ଲୋକ ଖୁବ୍ ପ୍ରଶଂସା କଲେ ଏବଂ ହିନ୍ଦୀର ପ୍ରଫେସର ବିଦ୍ୟାନିବାସ ମିଶ୍ର ଏହାକୁ 'ମହାକାବ୍ୟ'ର ମାନ୍ୟତା ଦେଇଥିଲେ କାରଣ ଏହା ଖଣ୍ଡକାବ୍ୟ ନୁହେଁ ବୋଲି ସେ କହିଥିଲେ । ଚରିତ୍ର ଓ ଚେତନାରେ 'ଶବରୀ' ଜୀବନକାମୀ ।

ଭାବ ପ୍ରକାଶ ନିମନ୍ତେ ଗଳ୍ପ, କବିତା କେଉଁଟି ପ୍ରକୃଷ୍ଟ ମାଧ୍ୟମ ସମ୍ପର୍କରେ ସେ କହନ୍ତି ଯେ ଗଳ୍ପ ଓ ପ୍ରବନ୍ଧ ନିମନ୍ତେ ବ୍ୟାପକ ପରିସର ମିଳେ । ପ୍ରବନ୍ଧରେ ନିଜସ୍ୱ ମତ ନ ଥାଏ ଯାହା ଗଳ୍ପରେ ଥାଏ । ମାତ୍ର କବିତା ପାଇଁ ସୀମିତ ସ୍ଥାନ ନିରୂପିତ ହୋଇଥାଏ । ଶବ୍ଦକୁ ଅର୍ଥରେ ଖୁନ୍ଦିଖାନ୍ଦି, ଓଜନଦାର ଶବ୍ଦ ନିୟନ୍ତ୍ରଣ କରି କବିତାରେ ପ୍ରୟୋଗ କରିବାପାଇଁ ପଡ଼େ । ବହୁକଥା, ଭାବ ପ୍ରସଙ୍ଗକୁ କମ୍ ସ୍ଥାନ ଓ କମ୍ ଶବ୍ଦରେ ପ୍ରକାଶ କରିବାକୁ ପଡ଼ିଥାଏ କବିତାରେ । ତେଣୁ ମୁଁ ଭାବେ, କବିତା ରଚନା କଷ୍ଟକର ଏବଂ ଭଲ କବିତା ଲେଖିବା ଅତ୍ୟନ୍ତ କଷ୍ଟକର ଯାହା ମୋ ଅଭିଜ୍ଞତାରୁ ମୁଁ ଜାଣେ ।

ଆପଣଙ୍କର ଅନେକ କବିତା ଲିରିକ୍‌ଧର୍ମୀ ବୋଲି ଅନୁଭବ ହେବା ସମ୍ପର୍କରେ ସେ କହନ୍ତି, ତାଙ୍କ ରଚିତ କବିତାରେ ଛନ୍ଦ ରହିଛି । ସେ ଛନ୍ଦ ଉଚ୍ଚାରଣରେ, ଶବ୍ଦଖଣ୍ଡରେ, ଧାଡ଼ି ଶେଷରେ ଏଭଳି ଶବ୍ଦ ସଂଯୋଜନା ହୋଇଥାଏ ଯାହାକୁ ପଢ଼ିଲେ ସଙ୍ଗୀତଧର୍ମୀ ବୋଲି କୁହାଯାଇପାରିବ । ବର୍ତ୍ତମାନ ଯେଉଁ କବିତାକୁ ଅତ୍ୟାଧୁନିକ କବିତା କୁହାଯାଉଛି, ସମ୍ପୂର୍ଣ୍ଣ ଗଦ୍ୟଧର୍ମୀ କବିତାରେ ଭାବ ନ ଥିଲେ ତାହା ଆଦୃତ ହୋଇପାରିବ ନାହିଁ, ମାତ୍ର ସେହି ଗଦ୍ୟଧର୍ମୀ ରଚନା ଭିତରେ ଏଭଳି ପଦ୍ୟାଂଶ ଥାଏ, ଯାହାକୁ ଚିହ୍ନିବା ଲୋକ କେବଳ ଚିହ୍ନିବ ।

ଆଜିକାଲି ଅନେକ କଲମ ଚାଳନା କରି ସାହିତ୍ୟିକ ମର୍ଯ୍ୟାଦା ଲାଭ କରିଥିବା ନେଇ ସେ କହନ୍ତି ଯେ ପ୍ରତି କ୍ଷେତ୍ରରେ ଭଲ ଭେଲ ଭର୍ତ୍ତି ହେଇ ରହିଛି । 'ଆନ୍ ଆର୍ଟିଷ୍ଟସ୍ ଲାଇଫ୍ ଇଜ୍ ଲଙ୍ଗ୍ ଆଣ୍ଡ୍ ଲଭ୍‌ଲି ସୁଇସାଇଡ୍ ।' ତେଣୁ କିଏ, କେଉଁ ଚିନ୍ତାଧାରା ନେଇ ଲେଖୁଛନ୍ତି ତାହା ଦେଖିବା କଥା ।

ଅଧିକାଂଶ କବିତାରେ ନାରୀସତ୍ତା ଉପରେ ଗୁରୁତ୍ୱ ଦେବା ପରିପ୍ରେକ୍ଷୀରେ ସେ କହନ୍ତି ଯେ ପ୍ରଥମତଃ ମୁଁ ନାରୀଭାବେ ଜନ୍ମ ହେଲି । ଯେହେତୁ ନାରୀ ଭାବେ ଜନ୍ମ ହେଇଛି ନାରୀକଥା ନ କହିବି କେମିତି ? ନାରୀ ହେଉଛି ମୋ ନିଜର ହୃଦୟର, ରକ୍ତର । ଯଦି ମୁଁ ଗୋଟିଏ ପୁରୁଷର କଥା ଦାମ୍ଭିକତାର ସହିତ କହିବାକୁ ଚେଷ୍ଟା କରେ ତାହା ହୁଏତ ଏତେ ହୃଦୟସ୍ପର୍ଶୀ ହୋଇପାରିବ ନାହିଁ । ନାରୀଟିଏ ନାରୀର କଥା ହିଁ ଭଲଭାବେ କହିପାରିବ । ମନ ଭିତରୁ ଯେଉଁଟା ଆସେ ତାହା ତା'ର ହୃଦୟର କଥା । ଥରେ ମୁଁ 'ସେଲିମ୍‌ର ପତ୍ର' ଲେଖିଥିଲି । ଏ ନେଇ ଅନେକ ପ୍ରଶ୍ନ କରିଥିଲେ କେମିତି ଏକ ପୁରୁଷ ଚରିତ୍ରକୁ ଏଭଳି ଭାବେ ରୂପ ଦେଲି । ମାତ୍ର ଜଣେ କବି ବା କଳାକାର ଚାହିଁଲେ ସେ କାୟା ପରିବର୍ତ୍ତନ କରିପାରିବ । ପୁରୁଷ ଚେତନା ଓ ନାରୀ ଚେତନା ମଧ୍ୟରେ ଯାତାୟାତ ସମ୍ଭବ ।

କବିତା ରଚନା କରିବାର ସ୍ୱତନ୍ତ୍ରତା ସମ୍ପର୍କରେ ସେ କହନ୍ତି ଯେଉଁ କବିତା ଲେଖା ହୋଇ ନାହିଁ ତା' ହେଉଛି ଶୂନ୍ୟର କବିତା, ସେ ବ୍ୟାକୁଳତାପୂର୍ଣ୍ଣ ହୃଦୟ ଦେଖି ଓହ୍ଲାଏ । ଯେଉଁ ହୃଦୟ ତାକୁ ମୁଗ୍ଧ ରୂପ ପ୍ରଦାନ କରିପାରିବ । କବିତାରେ ମୁଖ୍ୟତଃ ତିନିଟି ବିଷୟ ଥାଏ । ତାହା ବକ୍ତବ୍ୟ, ଶୈଳୀ ଓ ନିୟନ୍ତ୍ରଣ । ଏମାନେ ପରସ୍ପର ପ୍ରତି ସଚେତନ ହୋଇ ନ ଥିବେ, ମାତ୍ର ନିଜ ନିଜ ସ୍ଥାନରେ ସ୍ଥିର ଥିବେ, ସେତିକିବେଳେ କବିତାରେ ପ୍ରାଣପ୍ରତିଷ୍ଠା ହୋଇଥାଏ, ସେ କବିତାରେ ଦାମ୍ଭିକତା ଥାଏ ।

ଉତ୍ତର ପିଢ଼ିର ଲେଖକ-ଲେଖିକାଙ୍କ ସମ୍ପର୍କରେ ସେ କହିଥିଲେ ଯେ ଅନେକ ଖୁବ୍ ଭଲ ଲେଖା ଲେଖୁଛନ୍ତି । ମନକୁ, ହୃଦୟକୁ ଛୁଇଁଥିବା କବିତା ବା ଗଳ୍ପ ପଢ଼ିଲେ ନୂତନ ଲେଖକ-ଲେଖିକାମାନଙ୍କୁ ମୁଁ ଫୋନ୍ କରି ବଧେଇ ଜଣାଏ ଏବଂ ତାଙ୍କୁ ଉତ୍ସାହିତ କରିଥାଏ । ସମାଜର ପ୍ରତି କ୍ଷେତ୍ରରେ ଆପଣ ପ୍ରତିଷ୍ଠିତ ଏବଂ ସନ୍ତୋଷ ଲାଭ କରିଛନ୍ତି, ଆଉ କିଛି ଅଭାବବୋଧ ଆପଣଙ୍କ ପାଖରେ ରହିଛି କି ? ଉତ୍ତରରେ ସେ କହନ୍ତି, ଜଣେ ମଣିଷ ସବୁକ୍ଷେତ୍ରରେ ପ୍ରତିଷ୍ଠା ତଥା ଆତ୍ମସନ୍ତୋଷ ଲାଭ କରିଛି, ଏକଥା କେହି କହିପାରିବେ ନାହିଁ । ପାରିବାରିକ ସମସ୍ୟା ସମ୍ପର୍କରେ କୁହାଯାଇପାରେନା । ପୂର୍ବରୁ ଯାହା ବାଧୁ ନ ଥିଲା ବର୍ତ୍ତମାନ ତାହା ବାଧୁଛି, ମାତ୍ର ସେହି କଷ୍ଟ କେବେ ମତେ କାବୁ କରିବା ପାଇଁ ସମର୍ଥ ହୋଇପାରିନି ଆଜିଯାଏ । ଏସବୁ କେବଳ ମୋ' ପ୍ରତି ସରସ୍ୱତୀଙ୍କ କୃପା ବୋଲି ମୁଁ ଅନୁଭବ କରେ । କେବଳ ଈଶ୍ୱରଙ୍କୁ ପ୍ରାର୍ଥନା କରେ, ସେ ଶେଷ ପର୍ଯ୍ୟନ୍ତ ମୋ ଆଖି ଏବଂ ହାତ ଦୁଇଟିକୁ ସଚଳ କରି ରଖିଥା'ନ୍ତୁ, ଅନ୍ତତଃ ମୁଁ ଦୁଇ ପୃଷ୍ଠା କବିତା ଲେଖିପାରେ, ଆଉ କିଛି ଆବଶ୍ୟକ ନାହିଁ ।



# ଅନୁଭବ ମୋ କବିତାର ପୁଞ୍ଜି

ପ୍ରଶ୍ନ- ଆଧୁନିକ କବିତା କ୍ଷେତ୍ରରେ ଆପଣ ଜଣେ ସ୍ୱର୍ଦ୍ଧିତ ସ୍ୱର, ଯଶସ୍ୱୀ କବି । କହିବେକି ଆପଣଙ୍କ ସୃଜନ ଯାତ୍ରାର ଅଥମାରମ୍ଭ କେବେ ଏବଂ କେଉଁ ପରିସ୍ଥିତିରେ ହୋଇଥିଲା ।

ଉତ୍ତର- ମୋର ସୃଜନ ଯାତ୍ରା ଦଶ/ବାର ବର୍ଷ ବୟସରୁ ଆରମ୍ଭ ହୋଇଛି । ଗାଁର କର୍‌ନାଳର ନୀଳକଇଁ, ଧାନ କିଆରିର ସବୁଜିମା, କଦଳୀବଣରେ ଉଡ଼ି ବୁଲୁଥିବା ପ୍ରଜାପତି, ପଦ୍ମ ପୋଖରୀ-ହିଡ଼ ଭର୍ତ୍ତି କଙ୍କଡ଼ାଗାଡ଼, ବୁଦା ଗହଳରେ ଲୁଚିଛପି ହସୁଥିବା ପାଞ୍ଚ ଆଙ୍ଗୁଳିଆ ଫୁଲ, ଏମାନେ ସମସ୍ତେ ମୋର କବିତାର ପ୍ରେରଣା । ସପ୍ତମ ଶ୍ରେଣୀରେ ପଢୁଥିବାବେଳେ ମୁଁ ଗୋଟିଏ ଗୀତ ଲେଖିଥିଲି- କହିଥିଲି, ଯାକୁ ମୁଁ ରେଡ଼ିଓରୁ ଟିପିଛି । ନ ହେଲେ, କିଏ ବା ବିଶ୍ୱାସ କରିଥାନ୍ତା ? ଆମ ମାଇନର ସ୍କୁଲର ଗୀତ ମାଷ୍ଟ୍ରାଣୀ ସ୍ୱର ସଂଯୋଗ କରିଥିଲେ ଓ ସ୍କୁଲ ବାର୍ଷିକ ଉତ୍ସବରେ ତା'ର ନୃତ୍ୟରୂପ ମୁଁ ଦେଇଥିଲି ।

ପ୍ରଶ୍ନ- ଆପଣ ଏକ ସମୃଦ୍ଧ ସାରସ୍ୱତ ପରିବାରରୁ ଆସିଛନ୍ତି । ଆପଣଙ୍କପାଇଁ ପରିବାରର ପ୍ରେରଣା କେତେ ଦୂର ମହତ୍ତ୍ୱପୂର୍ଣ୍ଣ ଥିଲା ?

ଉତ୍ତର- ପରିବାର, ମୁଁ ଭାବେ, ସିଧାସଳଖ ହୁଏତ ପ୍ରେରଣିତ କରି ନାହିଁ, କିନ୍ତୁ ମୋ ଜେଜେ ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଭାଷା ସଚେତନତା, ବାପାଙ୍କ ଗୀତ, ବୋଉର 'ଦକ୍ଷଯଜ୍ଞ', 'ଧ୍ରୁବଚରିତ' ଆଦି କାବ୍ୟ ମୁଖସ୍ଥ କରି ଗାଇ ଆମକୁ ଶୁଆଇବା, ଆଈର ଢଗଢମାଳି, ଏ ସବୁ କିଛି ମୋତେ ନିଶ୍ଚୟ ପ୍ରେରଣିତ କରିଥିଲା ।

ପ୍ରଶ୍ନ- ଆପଣ ଯେତେବେଳେ କବିତା କ୍ଷେତ୍ରରେ ପାଦ ଦେଲେ, ସେତେବେଳେ ଆଧୁନିକ ଓଡ଼ିଆ କବିତା ଉପରେ ପାରମ୍ପରିକ କବିତାର ପ୍ରଭାବ ଥିଲା । ତଥାପି ଆଧୁନିକତା ବେଶ୍ ଭଲ ଭାବେ ଦାନା ବାନ୍ଧି ସାରିଥିଲା । ଏହି ଯୁଗସନ୍ଧିକୁ ଆପଣ କେଉଁଭଳି ଭାବେ ସାମ୍ନା କରିଥିଲେ ? ଆପଣ ପ୍ରଥମେ କେଉଁ ଆଡ଼କୁ ଢଳିଥିଲେ ?

ଉତ୍ତର- ହଁ, ପାରମ୍ପରିକତାର ପ୍ରଭାବ ରହିଥିଲା ନିଶ୍ଚୟ । ଏହି ଯୁଗସନ୍ଧିରେ ମୁଁ ପ୍ରଥମେ ପାରମ୍ପରିକ କବିତା ଆଡ଼କୁ ଢଳିଥିଲି । ସ୍କୁଲ, କଲେଜରେ ପ୍ରଥମ/ ଦ୍ୱିତୀୟ ବର୍ଷର ଛାତ୍ରୀ ଥିଲାବେଳେ, ବିଜ୍ଞାନ ପଢୁଥିଲି, ତେଣୁ ପାଠ ଥିଲା ମୁଖ୍ୟ ।

ଲାଗୁଥିଲା, ଆଉ ପ୍ରକାରେ ଲେଖନ୍ତି । କିନ୍ତୁ କେମିତି କ'ଣ କରିପାରିବି ଭାବିପାରୁ ନ ଥିଲି । କାରଣ ସେତିକିରେ 'କବି' 'କବି' ବୋଲି ସହପାଠୀ/ପାଠିନୀ/ଅଧ୍ୟାପକ ଛୁରି ପକାଉଥିଲେ ।

ପ୍ରଶ୍ନ- ଆପଣଙ୍କ ପ୍ରାରମ୍ଭିକ କବିତାରେ ସ୍ୱର, ଛନ୍ଦର ଛାପ ରହିଛି ଯାହା ପରବର୍ତ୍ତୀ କବିତାରେ ଦେଖିବାକୁ ମିଳେ ନାହିଁ । ଏହାର କାରଣ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର- କହିଛି ତ ମୁଁ ସଂରଚନାରେ ମୋଡ଼ ପରିବର୍ତ୍ତନ କରିବାକୁ ଚାହୁଁଥିଲି । ବାଟ ଖୋଜୁଥିଲି । ଏତିକିବେଳେ ନିଜ ଅନ୍ତର୍ନିହିତ ସତ୍ତାକୁ ଭଲ ରୂପେ ଚିହ୍ନିଲି, ଆବିଷ୍କାର କଲି । ସେହିଭଳି ଭାବେ ଶବ୍ଦ ଓ ଛନ୍ଦ ଶୂନ୍ୟରୁ ଓହ୍ଲାଇ ଆସିଲା । ମୁଁ ନିଜେ ଚମତ୍କୃତ ହୋଇପଡ଼ିଲି । ସୃଷ୍ଟିର କାରଣ କ'ଣ କବି ସର୍ବଦା ନିର୍ଣ୍ଣୟ କରିପାରେ ?

ପ୍ରଶ୍ନ- ଆପଣଙ୍କ କବିତାରେ ପ୍ରେମ, ସମର୍ପଣ ଭାବ, ପାରିବାରିକ ବନ୍ଧନ ସଦାବେଳେ ସ୍ପଷ୍ଟ ଦୃଶ୍ୟ ହୁଏ । ଏହା କ'ଣ ଆପଣଙ୍କ ସମୟର ପ୍ରଚଳିତ ଧାରା ନା ନିଜସ୍ୱ ବିଶେଷତ୍ୱ ?

ଉତ୍ତର- ଶୁଣନ୍ତୁ, କବି ମାତ୍ରେ ହୃଦୟରେ ପ୍ରେମ ପୋଷଣ କରିଥାଏ । ସମର୍ପଣଭାବ ନାରୀତ୍ୱର ଏକ ବିଶେଷତ୍ୱ, ଆଉ ପାରିବାରିକ ବନ୍ଧନ...ତାକୁ ନେଇ ମୁଁ ତ ବଞ୍ଚେ । ଯାହାକୁ ନେଇ ଦୈନନ୍ଦିନ ଜୀବନ ବଞ୍ଚେ ତାକୁ ହିଁ ମୁଁ ମୋ କବିତାରେ ରୂପ ପ୍ରଦାନ କରେ । ମୋ' ସମୟର ପ୍ରଚଳିତ ଧାରାକୁ ମୁଁ ବୁଝେ, କିନ୍ତୁ ସେ ଦିଗରେ ବିଶେଷ ଧ୍ୟାନ ଦିଏ ନାହିଁ । ମୋ ଅନୁଭବ ମୋର-ତାହା ହିଁ ମୋର ପୁଞ୍ଜି । ମୋର ପୀଡ଼ା, ଅନ୍ତର୍ବେଦନା ଓ ସାହସିକତା ମୋ ନିଜର । ଏହା ବିଷୟରେ ଦିଲ୍ଲୀରେ ସାହିତ୍ୟ ଏକାଡେମୀ ଆଲୋଚନାରେ ଜ୍ଞାନପୀଠ ପୁରସ୍କାର ବିଜୟୀ ହିନ୍ଦୀ କବି ଡକ୍ଟର କେଦାରନାଥ ସିଂ, ମୋ କବିତାର ଉପରୋକ୍ତ ଗୁଣ ତିନୋଟିକୁ ଖୁବ୍ ପସନ୍ଦ କରିଛନ୍ତି । ଯା ମଧ୍ୟ କହିଛନ୍ତି ଯେ ମୋ କବିତାର ଏହି ଗୁଣ ତଥାକଥିତ ନାରୀବାଦକୁ ମଧ୍ୟ ନିଷ୍ପ୍ରଭ କରିପକାଉଛି ।

ପ୍ରଶ୍ନ- ପୁଣି ଆପଣ ନିଜ କବିତାରେ ମଣିଷ ମନର ଆବେଗ, ଉଦ୍‌ବେଳନକୁ ଅତି ନିଖୁଣ ଭାବେ ପରିସ୍ଫୁଟନ କରନ୍ତି । ଯେମିତି 'ସାହାଡ଼ା ସୁନ୍ଦରୀ'ରେ ହେଉ କି 'ଶବରୀ' ଅଥବା 'ତନ୍ମୟ ଧୂଳି' ସଂକଳନରେ ହୋଇଥାଉ । ଏ ଭାବାବେଗକୁ ଶବ୍ଦରେ ରୂପ ଦେବାବେଳେ ଆପଣ ନିଜ ପାଠକଙ୍କ ନିକଟରେ କି ବାର୍ତ୍ତା ପହଞ୍ଚାଇବାକୁ ଚାହାନ୍ତି ?

ଉତ୍ତର- 'ସାହାଡ଼ାସୁନ୍ଦରୀ'ରେ ଲୋକକଥାର ନାରୀର ଅଲୌକିକ ଆତ୍ମସତ୍ତା, 'ଶବରୀ'ରେ ମୂଳ ରାମାୟଣର ମୁଖ୍ୟସ୍ରୋତରୁ ଅଲଗା ହୋଇଯିବା ହିଁ ଏକ ନୂତନତ୍ୱର ପରିଚୟ ଆଣିଦିଏ । ଏ ସମ୍ପର୍କରେ କେନ୍ଦ୍ର ସାହିତ୍ୟ ଏକାଡେମୀର ହିନ୍ଦୀ ମୁଖପତ୍ର

'ସମକାଳୀନ ଭାରତୀୟ ସାହିତ୍ୟ'ରେ ବିଶିଷ୍ଟ ପ୍ରଫେସର ସ୍ୱର୍ଗତ ବିଦ୍ୟାନିବାସ ମିଶ୍ର ଓ ପ୍ରଫେସର ବେଦପ୍ରକାଶ ଭରଦ୍ୱାଜ ମୋର 'ଶବରୀ' କାବ୍ୟର ଏହି ନୂତନତ୍ୱକୁ ଗୁରୁତ୍ୱ ଦେଇଛନ୍ତି । କହିଛନ୍ତି, "ଏହା ଏକ ମହାକାବ୍ୟ । ଏଥିରେ ବାଲ୍ମୀକି ରାମାୟଣର ଭକ୍ତି ଓ ସମର୍ପଣ ତ ଅଛି । କିନ୍ତୁ ରାମଚନ୍ଦ୍ରଙ୍କ ପ୍ରତି ଅଛି ଅନୁରାଗ ।" ସୀତା ଓ ସୂର୍ପଣଖା ପ୍ରତି ତାଙ୍କ ନିଷ୍ଠୁରତାରେ ବ୍ୟଥିତା ଶବରୀ କହିଛନ୍ତି-ଏହି ମହାବୀରଙ୍କୁ ମୁଁ ପୁନର୍ବାର ହୃଦୟବାନ୍ କରିଦେବି । ଶବରୀ ଏଠାରେ ମୋକ୍ଷ ଲୋଡ଼ି ନାହାନ୍ତି । ସେ ବରଂ ଅରଣ୍ୟର ବଞ୍ଚିତ ଜନତାର ଦୁଃଖମୋଚନ କରିବାକୁ, ଲୁହ ପୋଛିବାକୁ ଶ୍ରେୟ ମଣିଛନ୍ତି । 'ତନ୍ମୟଧୂଳି'ରେ ମାନବର ତୁଚ୍ଛ ଅସ୍ତିତ୍ୱର ଗୋଟିଏ ଉଚ୍ଚତମ ଦିଗକୁ ନିର୍ଦ୍ଦେଶ କରାଯାଇଛି । ଶେଷ କବିତାର ଶେଷ ଧାଡ଼ି କେତୋଟି-"ଫେରିଯିବା ତା'ହେଲେ ? ମଝି ବିଲରେ / ଠିଆ ଠିଆ ମିଳେଇ ଯାଉଥିବା କୁହୁଡ଼ିକୁ / ପିଠି କରି ଆଗେଇବା / ପ୍ରାଣୀମାନେ ଭାଗବାଣ୍ଟି ନେଉଥିବା ଦୁଃଖରୁ / ବଡ଼ ଭାଗଟି ଉଠାଇ ନେବା, ଭୋଗି ଚାଲିବା-"

ପ୍ରଶ୍ନ- ଆପଣ ଜଣେ ସୁପ୍ରତିଷ୍ଠିତ କବି । ଅନ୍ୟ କେଉଁ ଓଡ଼ିଆ ବା ଅନ୍ୟ ଭାଷାର କବିଙ୍କୁ ଆପଣ ନିଜର ଆଦର୍ଶ, ପ୍ରେରଣା ବୋଲି ଭାବନ୍ତି ?

ଉତ୍ତର- ମୁଁ କିଛି ପଢ଼ିଛି- ଇଂରାଜୀ ସାହିତ୍ୟ, ବିଶେଷ କରି କବିତା, ହିନ୍ଦୀ କବିତା ମୋର ଅତି ପ୍ରିୟ, ବଙ୍ଗଳା କବିତା ବି । ଖୁବ୍ ଗୁଡ଼ାଏ ପଢ଼ିପାରି ନାହିଁ । ବହି ମଧ୍ୟ ପାଇପାରି ନାହିଁ ଯଥେଷ୍ଟ । ସେମାନଙ୍କ ସଂରଚନାରୁ ନିଶ୍ଚୟ କିଛି ପାଇଥିବି, କ'ଣ ପାଇଛି ଠିକ୍ ଭାବେ କହିବା ସହଜ ନୁହେଁ । ସେମାନଙ୍କ ନାମ ଉଲ୍ଲେଖ ଲମ୍ବା ଧାଡ଼ି ହୋଇଯିବ । ଅତଏବ ଥାଉ ।

ପ୍ରଶ୍ନ- ସମସାମୟିକ ଭାରତୀୟ ସାହିତ୍ୟରେ ଓଡ଼ିଆ କବିତାର ସ୍ଥିତି କ'ଣ ବୋଲି ପଚରାଗଲେ, ଆପଣଙ୍କର ସ୍ୱାଭାବିକ ପ୍ରତିକ୍ରିୟା କ'ଣ ହେବ ?

ଉତ୍ତର- ସମସାମୟିକ ଭାରତୀୟ ସାହିତ୍ୟରେ ଓଡ଼ିଆ କବିତାର ସ୍ଥିତି ଖୁବ୍ ଉଜ୍ଜ୍ୱଳ ଓ ଆଶାଜନକ । ଗତବର୍ଷ ଦିଲ୍ଲୀଠାରେ ଆୟୋଜିତ ଏକ କବିତା ସମାରୋହରେ ବିଶିଷ୍ଟ କବି ପ୍ରଫେସର ଡକ୍ଟର ନାମୱର ସିଂହ କହିଥିଲେ- ''ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ– ଏଇ ତିନି ଭାଷାର କବିତା ମଧ୍ୟରୁ ଓଡ଼ିଆ କବିତା ଅଗ୍ରଗାମୀ । ଏପରିକି ହିନ୍ଦୀ ବଙ୍ଗଳା ଠାରୁ ଅଧିକ ଉନ୍ନତ ।" ଏହା ମୋତେ ମୁଗ୍ଧ କରିଥିଲା ।

ପ୍ରଶ୍ନ- ତରୁଣ ଯୁବପିଢ଼ିଙ୍କ ସମ୍ପର୍କରେ କିଛି କହିବେ କି ? ସମସାମୟିକ ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ସେମାନେ କେଡ଼େ ପ୍ରଗତିଶୀଳ ଓ ସମର୍ଥ ।

ଉତ୍ତର- ତରୁଣ ଯୁବପିଢ଼ି ଓଡ଼ିଆ କବିତାରେ ବେଶ୍ ସ୍ୱଚ୍ଛ, ପ୍ରାଞ୍ଜଳ ଓ ନୂତନତ୍ୱ ଆନୟନ କରିଛନ୍ତି । କରୁଛନ୍ତି ମଧ୍ୟ । ତେଣୁ ସେମାନଙ୍କ ଲେଖନୀ ଚାଳନା ଉପରେ ମୁଁ ବେଶ୍ ଆସ୍ଥାବାନ୍ ।

ପ୍ରଶ୍ନ- ଆଧୁନିକ କବିତା ପାଠକମାନଙ୍କଠାରୁ ଦୂରେଇ ଯାଉଛି ବୋଲି ଅଭିଯୋଗ ହୁଏ । ଏଭଳି ଅଭିଯୋଗକୁ ଆପଣ କିଭଳି ଭାବେ ଗ୍ରହଣ କରିବେ ? ଯଦି ଅସ୍ୱୀକାର କରନ୍ତି, ତେବେ ଏ ସମ୍ପର୍କରେ ଆପଣଙ୍କ ମତ କ'ଣ ?

ଉତ୍ତର- ପ୍ରକୃତରେ ଆଧୁନିକ କବିତା ବୋଲି ଖାସ୍ ନୁହେଁ, ଓଡ଼ିଆ ସାହିତ୍ୟ ବାସ୍ତବିକ ପାଠକମାନଙ୍କଠାରୁ ଦୂରେଇ ଯାଉଛି । ସହରୀ ଲୋକେ ତ ଓଡ଼ିଆ ପଢୁ ନାହାନ୍ତି, ଓଡ଼ିଆରେ କଥାବାର୍ତ୍ତା ବି ଘରେ ଘରେ ଠିକ୍ ମତେ ଚାଲୁ ନାହିଁ । ବାପାମାଆ ବି ଏ ସଂକ୍ରାନ୍ତରେ ଆଦୌ ସଚେତନ ନୁହନ୍ତି । ମୁଁ ଏହା ସ୍ୱୀକାର କରେ ଓ ଦୁଃଖ ପାଏ । ପ୍ରକୃତରେ ପାଠକମାନେ ହିଁ ଦୂରେଇ ଯାଉଛନ୍ତି, କବିତା ନୁହେଁ ।

ପ୍ରଶ୍ନ- ପରିବେଶ ଜଣେ ସୃଜନଶୀଳ ସ୍ରଷ୍ଟା ପାଇଁ କେତେ ଜରୁରୀ ଓ ପ୍ରେରଣାଦାୟୀ ବୋଲି ଆପଣ ଅନୁଭବ କରନ୍ତି ?

ଉତ୍ତର- ପରିବେଶ ଜଣେ ସ୍ରଷ୍ଟାପାଇଁ ଅନୁକୂଳ ହେବା ଜରୁରୀ । ପ୍ରେରଣାଦାୟୀ ମଧ୍ୟ । ତଥାପି, ପ୍ରତିକୂଳ ପରିସ୍ଥିତିରେ ବି କଳାକାର ନିଜ ଆତ୍ମିକ ମୂଲ୍ୟ ଦେଇ ସୃଷ୍ଟିକୁ ସୁନ୍ଦର କରିପାରେ ।

ପ୍ରଶ୍ନ- ଜଣେ ଭଲ କବି ହେବାର ପ୍ରକୃଷ୍ଟ ଉତ୍ସ କ'ଣ ବୋଲି ଆପଣ ଭାବନ୍ତି ?

ଉତ୍ତର- ଭଲ କବି ହେବାର ପ୍ରକୃଷ୍ଟ ଉତ୍ସ- କବିର ଅନ୍ତରାତ୍ମା, ଅନୁଭବପ୍ରବଣତା, ଭାଷା, ଶବ୍ଦର ଧୁରୀଣତା ନିହାତି ଆବଶ୍ୟକ । ଯଦି ବକ୍ତବ୍ୟ, ଶୈଳୀ ଓ ପରିମିତତା ଭିତରେ ସମନ୍ୱୟ ରହେ, ଏବଂ ପ୍ରତ୍ୟେକ ଅନ୍ୟର ସ୍ୱତନ୍ତ୍ର ଉପସ୍ଥିତି ଭୁଲିଯାଆନ୍ତି, ତେବେ ହିଁ କବିତାରେ ପ୍ରାଣପ୍ରତିଷ୍ଠା ହୁଏ । ଜଣେ ଭଲ କବି ଏଥିପ୍ରତି ସଚେତନ ରହିଥାଏ ।

ପ୍ରଶ୍ନ- କେବଳ କବିତା ନୁହେଁ, ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟରେ ଆପଣ ମଧ୍ୟ ନିଜକୁ ସୁପ୍ରତିଷ୍ଠିତ କରିଛନ୍ତି । ପୁଣି ଅନୁବାଦ କ୍ଷେତ୍ରରେ ଆପଣଙ୍କର ବେଶ୍ ସୁନାମ ରହିଛି । ସମାଲୋଚନା କେବେ କବିର ସୂକ୍ଷ୍ମ ମାନସିକତାକୁ ବ୍ୟାହତ କରିବା ଭଳି ଅନୁଭବ କରନ୍ତି କି ?

ଉତ୍ତର- ମୋର ପ୍ରବନ୍ଧ, ସମାଲୋଚନା ସାହିତ୍ୟ ଓ ଅନୁବାଦ-ଏସବୁ ମୋ କବିତା ସଂରଚନାର ପରିପୂରକ ବୋଲି ମୁଁ ଗ୍ରହଣ କରେ । ସମାଲୋଚନା ସୃଜନଶୀଳ ହେଲେ ଏହା କବିର ସୂକ୍ଷ୍ମ ମାନସିକତାକୁ ବ୍ୟାହତ କରିପାରିବ ନାହିଁ ।

ପ୍ରଶ୍ନ- ୧୯୬୨ (ପ୍ରଥମ କବିତା ସଂକଳନ ପ୍ରକାଶ) ଠାରୁ ୨୦୧୭ ଏକ ସୁଦୀର୍ଘ ସାରସ୍ୱତ ଯାତ୍ରା । ଏହି ସୃଜନ ଅଭିଯାନ ଭିତରେ ନିଜ କାବ୍ୟ ଚେତନାର ରୂପାନ୍ତର କେବେ ଅନୁଭବ କରିଛନ୍ତି ?

ଉତ୍ତର- ୧୯୬୨ରୁ ୨୦୧୭ ଏହି ସାରସ୍ୱତ ଯାତ୍ରା ମଧ୍ୟରେ ମୋର କାବ୍ୟ ଚେତନା ଅନେକ ଭାବରେ ରୂପାନ୍ତରିତ ହୋଇଛି । ଏହି ପ୍ରଶ୍ନ ମୋତେ 'ମିଟ୍ ଦି ଅଥର୍' (କେନ୍ଦ୍ର ଓ

ପୂର୍ବାଞ୍ଚଳ) ସାହିତ୍ୟ ଏକାଡେମୀର ସଭାରେ ବିଶିଷ୍ଟ କବି ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର ପଚାରିଥିଲେ । ହଁ, ବନ୍ଧୁବାର, ଆଗରୁ ବି କହିଛି, ପରମ୍ପରା, ଅନ୍ତର୍ବେଦନା, ପୁରାକଳ୍ପ (ମିଥ୍) ସାଂସାରିକତା ଏସବୁ ମୋ ରଚନାରେ ବଦଳି ଚାଲିଛି । ଏବେ ପ୍ରାୟ ଚାରି / ପାଞ୍ଚ ବର୍ଷ ହେବ ମୁଁ ମଣିଷ ସହ, ପ୍ରକୃତି, ଗଛଲତା, କୀଟପତଙ୍ଗ, ପଶୁପକ୍ଷୀ, ନଦୀ ପର୍ବତକୁ ନେଇ ଅନେକ କବିତା ଲେଖିଛି ଓ ସେ ଦିଗକୁ ମୋର କାବ୍ୟଚେତନା ପ୍ରଧାବିତ ବୋଲି ମୁଁ ଅନୁଭବ କରେ ଓ ସ୍ୱୀକାର କରେ ।

ପ୍ରଶ୍ନ- ଆଉ ଗୋଟିଏ ପ୍ରଶ୍ନ । କବିତାରେ ଯେଉଁ ଅନୁଭବକୁ ବ୍ୟକ୍ତ କରିବାକୁ ଚାହିଁଛନ୍ତି ସେଥିରେ ସମ୍ପୂର୍ଣ୍ଣ ସଫଳ ହୋଇଛନ୍ତି ବୋଲି ଅନୁଭବ କରନ୍ତି ?

ଉତ୍ତର- ସମ୍ପୂର୍ଣ୍ଣ ସଫଳତା ହୁଏତ ମୋ କାବ୍ୟଚେତନାରେ ପ୍ରତିଷ୍ଠିତ ହୋଇପାରି ନାହିଁ । ଏହା ଏକ ଆପେକ୍ଷିକ ପ୍ରଶ୍ନ । କେଜାଣି, କେଉଁ କବି ନିଜର ସୃଜନରେ ପୂର୍ଣ୍ଣ ଆତ୍ମସନ୍ତୋଷ ପାଇଥାଏ ! ମୋ ଭାଗ୍ୟରେ ତାହା ନାହିଁ ।

ପ୍ରଶ୍ନ- ପୁରସ୍କାର, ସମ୍ମାନ ଜଣେ ସ୍ରଷ୍ଟା ପାଇଁ କି ମାନ୍ୟତା ରଖେ ? ଆପଣଙ୍କ କ୍ଷେତ୍ରରେ ତାହା କିପରି ବୋଲି ଅନୁଭବ କରନ୍ତି ?

ଉତ୍ତର- ଦେଖନ୍ତୁ, ପୁରସ୍କାର ଓ ସମ୍ମାନ ଜଣେ ସ୍ରଷ୍ଟାର ସୃଜନଶୀଳତାର ସ୍ୱୀକୃତି- ଏହା ଅନସ୍ୱୀକାର୍ଯ୍ୟ । ଏହା ଜଣେ ସାହିତ୍ୟିକକୁ ହେଉ ଅବା ଶିଳ୍ପୀକୁ ନିଶ୍ଚିତ ଭାବେ ଉଲ୍ଲସିତ କରିଥାଏ। ତେବେ ଏହା ସହ ତା' ମୁଣ୍ଡ ଉପରେ ମଧ୍ୟ ଦାୟିତ୍ୱବୋଧ ଲଦି ହୋଇ ପଡ଼ିଥାଏ । ସେ ନିଜର କଳାକୁ ନେଇ ଅଧିକ ସଚେତନ ହୋଇପଡ଼େ । ମୋ କବିତା ପଢ଼ି ଯେତେବେଳେ କିଏ ମୋ ପାଖକୁ ଚିଠିଟିଏ ଲେଖେ କି ଟେଲିଫୋନ୍‌ରେ ବଧେଇ ଜଣାଏ ତାହା ମୋ ପାଇଁ କୌଣସି ପୁରସ୍କାର ଠାରୁ କମ୍ ବୋଲି ମୁଁ ଭାବେ ନାହିଁ । ତାହା ମୋତେ ବେଶ୍ ପ୍ରେରଣା ଓ ଆନନ୍ଦ ଯୋଗାଇଥାଏ । ମୁଁ ସେଥିରେ ଅଧିକ ଖୁସି ହୁଏ ।

ପ୍ରମେୟ: ଅଧିକ ଶ୍ରମ ସ୍ୱୀକାର କରି ଆମ ପାଠକମାନଙ୍କପାଇଁ ଏତେ ସବୁ ପ୍ରଶ୍ନର ଉତ୍ତର ଦେଇଥିବାରୁ ଆପଣଙ୍କୁ ଅଶେଷ ଧନ୍ୟବାଦ ।

ଉତ୍ତର- ଆପଣଙ୍କୁ ବି ଧନ୍ୟବାଦ, ସୁଭାଷବାବୁ ।

(ରବିବାର 'ପ୍ରମେୟ' ତରଫରୁ ପ୍ରଶ୍ନ କରିଥିଲେ ସୁଭାଷ ଶତପଥୀ)



# କବିତା ଦେଲା କ'ଣ, କ'ଣ ପାଇଲି
# ଏ କଥା ତଉଲି ନାହିଁ କେବେ ବି...

[ ସମ୍ବାଦ - ଶେଷ ରବିବାର ]

ପ୍ରଶ୍ନ- ଆପଣଙ୍କ କବିତା ଯାତ୍ରାର ଆରମ୍ଭ କେମିତି ହେଲା ? ସାହିତ୍ୟରେ ଆହୁରି ଅନେକ ବିଭାଗ ଥିଲାବେଳେ ଆପଣ କବିତା ପ୍ରତି ଆକର୍ଷିତ ହେଲେ କାହିଁକି ?

-ମମତା ପଟ୍ଟନାୟକ, କଟକ

ଉତ୍ତର- କବିତା ମୋ ଗ୍ରାମ୍ୟ ପରିବେଶ, ନାଚ, ଯାତ୍ରା, ଏଇସବୁଥିରୁ ଓ ରେଡ଼ିଓରୁ ଶୁଣା ଗୀତରୁ ମୋତେ ଆକୃଷ୍ଟ କରିଥିଲା । କର୍ନାଳର ନୀଳ କଇଁ, ପଦ୍ମଭର୍ତ୍ତି ପୋଖରୀ, ସାବ୍‌ଜା ଉଦ୍ଧତ ଧାନକ୍ଷେତ. ହିଡ଼ଭର୍ତ୍ତି କଙ୍କଡ଼ାଗାଡ଼, ବୁଦା ଗହଳରେ ଲୁଚିଛପି ହସୁଥିବା ପାଞ୍ଚଆଙ୍ଗୁଳିଆ ଫୁଲ- ଏସବୁ କବିତାକୁ ମୋ ମନ ଭିତରେ ଖୁନ୍ଦି ଦେଲେ । ମୁଁ, ଥରେ ଝିଲ ଭିତରକୁ ପାଦ ବଢ଼ାଇଲା ବେଳକୁ ଝିଲ ମୋତେ ଝିଙ୍କିନେଲା ଭିତରକୁ ଭିତରକୁ । ନା ସେ ମୋତେ ଛାଡ଼ିଲା, ନା ମୁଁ ତା' ଜାବରୁ ମୁକୁଳି ପାରିଲି ।

ପ୍ରଶ୍ନ- ବାମାବାଦୀଙ୍କ ଦୃଷ୍ଟିଭଙ୍ଗୀରେ ପାଶ୍ଚାତ୍ୟ ଫେମିନିଜିମ୍ ଓ ଭାରତୀୟ ଫେମିନିଜିମ୍ ମଧ୍ୟରେ କେତେ ପାର୍ଥକ୍ୟ ଆପଣ ଅନୁଭବ କରନ୍ତି ? ସମକାଳୀନ କବିଙ୍କର କାବ୍ୟାଙ୍ଗରେ ନାରୀବାଦର ନାରୀକୁ ଓ ନର୍ତ୍ତନକୁ କିପରି ଗ୍ରହଣ କରିବେ ?

- ଗିରିଜା ପ୍ରସାଦ ମିଶ୍ର, ବାଲିଗୁଡ଼ା, କନ୍ଧମାଳ

ଉତ୍ତର- ମୋର ଗୋଟେ କଥା ଏଇଠି ମନେ ପଡୁଛି । ଦୁଇବର୍ଷ ତଳେ ଦିଲ୍ଲୀରେ ସାହିତ୍ୟ ଅକାଦେମୀ ହଲ୍‌ରେ ମୋର ହିନ୍ଦୀ କବିତା ପୁସ୍ତକଟିଏ ଉନ୍ମୋଚନ ହୋଇଥିଲା । ତା'ର ଅଗ୍ରଲେଖରେ ଜ୍ଞାନପୀଠ ବିଜେତା କବି କେଦାରନାଥ ସିଂ ଯାହା ଲେଖିଥିଲେ, ତା'ର ଓଡ଼ିଆ ଏମିତି ହେବ, "କବିଙ୍କ କାବ୍ୟିକ ବକ୍ତବ୍ୟ ଓ ସ୍ୱରରେ ନାରୀର ଅନ୍ତର୍ବେଦନା, ପୀଡ଼ା ଓ ସାହସିକତା ଏକତ୍ରିତ ହୋଇ ବର୍ତ୍ତମାନର ନାରୀବାଦୀମାନଙ୍କ ସ୍ୱରକୁ ନିସ୍ତବ୍ଧ କରିପକାଉଛି ।" ତେବେ, ବାମାବାଦ ବି କାହିଁକି କହିବା ? ପୁରୁଷର ବାମପାର୍ଶ୍ୱରେ ଆସୀନା ବୋଲି ? ମୁଁ 'ବାମାବାଦ' ଶବ୍ଦଟିକୁ ଗ୍ରହଣ କରେ ନାହିଁ ।

ହଁ ପାଶ୍ଚାତ୍ୟ ଫେମିନିଜିମ୍ ଓ ଭାରତୀୟ ଫେମିନିଜିମ୍ ଭିତରେ ପାର୍ଥକ୍ୟ ରହିଛି । ମୋର ପୁସ୍ତକ 'ନାରୀ ଅସ୍ତିତ୍ୱର ବାସ୍ତବତା'...ରେ ମୁଁ ବିଶଦ୍ ଭାବେ ଏହି ପାର୍ଥକ୍ୟ ଦର୍ଶାଇଛି । 'ସମକାଳୀନ'ରେ ଡଃ ସଂଯୁକ୍ତା ଦାଶଗୁପ୍ତ ଲେଖିଥିଲେ, "ଭାରତୀୟ ନାରୀ ସନ୍ତାନ ଜନ୍ମ ଓ ଲାଳନ, ଗୃହକର୍ମ, ବୃତ୍ତି, ସବୁ ସାଗ୍ରହ କରିଥାଏ । ସେ କେବଳ ଇଚ୍ଛା କରେ ଯେ, ସମାଜ ଓ ପରିବାର ଏହି ତ୍ୟାଗକୁ ତା'ର ସ୍ୱୀକାର କରନ୍ତୁ, ସମ୍ମାନ କରନ୍ତୁ, ଅଣଦେଖା କରନ୍ତୁ ନାହିଁ ।" ପାଶ୍ଚାତ୍ୟ ନାରୀ ତ ପିଲାଜନ୍ମ କରିବାକୁ ଏ କ୍ଷେତ୍ରରେ ଅସ୍ୱୀକାର କରେ । ଆମର ସରଳାଦେବୀ 'ନାରୀର ଦାବୀ' ଶୀର୍ଷକ ପୁସ୍ତକରେ ଯାହା ଲେଖିଥିଲେ ତା'ର ୧୦ ବର୍ଷ ପରେ ପାଶ୍ଚାତ୍ୟର ସାଇମନ୍ ଡି. ବୁଭାହ୍ ପ୍ରାୟ ତାହା ହିଁ ଲେଖିଥିଲେ ।

ପ୍ରଶ୍ନ- 'ଶବରୀ' ଆପଣଙ୍କର ଏକ ଚର୍ଚ୍ଚିତ କାବ୍ୟଗ୍ରନ୍ଥ । ଏହାକୁ ଲେଖିବାର ପ୍ରେରଣା ଓ ପ୍ରକ୍ରିୟା ସମ୍ପର୍କରେ କିଛି କହିବେ ?

-ନନ୍ଦକିଶୋର କିସ୍କୁ, ବହଳଦା, ମୟୂରଭଞ୍ଜ

ପ୍ରଶ୍ନ- ଆପଣଙ୍କ କାବ୍ୟନାୟିକା ଶବରୀ ରାମାୟଣର ଶବରୀଠାରୁ କେତେ ଅଲଗା ?

-ଅଳଙ୍କାର ଆଚାର୍ଯ୍ୟ

ଉତ୍ତର- ମୋର 'ଶବରୀ' ପୁରାକଳ୍ପ ଚରିତ୍ର, ରାମାୟଣର ବିଶେଷ ଭକ୍ତିମତୀ, ଅରଣ୍ୟବାସିନୀ । ଥରେ ଅଗଣାରେ ମାଟି ତାଡ଼ି ଘୁଷୁରୁଥିବା ଜିଆଟିକୁ ଦେଖି ସେ ମୋର ମନେ ପଡ଼ନ୍ତି । ମୁଁ ଆଉ କ'ଣ କି ? ଏମିତି ଘୁଷୁରି ଘୁଷୁରି ଦିନେ ମରିଯିବି । ନା, ମଣିଷର ମହାର୍ଘ ଅସ୍ତିତ୍ୱକୁ ଜିଆ ଭଳି ଏକ ତୁଚ୍ଛ ପ୍ରାଣୀଠାରେ ମୁଁ ସମାହିତ କରିପାରିଲି ନାହିଁ । ମୁଁ ବିବ୍ରତ ହୋଇ ସବୁ ଭାରତୀୟ ଭାଷାର ରାମାୟଣକୁ ଧୁନ୍ଦାଳି ପକାଇଲି । ତୁଳସୀ, କୃତ୍ତିବାସ, କମ୍ବନ, ବାଲ୍ମୀକି ଓ ବଳରାମଙ୍କ ଜଗମୋହନ ରାମାୟଣ ପର୍ଯ୍ୟନ୍ତ । ଗୋଟିଏ ଧାଡ଼ିଠାରୁ ଅଧିକ କୋଉଠି ପାଇଲି ନାହିଁ । କିନ୍ତୁ ଉପରୋକ୍ତ କବିଗଣ ସ୍ୱୀକାର କରିଛନ୍ତି ଶବରୀଙ୍କ ଅନନ୍ୟ ଭକ୍ତିମତ୍ତାକୁ, ମୋକ୍ଷ କାମନାକୁ । ମନରେ କ୍ଷୋଭ ଜାତହେଲା । କାହିଁକି ଯେ କବିଗଣ ନାରୀ ବୋଲି, ଅରଣ୍ୟ ତାପସୀ ବୋଲି ତାଙ୍କୁ ହେୟଜ୍ଞାନ କରିଛନ୍ତି ? ତେଣୁ ମୋତେ ଶବରୀଙ୍କ ବିଷୟରେ କିଛି ଲେଖିବାର ସ୍ୱାଧୀନତା ମିଳିଗଲା । ବାଲ୍ମୀକିଙ୍କର "ମୟା ତୁ ବିବିଧଂବର୍ଣ୍ୟଂ ସଞ୍ଚିତଂ ପୁରୁଷର୍ଷଭ/ ତବାର୍ଥେ ପୁରୁଷ ବ୍ୟାଘ୍ର ପଂପୟା ସ୍ତୀର ସଂଭାବମ୍ ।" ଏବଂ ବଳରାମ ଦାସଙ୍କଠାରୁ "ପଂପା ସରୋବର ଯେ ଦେଖିବ ଯାଇ ବାଟେ/ ଶବରୀ ଯତି ଅଛନ୍ତି, ତହିଁର ନିକଟେ ।" ଏତକକୁ ମୁଁ ପୁଞ୍ଜି କରିନେଲି ।

ପ୍ରଶ୍ନ- ଭଲ କବିତା କହିଲେ ଆପଣ କ'ଣ ବୁଝନ୍ତି ? ବର୍ତ୍ତମାନ ନୂଆପିଢ଼ି ଲେଖୁଥିବା କବିତାକୁ ଆପଣ କେମିତି ମୂଲ୍ୟାୟନ କରନ୍ତି ?

-ସର୍ବେଶ୍ୱର ଦାଶ, ଭଦ୍ରକ

ଉତ୍ତର- ଯେଉଁ କବିତା ପଢ଼ିଲେ ଛାଡ଼ିହୁଏନା, ବହୁକାଳ ହୃଦୟରେ ଅନୁରଣିତ ହୁଏ, ଆନ୍ଦୋଳିତ କରେ ଅଭ୍ୟନ୍ତରକୁ, ତାହା ହିଁ ଭଲ କବିତା । ନୂଆପିଢ଼ିର କବି ଖୁବ୍ ଭଲ ଲେଖୁଛନ୍ତି । ଏହା ଆଶାଜନକ । ଅଭାବ ତ କିଛି କିଛି ରହିଯାଏ । ମୋର ବିଶ୍ୱାସ, ନିଜ ଅଭାବ ସ୍ୱ-ଆନ୍ତରିକତା ବଳରେ ସେମାନେ ବୁଝିପାରିବେ ।

ପ୍ରଶ୍ନ- ଆପଣଙ୍କ କବିତାରେ ପ୍ରେମିକ ଠାରୁ ଦୂରେଇ ଥିବା ପ୍ରେମିକା ଏବଂ ସ୍ୱାମୀଠାରୁ ଦୂରେଇ ଏକାକୀ ରହୁଥିବା ପତ୍ନୀର ଜୀବନ ଯନ୍ତ୍ରଣା ଓ ହଜିଯାଉଥିବା ପ୍ରେମର ମାର୍ମିକ ଛବି ସୁନ୍ଦର ଭାବେ ଫୁଟିଉଠିଛି । ଏକାକୀ ରହୁଥିବା ନାରୀକୁ ଆପଣଙ୍କର ବାର୍ତ୍ତା କ'ଣ ?

– ମନୋରଞ୍ଜନ ମିଶ୍ର, ବଉଦରାଜ, ବୌଦ୍ଧ

ଉତ୍ତର- ପ୍ରେମ ବିହ୍ୱଳତା, ଆତୁରତା ତଥା ବିରହର ମଥିତ ବ୍ୟଥାକୁ ମୋ କବିତାର ଗୁରୁତ୍ୱପୂର୍ଣ୍ଣ ସ୍ୱର ବୋଲି କହିପାରନ୍ତି । କିନ୍ତୁ 'ପ୍ରେମ' ଭାବଟି ବଡ଼ ବାୟବୀୟ । ଏଇଠି ଅଛି, ଏଇଠି ନାହିଁ । ଯା ମଧ୍ୟ ମୁଁ ବୁଝିସାରିଛି । ପ୍ରକୃତରେ ଏକାକୀ ରହୁଥିବା ନାରୀଟି କଷ୍ଟ ଭୋଗେ । ତେବେ ଆପଣାର ଧୈର୍ଯ୍ୟ, ସାହସ ଓ ସଂକଳ୍ପ ତାକୁ ବାଟ କଢ଼ାଇଥାଏ ।

ପ୍ରଶ୍ନ - ଆପଣଙ୍କ ଆତ୍ମକଥା 'ଶୈଶବରୁ ସଂସାର'ରେ ପ୍ରେମର ବିଶ୍ଳେଷଣ କରି ପ୍ରକୃତ ପ୍ରେମ ଯେ ମଣିଷ ଭାଗ୍ୟରେ ନାହିଁ, ଏହିପରି ଲେଖିଛନ୍ତି । କିପରି ଏତେ ଲମ୍ବା ରାସ୍ତା ଆପଣ ପ୍ରେମ ବିହୁନେ ଚାଲିଆସିପାରିଛନ୍ତି ?

– ଜୟନ୍ତୀ ରଥ, ଭୁବନେଶ୍ୱର

ଉତ୍ତର- ହଁ, 'ଶୈଶବରୁ ସଂସାର'ରେ ମୁଁ ତାହା କହିଛି । ନିରାଟ ସତ୍ୟ । ଅପ୍ରେମ ମଧ୍ୟରେ ମୁଁ ଦୀର୍ଘପଥ ଚାଲିଆସିଛି, ଚାଲୁଛି ମଧ୍ୟ । ଥରେ ଜଣେ କନ୍ୟାପ୍ରତିମା, ସୁନ୍ଦରୀ, ଉଚ୍ଚବୃତ୍ତିଧାରିଣୀ, ମୋ ପାଖରେ ବସି ତା'ର ଲୁହ ଢଳଢଳ ଆଖିରେ ମତେ କହିଲା, "ମୁଁ ପ୍ରେମ ପାଇପାରିଲି ନାହିଁ ।" ମୁଁ କରନ୍ତି କ'ଣ ? ମୁଁ ତାକୁ କହିଲି "ପ୍ରେମ ପ୍ରେମ ହୁରି ପକାଇଲେ ବି ପ୍ରକୃତ ପ୍ରେମ ନାରୀ ପୁରୁଷ ମଧ୍ୟରେ ଆକର୍ଷଣ ସୃଷ୍ଟିକରି ଅନ୍ତର୍ହିତ ହୋଇଯାଏ । ଏହା ବିଧାତାର ଏକ ଚାଲ୍ ।" ଯା' ବ୍ୟତୀତ କ'ଣ କହନ୍ତି ତାକୁ ? ମୋ ଆତ୍ମକଥାରେ ଏହାହିଁ ଅଛି । ନୋବେଲ୍ ପୁରସ୍କାର ପ୍ରାପ୍ତ କାଜୁଓ ଇସିଗୁରୋ କହିଲେ, "ତୁମେ ପ୍ରେମ କରୁଛ ? ପ୍ରେମ କରିବା କ'ଣ ଏତେ ସହଜ ଓ ସରଳ ?" ପୁନଶ୍ଚ ଆଉ ଜଣେ ନୋବେଲ୍ ବିଜୟୀ ବବ୍ ଡିଲାନ୍ କହିଲେ, "ଇଣ୍ଟେଲିଜେଣ୍ଟ ଲୋକମାନେ ପ୍ରେମ କରିପାରିବେ ନାହିଁ । ବୋଧହୁଏ ପ୍ରେମ କରିବା କେବଳ ବୋକା ବୋକୀଙ୍କ କାମ ।" ଏକଥା ଝିଅଟିକୁ ମୁଁ ବୁଝାଇଥିଲି ସେଦିନ ।

ପ୍ରଶ୍ନ- 'ନାରୀ ସ୍ୱାଧୀନତା ଆଳରେ ବର୍ତ୍ତମାନ ଏକପ୍ରକାର ସ୍ୱେଚ୍ଛାଚାର ଜନ୍ମ ନେଉଛି"-ଏପରି ଉକ୍ତି ସମ୍ପର୍କରେ ଆପଙ୍କର ମତ କ'ଣ ?

-ଲୋକନାଥ ମହାନ୍ତ, କେନ୍ଦୁଝର

ଉତ୍ତର- ନାରୀ ସ୍ୱାଧୀନତା, ସ୍ୱେଚ୍ଛାଚାରିତା ଆଦୌ ନୁହେଁ । ତା'ର ଭୟଙ୍କର ପରିଣାମ ଏବେ ସମାଜ, ପରିବାର ଓ ନିଜେ ନାରୀ ହିଁ ଅଙ୍ଗେ ନିଭାଉଛି ।

ପ୍ରଶ୍ନ- ଭଲ, ଭେଲ, ନାୟକ ଓ ଖଳନାୟକ ସବୁ ପ୍ରସଙ୍ଗକୁ ନେଇ କବିତା ଲେଖା ହେବା ଉଚିତ ବୋଲି ଆପଣ ଭାବନ୍ତି ?

- ସୌମ୍ୟକାନ୍ତ, ବାଣୀବିହାର

ଉତ୍ତର- ଭଲ ଓ ଭେଲ ଆମ ଭିତରେ ମିଳିମିଶି ଅଛନ୍ତି । ଭଲକୁ ଚିହ୍ନାଇବା ଏବଂ ଭେଲକୁ ଧରାପକାଇଦେବା ତ କବିତାର ଜରୁରୀ କର୍ମ ।

ପ୍ରଶ୍ନ- ନିଜ ସମସାମୟିକ ବିଶିଷ୍ଟ କବିମାନଙ୍କ ଭିତରେ ନିଜର ସ୍ଥାନଟିକୁ ଆପଣ କିପରି ଦେଖନ୍ତି ? - କଳ୍ପନା ମଲ୍ଲିକ, ଯାଜପୁର ରୋଡ୍

ଉତ୍ତର- ସମସାମୟିକ ବିଶିଷ୍ଟ କବିମାନଙ୍କ ପାଦଦେଶରେ ହୁଏତ ମୁଁ ସାଧାରଣ କବିଟିଏ । ଥରେ ଦିଲ୍ଲୀରେ କବିତା ଆସରରେ ସରସ୍ୱତୀ ସମ୍ମାନପ୍ରାପ୍ତ ବିଶିଷ୍ଟ କବି ଜଗନ୍ନାଥ ପ୍ରସାଦ ଦାସ କହିଥିଲେ, "କବି ପ୍ରତିଭା ଶତପଥୀ ନିଜସ୍ୱ ସାଧନା ଓ ନିଷ୍ଠା ବଳରେ ନିଜକୁ ଅନ୍ୟତମ ବିଶିଷ୍ଟ କବି ଭାବେ ପ୍ରତିଷ୍ଠିତ କରିଛନ୍ତି, ବିଗତ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟରେ ଚଳିଆସୁଥିବା 'ଜନାନା କମ୍ପାର୍ଟମେଣ୍ଟ୍' କୁ ଅଚଳ କରିଦେଇଛନ୍ତି ।"

ପ୍ରଶ୍ନ- ଲେଖକମାନେ କଳ୍ପନାବିଳାସୀ । ସେମାନଙ୍କ ଲେଖା ଯେତେ ଜୀବନ୍ତ ମନେହୁଏ, ବାସ୍ତବ ଜୀବନରେ ସେମାନେ ତା'ର ସମ୍ପୂର୍ଣ୍ଣ ବିପରୀତ ହୋଇଥାଆନ୍ତି । କାହିଁକି ? - ସୁବ୍ରତ ବଳ, ଭୁବନେଶ୍ୱର

ଉତ୍ତର- ଜୀବନ କେବଳ କ'ଣ କୌଣସି କବିକୁ ବାସ୍ତବତାଠାରୁ ଅଲଗା ରଖିପାରିଛି ? କଳ୍ପନା ତ ନିଶ୍ଚୟ ସକଳ ସୃଷ୍ଟିର ମୂଳ, ତାହା କଳା ବା ବିଜ୍ଞାନ ଯାହାହେଉ, ସବୁର ମୂଳ ଉତ୍ସ । ଏମିତି ବି କେତେକ କବି ଥାଇପାରନ୍ତି ଯାହାଙ୍କ ରଚନାତ୍ମକ ଜୀବନ, ବାସ୍ତବ ଜୀବନରେ ପ୍ରଭେଦ ରହିଥାଏ । ଏହାର କାରଣ ଧୂର୍ତ୍ତତା ହୋଇପାରେ ।

ପ୍ରଶ୍ନ- ଆପଣ କ'ଣ ଭାବନ୍ତି ଯେ ଆପଣ ଜଣେ ପୁରୁଷ ହୋଇଥିଲେ, ଆପଣ ଯେଉଁ ପ୍ରସଙ୍ଗଗୁଡ଼ିକୁ କବିତାକୁ ଆଣିଛନ୍ତି, ତାହା ଭିନ୍ନ ହୋଇଥାଆନ୍ତା ଅଥବା ତା'କୁ ଲେଖିବାର ଶୈଳୀଟି ଭିନ୍ନ ହୋଇଥାଆନ୍ତା ?

- ରବିରଞ୍ଜନ ମିଶ୍ର, ବାଲେଶ୍ୱର

ଉତ୍ତର- ପୁରୁଷ ହୋଇଥିଲେ, ମୁଁ, ମୋର କାବ୍ୟିକ ଅଭିବ୍ୟକ୍ତି କିପରି ହୋଇଥାନ୍ତା, ତାହା କହିପାରିବି ନାହିଁ ନିର୍ଦ୍ଦିଷ୍ଟ ଭାବେ । ହୁଏତ ଭିନ୍ନ ହୋଇଥା'ନ୍ତା ।

ପ୍ରଶ୍ନ- ଜଣେ କବି ବା କବିତାର ଲକ୍ଷ୍ୟ କ'ଣ ହେବା ଉଚିତ ବିଦ୍ରୋହ ନା ଶାନ୍ତି ?

- ସୁରେନ୍ଦ୍ର ଦାଶ, କେନ୍ଦ୍ରାପଡ଼ା

ଉତ୍ତର- କବିତାର ଲକ୍ଷ୍ୟ, ସମସ୍ତ କଳାକୃତିର ଲକ୍ଷ୍ୟ, ଏ ପୃଥିବୀ ପାଇଁ ଶାନ୍ତି ଆନୟନ କରିବା । ଏଥିରେ ଦ୍ୱିମତ ହେବାର ନାହିଁ । ଯଦିବା 'ବିଦ୍ରୋହ' କିଛି ଥାଏ ଏହା ଶାନ୍ତି ପ୍ରତିଷ୍ଠା ନିମିତ୍ତ ଏକ ଉପାୟ ହୋଇପାରେ । ନୋବେଲ୍ ବିଜୟିନୀ ଶ୍ୱେତଲାନା ଆଲେକ୍‌ସିଭିଚ୍ କହିଛନ୍ତି, "ମାନବିକତାକୁ, ହୃଦୟବତ୍ତାକୁ ତ୍ୱରାନ୍ୱିତ କରିବା ସକଳ କଳାକାରର ଲକ୍ଷ୍ୟ । ଯୁଦ୍ଧ କଦାପି ନୁହେଁ, ପ୍ରେମ ହିଁ ଏହି ପୃଥିବୀକୁ ଧ୍ୱଂସମୁଖରୁ ରକ୍ଷା କରିବ ।"

ପ୍ରଶ୍ନ- ଆପଣଙ୍କ କବିତାର 'ପରୀ' ଏକ ଚରିତ୍ର- ତାହା ଅଲୌକିକ ମନେହୁଏ । ଆପଣ ତାହା ମାଧ୍ୟମରେ କ'ଣ ପ୍ରକାଶ କରିବାକୁ ଇଚ୍ଛା କରନ୍ତି ?

-ସଂଘମିତ୍ରା ମିଶ୍ର, ଭୁବନେଶ୍ୱର

ଉତ୍ତର- 'ପରୀ'କୁ ମୋର 'ପର୍ସୋନା ବୋଲି କହିପାରନ୍ତି । ପରୀ ଏକ ଲୌକିକ ଚରିତ୍ର । ତା'ର ନାମ ଅଲୌକିକ ଅବଶ୍ୟ । ମୁଁ ଯାହା ପ୍ରତିଷ୍ଠା କରିପାରେ ନାହିଁ, ଅଥଚ କରିବାକୁ ଅହରହ ଛଟପଟ ହୁଏ, ପରୀ ସେ ଦିଗରେ ହୁଏତ କିଛି କରିବାକୁ ଆଗଭର ହୋଇଥାଏ । ମତେ ଏଥିରୁ କିଛିଟା ସାନ୍ତ୍ୱନା ମିଳେ । ଯଦିଓ ଏହା ସମାଜକୁ ବଦଳାଇବା ନିମିତ୍ତ ଏକ ସଚେତନତା ମାତ୍ର ।

ପ୍ରଶ୍ନ- ଆପଣ ଗୋଟେ କବିତାରେ ଲେଖିଥିଲେ, "ମହାଶୂନ୍ୟର ଉତ୍ସରୁ ଫିଟି ଆସିଛି ମୁଁ ।" ଏହା ଏକ ଉତ୍ତରିତ ଆଧ୍ୟାତ୍ମିକ ଚେତନା ଓ ଆତ୍ମୋପଲବ୍ଧିର କଥା । କହିବେ କି, କବିତା ଏ ଉପଲବ୍ଧିକୁ ପ୍ରଭାବିତ କରିଛି ବା ଉପଲବ୍ଧି କବିତାକୁ ସ୍ୱଚ୍ଛ ଓ କାଳୋତ୍ତୀର୍ଣ୍ଣ କରିବାରେ ସହାୟକ ହୋଇଛି ?

- ପବିତ୍ର ମୋହନ କର, ଭୁବନେଶ୍ୱର

ଉତ୍ତର- "ମହାଶୂନ୍ୟର ଉତ୍ସରୁ ଫିଟି ଆସିଚି ମୁଁ"- ଏହା ଗୋଟିଏ ଉତ୍ତୀର୍ଣ୍ଣ ସତ୍ତା । 'ଶବରୀ' କାବ୍ୟର ଉକ୍ତି । ଏହି ଆତ୍ମୋପଲବ୍ଧି ମୋତେ ଓ ମୋର କବିତାକୁ ଏକାଧାରରେ ସ୍ୱଚ୍ଛତା ଓ ବିସ୍ତାର ଆଣିଦେଇଛି । କାଳୋତ୍ତୀର୍ଣ୍ଣ କରିପାରିଛି କି ନାହିଁ, କହିପାରିବି ନାହିଁ । ପବିତ୍ର, ତୁମେ ତ ଜଣେ କବି, ତୁମେ ଏହା ନିର୍ଦ୍ଧାରଣ କରିପାର । କାଳୋତ୍ତୀର୍ଣ୍ଣ ହେବା ସହଜ ନୁହେଁ ।

ପ୍ରଶ୍ନ- ଆପଣଙ୍କ ଦୀର୍ଘ କାବ୍ୟଯାତ୍ରାରେ କେଉଁ କେଉଁ ସମୟରେ ଆପଣଙ୍କ ରଚନା ରୂପାନ୍ତରିତ, ପରିବର୍ତ୍ତିତ ହୋଇଥିବ ବୋଲି ଭାବୁଛନ୍ତି ?

- ଆଶୁତୋଷ ପରିଡ଼ା, ଭୁବନେଶ୍ୱର

ଉତ୍ତର- ପ୍ରଥମରୁ ଯାହା ଲେଖିଥିଲି- ସେ ଥିଲା ନିଜ ପାରିବାରିକ ଦୁଃଖ-ଦୁର୍ଦ୍ଦଶାର କାହାଣୀ । ହଠାତ୍ ତା'ର ମୋଡ଼ ବଦଳିଗଲା । ମୋ ଭିତରେ ଗୋଟିଏ ସୁନ୍ଦର ଅସ୍ତିତ୍ୱ ଥିବାର ଅନୁଭବ କଲି । ଯେ ବାହ୍ୟ ଅସ୍ତିତ୍ୱଠାରୁ ସେ ଅଲଗା ଓ ସୁନ୍ଦର, ଆକର୍ଷଣୀୟ

ତଥା ବିଚାରଶୀଳ । 'ସାହାଡ଼ା ସୁନ୍ଦରୀ' କବିତା ଲୋକକଥା ପ୍ରବର୍ତ୍ତିତ ଏହି କାଳର ରଚନା । ପରବର୍ତ୍ତୀ ସମୟରେ ଆସିଲା ପୁରାଣକଳ୍ପ ଚରିତ୍ର 'ଶବରୀ' ଓ 'ତନ୍ମୟଧୂଳି' । ଯେ ଦୁଇଟି ଯାକ ପୁସ୍ତକ ଆଧ୍ୟାତ୍ମିକ ମାନସର ପ୍ରତିଫଳନ । ତତ୍‌ପରବର୍ତ୍ତୀ ମୋର 'ଅଧା ଅଧା ନକ୍ଷତ୍ର', 'କହି ନ ହେଲେ' ଓ 'ତୁମପାଇଁ ଥରେ, ସବୁଥର' ସମଗ୍ର ଜୀବନାନୁଭୂତିର ଏକ ଏକ ନୂତନ ଦିଗର ଉନ୍ମୋଚନ କଲେ ।

ପ୍ରଶ୍ନ- ଆପଣ ଏତେ ବର୍ଷ ଧରି କ'ଣ ଖୋଜୁଛନ୍ତି କବିତାରେ ? ପ୍ରଶ୍ନ ନା ଉତ୍ତର ? ଆରମ୍ଭ ନା ଶେଷ ? ଏ ଖୋଜିବାର କ'ଣ କିଛି ଅନ୍ତ ଅଛି ?

– ସୂର୍ଯ୍ୟସ୍ନାତ ତ୍ରିପାଠୀ, ହାଇଦ୍ରାବାଦ

ଉତ୍ତର- କ'ଣ ଖୋଜୁଚି କବିତାରେ ସତରେ ? ନିଶ୍ଚୟ ଆତ୍ମାଲୋଚନା ତ କରିଚାଲିଛି, ଆତ୍ମଶକ୍ତିକୁ ସବଳ କରିବାର ପ୍ରୟାସ ରଖିଛି । ସୂର୍ଯ୍ୟସ୍ନାତ, ତୁମେ ତ ନିଜେ ଜଣେ ଇଂଜିନିୟର । ସଂରଚନାରୁ କ'ଣ ଖୋଜୁଚ ? କବିତା ତ ସବୁକାଳେ ପ୍ରଶ୍ନମନସ୍କ । ଉପଯୁକ୍ତ ଉତ୍ତର କ'ଣ ସତକୁ ସତ ମିଳିଯାଏ ? ଏଠାରେ ଆରମ୍ଭ ଆଉ ଶେଷ ଯେ ଆପେକ୍ଷିକ । ଯେ ଖୋଜିବାର ଅନ୍ତ କେବଳ ମୃତ୍ୟୁ ଦ୍ୱାରା କବଳିତ ହେଲେ ଅନ୍ତ ହୋଇଥାଏ ।

ପ୍ରଶ୍ନ- ଆପଣଙ୍କ ସଦ୍ୟ କବିତା ପୁସ୍ତକ 'ଜବା କୁସୁମ ସଂକାଶଂ' ରେ ଯେଉଁ ସୂର୍ଯ୍ୟମୟତା ରହିଛି, ତାରା, ନକ୍ଷତ୍ର ଇତ୍ୟାଦି– ଏହି ପ୍ରବଣତା କାହିଁକି ଆସିଲା ? ଏଠାରେ ପର୍ଯ୍ୟାବରଣକୁ ଗୁରୁତ୍ୱ ଦିଆଯାଇଛି କି ? - ଏହା କିପରି ବ୍ୟକ୍ତ କରିବେ ?

– ଶତ୍ରୁଘ୍ନ ପାଣ୍ଡବ, କଟକ

ଉତ୍ତର- ହଁ, ମୋର ସଦ୍ୟ କବିତା ସଂକଳନରେ ସୂର୍ଯ୍ୟମୟତା ଭରି ରହିଥିବାର ମୁଁ ବିଶ୍ୱାସ କରେ । ଏହି 'ଜବା କୁସୁମ ସଂକାଶଂ' କବିତା ସଂକଳନଟି ତାରା, ନକ୍ଷତ୍ର ଇତ୍ୟାଦିର ପ୍ରବଣତାରେ ଉଛଳ । ବ୍ୟକ୍ତିଗତ ଦୁଃଖ, ଯନ୍ତ୍ରଣାର ଚିତ୍ର ତ କିଛି ରହିଛି, ମାତ୍ର ମୁଖ୍ୟ ହେଉଛି- ଏଥିରେ ପର୍ଯ୍ୟାବରଣର ଗୁରୁତ୍ୱ ପ୍ରକଟିତ । ପକ୍ଷୀ, ବୃକ୍ଷ, ପୋକ, ଜୋକ, ପିମ୍ପୁଡ଼ି, ଜନ୍ଦା, ଘାସ, ପାଣିଜଳା ଇତ୍ୟାଦି ମୋର ହୃଦୟକୁ ଆଲୋଡ଼ିତ କରୁଛନ୍ତି । ତେଣୁ ଏହି କବିତା ପୁସ୍ତକ ଭିନ୍ନ କିଛି ଚେତନାରେ ଉଚ୍ଚକିତ ବୋଲି ମୁଁ ଭାବେ ।

ପ୍ରଶ୍ନ- ଆପଣଙ୍କ କବିତା 'ସେଲିମ୍‌ର ପତ୍ର' ଅତି ଚମତ୍କାର ଲାଗେ । ଆପଣ ଜଣେ ନାରୀ ହୋଇ ଜଣେ ପୁରୁଷର ପ୍ରେମାଭିବ୍ୟକ୍ତିକୁ କିଭଳି ପ୍ରକାଶ କରିପାରିଲେ ?

– ଶୁଭଶ୍ରୀ ଶୁଭସ୍ମିତା ମିଶ୍ର, ଭୁବନେଶ୍ୱର

ଉତ୍ତର- କଲେଜରେ ପଢ଼ିବାର ପ୍ରଥମ ବର୍ଷ ଲେଖିଥିଲି ଏହି 'ସେଲିମ୍‌ର ପତ୍ର' କବିତାଟି । ବୋଧହୁଏ ତା' ପୂର୍ବରୁ ଚଳଚ୍ଚିତ୍ର 'ମୋଗଲେ-ଇ-ଆଜମ୍' ଦେଖି ପ୍ରଭାବିତ ହୋଇଥିଲି । ହଁ, ମୁଁ ନାରୀ ହୋଇ ପୁରୁଷର ମନକଥା କିପରି ଲେଖିଲି ପଚାରିଛନ୍ତି ।

କିନ୍ତୁ ଜଣେ ସ୍ରଷ୍ଟା ନାରୀତ୍ୱ ଓ ପୁରୁଷତ୍ୱ ଭିତରେ ଆତଯାତ ହୋଇପାରେ । କାୟା ପ୍ରବେଶ କରିପାରେ । ସେତେବେଳେ ପିଲାମନ ନେଇ ମୁଁ ଯାହା ଲେଖିଥିଲି, ତାହା ଯେ ବହୁ ସ୍ଥାନରେ ବହୁ ପ୍ରଶ୍ନର ସମ୍ମୁଖୀନ ମୋତେ କରାଇଛି ତା'ର ପ୍ରଥମ ଧାଡ଼ି "ପ୍ରାଣସମା, ଶୂନ୍ୟସମ ଲାଗେ ସିନା / ତୋ ବିନା ଏ ରାଜବାଟୀ / ଦିଲ୍ଲୀର ସୁଷମା ।" ଏମିତିରେ ବହୁ କବି ଓ ଲେଖକ କାୟା ପ୍ରବେଶ କରିପାରନ୍ତି । ସେ କ୍ଷମତା ତାଙ୍କର ଥାଏ । ମୁଁ ଅବଶ୍ୟ ଲେଖିବାବେଳେ ଏସବୁ ନେଇ ସଚେତନ ନ ଥିଲି । ମୁଖ୍ୟ ଥିଲା ପ୍ରେମାବେଗ । ଆବେଗ ପ୍ରଚୁର ହେଲେ ହାନିକାରକ । ମାତ୍ର ଆବେଗ ନ ଥିଲେ ତ ନ ଚଳେ ।

ପ୍ରଶ୍ନ- ପ୍ରତିଭା ଶତପଥୀ ଓ କବି ପ୍ରତିଭା ଶତପଥୀ ମଣିଷ ଭିତରେ ସମନ୍ୱୟ ଓ ଦ୍ୱନ୍ଦ୍ୱ କ'ଣ ? - ନବଜ୍ୟୋତି ରାୟ, ଜଗତସିଂହପୁର

ଉତ୍ତର- କବି ଓ ମଣିଷ ତ ଏକ ଓ ଅଭିନ୍ନ । ସମନ୍ୱୟ ଓ ଦ୍ୱନ୍ଦ୍ୱ ସିନା ପାଠକେ ବିଚାର କରିବେ- ସମାଲୋଚକମାନେ ସ୍ଥିର କରିବେ । ମୁଁ ଯେ ଗୋଟିଏ ବ୍ୟକ୍ତି- 'କବି' ବୋଲି ନିଶ୍ଚେ ଟିକେ ଭିନ୍ନ ମାନସିକତାରେ ଥାଏ । ନିଜ ଭିତରେ ସମନ୍ୱୟ ରକ୍ଷା କରିବାର ଚେଷ୍ଟା କରିଥାଏ ।

ପ୍ରଶ୍ନ- ଏମିତି କିଛି ପ୍ରସଙ୍ଗ ଅଛି କି ଯାହା ମନକୁ ଅନେକ କାଳ ହେଲା ଆନ୍ଦୋଳିତ କରୁଥିଲେ ହେଁ, ତା'କୁ କବିତାରେ ଲେଖିପାରି ନାହାନ୍ତି ?

- ସ୍ନେହଲତା ମହାନ୍ତି, କେନ୍ଦୁଝର

ଉତ୍ତର- ହଁ, କିଛି ପ୍ରସଙ୍ଗ ଅଛି, ଆବେଗାନୁଭୂତି ମଧ୍ୟ ରହିଛି । ମନ ଆନ୍ଦୋଳିତ ହେଉଥିଲେ ହେଁ, ତାକୁ ଲେଖିପାରି ନାହିଁ, ପାରିବି ନାହିଁ ବୋଧହୁଏ ।

ପ୍ରଶ୍ନ- କବିତା କ'ଣ ଦେଲା ବା କବିତାରୁ କ'ଣ ପାଇଲେ-ଏପରି ପ୍ରଶ୍ନ ଆସେ କେବେ ମନରେ ? - ଶ୍ରୀମୟ ସୂପକାର, ସମ୍ବଲପୁର

ଉତ୍ତର- କବିତା ଦେଲା କ'ଣ, କ'ଣ ପାଇଲି ଏକଥା ତଉଲି ନାହିଁ କେବେ ବି । ତେବେ କବିତା ଦେଇଛି ଅନେକ ଯନ୍ତ୍ରଣା, ନିଦ୍ରାହୀନ ରାତି, ବ୍ୟାକୁଳତା, ଛଟପଟ, କବିତା ହିଁ ଦେଇଛି । ପୁନଶ୍ଚ ସେଥିରୁ ମିଳିଛି ଆତ୍ମସନ୍ତୋଷ, ଆନନ୍ଦ; ପୁଣି କବିତାଟିଏ ଲେଖା ସରିଲେ, ବେଳେବେଳେ ଆସିଛି "ଯା' କିଛି ହେଲା ନାହିଁ'ର ବ୍ୟର୍ଥତା । ପୁଣି କେବେ ସଫଳତାର ଅଫୁରନ୍ତ ଆନନ୍ଦ । ଅବଶ୍ୟ, 'ଆର୍ଟିଷ୍ଟିସ୍ ଲାଇଫ୍ ଇଜ୍ ଏ ଲଙ୍ଗ୍ ଆଣ୍ଡ୍ ଲଭ୍‌ଲି ସୁଇସାଇଡ୍' ଓସ୍କାର ୱାଇଲ୍ଡ୍ ଲେଖିଥିଲେ । 'ଲଭ୍‌ଲି' ଶବ୍ଦଟି ବି ପ୍ରାସଙ୍ଗିକ ଏଠାରେ ।



# ସାକ୍ଷାତ୍‌କାର

## ପ୍ରସ୍ତୁତି: ଶର୍ମିଷ୍ଠା ମହାପାତ୍ର

[ ୟୁ.ଜି.ସି. ସ୍କଲାର ଗବେଷିକା, ଶାନ୍ତିନିକେତନ, ପଶ୍ଚିମବଙ୍ଗ ]

ଦୂର କେଉଁ ଝରଣାର ଆଧ୍ୟାତ୍ମିକ ଗୀତି, ଶବ୍ଦ ଓ ଭାବର ଅଗଣାରେ ବିଭୋର ଅତିଥି: ପ୍ରତିଭା ଶତପଥୀ ।

ଓଡ଼ିଆ କାବ୍ୟ-ସାହିତ୍ୟର ଉଜ୍ଜ୍ୱଳ ପରିମଣ୍ଡଳରେ ସ୍ୱତନ୍ତ୍ର ସିଦ୍ଧିର ଅଧିକାରିଣୀ ପ୍ରତିଭା ଶତପଥୀ ଆମ ସମୟର ଜଣେ ସଫଳ ଶବ୍ଦଶିଳ୍ପୀ । କାବ୍ୟ ଉଚ୍ଚାରଣରେ ସେ କେତେବେଳେ ପ୍ରେମାକୁଳ 'ଶବରୀ' ତ କେତେବେଳେ ଶୂନ୍ୟତାବୋଧର 'ସାହାଡ଼ା ସୁନ୍ଦରୀ' । ଶୂନ୍ୟରୁ, ଇଥରରୁ 'ମହାମେଘ'ରୁ ଲିରିକ୍ ପରି ଝରିପଡ଼େ ତାଙ୍କ କବିତାର ଶୁଦ୍ଧ ଧାରା । ବଞ୍ଚିବାର ସ୍ପର୍ଦ୍ଧା, କାରୁଣ୍ୟ, ପ୍ରେମାକୁଳତା, ଦାର୍ଶନିକ ଗଭୀରତା, ଆଧ୍ୟାତ୍ମିକତା, ଆତ୍ମମଗ୍ନ ଭାବରେ ଋଦ୍ଧିମନ୍ତ ତାଙ୍କର କାବ୍ୟସ୍ୱର । ନିର୍ମଳ କାବ୍ୟ ଚେତନାର 'ତନ୍ମୟଧୂଳି' ଦେହରେ ମାଖି ଆତ୍ମୋପଲବ୍ଧିରେ ମୁଗ୍ଧ ପ୍ରତିଭା ଶତପଥୀ ଦୂର କେଉଁ ଝରଣାର ସ୍ୱର ପରି ପାଠକଙ୍କୁ ବିଭୋର କରନ୍ତି । ଏହି ଅନନ୍ୟ ସିଦ୍ଧିର କବିଙ୍କ ସହ 'ପ୍ରତିବେଶୀ'ର ସୃଜନ ଆଳାପ ।

ପ୍ରଶ୍ନ- ଏବେ ଏବେ ଶୁଣାଯାଉଥିବା ସାହିତ୍ୟିକ ଧାରା (ବାଦ ବା ism) 'ଉତ୍ତର ଆଧୁନିକତା' ଖୁବ୍ ଚର୍ଚ୍ଚିତ ଚିନ୍ତାଧାରା । ଉତ୍ତର ଆଧୁନିକତା କହିଲେ ଆପଣ କ'ଣ ବୁଝନ୍ତି ?

ଉତ୍ତର- ଏବେ ନୁହେଁ, ଉତ୍ତର ଆଧୁନିକତା ବହୁ ପୂର୍ବରୁ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ । ତେବେ ପାଶ୍ଚାତ୍ୟ ଅର୍ଥରେ ଉତ୍ତର ଆଧୁନିକତା କିଛିଟା ଭିନ୍ନ । ଭାରତୀୟ ଉତ୍ତର ଆଧୁନିକତା ଆମ ଭାରତୀୟ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରେ ଏହାର ସ୍ୱତନ୍ତ୍ର ପରିଚୟ ରଖେ । ବିଶେଷକରି ଓଡ଼ିଆ କବିତା କ୍ଷେତ୍ରରେ ୧୯୭୦/୭୫ ମସିହା ବେଳକୁ ଯେଉଁ ଭାବଗତ ପରିବର୍ତ୍ତନ ସଂଘଟିତ ହେଲା ତାହାହିଁ ଉତ୍ତର ଆଧୁନିକତା । ଅର୍ଥାତ୍ ତାହା ଆଧୁନିକତାର ଉତ୍ତର କାଳର ଚିନ୍ତାଧାରା । ଏହା ଆଧୁନିକତା ଉପରେ ନିର୍ଭରଶୀଳ, ମାତ୍ର ଭାବାନୁଭୂତି ଓ ଦୃଷ୍ଟିକୋଣରେ ତାହାଠାରୁ ଅନେକଟା ଭିନ୍ନ ପ୍ରତିପାଦିତ ହୁଏ । ଏ ସମ୍ପର୍କରେ ମୋର ଗୋଟିଏ ପ୍ରବନ୍ଧ ପୁସ୍ତକ ପ୍ରକାଶ ପାଇଛି । ପ୍ରାୟ କୋଡ଼ିଏ ବର୍ଷ ତଳେ

ଏହି ପୁସ୍ତକଟି ଗବେଷକମାନଙ୍କଦ୍ୱାରା ଆଦୃତ ହୋଇଛି । ବହୁ ସଂସ୍କରଣରେ ମୁଦ୍ରିତ ମଧ୍ୟ ହୋଇସାରିଛି ।

ପ୍ରଶ୍ନ- ଭାରତୀୟ ସାହିତ୍ୟରେ ଉତ୍ତର ଆଧୁନିକତା ପ୍ରବେଶ କଲାବୋଲି ଜଣେ କିପରି ବୁଝିବ? ଓଡ଼ିଆ ସାହିତ୍ୟରେ ଏହାର ପ୍ରଥମ ପ୍ରତିପାଦନ କେଉଁ ରୂପରୁ ପ୍ରକଟ ହେଲା: କବିତା, ନାଟକ ନା ଉପନ୍ୟାସରୁ ?

ଉତ୍ତର- ଆଧୁନିକତା ଏକ ପୁରୋଦୃଷ୍ଟି । ଏକ ସମୟରେ ଏହା କବିତା, ନାଟକ, ଉପନ୍ୟାସ ଚେତନାକୁ ପ୍ରଭାବିତ କରିଛି । ଏହି କାଳର କବିତା ମଧ୍ୟରେ ଉତ୍ତର ଆଧୁନିକତାର ଅନେକ ଗୁଣ ଓ ଧର୍ମ ପରିସ୍ଫୁଟ । ଏହାକୁ ଗ୍ରହଣ ନ କରିବାର ଉପାୟ ନାହିଁ ।

ପ୍ରଶ୍ନ- ୧୯୭୦/୮୦ ମସିହା ପରବର୍ତ୍ତୀ ସବୁ କବିତାକୁ କ'ଣ ଉତ୍ତର ଆଧୁନିକ ବୋଲି ଗ୍ରହଣ କରାଯାଇପାରିବ ?

ଉତ୍ତର- ୧୯୭୦/୮୦ ମସିହା ପରବର୍ତ୍ତୀକାଳୀନ ସଂରଚନାରେ ଉତ୍ତର ଆଧୁନିକ ଚିନ୍ତାଧାରା ନିଶ୍ଚିତ ଭାବରେ ଉଚ୍ଚାରିତ ହୋଇଛି ।

ପ୍ରଶ୍ନ- ଆପଣଙ୍କ ଦ୍ୱାରା ରଚିତ 'ନିମିଷେ ଅକ୍ଷର', 'ମହାମେଘ', 'ଶବରୀ, 'ତନ୍ମୟ ଧୂଳି', 'ଅଧା ଅଧା ନକ୍ଷତ୍ର', ଆଦି ସଙ୍କଳନ ଏ ସମୟର ସାହିତ୍ୟିକ ବାତାବରଣକୁ ବିଶେଷ ପ୍ରଭାବିତ କରିଛି । ଆପଣ କ'ଣ ଉତ୍ତର ଆଧୁନିକତାକୁ ଦୃଷ୍ଟିରେ ରଖି ଏସବୁ କବିତା ଲେଖିଛନ୍ତି ?

ଉତ୍ତର- ଯେଉଁ କାଳଖଣ୍ଡରେ ମୁଁ ବଞ୍ଚିଛି, ତାହାରି ପ୍ରଭାବରେ ମୋ କବିତାରେ ହୁଏତ ଉତ୍ତର ଆଧୁନିକତା ପ୍ରକଟିତ ହୋଇଛି । ମୁଁ ନିର୍ଦ୍ଦିଷ୍ଟ କୌଣସି ଚିନ୍ତାଧାରାକୁ ନେଇ କବିତା ରଚନା କରିବାରେ ବିଶ୍ୱାସ ରଖେ ନାହିଁ ।

ପ୍ରଶ୍ନ- ଅନ୍ୟାନ୍ୟ ଭାଷାରେ 'ଉତ୍ତର ଆଧୁନିକ' ଚିନ୍ତାଧାରାଟି ଯେତିକି ଆଲୋଚିତ, ଓଡ଼ିଆ ସାହିତ୍ୟରେ ସେତେ ଆଲୋଚିତ ହୋଇ ନାହିଁ କାହିଁକି ?

ଉତ୍ତର- ଅନ୍ୟ କେଉଁ ଭାଷାରେ ଉତ୍ତର ଆଧୁନିକତାର ଆଲୋଚନା ମୁଁ ବିଶେଷ ପଢ଼ି ନାହିଁ । ଓଡ଼ିଆ ସାହିତ୍ୟରେ ଏହାର ବିଶ୍ଳେଷଣ ଅବଶ୍ୟ ଯଥେଷ୍ଟ ହୋଇ ନାହିଁ । ମଝିରେ ମଝିରେ ଇଂରାଜୀ ଉତ୍ତର ଆଧୁନିକତାର ମାନଦଣ୍ଡରେ ଓଡ଼ିଆ ଉତ୍ତର ଆଧୁନିକତାକୁ ମାପ କରିବସୁଛନ୍ତି, କେତେକ ଆଲୋଚକ । ମୋ ମତରେ ଆମେ କ'ଣ କାଳ କାଳ ଧରି ପାଶ୍ଚାତ୍ୟକୁ ଅନାଇ ବସିଥିବା ? ଆମ ଓଡ଼ିଆ କବିତାରେ ସୁପ୍ରେକ୍ଷ୍ୟ କୌଣସି ଭିନ୍ନ ଯୁକ୍ତିଯୁକ୍ତ ଦୃଷ୍ଟିକୁ ଗ୍ରହଣ କରିବା ନାହିଁ ?

ପ୍ରଶ୍ନ- ଆପଣ ଲେଖିଥିବା 'ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ପୁସ୍ତକଟି ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା ସମ୍ପର୍କରେ ପ୍ରଥମ ବିଚାର । କିନ୍ତୁ ସେ ପୁସ୍ତକ ସମ୍ବନ୍ଧରେ ଯଥେଷ୍ଟ ଚର୍ଚ୍ଚା ହୋଇଛି କି ?

ଉତ୍ତର- ମୋ ପ୍ରବନ୍ଧ ପୁସ୍ତକଟି ପ୍ରକୃତପକ୍ଷେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ପରିବର୍ତ୍ତିତ ଚିନ୍ତାକୁ ଉପସ୍ଥାପିତ କରିଛି । କେତେକ ଆଲୋଚକ ଓ ଗବେଷକ ତାହା ଗ୍ରହଣ କରିଛନ୍ତି । ପ୍ରଥମେ ଇଂରାଜୀ ପ୍ରଫେସର ବିଧୁଭୂଷଣ ଦାସ ଓ ପ୍ରଫେସର ତ୍ରିଲୋଚନ ମିଶ୍ର ଏବଂ ଓଡ଼ିଆ ପ୍ରଫେସର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଖଗେଶ୍ୱର ମହାପାତ୍ର ଖୁବ୍ ପସନ୍ଦ କରିଥିଲେ । ଏହା ଏକ ସେମିନାରରେ ପଠିତ ଓ ଆଲୋଚିତ ହୋଇଥିଲା । ଆମ ଓଡ଼ିଆ ସାହିତ୍ୟର କେଉଁ ଦିଗଟି ଯଥାର୍ଥ ଓ ଯଥେଷ୍ଟ ଭାବେ ଆଲୋଚିତ ହୋଇଛି ଯେ !

ପ୍ରଶ୍ନ- ଅଷ୍ଟମ ଦଶକ (୧୯୮୦) ର ଉତ୍ତର ଆଧୁନିକ କବିତାରେ 'ନାରୀବାଦ' ହେଉଛି ଏକ ବଳିଷ୍ଠ ଦିଗ । ଜଣେ କବି ଓ ନାରୀ ହିସାବରେ ଆପଣ କେତେଦୂର ଏଥିପ୍ରତି ସଚେତନ ? ଆପଣ ୟୁ.ଜି.ସି. ବରିଷ୍ଠ ପ୍ରକଳ୍ପ ଭାବରେ ଲେଖିଛନ୍ତି, 'ନାରୀ ଅସ୍ତିତ୍ୱର ବାସ୍ତବତା' - ଏହା ବାସ୍ତବତାକୁ କିଛିଟା ଆଲୋକିତ କରିଛି । ଏହାକୁ ଯଥେଷ୍ଟ ବୋଲି ଭାବନ୍ତି କି ?

ଉତ୍ତର- 'ନାରୀବାଦ' ବା ଅନ୍ୟ ଅର୍ଥରେ ନାରୀତ୍ୱ ପ୍ରତି ସମ୍ମାନବୋଧର ଦାବି ଏହି କାଳର ଏକ ବିଶେଷତ୍ୱ । ଏଥିପ୍ରତି ପ୍ରଚୁର ସଚେତନତା ସୃଷ୍ଟି ହୋଇଛି । ମୁଁ ନିଜେ ମଧ୍ୟ ସଚେତନ । ମୋ ରଚିତ ବହୁ କବିତାରେ ଏହି ସ୍ୱର ଧ୍ୱନିତ, ମାତ୍ର ତାହା ଅନୁଚ୍ଚ, ପ୍ରତୀକଧର୍ମୀ ଓ କଳାତ୍ମକ ଭାବେ ଉଚ୍ଚାରିତ । ତୀବ୍ର ନାରୀବାଦର ଉଚ୍ଚ ଉଚ୍ଚାରଣରେ କଳାତ୍ମକତା ବ୍ୟାହତ ହେବାର ପ୍ରମାଦ ରହିଛି ନିଶ୍ଚୟ । କେତେକ ସ୍ଥଳରେ ଏହା ଘଟିଛି ମଧ୍ୟ । କିନ୍ତୁ ନାରୀ ଅସ୍ତିତ୍ୱର ନୂତନ ବିଚାର ଦିଗକୁ ଏହି କାଳର କବିତା ଉନ୍ମୁଖ । ସ୍ଲୋଗାନରେ ମୁଁ ବିଶ୍ୱାସ କରେ ନାହିଁ । ଅନାଲୋକିତ ଦିଗନ୍ତ ଧୀରେ ଧୀରେ ଫିଟି ଆସୁଛି । ଆସିବ ।

ପ୍ରଶ୍ନ- ଆପଣଙ୍କ ବ୍ୟତୀତ ଅନ୍ୟ କେତେକ ସମକାଳୀନ କବି ନାରୀ ଜୀବନର ନାନା ଅଭାବନୀୟ ଦିଗକୁ କବିତାରେ ପ୍ରତୀକିତ କରିଛନ୍ତି । ତା' ସତ୍ତ୍ୱେ ନାରୀ ଜୀବନର ଅନେକ ଗୋପନୀୟତା ଏଯାଏଁ ଅନାଲୋଚ୍ୟ ରହିଛି ବୋଲି ଭାବନ୍ତି କି ?

ଉତ୍ତର- ଓଡ଼ିଆ କବିତା କ୍ଷେତ୍ରରେ କେତେକ କବି ନାରୀ ଜୀବନର ବିଭିନ୍ନ ଦୁଃସ୍ଥିତି, ଅସହାୟତାବୋଧ ଓ ଅସମାନତାକୁ ଚିତ୍ରଣ କରୁଛନ୍ତି । କେବଳ ଶରୀର ସମ୍ଭୋଗ ପ୍ରତି ବ୍ୟାକୁଳତା ପ୍ରକାଶ ଓ ନାରୀ ଶରୀରର ନଗ୍ନତା ଉଦ୍ଘାପନ, ଚମକପ୍ରଦ ଘଟଣା ହୋଇପାରେ ମାତ୍ର ଏହା ନାରୀତ୍ୱର ଯଥାର୍ଥ ସମ୍ମାନକୁ ଅଭିବ୍ୟକ୍ତ କରି ନାହିଁ । ନାରୀତ୍ୱର ମର୍ଯ୍ୟାଦା ଓ ସମ୍ମାନ ପ୍ରତିଷ୍ଠା ଦିଗରେ ସ୍ୱରୋତ୍ତୋଳନ ଯଥାର୍ଥ 'ନାରୀବାଦ' ବୋଲି ଗ୍ରହଣ କରାଯିବ । ନାରୀର ଅନ୍ତର୍ମନର ବିଶ୍ଳେଷଣ ମଧ୍ୟ ଏହାର ଏକ ବଳିଷ୍ଠ ଦିଗ । ଏସବୁର ଅଭାବରେ ଯେଉଁ ଅବକ୍ଷୟ ଘଟୁଛି ତାହାର ଚିତ୍ର ତଥାପି ଅନାଲୋଚିତ ରହିଯାଉଛି । ମୋର ପ୍ରକଳ୍ପ ପୁସ୍ତକ 'ନାରୀ ଅସ୍ତିତ୍ୱର ବାସ୍ତବତା'ରେ ମୁଁ 'ନାରୀବାଦ'ର କେତେକ ଦିଗ ଉପରେ ଆଲୋକପାତ କରିଛି ।

ପ୍ରଶ୍ନ- ୧୯୮୦ ମସିହା ପୂର୍ବରୁ ଆପଣ ଲେଖାଲେଖି କରୁଥିଲେ, ଏବେ ମଧ୍ୟ କରୁଛନ୍ତି । ଏସବୁ ସାହିତ୍ୟିକ ଧାରା ଆପଣଙ୍କ ସୃଜନକୁ ପ୍ରଭାବିତ ଓ ତ୍ୱରାନ୍ୱିତ କରୁଥିବାର ମନେ କରୁଛନ୍ତି କି ?

ଉତ୍ତର- ୧୯୭୦ ବେଳ ଠାରୁ ମୁଁ ସଜ୍ଞାନ ସଚେତନ ଭାବରେ କବିତା ସାଧନା (କାବ୍ୟିକ ସାଧନା) ଜାରି ରଖିଛି । ପ୍ରତ୍ୟକ୍ଷଭାବେ କୌଣସି ସାହିତ୍ୟିକବାଦ (ism) ମୁଁ ଅନୁସରଣ କରି ନାହିଁ । ସମୟର ଦାବି ଓ ହୃଦୟାନୁଭୂତିର ଦାବିରେ ମୋର ଉପଲବ୍ଧିରେ ପରିବର୍ତ୍ତନର ସ୍ୱର ଉଚ୍ଚକିତ ହୋଇଛି ।

ପ୍ରଶ୍ନ- ଆପଣଙ୍କ ପସନ୍ଦର କେତେକ ଉତ୍ତର ଆଧୁନିକ କବିଙ୍କ ମଧ୍ୟରୁ କାହାର ନାମ ସର୍ବପ୍ରଥମେ ନେବେ ?

ଉତ୍ତର- ଉତ୍ତର ଆଧୁନିକତା ଏକ କାବ୍ୟିକ ଦୃଷ୍ଟି ଭାବେ ଉପରୋକ୍ତ ସମୟଖଣ୍ଡ ମଧ୍ୟରେ ସାଧନାରତ ପ୍ରାୟ ସବୁ କବିଙ୍କୁ ଊଣାଅଧିକେ ପ୍ରଭାବିତ କରିଛି । ଜଣକୁ ନାମିତ କରିବାର ଆବଶ୍ୟକତା ମୁଁ ଅନୁଭବ କରୁ ନାହିଁ ।

ପ୍ରଶ୍ନ- 'ଓଡ଼ିଆ କବିତା' ଓ 'ଉତ୍ତର ଆଧୁନିକ କବିତା'- ଯେ ଦୁଇଟି ବିଷୟକୁ ନେଇ ଆପଣ କିଭଳି ବିଚାର କରନ୍ତି ?

ଉତ୍ତର- ଓଡ଼ିଆ କାବ୍ୟ ଚେତନାର, ସୃଜନ ଓ ପ୍ରଗତିର ସୁଦୀର୍ଘ ପରମ୍ପରା ରହିଛି । ବର୍ତ୍ତମାନର ଓଡ଼ିଆ କବିତା ତ ଉତ୍ତର ଆଧୁନିକ ଚେତନାକୁ ପ୍ରକଟ କରୁଛି । କ୍ରମଶଃ ଏହାର ଦିଗନ୍ତ ପ୍ରସାରଣ ଓ ପରିବର୍ତ୍ତନ ସାପେକ୍ଷ ହୋଇପାରେ ।

ପ୍ରଶ୍ନ- ତରୁଣ ପିଢ଼ିଙ୍କ ସମ୍ପର୍କରେ କିଛି ବାର୍ତ୍ତା- କବିତା ରଚନା ନିମନ୍ତେ ଯେଉଁ ମାର୍ଗ ଅବଲମ୍ବନ କରିବା ଶ୍ରେୟସ୍କର, ସେହି ସମ୍ପର୍କରେ କିଛି ବାର୍ତ୍ତା ରଖନ୍ତୁ ।

ଉତ୍ତର- ଶର୍ମିଷ୍ଠା, ଏ ଯୁଗର 'ବାର୍ତ୍ତା'କୁ ଭଲା ଚାହିଁ ବସିଛି, କିଏ ? ଏକ ପ୍ରକାର ପ୍ରୌଢ଼ି ତରୁଣ କବିଙ୍କୁ ଆକ୍ରାନ୍ତ କରିପକାଉଛି । ଅବଶ୍ୟ ବ୍ୟତିକ୍ରମ ରହିଛି ତ ନିଶ୍ଚୟ । କବିତା ସଂରଚନା, ଏକ ବିପୁଳ ସାଧନାସାପେକ୍ଷ ବ୍ୟାପାର । ଏଥିରେ ସିଦ୍ଧି ମଧ୍ୟ ଅବଶ୍ୟମ୍ଭାବୀ ନୁହେଁ । ଆଉ ପାଠକର ଅନ୍ତଃକରଣ ଯଦି କବିତାଟିଏ ପଢ଼ି ଆନ୍ଦୋଳିତ ନ ହେଲା, ଯଦି କବିତାଟି ବାରମ୍ବାର ପଢ଼ିବାକୁ ପାଠକକୁ ବାଧ୍ୟ ନ କଲା, ଅନେକ ଆଢ଼େଇ ଦେଉଥିବା ଅନୁଭବ ଦିଗରେ ତାହାକୁ ସଂବେଦନଶୀଳ କରି ନ ପାରିଲା, ତେବେ କବି ଓ ପାଠକ ଉଭୟେ ଅଗଭୀର ମନେହେବେ ନାହିଁ କି ? ଅବଶ୍ୟ ଏଠାରେ ମୁଁ ସତ୍ କବି ଓ ଦୀକ୍ଷିତ ପାଠକଙ୍କୁ ଉଦ୍ଦେଶ୍ୟ କରି ଏହା କହିଲି । ତେବେ, କବିମାନେ ଧୈର୍ଯ୍ୟ (Patience) ଓ ଅନବରତ ପ୍ରୟାସ (Persistence) ଆଚରିବାରେ ବ୍ୟାପୃତ ରହିଲେ ଉତ୍ତମ ।

'ପ୍ରତିବେଶୀ' ତରଫରୁ
ଆପଣଙ୍କୁ ଅଜସ୍ର ଧନ୍ୟବାଦ
ଆପଣଙ୍କର ସୁସ୍ୱାସ୍ଥ୍ୟ ଓ
ଦୀର୍ଘ ଆୟୁ କାମନା କରୁଛୁଁ ।



# ଚେତନା ଓ ଉପଲବ୍ଧିର ବିଭିନ୍ନ ସୋପାନ ଦେଇ- କାବ୍ୟ ଭାବନାର ଗତି

## [ ସାକ୍ଷାତ୍ କରିଛନ୍ତି ସୁନୀତି 'ଧରିତ୍ରୀ' ତରଫରୁ ]

ପ୍ରଶ୍ନ- 'ଅସ୍ତଜହ୍ନର ଏଲିଜି'ରେ ବିଷାଦ ଭାବନା ସହ ସୌନ୍ଦର୍ଯ୍ୟ ଚେତନାର ସମ୍ମିଶ୍ରଣ ଘଟିଛି । ଏହା କିପରି ସମ୍ଭବ ହେଲା ?

ଉତ୍ତର- ଏମିତିରେ ମୋ କବିତାରେ ତ ବିଷାଦବୋଧର ପ୍ରତିଫଳନ ରହିଛି- ରହିଛି ମଧ୍ୟ ଉଜ୍ଜୀବନ ଆଶାବାଦର । ଆଶା ଓ ବିଷାଦ ପରସ୍ପରଠାରୁ ଅବିଚ୍ଛିନ୍ନ ହୋଇ ରହିଛନ୍ତି । ତା' ଭିତରେ ଲୁଚିଛପି ସୁନ୍ଦରତା ରହିବ ହିଁ ରହିବ । ସମ୍ମିଶ୍ରଣର ବାଗ ମୁଁ ନିଜେ ଜାଣେନା ।

ପ୍ରଶ୍ନ- ଆପଣଙ୍କ କବିତାର ପ୍ରକୃତି ସହିତ ତଲ୍ଲୀନତାବୋଧ ସ୍ପଷ୍ଟ ବାରିହୁଏ । ଏହା କିପରି ସମ୍ଭବ ହୋଇଛି ?

ଉତ୍ତର- ମୋର ଜନ୍ମ କଟକ ସହର ହସ୍ପିଟାଲରେ । ୪ବର୍ଷ ବୟସ ପର୍ଯ୍ୟନ୍ତ ବିତିଛି କୋରାପୁଟ ସହରର ମାଳରେ । ୧୬ବର୍ଷ ବୟସଯାଏ ସତ୍ୟଭାମାପୁରରେ, ସେଇ ମୋ ଗାଆଁ । ତା' ପରେ ରେଭେନ୍ସା ହଷ୍ଟେଲ ଓ ସହର । ପ୍ରକୃତିର ବୀଜ ମୋ ଭିତରେ ପଲ୍ଲବିତ ହୋଇଥାଏ ଅହରହ ।

ପ୍ରଶ୍ନ- 'ସାହାଡ଼ା ସୁନ୍ଦରୀ' ଲେଖିଲାବେଳକୁ ସବୁ ଅସାମର୍ଥ୍ୟ ଓ କୁତ୍ସିତପଣ ଭିତରେ ସୌନ୍ଦର୍ଯ୍ୟର ଦିବ୍ୟଚେତନାର ପ୍ରତ୍ୟାଶା ଝଲସି ଉଠିଛି । ତେବେ କ'ଣ ଏତେବେଳକୁ ଆପଣ ଜୀବନର ବାସ୍ତବ ସତ୍ୟକୁ ଉପଲବ୍ଧି କରିସାରିଥିଲେ ?

ଉତ୍ତର- ୧୯୭୬ରେ ରଚିତ 'ସାହାଡ଼ା ସୁନ୍ଦରୀ' କବିତାଟି ନିଜ ଭିତରର ଏକ ଶୁଦ୍ଧ ସତ୍ତା ପ୍ରତି ଉଦ୍‌ବୋଧନ । ଜୀବନର ବାସ୍ତବ ସତ୍ୟକୁ ଆଜି ଏ ବୟସରେ କିଛି କିଛି ବୁଝିଲାପରି ମନେହେଉଛି । ତେବେ ସତ୍ୟ ଯେ ଆପେକ୍ଷିକ । 'ସାହାଡ଼ା ସୁନ୍ଦରୀ' ରଚନାକାଳରେ ହୁଏତ ସତ୍ୟ ସହ ପରିଚୟ ଘଟିଛି ।

ପ୍ରଶ୍ନ- ଆପଣଙ୍କର ଅନେକ କବିତାରେ ଅଭିବ୍ୟକ୍ତିର ସୂକ୍ଷ୍ମତା ସମାନ ଦିଶୁଥିଲେ ମଧ୍ୟ ଭିନ୍ନ ଓ ଅନନ୍ୟ । ଗୋଟିଏ କଲମରୁ ଏ ଭିନ୍ନତା କିପରି ସମ୍ଭବ ?

ଉତ୍ତର- 'ମହାମେଘ' ୧୯୮୮ରେ ପ୍ରକାଶିତ ଓ 'କହି ନ ହେଲେ' ୨୦୦୬ରେ ପ୍ରକାଶିତ । ଯା' ଭିତରେ ଦୀର୍ଘ ଅଠରବର୍ଷର ବ୍ୟବଧାନ-ଚେତନା ଓ ଉପଲବ୍ଧିର ବିଭିନ୍ନ ସୋପାନ ଦେଇ କାବ୍ୟ ଭାବନା ଗତି କରିଥାଏ ଅବାରିତ । ଯଦି ଅଭିବ୍ୟକ୍ତିରେ ଭିନ୍ନତା ଓ ଅନନ୍ୟତା କିଛି ବି ନ ଥାନ୍ତା, ମୁଁ ସେଗୁଡ଼ିକ ଲେଖିଥାନ୍ତି କାହିଁକି ? ମୂଳ କଥା, ଯାହା ଲେଖିଲେ ବି ଆହୁରି ଅନେକ ବାକି ରହିଗଲା ଭଳି ଲାଗେ ।

ପ୍ରଶ୍ନ- ଅନେକ ପୌରାଣିକ ଚରିତ୍ରକୁ ନେଇ ଆପଣ କବିତା ଲେଖିଛନ୍ତି । କବିତା ଲେଖିବା ପାଇଁ ସେମାନଙ୍କ ପ୍ରତି ନଜର ପକାଇଲେ ନା ସେମାନେ ଆପେ ଉତୁରି ଆସିଲେ ?

ଉତ୍ତର- ପୌରାଣିକ ଚେତନା ଆପେ ଉତୁରି ଆସି ନାହିଁ । ପୁରାଣର ସଂସ୍କାର କବିର ସଚେତନ ମାନସରେ ବିଦ୍ୟମାନ ଥାଏ । ସମକାଳର ପ୍ରାସଙ୍ଗିକତାକୁ ନେଇ ପ୍ରକଟ ହେବାକୁ ଅପେକ୍ଷା କରିଥାଏ । ଏହି ସଂଯୋଗ କବିର ମାନସଭୂମିରେ ସଂଘଟିତ ହୁଏ । 'ଶବରୀ' ସତ୍ତାଠାରେ ମୁଁ ନିଜକୁ ଆରୋପିତ କରିଛି ଓ ଶବରୀର ସତ୍ତା ମୋଠାରେ ଅନ୍ତଃପ୍ରବେଶ କରିଛନ୍ତି- ସେ ଉଭୟଟା ବୋଧେ ସଂଘଟିତ ହୋଇଛି 'ଶବରୀ' କାବ୍ୟରେ ।

ପ୍ରଶ୍ନ- କବିତାପାଇଁ ଆପଣଙ୍କୁ କି ପ୍ରକାର ସାଧନା କରିବାକୁ ପଡ଼ିଛି ?

ଉତ୍ତର- ଜୀବନପଥରେ ଗୋଟେ ସମୟ ଆସିଲା, ମୁଁ କାବ୍ୟଭାବନା ଭିତରେ ବୁଡ଼ିଗଲି । ତନ୍ମଧ୍ୟରୁ ଉଠିପାରିଲି ନାହିଁ ବା ଉଠି ଆସିବାକୁ ଚାହିଁଲି ନାହିଁ । ତା' ପରେ ସାଧମତେ ଭାରତୀୟ କବିତା ସମେତ ଦେଶବିଦେଶର କବିତା ପଢ଼ିବାର ଝୁଙ୍କ ବଢ଼ିଲା । ଲେଖିବାର ଆଗ୍ରହକୁ ମାନିନେବାକୁ ହେଲା । ଏହାକୁ ଆପଣ 'ସାଧନା' କହିପାରନ୍ତି ।

ପ୍ରଶ୍ନ- ବର୍ତ୍ତମାନ ସମୟ ଓଡ଼ିଆ ସାହିତ୍ୟ ଜଗତରେ କେଉଁଭଳି ସ୍ମରଣୀୟ ହୋଇରହିବ ବୋଲି ଆପଣ ଭାବୁଛନ୍ତି ?

ଉତ୍ତର- ବର୍ତ୍ତମାନ ସମୟ ଆମ ସାହିତ୍ୟରେ ଏକ ଘଡ଼ିସନ୍ଧି କାଳ । ଓଡ଼ିଆ ଭାଷା ପ୍ରତି ଅନାଦର ବଢ଼ିଚାଲିଛି । ପଠନର ସ୍ପୃହା ସଂଖ୍ୟାଗତ ଭାବେ ହ୍ରାସ ପାଇଲେ ମଧ୍ୟ ଗୁଣଗତ ଭାବେ ତିଷ୍ଠି ରହିଛି । ବର୍ତ୍ତମାନ ସମୟ ସାହିତ୍ୟ ସୃଜନର ଏକ ସଚେତନ ସ୍ରୋତ ରୂପେ ସ୍ମରଣୀୟ ହୋଇ ରହିବ ବୋଲି ଆଶା କରାଯାଉ ।

ସାକ୍ଷାତ୍ : ସୁନୀତି ମୁଣ୍ଡ

## 'ଅନଭିବ୍ୟକ୍ତ କବିତା ଶୂନ୍ୟରେ ଥାଏ'- ରବିବାର 'ଖବର'ରେ ପ୍ରକାଶିତ-

### [ ପ୍ରଶ୍ନକର୍ତ୍ତ୍ରୀ-ସୁକାନ୍ତି ରାଉତ ]

ପ୍ରଶ୍ନ- ଏକ ସମୃଦ୍ଧ ମାଟିର ଆପଣ ସନ୍ତାନ । ସେ ମାଟିକୁ ଆପଣ କିପରି ଦେଖନ୍ତି ?

ଉତ୍ତର- ଓଡ଼ିଶା ମାଟିଠାରୁ ପ୍ରିୟ ମୋର ଆଉ କିଏ ଅଛି ? ତା' ସହିତ ଭାରତ, ସେ ମୋର ମାଆ । ଓଡ଼ିଶାର ସାମାଜିକ ଅବସ୍ଥା ସୁଧୁରନ୍ତା, ଭାଷା ଓ ସାହିତ୍ୟର ବିକାଶ ଘଟନ୍ତା । ଗରିବ ରହନ୍ତେ ନାହିଁ-ସବୁ ଓଡ଼ିଆ, ଓଡ଼ିଆ ଭାଷାରେ, କଥା ହୁଅନ୍ତେ, ସାହିତ୍ୟ ପଢ଼ନ୍ତେ-ଏସବୁ ମୋର ସ୍ୱପ୍ନ । ଏଥିପାଇଁ ମୁଁ ଛଟପଟ ହୁଏ । ସମଗ୍ର ମଣିଷ ସମାଜ ସହ ଭାରତ ଓ ଓଡ଼ିଶାର ଲୋକେ ଷଡ଼୍‌ଯନ୍ତ୍ର ଓ ଦୁରଭିସନ୍ଧିର ଶିକାର ହୁଅନ୍ତେ ନାହିଁ । ଏଥିଲାଗି ତ ପ୍ରତ୍ୟହ ପ୍ରାର୍ଥନା କରେ । ମୋ କବିତାରେ ବ୍ୟକ୍ତିଗତତା ଓ ପରିବେଶ ପ୍ରତି ଭଲପାଇବାର ସ୍ୱର ଫୁଟିପଡ଼େ ।

ପ୍ରଶ୍ନ- ସ୍କୁଲ ଜୀବନରୁ ଆପଣ ଲେଖାଲେଖିରେ ବ୍ରତୀ ଅଛନ୍ତି । ଏଥିପାଇଁ କାହିଁକି ଆଗ୍ରହ ସୃଷ୍ଟି ହେଲା ? ଆଧୁନିକ କବିତା କ୍ଷେତ୍ରକୁ ଆପଣ ସମୃଦ୍ଧ କରିବେ କେବେ ସୃଷ୍ଟି ହେଲା ଏପରି ଆତ୍ମପ୍ରତ୍ୟୟ ?

ଉତ୍ତର- ଲେଖିଲାବେଳେ ସେମିତି କିଛି ଭାବି ନ ଥିଲି । ମୁଁ ସମୃଦ୍ଧ କରିଛି, କରିଛି କି ନାହିଁ ଜାଣେ ନାହିଁ । ତେବେ ଲେଖିବାର କାରଣ ବି କ'ଣ ? କେତେ ଥର ନିଜକୁ ପଚାରିଛି- ଉତ୍ତର ପାଇ ନାହିଁ । ନିଜ କ୍ଷୋଭ, ସମ୍ବେଦନା ଓ ଭଲ ପାଇବାକୁ ହୁଏତ ପ୍ରକାଶ ନ କରି ରହିପାରି ନାହିଁ । ସେଥିପାଇଁ ହୋଇପାରେ ।

ପ୍ରଶ୍ନ- କବିତାରେ ଆପଣଙ୍କ ଅଭିବ୍ୟକ୍ତି ବେଶ୍ ରସାଳ ଓ ସ୍ୱଚ୍ଛ । ଏପରି ଧାରାଟିଏ ଗ୍ରହଣ କରିନେବାର କାରଣଟି କ'ଣ ?

ଉତ୍ତର- ଜାଣିଶୁଣି କୌଣସି ଧାରା ମୁଁ ଗ୍ରହଣ କରି ନାହିଁ । ଯେଉଁଭାବେ ଜୀବନ ବଞ୍ଚିଛି ତାହା ବେଶ୍ ଯନ୍ତ୍ରଣାପ୍ରଦ ଓ ଜଟିଳ । ଅବଶ୍ୟ ବେଳେବେଳେ ଖୁବ୍ ଆନନ୍ଦଦାୟକ ମଧ୍ୟ । ସେସବୁକୁ ଯେଉଁ ଭାଷା ଓ ଶବ୍ଦରେ ଉଚ୍ଚାରିଛି, ତା' ମୋ ଆୟତ୍ତର ବାହାରେ

ବୋଲି କହିପାରିବି ନାହିଁ । କିନ୍ତୁ ସଚେତନ ପ୍ରଚେଷ୍ଟା ବି ନୁହେଁ । ଅନଭିବ୍ୟକ୍ତ କବିତା ଶୂନ୍ୟରେ ଥାଏ । ସେ ଓହ୍ଲାଇ ଆସେ । ମୁଁ ତା'ର ପ୍ରସ୍ତୋତା ।

ପ୍ରଶ୍ନ- 'ତନ୍ମୟ ଧୂଳି' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛି । ଏ ପୁରସ୍କାର ପାଇବା ପରିପ୍ରେକ୍ଷୀରେ ଆପଣଙ୍କ ଅନୁଭୂତି ?

ଉତ୍ତର- 'ତନ୍ମୟ ଧୂଳି'ରେ ତୁଚ୍ଛ ମାନବୀୟ ଅସ୍ତିତ୍ୱ କିଭଳି ମହତ୍ତମ ସ୍ତରରେ ଅଧିରୂଢ଼ ହୋଇପାରିଛି, ତାହାହିଁ ମୋର ଉପଲବ୍ଧିର ବିଷୟ । କେତେଦୂର ତାହା ଯଥାର୍ଥ ହୋଇଛି, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି ପରେ ଖୁବ୍ ଆନନ୍ଦ ଲାଗିଥିଲା । ମୋ କବିତା ଯେ ଭାରତୀୟ ଦରବାରରେ ସ୍ୱୀକୃତ ହେଲା, ମୁଁ ବିହ୍ୱଳ ହୋଇଥିଲି ।

ପ୍ରଶ୍ନ- ଏକ ସାରସ୍ୱତ ବାତାବରଣ ଦ୍ୱାରା ସ୍ରଷ୍ଟା କେତେ ପ୍ରଭାବିତ ହୋଇଥାଏ ?

ଉତ୍ତର- ସାରସ୍ୱତ ବାତାବରଣ ନିଶ୍ଚୟ ସ୍ରଷ୍ଟାର ସୃଷ୍ଟି ପ୍ରକ୍ରିୟାକୁ ଉତ୍ସାହିତ କରିଥାଏ । ମନେକରନ୍ତୁ, ଜେଜେ ଗୋପାଳ ପ୍ରହରାଜଙ୍କ ପରିବାରର ଭାଷା ସଚେତନତା, ମୋ ଅଜା ଓ ବୋଉଙ୍କର ସଂସ୍କୃତି ସଚେତନତା, ମୁଁ ବିଚାର କରେ ଏ ସବୁ ଯେପରି ମୋର ସୃଜନମାନସକୁ ଉଦ୍‌ବୁଦ୍ଧ କରିଛି ।

ପ୍ରଶ୍ନ- କବିତାରେ ଅଶ୍ଳୀଳତା ସମ୍ପର୍କରେ ଯେଉଁ ଅଭିଯୋଗ ହେଉଛି ଆପଣ ତାକୁ କେମିତି ଗ୍ରହଣ କରନ୍ତି ?

ଉତ୍ତର- କବିତାରେ ଅଶ୍ଳୀଳତାର ସ୍ଥାନ ନାହିଁ । ଜ୍ଞାତସାରରେ ଅଶ୍ଳୀଳ ଶବ୍ଦ ବା ବର୍ଣ୍ଣନା ସଂଯୁକ୍ତ କରି ହୈ-ଚୈ ସୃଷ୍ଟି କରିବାକୁ କେତେକ କବି ହୁଏତ ଗୌରବ ମନେ କରନ୍ତି । କିନ୍ତୁ କବିତା, କଳାସୃଷ୍ଟି-ପ୍ରତୀକ ଓ ଚିତ୍ର ମାଧ୍ୟମରେ ଅନେକ ପ୍ରଚ୍ଛନ୍ନ ଓ ଗୂଢ଼ ଅଭିବ୍ୟକ୍ତିକୁ ଏଥିରେ ପ୍ରକଟ କରାଯାଇପାରେ । ତାହା କବିର କଳା ସଚେତନତାର କଷଟି । ସେଥିପାଇଁ ସୃଜନ ଦକ୍ଷତା ଆବଶ୍ୟକ । ଏହି ସୃଜନ-ଦକ୍ଷତା ଦ୍ୱାରା ଅଶ୍ଳୀଳତା ପ୍ରଚ୍ଛନ୍ନ ରହିପାରେ ।

ପ୍ରଶ୍ନ- ସାହିତ୍ୟ ସମାଜରେ ପରିବର୍ତ୍ତନ ଆଣିପାରେ ବୋଲି କୁହାଯାଏ, ଅତୀତରେ ବି ଏହାର ନଜିର ରହିଛି, କିନ୍ତୁ ବର୍ତ୍ତମାନ ପରିପ୍ରେକ୍ଷୀରେ... ?

ଉତ୍ତର- ସାହିତ୍ୟ ଓ ସମାଜ ପରିବର୍ତ୍ତନ, ଦୁହେଁ ସଂଯୁକ୍ତ ପୁଣି ଦୂରସ୍ଥ । କେବଳ ସାହିତ୍ୟ ସୃଷ୍ଟି ସମାଜ ପରିବର୍ତ୍ତନ କରିପାରେ ନାହିଁ । ସାହିତ୍ୟିକ ମହାନ୍ୟାୟିକ ନୁହେଁ ଯେ ସମାଜକୁ ବଦଳାଇ ଦେବ । ତେବେ ସମାଜର ମନ୍ଦ ଦିଗ ପ୍ରତି, ପରିବର୍ତ୍ତନ ପ୍ରତି ଜନମାନସକୁ ସଚେତନ କରାଇବା ସାହିତ୍ୟର ଧ୍ୟେୟ । ମନେ କରନ୍ତୁ ହାରିଏଟ୍ ଷ୍ଟୋଙ୍କ ଟମକକାଙ୍କ କୁଟୀର, କ୍ରୀତଦାସ ସମସ୍ୟା ପ୍ରତି ସଚେତନତା ସୃଷ୍ଟି କରିଥିଲା । କିନ୍ତୁ ଆବ୍ରାହମ୍ ଲିଙ୍କନ୍, ଜନ୍.ଏଫ୍ କେନେଡ଼ି ଏବଂ କିଙ୍ଗ୍ ଜୁନିୟରଙ୍କ ପ୍ରାଣବଳି ବିନା, ବିପ୍ଳବ ବିନା କ୍ରୀତଦାସ ପ୍ରଥା ଉଚ୍ଛେଦ ହୋଇ ପାରିଥାଆନ୍ତାକି ? ଆମ ଭାରତରେ ସ୍ୱାଧୀନତା ସଂଗ୍ରାମୀଙ୍କ ଆତ୍ମବଳିଦାନ ବିନା ସ୍ୱାଧୀନତା ସମ୍ଭବ ଥିଲା କି ? ଯଦିଓ ବହୁ

କବି ଓ ସାହିତ୍ୟିକ ସ୍ୱାଧୀନତାର ଉଦ୍‌ବୋଧନ ପ୍ରକାଶ କରିଥିଲେ । ତେଣୁ କବିର କର୍ମ ସଚେତନତା ସୃଷ୍ଟି କରିବା । ବର୍ତ୍ତମାନର ସାହିତ୍ୟ ମଧ୍ୟ ଏ ଦିଗରେ ଉଦ୍ୟମଶୀଳ ।

ପ୍ରଶ୍ନ- ନାରୀ ତା'ର ସ୍ଥିତିକୁ ସୁରକ୍ଷିତ ଓ ସୁଦୃଢ଼ କରିବାପାଇଁ ଏବେ ବି ସଂଘର୍ଷରତା । ଏ ସମ୍ପର୍କରେ ଆପଣ କ'ଣ କହିବେ ?

ଉତ୍ତର- ଏହା ସତ । ଏ ସମ୍ପର୍କରେ ମୁଁ ଏକ ପ୍ରବନ୍ଧ ପୁସ୍ତକ ରଚନା କରିଛି । ୨୦୦୭ ଯାଏ ଓଡ଼ିଆ ଭାଷାରେ ଏ ସମ୍ପର୍କରେ ବିଧିବଦ୍ଧ କୌଣସି ପୁସ୍ତକ ନ ଥିଲା । ପ୍ରକୃତି ନାରୀ ଓ ପୁରୁଷକୁ ଶରୀରଗତ ଭାବେ ଭିନ୍ନ କରି ଗଢ଼ିଛି । ତେବେ ବ୍ୟକ୍ତିଗତ ଭାବରେ ସମାଜ ଓ ପରିବାରରେ ନାରୀ ପୁରୁଷ ସହ ସମାନ ଗୁରୁତ୍ୱ ପାଇବା ଦରକାର । ସେ ଗର୍ଭବତୀ ହେବ, ପ୍ରସବ କରିବ, ସନ୍ତାନର ଲାଳନ ପାଳନ କରିବ । ତା' ସହିତ ଆଜିର ଶିକ୍ଷିତା ନାରୀ ବୃତ୍ତିଜୀବିନୀ ହୋଇଥିବ । ପରିବାରକୁ ବି ଲକ୍ଷ୍ୟ ଦେବ । ଏହି ମାତୃତ୍ୱ ତାକୁ ଯେତିକି ଗୌରବ ଦିଏ, ସେତିକି ଦୁର୍ବଳ ମଧ୍ୟ କରିଥାଏ । ଏସବୁ ସତ୍ତ୍ୱେ ପରିବାର ଓ ସମାଜ ତାକୁ ଗୁରୁତ୍ୱ ଦିଏ ନାହିଁ । ମୋର ମତ, ନାରୀର ଭୂମିକା କଲ୍ୟାଣପ୍ରଦ ହେଉ ଏବଂ ତାକୁ ଉପଯୁକ୍ତ ସମ୍ମାନ ଦିଆଯାଉ । ନିଜକୁ, ସ୍ୱାମୀ ପତ୍ନୀର ଦେବତା ବୋଲି ନ ଭାବୁ, ବନ୍ଧୁ ବୋଲି ଭାବୁ । ପାରିବାରିକ ନିର୍ଯାତନା ବନ୍ଦ ହେଉ । ସମାଜ ଓ ପରିବାର ତା'ର ତ୍ୟାଗକୁ ସମ୍ମାନ ଦେଉ । ରକ୍ଷଣଶୀଳତା ସବୁକାଳେ ବର୍ଜନୀୟ । 'ମଲାଲା' କିଶୋରୀଟି ଏହି ରକ୍ଷଣଶୀଳତା ବିରୋଧରେ ଯାଇ ପୃଥିବୀର ସମ୍ମାନ ଓ ସମବେଦନା ପାଉଛି । ନାରୀପକ୍ଷେ ଉଗ୍ର ଆଧୁନିକତା ମଧ୍ୟ ଗ୍ରହଣୀୟ ନୁହେଁ । ଆଧୁନିକତା ନାମରେ ସ୍ୱେଚ୍ଛାଚାରିତା ନିଶ୍ଚୟ ନିନ୍ଦନୀୟ ।

ପ୍ରଶ୍ନ- ସାହିତ୍ୟକୁ ନେଇ ଆଉ କିଛି ସ୍ୱପ୍ନ ରହିଛି କି ?

ଉତ୍ତର- ସ୍ୱପ୍ନ ରହିଛି ତ । ସ୍ୱପ୍ନ ବିନା ବଞ୍ଚିବା କ'ଣ ସମ୍ଭବ ? ତେବେ ସ୍ୱପ୍ନ ଅଧୁରା ରହିଯାଇପାରେ । ଖୁବ୍ ଉନ୍ନତ କବିତାଟିଏ ଲେଖନ୍ତି । ମାତ୍ର ସେ ଦିଗରେ କିଛି ନିଶ୍ଚିତ ମାର୍ଗ ମୋତେ ଜଣା ନାହିଁ ।



# ‘ଶ୍ରୁତି’ ସମ୍ବାଦପତ୍ରର ରବିବାର ପ୍ଲସ୍ ଦ୍ୱାରା ପ୍ରସ୍ତୁତ ସମୀକ୍ଷା

“ଆଜିକାର ସାହିତ୍ୟ ନିଜେ ଅଭାବ ଭୋଗୁଛି”-

ସମୀକ୍ଷାକାରୀ ଶିବଶଙ୍କର ଓଝା

ପ୍ରଶ୍ନ- ଆପଣଙ୍କ ବାଲ୍ୟକାଳ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦେବେ ?

ଉତ୍ତର- ମୋର ବାଲ୍ୟକାଳ କୋରାପୁଟ ସହରରେ କଟିଥିଲା । ଅଳ୍ପ ଦୂରରେ ମାଛକୁଣ୍ଡ ନଦୀ ବହିଯାଉଥାଏ । ବାପା ଥାଆନ୍ତି ଡାକ୍ତର । ମୁଁ ପ୍ରାୟ ଚାରିବର୍ଷ ଯାଏଁ ସେଠାରେ ଥିଲି । ଡୁଡୁମା ପ୍ରପାତ ମୁଁ ଦେଖିଛି । ଅଜାଡ଼ି ପଡୁଥିବା ପାଣିଗୁଡ଼ିକ ମୋତେ ଧୂଆଁ ଭଳି ଦିଶେ । ବଣୁଆ ଫୁଲଙ୍କ ଭିତରେ ମୋ’ ଠୁ ତିନିବର୍ଷ ବଡ଼ ଭାଇ ସାଙ୍ଗେ ଖେଳେ, ବୁଲେ । ସେଠି ସ୍କୁଲ ନ ଥାଏ । ଆମେ ଟିଉସନ୍‌ରେ ପଢୁ । ବନ୍ଧୁ ଦେଶିଆ ଲୋକଙ୍କ ସହିତ ଆମର ବନ୍ଧୁତା ଥାଏ । ଆମେ ସେମାନଙ୍କୁ ଭାଇ ଡାକୁ, ଦି’ ତିନିଜଣ ଆମ ଘରେ କାମ କରନ୍ତି । ସୁନ୍ଦର ଘର, ଗୁହାଳ, କୁକୁଡ଼ାଘର ଆମର ଥାଏ । ଜୀବନ ସେଠାରେ ଝାପସା ହୋଇ ମତେ ଦିଶେ । ପ୍ରାୟ ପାଞ୍ଚବର୍ଷ ବୟସରେ ମୁଁ କଟକ ଜିଲ୍ଲା ସତ୍ୟାଭାମାପୁର ଆସେ ଓ ସେଠାରେ ବାଳିକା ସ୍କୁଲ୍‌ରେ ନାମ ଲେଖାଇ ପଢ଼େ । ସେହି ଗାଆଁରେ ଥାଏ ମାତୃମଙ୍ଗଳ କେନ୍ଦ୍ର । ସେଠାରେ ଆମକୁ ସୂତାକଟା, ରାମଧୂନ୍ ଆଦି ସନ୍ଧ୍ୟାବେଳେ ଶିଖାଯାଏ । ପରେ ମୁଁ ଗୋପୀନାଥପୁର ମାଇନର ସ୍କୁଲ ଓ ବନ୍ଧୁଗ୍ରାମର ବିବେକାନନ୍ଦ ବିଦ୍ୟାପୀଠରେ ଶିକ୍ଷାଲାଭ କରେ ।

ପ୍ରଶ୍ନ- ସାହିତ୍ୟ ପ୍ରତି ଅନୁରାଗ କେବେ ଠାରୁ ?

ଉତ୍ତର- କିଶୋର କାଳରୁ ମୋର ସାହିତ୍ୟ ପ୍ରତି ଅନୁରାଗ । ପୃଷ୍ଠପଟରେ ଥିଲା ମୋ’ ଜେଜେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରିବାରର ସଂସ୍କୃତି ସଚେତନତା । ମାଇନର ସ୍କୁଲରେ ପଢ଼ିବାବେଳେ ରେଡ଼ିଓରୁ ଗୀତ ଶୁଣି ମୁଁ ଗୀତ ଲେଖି ପକାଉଥିଲି ।

ପ୍ରଶ୍ନ- ସୃଜନୀର ପହିଲି ପୁଲକର ଅନୁଭୂତି କିପରି ?

ଉତ୍ତର- ମୁଁ ହାଇସ୍କୁଲରେ ପଢ଼ିବାବେଳେ ଗଣେଶପୂଜା ଉତ୍ସବରେ ଆମର କବିତା ପ୍ରତିଯୋଗିତା ହୋଇଥିଲା । ଏଥିରେ ମୁଖ୍ୟ ଅତିଥି ଭାବେ ଯାଇଥିଲେ ‘ପ୍ରଜାତନ୍ତ୍ର’ର ତତ୍‌କାଳୀନ ସମ୍ପାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ମୋ କବିତା ପ୍ରଥମ ହୋଇଥିଲା ସେହି ପ୍ରତିଯୋଗିତାରେ । ସେହି କବିତାଟି ମୁଖ୍ୟ ଅତିଥି ନେଇ ଆସି ପ୍ରଜାତନ୍ତ୍ରର ‘ନାରୀ ଜଗତ’ରେ ଛପାଇଥିଲେ । ୧୯୬୦ରେ ଓ ସ୍କୁଲ୍‌କୁ ମୋ ନାମରେ କପି ଖଣ୍ଡିଏ

ପଠାଇଥିଲେ । ମୁଁ ଯେତିକି ଆଶ୍ଚର୍ଯ୍ୟ ହୋଇଥିଲି, ସେତିକି ବିହ୍ୱଳ ହୋଇଥିଲି । ସେତିକି ଉଡୁଥିଲି, ବୁଡୁଥିଲି । ନିଜକୁ କବି ଭାବି ଖୁବ୍ ଉତ୍ଫୁଲ୍ଲ ହେଉଥିଲି ।

ପ୍ରଶ୍ନ- ଆପଣ ଝିଅ ଲେଖିକା ପାରମିତାଙ୍କୁ କିଭଳି ଦୃଷ୍ଟିରେ ଦେଖନ୍ତି ?

ଉତ୍ତର- ପାରମିତା ହାଇସ୍କୁଲରେ ପଢ଼ିବା ବେଳେ ତା'ର ଡାଏରୀରେ କିଛି ଓଡ଼ିଆ କବିତା ଲେଖିଥିଲା । ତା' ଅଜାଣତରେ ମୁଁ ଥରେ ପଢ଼ିଥିଲି । ତାକୁ କହିଥିଲି ଯେ, ଏତେ ଅଳ୍ପ ବୟସରୁ ଲେଖାଲେଖି ନ କରି ଚିନ୍ତା ଟିକେ ପରିଣତ ହେବାଯାଏଁ ଅପେକ୍ଷା କର । ତା'ର ପ୍ରଥମ ଗଳ୍ପ ସେ ବି.ଏ. ପଢ଼ିଲାବେଳେ ଧରିତ୍ରୀର ସାହିତ୍ୟ ପୃଷ୍ଠାରେ ପ୍ରକାଶିତ ହୋଇଥିଲା । ଏମ୍.ଏ. ପଢ଼ିବା ବେଳକୁ ଝଙ୍କାରରେ ତା'ର ଗଳ୍ପ ପ୍ରକାଶ ପାଇଥିଲା ଏବଂ ସେତେବେଳେ 'ଝଙ୍କାର'ରେ ପ୍ରକାଶ ପାଇବା ଗୋଟିଏ କୃତିତ୍ୱ ଥିଲା । ତା'ପରେ ସେ ଅନେକ ଗପ ଲେଖିଥିଲା । ଉପନ୍ୟାସ ଗୋଟିଏ ବି ଲେଖିଛି । ଏବେ ତା'ର ସାତଗୋଟି ଉପନ୍ୟାସିକା ଏକତ୍ର ହୋଇ ପ୍ରକାଶ ପାଇଛି । ପ୍ରାୟ ପାଞ୍ଚ ଛଅ ବର୍ଷ ହେବ ସେ ମଧ୍ୟ କବିତା ଲେଖୁଛି । ଖୁବ୍ ଭାବଗର୍ଭକ କବିତା । ତା' ଭାଷା ଖୁବ୍ ଉନ୍ନତ ଓ ଶକ୍ତିଶାଳୀ । ଅନୁଭବଗୁଡ଼ିକ ଗଭୀର ଓ ସାର୍ବଜନୀନ । ତେଣୁ ତା'ର ପାଠକୀୟ ସ୍ୱୀକୃତି ପ୍ରଚୁର ।

ପ୍ରଶ୍ନ- ସାହିତ୍ୟର ବିଭିନ୍ନ ବିଭବ ଥାଉ ଥାଉ ଆପଣ କାହିଁକି କବିତାକୁ ବାଛିଲେ ?

ଉତ୍ତର- 'କବିତା'କୁ କାହିଁକି ବାଛିଲି, ତା'ର ଠିକ୍ ଉତ୍ତର ଦେଇପାରିବି ନାହିଁ, କହିପାରୁନି । ବୋଧହୁଏ ମୁଁ ସୂଚନାତ୍ମକ ଭଙ୍ଗୀରେ କଥା କହିବାକୁ ଭଲପାଏ । ଯାହା କବିତା ଲେଖା ପାଇଁ ଜରୁରୀ । ସେଥିପାଇଁ ମନକୁ ମନ ସେ ଦିଗରେ ଲାଗିଲି ଏବଂ କଲେଜରେ ପ୍ରଥମ, ଦ୍ୱିତୀୟବର୍ଷ ପଢୁଥିବାବେଳେ ଯୋଡ଼ିଏ ଗପ ମଧ୍ୟ ଲେଖିଥିଲି, ଯାହା 'ପ୍ରଜାତନ୍ତ୍ର'ର ନାରୀ ଜଗତରେ ପ୍ରକାଶ ପାଇଥିଲା ।

ପ୍ରଶ୍ନ- ପୁରସ୍କାରକୁ ଆପଣ କିଭଳି ଦୃଷ୍ଟିରେ ଦେଖନ୍ତି ?

ଉତ୍ତର- ପୁରସ୍କାର ନିଶ୍ଚିତଭାବେ ଜଣେ ସାହିତ୍ୟିକକୁ ଉତ୍ସାହିତ କରେ, ଆନନ୍ଦ ମଧ୍ୟ ଦିଏ, କିନ୍ତୁ ଯିଏ ସତ୍ ସାହିତ୍ୟିକ, ପୁରସ୍କାର ପାଇଁ ତା'ର ଯୋଗ୍ୟତା ବିଷୟରେ ସଚେତନ ଥାଏ । ତେବେ, ପୁରସ୍କାର ନ ପାଇଲେ ମଧ୍ୟ ଜଣେ ସାହିତ୍ୟ ସାଧକ ଭାଙ୍ଗି ପଡ଼େ ନାହିଁ, କିମ୍ବା ରଚନାରୁ ବିରତ ହୁଏ ନାହିଁ ।

ପ୍ରଶ୍ନ- ଦୀର୍ଘଦିନର ସାହିତ୍ୟ ସାଧନା ଭିତରେ ଆପଣ କ'ଣ ହରାଇଛନ୍ତି ? କ'ଣ ପାଇଛନ୍ତି ?

ଉତ୍ତର- ସାହିତ୍ୟ ସାଧନା ଭିତରେ କିଛି ହରାଇବା କଥା ମୋ' ସ୍ମରଣରେ ଆସୁ ନାହିଁ ବା ମୋ ସାମ୍ନାରେ ମଧ୍ୟ ଦିଶୁ ନାହିଁ । ପାଇଛି ଅନେକ କିଛି, ପାଠକଙ୍କ ଶ୍ରଦ୍ଧା ପାଇଛି, ଜୀବନର ବହୁ ପ୍ରକାର ଅବିଚାର ଓ ଯନ୍ତ୍ରଣାକୁ ଆଡ଼େଇ ଯିବାର ସ୍ପର୍ଦ୍ଧା ରଖିଛି ଓ ଆନନ୍ଦ ଆହରଣ କରିପାରିଛି । ପ୍ରାପ୍ତି ତୁଳନାରେ ହରାଇବା ନଗଣ୍ୟ ।

ପ୍ରଶ୍ନ- ସାହିତ୍ୟ ସମାଜର ପ୍ରତିଫଳନ ବୋଲି କୁହାଯାଏ ? ଆପଣଙ୍କ ମତ କ'ଣ ?

ଉତ୍ତର- ସାହିତ୍ୟ ସମାଜର ପ୍ରତିଫଳନ ନିଶ୍ଚୟ । ତାହା ସମାଜ ସମ୍ପର୍କରେ ପାଠକମାନଙ୍କୁ ସଚେତନ କରାଏ । ସମାଜର ଦୁର୍ନୀତି ଓ ଭ୍ରଷ୍ଟାଚାର ବିରୋଧରେ ଲୋକମତ ସୃଷ୍ଟି କରିପାରେ । କିନ୍ତୁ ସମାଜକୁ ପ୍ରତ୍ୟକ୍ଷ ଭାବେ ବଦଳାଇପାରିବା ସାହିତ୍ୟ ପକ୍ଷରେ ସମ୍ଭବ ନୁହେଁ ଏବଂ ସାହିତ୍ୟ ମଧ୍ୟ ସେଥିପ୍ରତି ଅଭିପ୍ରେତ ହୋଇ ନ ଥାଏ ।

ପ୍ରଶ୍ନ- ଆପଣ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଆ ସାହିତ୍ୟ ସହିତ ଜଡ଼ିତ ଅଛନ୍ତି । ଏହି ସମୟ ମଧ୍ୟରେ ଓଡ଼ିଆ ସାହିତ୍ୟରେ କି ପ୍ରକାର ପରିବର୍ତ୍ତନ ଘଟିଛି ?

ଉତ୍ତର- ଏହି ସମୟ ମଧ୍ୟରେ ଓଡ଼ିଆ ସାହିତ୍ୟରେ ଅନେକ ପରିବର୍ତ୍ତନ ଘଟିଛି । ପାଠକମାନେ ସାହିତ୍ୟ ପ୍ରତି ସଚେତନ ହୋଇଛନ୍ତି । ଅସଂଖ୍ୟ ସାହିତ୍ୟିକ ରଚନାରେ ବ୍ୟାପୃତ ଅଛନ୍ତି । ସାହିତ୍ୟର ଗୁଣାତ୍ମକ ପରିବର୍ତ୍ତନ ଘଟିଛି ଓ ବହୁ ନାରୀ ଗଳ୍ପ, ଉପନ୍ୟାସ, କବିତାରେ ନିଜର ରୁଦ୍ଧମନକୁ ପ୍ରକାଶ କରିପାରୁଛନ୍ତି । ସାହିତ୍ୟ ସଂରଚନାରେ କେତେକାଂଶରେ ଆସିଛି ବ୍ୟକ୍ତିଗତ ମୁକ୍ତପଣ । ନିଜ ସ୍ୱରର ସ୍ୱାଧୀନ ଉଚ୍ଚାରଣ ।

ପ୍ରଶ୍ନ- କେଉଁ ସମସାମୟିକ ଓ ପରବର୍ତ୍ତୀ ପିଢ଼ିର ସାହିତ୍ୟିକମାନେ ଆପଣଙ୍କୁ ଭଲ ଲାଗନ୍ତି ?

ଉତ୍ତର- ମୋର ସମସାମୟିକ ଅନେକ କବି, ଲେଖକ ଅଛନ୍ତି ଓ ପରବର୍ତ୍ତୀ ପିଢ଼ିର ମଧ୍ୟ ବହୁ କବି ଲେଖକ ଅଛନ୍ତି, ଯେଉଁମାନଙ୍କର ରଚନା ମୁଁ ମନଧ୍ୟାନ ଦେଇ ପଢ଼େ, ଗ୍ରହଣ କରେ । ଏପରିକି, ଗୋଟିଏ ଅତି ନୂଆ ଲେଖକ ଓ କବିର ପ୍ରଥମ ରଚନା ମୋତେ ଅଭିଭୂତ କରିପକାଏ ।

ପ୍ରଶ୍ନ- ଆଜିକାଲି ଓଡ଼ିଆ ସାହିତ୍ୟରେ କ'ଣ ଲକ୍ଷ୍ୟ କରୁଛନ୍ତି ?

ଉତ୍ତର- ଆଜିକାଲି ସାହିତ୍ୟ ନିଜେ ଅଭାବ ଭୋଗୁଛି । ତା' ହେଉଛି ପାଠକୀୟ ଉଦାସୀନତା ଏବଂ ତା'ର କାରଣ ହେଉଛି ନୂତନ ପିଢ଼ି ଓଡ଼ିଆ ସାହିତ୍ୟ ସହ କମ୍ ଯୋଗାଯୋଗ ରଖୁଛନ୍ତି । ଆଉ ଗୋଟିଏ ଅଭାବ, ସାହିତ୍ୟକାରମାନଙ୍କ ମଧ୍ୟରେ ପରସ୍ପରର ଆନ୍ତରିକତା ଯଥେଷ୍ଟ ରହୁ ନାହିଁ ।

ପ୍ରଶ୍ନ- ଆର ଜନ୍ମରେ କ'ଣ ପୁଣି କବି ହେବାକୁ ଚାହିଁବେ ?

ଉତ୍ତର- ଆଉ ଥରେ ତ ଜନ୍ମ ହେବାକୁ ଚାହୁଁ ନାହିଁ । ଆତ୍ମା ଯଦି ସତରେ ଥାଏ, ତା'ହେଲେ ଏ ବିଶାଳ, ବିସ୍ମୟକର ବିଶ୍ୱବ୍ରହ୍ମାଣ୍ଡରେ ମୋ' ଆତ୍ମା କେଉଁଠି ହେଲେ ଅଧିଷ୍ଠିତ ହେଉ, ବୋଲି ବାଞ୍ଛା ପୋଷଣ କରୁଛି । ଯଦି ଆଉ ପୁଣି ଥରେ ଜନ୍ମ ହେବା ଅନିବାର୍ଯ୍ୟ, ତେବେ ମୁଁ ନିଶ୍ଚେ 'କବି' ଭାବେ ଜନ୍ମ ହେବାକୁ ଚାହିଁବି ।



# କବି ପ୍ରତିଭା ଶତପଥୀଙ୍କ ସହ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍କଲାର୍ କୁମାରୀ ଲୋଚନ ଖଣ୍ଡାୟୀଙ୍କର ସାକ୍ଷାତ୍କାର

ପ୍ରଶ୍ନ- କବିତା ଏକ ସ୍ୱତଃସ୍ଫୂର୍ତ୍ତ ଆବେଗ ନା ଏକ ନିର୍ମାଣ ?

ଉତ୍ତର- କବିତା ସ୍ୱତଃସ୍ଫୂର୍ତ୍ତ ନୁହେଁ । ଯଦିଓ କବି WordsWorth କହିଥିଲେ "Poetry is a spontaneous overflow of powerful feelings" - ତଥାପି ପରବର୍ତ୍ତୀକାଳରେ ଏହା ଠିକ୍ ନୁହେଁ ବୋଲି ବିଚାର କରାଯାଇଥିଲା । ତେଣୁ କବିତା ଅନୁଭବର ଏକ ସୂକ୍ଷ୍ମ ନିର୍ମାଣ – ଅନ୍ତତଃ ଶକ୍ତିଶାଳୀ ଶବ୍ଦ ପୁଂଜର ସବୁଠୁ ଉତ୍ତମ ସଜ୍ଜୀକରଣ ବୋଲି ବୁଝିବାକୁ ହେବ ।

ପ୍ରଶ୍ନ- ଆପଣଙ୍କ ଜୀବନ ସହ ସୃଜନର ସମ୍ପର୍କ କେମିତିକା ? (ଯଦିଓ ପ୍ରଶ୍ନଟିର ଉତ୍ତର 'ଶୈଶବରୁ ସଂସାର'ରେ ନିଜ ସୃଜନ ପରିଚ୍ଛେଦରେ ରହିଛି)

ଉତ୍ତର- ସୃଜନ ସହ ମୋର ରକ୍ତର ସମ୍ପର୍କ ଘନିଷ୍ଠ- ଏହି ଘନିଷ୍ଠତାକୁ ବୁଝାଇବାକୁ ଦୀର୍ଘ ବ୍ୟାଖ୍ୟା ଦରକାର । ମୋ ଆତ୍ମାର ସହଚର ମୋର କବିତାରାଜି ।

ପ୍ରଶ୍ନ- କବି ପାଇଁ ଦୁଃଖ ଆବଶ୍ୟକ କି ?

ଉତ୍ତର- ଦୁଃଖ କବିପାଇଁ ଆବଶ୍ୟକ ନିଶ୍ଚୟ ।

ପ୍ରଶ୍ନ- ଦୁଃଖ ଥିବା ସମୟରେ ଲେଖାଯାଉଥିବା କବିତାକୁ ପଢ଼ି ନିଜେ ଲେଖକ କ'ଣ ଖୁସି ହୋଇପାରେ ?

ଉତ୍ତର- କବିତା ଦୁଃଖର ହୋଇଥିଲେ ମଧ୍ୟ ତାହା ପାଠକକୁ ଦିବ୍ୟାନୁଭୂତି ଦିଏ । ଦୁଃଖ ତେଣୁ ଅପରିହାର୍ଯ୍ୟ-ତାହା କବିର ଦୁଃଖକୁ ଲାଘବ କରିଥାଏ । କବିତାରେ ବର୍ଣ୍ଣିତ ଦୁଃଖ ପ୍ରକୃତ ଆନନ୍ଦଠାରୁ କୌଣସି ଗୁଣରେ କମ୍ ନୁହେଁ ।

ପ୍ରଶ୍ନ- ଆପଣଙ୍କୁ କେବେ ଅନୁଭବ ହେଲା ଯେ ଆପଣଙ୍କ ଲେଖା ପାଠକଙ୍କ ନିକଟକୁ ପହଞ୍ଚୁଛି ?

ଉତ୍ତର- ମୁଁ ଲେଖିବା ଆରମ୍ଭ କଲାବେଳେ ଓଡ଼ିଆ ସାହିତ୍ୟରେ ବେଶି ସଂଖ୍ୟାରେ ମହିଳା ଲେଖୁ ନ ଥିଲେ । ମୁଁ କିଶୋରୀ କାଳରୁ କବିତା ଲେଖିଥିଲି ଓ ତାହା ସମସ୍ତ ପତ୍ରିକା ଓ ଖବରକାଗଜର ସାପ୍ତାହିକୀରେ ଛପା ହୋଇଥିଲା- ମୁଁ ଉଲ୍ଲସିତ ହୋଇ ଉଠୁଥିଲି - ମୋ କବିତାର ପାଠକମାନେ ମୋତେ ଅଭିନନ୍ଦନ ଜଣାଉଥିଲେ ।

ପ୍ରଶ୍ନ- ଭଲ କବିତାର ସଂଜ୍ଞା କ'ଣ ହୋଇପାରେ ?

ଉତ୍ତର- ଭଲ କବିତାର ସଂଜ୍ଞା ମୋ ମତରେ ପାଠକକୁ ଉଦ୍‌ବୁଦ୍ଧ କରିବ, ଥରକୁ ଥର ପଢ଼ିବାକୁ ଉତ୍‌ପ୍ରେରିତ କରିବ ଓ ହୃଦୟକୁ ଆନ୍ଦୋଳିତ କରିପାରୁଥିବ ।

ପ୍ରଶ୍ନ- ସାହିତ୍ୟ ଭିତରେ କବିତାକୁ ଆପଣ କିପରି ଦେଖନ୍ତି ?

ଉତ୍ତର- 'ସାହିତ୍ୟ'ର ଗୋଟେ ସ୍ୱତନ୍ତ୍ର ପରିଚୟ କ'ଣ ? ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ନାଟକ, ସମାଲୋଚନା ଓ କବିତା ଏ ସକଳ ହିଁ ସାହିତ୍ୟ ପଦବାଚ୍ୟ, ମାତ୍ର କବିତା ହେଉଛି ଶବ୍ଦଦ୍ୱାରା ଗଠିତ ସୂକ୍ଷ୍ମତମ କଳା ।

ପ୍ରଶ୍ନ- ଜଣେ ଲେଖକକୁ ପୁରସ୍କାର କେତେ ଜରୁରୀ ?

ଉତ୍ତର- ପୁରସ୍କାର ଜରୁରୀ ନୁହେଁ, ତେବେ ପୁରସ୍କାର ନିଶ୍ଚୟ କବିଙ୍କୁ ପ୍ରେରଣିତ କରେ, ଆନନ୍ଦ ଦିଏ ମଧ୍ୟ ।

ପ୍ରଶ୍ନ- କବିତା ଆପଣଙ୍କୁ କ'ଣ ଦେଇଛି ?

ଉତ୍ତର- କବିତା ମୋତେ କ'ଣ ଦେଇଛି, ନ ଦେଇଛି, ମୁଁ କେବେବି ହିସାବ କରି ନାହିଁ । ଅଥଚ କବିତା ମୋତେ ନ ଦେଇଛି କ'ଣ ? ଯାହା ଦେଇଛି ତାହା ବିପୁଳ ।

ପ୍ରଶ୍ନ- ଆପଣ ଜଣେ ସମାଲୋଚକ ମଧ୍ୟ । କବିତା ଲେଖା ସମୟରେ ଆପଣଙ୍କ ଭିତରର ସମାଲୋଚକ ସତ୍ତାଟି କ'ଣ କରୁଥାଏ ?

ଉତ୍ତର- କବିତା ମୋର ପ୍ରଥମ ପ୍ରେମ । ସମାଲୋଚନା ଲେଖିଲି ପରେ, ସେଗୁଡ଼ିକ ଆଦୃତ ହେବା ଜାଣିଲି । ତା' ପରେ ୟୁଜିସି ବରିଷ୍ଠ ପ୍ରକଳ୍ପର 'ସ୍କଲାର୍‌ସିପ୍' ପାଇଲି । ତେଣୁ ସେ ଦିଗରେ ଉତ୍ସାହ ବଢ଼ିଲା ।

ପ୍ରଶ୍ନ- ଆପଣଙ୍କର ଏକ ସମାଲୋଚନା ପୁସ୍ତକ ଅଛି 'ଉତ୍ତର-ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' । ଆପଣ କ'ଣ ଉତ୍ତର ଆଧୁନିକତା ପ୍ରସଙ୍ଗକୁ ସ୍ୱୀକାର କରନ୍ତି ?

ଉତ୍ତର- ଉତ୍ତର ଆଧୁନିକତାକୁ ମୁଁ ସ୍ୱୀକାର କରେ- ମାତ୍ର ତାହା ଭାରତୀୟ ଉତ୍ତର ଆଧୁନିକତା, ୟୁରୋପୀୟ ନୁହେଁ । ମୋର ଏ ଦିଗରେ ଝୁଙ୍କ ବଢ଼ିଲା; କାରଣ ଗୋଟେ ସମ୍ମାନରେ ମୁଁ ଏହି ଶୀର୍ଷକର ପ୍ରବନ୍ଧ ଲେଖି ପଢ଼ିଥିଲି । ସେଠାରେ ଉପସ୍ଥିତ ବିଦ୍ୱାନ୍-ମୁଖ୍ୟତଃ ପ୍ରଫେସର ବିଧୁଭୂଷଣ ଦାସ, ପ୍ରଫେସର ଡଃ ତ୍ରିଲୋଚନ ମିଶ୍ର, ପ୍ରଫେସର ଖଗେଶ୍ୱର ମହାପାତ୍ର ଏହି ପ୍ରବନ୍ଧଟିକୁ ଉଚ୍ଚ ପ୍ରଶଂସା କରିଥିଲେ । ତେଣୁ ମୁଁ ବି ଖୁବ୍ ଉତ୍‌ପ୍ରେରିତ ହୋଇଥିଲି । ଏହି ଚେତନା ଆଧୁନିକତା ଠାରୁ ଭିନ୍ନ ଅଥଚ ଆଧୁନିକତାର କ୍ରମବର୍ଦ୍ଧିଷ୍ଣୁ ଏକ ଚେତନା ।

ପ୍ରଶ୍ନ- ଫେମିନିଜିମ୍ (Feminism) ସମ୍ପର୍କରେ ଆପଣଙ୍କ ମତାମତ କ'ଣ ? ପ୍ରତିଟି କ୍ଷେତ୍ରରେ ନିଜ ସ୍ୱାଧୀନତା ତଥା ଅଧିକାର ପାଇଁ ପ୍ରତିବାଦ କରିବା କ'ଣ ନାରୀବାଦ ?

ଉତ୍ତର- Feminism ସମ୍ପର୍କରେ ମୋର ମତ ହେଉଛି - ପାଶ୍ଚାତ୍ୟ ଫେମିନିଜିମ୍ ଠାରୁ ଭିନ୍ନ, ଏହା ଭାରତୀୟ ନାରୀବାଦ । ମୁଁ ମୋର ୟୁଜିସି ପ୍ରକଳ୍ପଟିରେ ଏହି ବିଷୟବସ୍ତୁକୁ ନେଇଛି ଓ ବହିଟିଏ ପ୍ରକାଶ ପାଇଛି । ସେଥିରେ ପାଶ୍ଚାତ୍ୟ ଓ ଭାରତୀୟ ନାରୀବାଦକୁ ବିଶ୍ଳେଷଣ କରିଛି । ମୋର କବିତାରେ ମୁଁ ଭାରତୀୟ ନାରୀବାଦକୁ ପ୍ରଶ୍ରୟ ଦେଇଛି । ସମାଜ ଓ ପରିବାର କ୍ଷେତ୍ରରେ ସ୍ୱାଧିକାର ଦାବି କରିବା ଆବଶ୍ୟକ ନିଶ୍ଚୟ । ଏହାର ବିଶ୍ଳେଷଣ ଖୁବ୍ ବ୍ୟାପକ ।

ପ୍ରଶ୍ନ- ଉତ୍ତର-ସତୁରି-ଅଶୀରେ କବିତାରେ ଲୋକ ଉପାଦାନର ପ୍ରୟୋଗ ଆରମ୍ଭ ହୋଇଥିଲା । ସେ ପ୍ରୟୋଗକୁ ଆଖି ଆଗରେ ରଖି 'ସାହାଡ଼ା ସୁନ୍ଦରୀ' ଲେଖାଯାଇଛି କି ?

ଉତ୍ତର- ଓଡ଼ିଆ ସାହିତ୍ୟ ସହିତ ଲୋକ ଉପାଦାନ ବହୁଦିନରୁ ସଂଶ୍ଳିଷ୍ଟ । ସାହିତ୍ୟ ସୃଜନର ପ୍ରାରମ୍ଭ କାଳରୁ । ମୁଁ ସାହାଡ଼ାସୁନ୍ଦରୀ ଗପଟି ଜାଣିଥିଲି । ସ୍ୱ ଅନ୍ତର୍ନିହିତ ଚେତନାକୁ ପ୍ରକଟ କରି ମୁଁ ଏହି ଶୀର୍ଷକଟି ପ୍ରତୀକାତ୍ମକ ଭାବେ ଗ୍ରହଣ କରିଥିଲି । ଲେଖିଲାବେଳେ ଏଥିରେ ଲୋକ ଉପାଦାନର ପ୍ରୟୋଗ କଥା ମୁଁ ଭାବି ନ ଥିଲି । ପରେ ସମାଲୋଚକମାନେ ଏହା ନିରୂପିତ କରିଛନ୍ତି ।

ପ୍ରଶ୍ନ - ସାମ୍ପ୍ରତିକ କବିତାରେ ଅନେକ କବି ନିଜ କବିତାରେ 'ତୁମେ' ଶବ୍ଦଟି ବ୍ୟବହାର କରୁଛନ୍ତି । ଆପଣଙ୍କ ପ୍ରାୟ କବିତାରେ ମଧ୍ୟ ଏହି 'ତୁମେ' ସମ୍ବୋଧନ ଦେଖିବାକୁ ମିଳେ । ଏ 'ତୁମେ' ଟି କିଏ ?

ଉତ୍ତର- କବିତାରେ ଉଚ୍ଚାରିତ 'ତୁମେ' ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ପ୍ରତୀକାତ୍ମକତା ଗ୍ରହଣ କରିଥାଏ । କେତେବେଳେ ପାଠକକୁ କେବେ ବା କବି ନିଜର ଅନ୍ତଃସତ୍ତାକୁ ସଂବୋଧନ କରିଥାଏ, କେବେ ପ୍ରେମାସ୍ପଦକୁ ତ କେତେବେଳେ ପ୍ରକୃତିକୁ, କେବେ ବା ଈଶ୍ୱର- ଉପରୋକ୍ତ ଭାବେ କବିଟିଏ ବିଭିନ୍ନ ସତ୍ତାଠାରେ 'ତୁମେ'କୁ ଆରୋପ କରିଥାଏ ।

ପ୍ରଶ୍ନ- ମିଥ୍ କାହିଁକି ଦରକାର କରେ ଜଣେ କବି ?

ଉତ୍ତର- ମିଥ୍ କେବଳ କବିତାକୁ ନୁହେଁ-ସାହିତ୍ୟ ଓ କଳାକୁ ଅଧିକ ସୁନ୍ଦର ଓ ସଂପ୍ରେଷଣକ୍ଷମ କରିଥାଏ । କବିତାରେ ଏହି ମିଥ୍ ପ୍ରୟୋଗ ହୋଇଥାଏ- ସମ୍ପୂର୍ଣ୍ଣ କବିତା ପୁସ୍ତକରେ, ବା ଗୋଟିଏ ଗୋଟିଏ କବିତାରେ କିମ୍ବା କବିତାଂଶରେ ଚମକି ଉଠିଥାଏ ମିଥ୍‌ର ଅଂଶବିଶେଷ । ତେବେ ମିଥ୍ ପୁରାଣକଳ୍ପ ହୋଇପାରେ, ଲୋକଉପାଦାନ ରୂପେ ବା

ଇତିହାସ କକ୍ଷ ଭାବରେ ପ୍ରଯୁକ୍ତ ହୋଇପାରେ ମଧ୍ୟ । ସମକାଳର ପ୍ରାସଙ୍ଗିକତାକୁ ନେଇ ମିଥ୍‌ର ନବକଳେବର ବିକଶିତ ହୋଇପାରେ ।

ପ୍ରଶ୍ନ- କବିତା ସଂକଳନ ଉପରେ ଲେଖାଯାଉଥିବା ସମାଲୋଚନା ପୁସ୍ତକକୁ ଚାକିରି କ୍ଷେତ୍ରରେ (ଅଧ୍ୟାପକ ଚାକିରି) ଗ୍ରହଣ କରାଯାଉଥିବା ସମୟରେ ମୂଳ ଲେଖାକୁ ଗୁରୁତ୍ୱ ଦିଆଯାଏ ନାହିଁ । ଏ ବିଷୟରେ ଆପଣଙ୍କ ମନ୍ତବ୍ୟ କ'ଣ ?

ଉତ୍ତର- ଯେ ଗୋଟିଏ ଦୁଃଖଦ ବିଷୟ । ଅନେକ 'ମାନେ ବହି' ଲେଖା ହୋଇଥାଏ । ସେଗୁଡ଼ିକ ମୂଲ୍ୟହୀନ । ମୂଳଲେଖା ହିଁ ପାଠକର ଚେତନାକୁ ରସାଣିତ କରେ ଓ ଅନୁସନ୍ଧିତ୍ସାକୁ ତୃପ୍ତ କରିପାରେ ।

ପ୍ରଶ୍ନ- ବର୍ତ୍ତମାନ ଲେଖୁଥିବା ତରୁଣ ତରୁଣୀଙ୍କୁ ଆପଣ କ'ଣ କହିବେ ?

ଉତ୍ତର- ତରୁଣ କବିମାନଙ୍କୁ ମୁଁ କ'ଣ କହିବି ? କହିଲେ ସେମାନେ ଶୁଣିବେ କି ? ଅନେକ ତରୁଣ କବିଙ୍କ ଭିତରେ ପ୍ରଚୁର ସମ୍ଭାବନା ରହିଛି । ସେହି ସଂଭାବନାକୁ ଚିହ୍ନି ସେମାନେ ତାହାର ବିକାଶ ଦିଗରେ ମନୋନିବେଶ କରନ୍ତୁ । ଯଶଲିପ୍‌ସାଠାରୁ ଦୂରେଇ ରୁହନ୍ତୁ । ସିଦ୍ଧି ବଳେ ବଳେ ଆସିଯିବ ।

ପ୍ରଶ୍ନ- 'ଶବରୀ' ସହିତ ଆପଣଙ୍କର ଏତେ ଆତ୍ମୀୟତା କିପରି ?

ଉତ୍ତର- ମୁଁ ନିଜେ 'ଶବରୀ'ର ସମାପ୍ତିପରେ 'ଆମୋକ୍ଷତପ' ଶୀର୍ଷକ ଗଦ୍ୟରଚନା କରିଛି । ସେଥିରେ ସବୁ ଲେଖିସାରିଛି । 'ଶବରୀ' ମୋ ଆତ୍ମାର ଏକ ଅଂଶ ଏବଂ 'ଶବରୀ' ପୁରାଣ ଅନୁସରଣରେ ଲେଖା ହୋଇ ନାହିଁ । ଶବରୀ ମୋକ୍ଷକାମୀ ନୁହନ୍ତି । ଚରିତ୍ର ଓ ଚେତନାରେ ସେ ଜୀବନ-କାମୀ । ରାମାୟଣର 'ଶବରୀ'ଙ୍କ ଠାରୁ ଭିନ୍ନ ।

ପ୍ରଶ୍ନ- 'ଅଧା ଅଧା ନକ୍ଷତ୍ର'ରେ ଯେଉଁ ଭାବ ବୈଚିତ୍ର୍ୟ ଆଣିବାକୁ ଚେଷ୍ଟା କରିଛନ୍ତି ଏଣିକି ସେହି କ୍ଷେତ୍ରରେ ଅଧିକ ଆଗ୍ରହୀ ହେବେ ବୋଲି ଆମେ ଆଶା କରିପାରିବୁ କି ?

ଉତ୍ତର- 'ଅଧା ଅଧା ନକ୍ଷତ୍ର'ରେ ବୈଚିତ୍ର୍ୟ କ'ଣ ମତେ ଜଣା ନାହିଁ । ହଁ, ମୋର ତୀବ୍ର ହୃଦୟାନୁଭୂତିକୁ ବିଭିନ୍ନ ବାଗରେ ମୁଁ ପ୍ରକାଶ କରିବାକୁ ଚେଷ୍ଟା କରିଛି । ପ୍ରତୀକ ଓ ଚିତ୍ରରଚନା ତ ରହିଛି । ରହିଛି ପୁଣି ଜୀବନର ବେଦନାବୋଧ । ଅପ୍ରାପ୍ତି, ପ୍ରାପ୍ତି, ଆନନ୍ଦ, ବିଷାଦ, ଯୁଗପତ୍ ରୂପ ପରିଗ୍ରହଣ କରିଛି । ମୋର ପ୍ରତ୍ୟେକ କବିତା ସଂକଳନ ନୂଆ ରୂପେ ଉଦ୍‌ଭାସିତ ହେଉ – ଏହା ମୁଁ ଆଶା କରେ ଓ ବିଶ୍ୱାସ କରେ ଯେ, ସଂକଳନଗୁଡ଼ିକ ସର୍ବଦା ନୂତନ ଭାବଦୃଶ୍ୟକୁ ଚିତ୍ରଣ କରିଥାଏ ।

ପ୍ରଶ୍ନ- ଆତ୍ମଜୀବନୀ ଲେଖିବାର ଇଚ୍ଛା କାହିଁକି ହେଲା:-

ଉତ୍ତର- ମୋ ଆତ୍ମକଥାରେ ତ ଏସବୁ ବର୍ଣ୍ଣିତ । ଜୀବନର ରାସ୍ତାରେ ଚାଲୁଚାଲୁ ଯେଉଁ ଚରିତ୍ରମାନ, ଦୃଶ୍ୟ ଓ ଅନୁଭବଗୁଡ଼ିକ ମତେ ଛଟପଟ କରୁଛନ୍ତି - ପ୍ରକାଶିତ ହେବାକୁ ଚାହୁଁଛନ୍ତି, ବିଶେଷତଃ ମୋ ବୋଉ ଓ ଆଇ ଉଭୟଙ୍କୁ ନେଇ କିଛି ଲେଖିବି ଭାବିଥିଲି । ତା'ତ ହେଲା ନାହିଁ । ବରଂ ଏଇ ଖଣ୍ଡିତାଂଶଗୁଡ଼ିକ ପତ୍ରପତ୍ରିକାରେ ଛପାହୋଇ ବିପୁଳ ଲୋକପ୍ରିୟତା ଲାଭ କଲା । ଭାବିଲି, ଏଗୁଡ଼ିକ ଏକତ୍ର କଲେ ଲୋକଙ୍କୁ ଭଲ ଲାଗିବ ବୋଧେ ।

ପ୍ରଶ୍ନ- ଆତ୍ମଜୀବନୀ ଲେଖିବାର ଅନୁଭୂତିଟି କିପରି ?

ଉତ୍ତର- ଅନୁଭୂତିଟି ନିଶ୍ଚୟ ରୋମାଞ୍ଚକର ।

ପ୍ରଶ୍ନ- ଆତ୍ମଜୀବନୀରେ ଉଲ୍ଲିଖିତ 'ବାଟର ବଣର ଗଛ' କବିତାଟି କେଉଁ ସଂକଳନରେ ଅଛି ?

ଉତ୍ତର- 'ବାଟର ବଣର ଗଛ' କବିତାଟି ୧୯୭୮ରେ ପ୍ରକାଶ ପାଇଥିବା ମୋର 'ସାହାଡ଼ା ସୁନ୍ଦରୀ' ସଂକଳନରେ ରହିଛି । ତାହାର ପ୍ରଥମ ସଂସ୍କରଣରେ ।

ପ୍ରଶ୍ନ- ଆତ୍ମଜୀବନୀରେ କୁହାଯାଇଥିବା ଭୂତ କଥା ପଢ଼ି ମୁଁ ସତରେ ଶୋଇପାରିଲିନି କେଜାଣି ଆପଣ କେମିତି ଶୋଇପାରୁଥିଲେ -

ଉତ୍ତର- ତୁମେ ନ ଶୋଇପାରିବ ବୋଲି ତ ମୁଁ ଭୂତ କଥା ଲେଖିଥିଲି - ତେବେ ସେ ସବୁ ମୋ ଅ'ଆ' ବିବର୍ଜିତା ଆଇଠାରୁହିଁ ଶୁଣିଥିଲି । ମୁଁ ତ ଶିଶୁ ଓ କିଶୋର କାଳରେ ଏ ସବୁ ଶୁଣିଥିଲି । ଶୋଇଲା ବେଳେ ପାଖରେ ବୋଉ କିମ୍ବା ଆଇ ଥାଆନ୍ତି । ଡରମାଡ଼ିଲେ ତାଙ୍କ କୋଳରେ ପଶିଯାଏ ।

ପ୍ରଶ୍ନ- ଆପଣ ରମାଦେବୀଙ୍କୁ ସ୍ୱଦେହରେ ଦେଖିଛନ୍ତି ?

ଉତ୍ତର- ମହୀୟସୀ ସ୍ୱର୍ଗତା ରମାଦେବୀଙ୍କୁ ଶୈଶବକାଳରୁ ମୁଁ ମୋ ସ୍ୱଚକ୍ଷୁରେ ଦେଖିଛି । ଚିଠି ଲେଖିଛି କୌଣସି ଅସହାୟାକୁ ତାଙ୍କ କେନ୍ଦ୍ରରେ ଭର୍ତ୍ତି କରିବାପାଇଁ । ଉତ୍ତର ବି ପାଇଛି । ସେ ଲେଖନ୍ତି ଚିଠିର ଶେଷରେ 'ରମାଦେବୀର ଆଶୀର୍ବାଦ' । ତାଙ୍କ ବାଖରାବାଦ ଘର ଓ ଭୂଦାନ ଅଫିସ୍‌କୁ ଯାଇଛି । ମୁଁ ତାଙ୍କ ଗାଁର ଝିଅ ବୋଲି ସେ ଗର୍ବ କରନ୍ତି, ଅବଶ୍ୟ ମୋତେ ଉତ୍ସାହ ଦେବାକୁ ସେପରି କହୁଥିବେ । ମୁଁ କ'ଣ ତାଙ୍କ ବ୍ୟକ୍ତିତ୍ୱର ନିକଟବର୍ତ୍ତୀ ବି ହୋଇପାରିବି ? ସାଧାରଣ ସ୍ୱାର୍ଥରେ ବନ୍ଧା ମୁଁ । ଇମ୍ପା ଶିଳ୍ପଗୋଷ୍ଠୀର 'ଶାରଳା ପୁରସ୍କାର' ତରଫରୁ ତାଙ୍କୁ ନିମନ୍ତ୍ରଣ କରିବାକୁ ମୁଁ ଓ ଶତପଥୀବାବୁ ତାଙ୍କ ପାଖକୁ ଯାଇଥିଲୁ । "ମୁଁ ବା କି ପାଠ ପଢ଼ିଛି - କ'ଣ ଜାଣିଚି ଯେ, ପୁରସ୍କାର, ସମ୍ବର୍ଦ୍ଧନା ନେବି ?" ତେବେ ସେ ଏକଥା କହିଥିଲେ ମଧ୍ୟ ଆସିଥିଲେ । ଭୁବନେଶ୍ୱରଠାରେ ସମ୍ବର୍ଦ୍ଧିତ ହୋଇଥିଲେ ।



# କବି ଡକ୍ଟର ପ୍ରତିଭା ଶତପଥୀଙ୍କ କୃତି ଓ କୃତିତ୍ୱ

ବି-୩ /୨, ଚନ୍ଦ୍ରମା ହାଉସିଂ କମ୍ପ୍ଲେକ୍ସ, ଖାରବେଳନଗର,
ୟୁନିଟ୍-୩, ଭୁବନେଶ୍ୱର-୧

ପିତା – ୰ ଡଃ ଚକ୍ରଧର ଶତପଥୀ

ମାତା – ୰ ହରିପ୍ରିୟା ଶତପଥୀ

ଗ୍ରାମ – ସତ୍ୟଭାମାପୁର, ଜି-କଟକ

ଜନ୍ମ – ୧୯୪୫

## କୃତି

କାବ୍ୟକବିତା:

* ଅସ୍ତ ଜହ୍ନର ଏଲିଜି (୧୯୬୯)
* ଗ୍ରସ୍ତ ସମୟ (୧୯୭୪)
* ସାହାଡ଼ା ସୁନ୍ଦରୀ (୧୯୭୮)
* ନିୟତ ବସୁଧା (୧୯୮୦, ୧୯୮୫)
* ନିମିଷେ ଅକ୍ଷର (୧୯୮୫) – ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ (୧୯୮୬)
* ମହାମେଘ (୧୯୮୮)
* ଶବରୀ (୧୯୯୧) ଇମ୍ପା ଶିଳ୍ପଗୋଷ୍ଠୀ ପ୍ରଦତ୍ତ ଶାରଳା ପୁରସ୍କାର ପ୍ରାପ୍ତ, (୧୯୯୨)
* ତନ୍ମୟ ଧୂଳି (୧୯୯୬)-କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ
* ଅଧା ଅଧା ନକ୍ଷତ୍ର (୨୦୦୧)-କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ବା ଜାତୀୟ ପୁରସ୍କାର ପ୍ରାପ୍ତ, ୨୦୦୧ ।
* କହି ନ ହେଲେ (୨୦୦୬)
* ତୁମ ପାଇଁ ଥରେ, ସବୁଥର...(୨୦୧୧)
* ଜବା କୁସୁମ ସଂକାଶଂ (୨୦୧୬)
* ଅଜରାମର (୨୦୧୯)

ନିବନ୍ଧ / ପ୍ରବନ୍ଧ/ ରମ୍ୟଗଳ୍ପ/ ଭ୍ରମଣ କାହାଣୀ/ ଜୀବନୀ/ ଆତ୍ମଜୀବନୀ/ ସାହିତ୍ୟ

**ସମାଲୋଚନା:**

- ✲ କଳ୍ପନାର ଅଭିଷେକ (୧୯୮୦, ୧୯୯୮)
- ✲ ସ୍ପନ୍ଦନର ଭୂମି (୧୯୯୩)
- ✲ ପ୍ରତିଫଳନ (୧୯୯୩)
- ✲ ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୯୯, ୨୦୦୬) ଭାରତୀୟ ସମାଲୋଚନା ମଣ୍ଡଳୀ ପୁରସ୍କାରପ୍ରାପ୍ତ)
- ✲ ଭାରତ ମାତାର ଲୁହ (୨୦୦୨)
- ✲ ବର୍ଣ୍ଣିଳ ଭୋଗପୁର... (୨୦୦୪)
- ✲ ସ୍ୱର୍ଗତା ସରଳାଦେବୀଙ୍କ ଜୀବନୀ (୨୦୦୮) ଏନ୍.ବି.ଟି. ଦ୍ୱାରା ପ୍ରକାଶିତ ।
- ✲ ଶୈଶବରୁ ସଂସାର (ଆତ୍ମକଥା) ପ୍ରଥମ ପ୍ରକାଶ-୨୦୦୮, ନୂତନ ପ୍ରକାଶ-୨୦୧୫
- ✲ ନାରୀ ଅସ୍ତିତ୍ୱର ବାସ୍ତବତା : ବିବର୍ତ୍ତିତ ଓଡ଼ିଆ କବିତା (୨୦୦୯)
- ✲ ନାରୀ ଜନ୍ମ (୨୦୧୫) ମନୋରମା ପ୍ରକାଶନ
- ✲ କବିତାର ଉଦ୍‌ଭାସନ ଓ ନବ୍ୟାଲୋଚନା (୨୦୧୫) ବିଦ୍ୟାପୁରୀ ।
- ✲ ଶ୍ରୀମତୀ ସରଳାଦେବୀଙ୍କ ବିସ୍ତୃତ ଜୀବନୀ-ବିଦ୍ୟାପୁରୀ (୨୦୧୭)

**ଅନୁବାଦ:**

- ✲ ଅରଣା ସ୍ୱପ୍ନର ରାତି (ନୋବେଲ ପ୍ରାପ୍ତ ପର୍ଲ ବକ୍‌ଙ୍କ ଉପନ୍ୟାସ)
- ✲ କ୍ରୀତଦାସ (ନୋବେଲ ପ୍ରାପ୍ତ ଆଇଜାକ୍ ସିଙ୍ଗରଙ୍କ ଉପନ୍ୟାସ)
- ✲ କିଶୋର ପ୍ରେମିକ (ଚିଂଘିଜ୍ ଆଇତ୍‌ମାତଭଙ୍କ ଉପନ୍ୟାସ)
- ✲ ନଗର ମନ୍ଥନ (ଡୋଗ୍ରୀ ଉପନ୍ୟାସ, 'ସାରଥି'ଙ୍କର ) କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ।
- ✲ କହ୍ଲଣ ଚରିତ (କାଶ୍ମୀରୀ କବିଙ୍କ ମନୋଗ୍ରାଫ୍) କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ
- ✲ ଭିନ୍ନ ଦେଶୀର ମୁହଁ (ଲାଟ୍‌ଭିଆନ୍ କବିତା ଅନୁବାଦ )
- ✲ ସୁବ୍ରମଣ୍ୟ ଭାରତୀ (ଏନ୍.ବି.ଟି. ଆନୁକୂଲ୍ୟରେ)
- ✲ ପ୍ରେମର ପାବନୀ ଫଲ୍‌ଗୁ- ଅନୂଦିତ ଉପନ୍ୟାସ ।

**ସମ୍ପାଦନା**

- ✲ ରୁଚିପୂର୍ଣ୍ଣ, ଅଭିନବ କବିତା ପତ୍ରିକା 'ଉଦ୍‌ଭାସ'ର ନିୟମିତ ସମ୍ପାଦନା ୨୦୦୩ ମସିହାଠାରୁ । ଏବଂ
  'ଇସ୍ତାହାର' ପତ୍ରିକାର ସହଯୋଗୀ ସମ୍ପାଦିକା ଭାବେ ୨୫ବର୍ଷ କାର୍ଯ୍ୟରତା ।

## କୃତିତ୍ୱ

* ପ୍ରଜାତନ୍ତ୍ର ଯୁବ କବି ପୁରସ୍କାର ୧୯୬୨
* ଆକାଶବାଣୀ ତରଫରୁ Nationl Synposium of poets New Delhi-୧୯୭୧
* ନୈନିତାଲ୍‌ଠାରେ ସର୍ବ ଭାରତୀୟ ଲେଖିକା ସଂସଦର ବାର୍ଷିକୋତ୍ସବରେ କବିତା ପାଠ-୧୯୭୫
* ବିଷୁବ କବିତା ପୁରସ୍କାର ୧୯୮୧
* ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ୧୯୮୬
* କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ୨୦୦୧
* କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ବା ଜାତୀୟ ପୁରସ୍କାର ୨୦୦୧
* କ୍ରିଟିକ୍ ସର୍କଲ ଇଣ୍ଡିଆ ପୁରସ୍କାର ୧୯୯୬
* S.B.I କବିତା ପୁରସ୍କାର
* SAIL କବିତା ପୁରସ୍କାର
* J.K. Paper କବିତା ପୁରସ୍କାର
* କବି ସୁଭଦ୍ରା କୁମାରୀ ଚୌହାନ କବିତା ସମ୍ମାନ (୨୦୦୭)
  (ଜାତୀୟ ହିନ୍ଦୀ ଏକାଡେମୀ, କଲିକତା ଓ H.R.D. ବିଭାଗ ନୂଆଦିଲ୍ଲୀର ମିଳିତ ଆନୁକୂଲ୍ୟରେ)
* ଉତ୍କଳ ସୂର୍ଯ୍ୟ ସମ୍ମାନ-ଏ.ଆର୍.ଏଫ୍ ତରଫରୁ (୨୦୦୮)
* କବି ସଚ୍ଚି ରାଉତରାୟ କବିତା ସମ୍ମାନ ୨୦୦୮-ଖୋର୍ଦ୍ଧା ଲୋକଉତ୍ସବ ତରଫରୁ
* ସାହିତ୍ୟ ପୃଥିବୀ ପୁରସ୍କାର ୨୦୧୧
* ଗଙ୍ଗାଧର ରଥ ଫାଉଣ୍ଡେସନ୍ ପକ୍ଷରୁ ସାହିତ୍ୟ ଭାରତୀ ପୁରସ୍କାର ୨୦୧୪
* ୨୦୦୩ରେ ଆମେରିକାର ନ୍ୟୁଜର୍ସିଠାରେ O.S.A.ସମ୍ମିଳନୀରେ 'କି' ନୋଟ' ବକ୍ତବ୍ୟ ପ୍ରଦାନ
* ମରିସସ୍ ଠାରେ ହିନ୍ଦୀ ଏକାଡେମୀ ଓ ଭାରତୀୟ କବିତାର ସଭାରେ ସଭାପତିତ୍ୱ ।
* ଆଜୀବନ ରଚନା ସମ୍ମାନ (ଭୁବନେଶ୍ୱର ପୁସ୍ତକମେଳା ୨୦୦୬
* ସଚ୍ଚିରାଉତରା କବିତା ସମ୍ମାନ (ଭୁବନେଶ୍ୱର ପୁସ୍ତକମେଳା ୨୦୧୫)
* ଯଦୁନାଥ କବିତା ସମ୍ମାନ

* ଅପୂର୍ବା 'କବିତା ଗୌରବ' ପୁରସ୍କାର
* Rock Pebbles Poetry Award
* ଯୁଗଶ୍ରୀ, ଯୁଗନାରୀ କବିତା ପୁରସ୍କାର
* କବି ଦୀପକ ମିଶ୍ର କବିତା ପୁରସ୍କାର
* ପ୍ରାଣନାଥ କବିତା ସମ୍ମାନ
* NALCO Foundation Day Award-୨୦୧୭
* ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ଭୋପାଳ ଠାରେ ଜାତୀୟ ସନ୍ଥକବି କବୀର ସମ୍ମାନ ୨୦୧୭, ରାଷ୍ଟ୍ରପତିଙ୍କଠାରୁ ପୁରସ୍କାର ଗ୍ରହଣ ।
* ଅନ୍ୟାନ୍ୟ ଅନେକ ସାରସ୍ୱତ ଅନୁଷ୍ଠାନ ତରଫରୁ ସଂବର୍ଦ୍ଧନା ।

ଇଂରାଜୀ ଓ ଭାରତୀୟ ଭାଷାରେ ପ୍ରକାଶିତ କବିତା ଗ୍ରନ୍ଥ :

* ସମୟ ନହିଁ ହୈ: ଚୁନୀହୁଇ କବିତାଏଁ-ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦଗାତା ୧୯୯୪ ରାଧାକୃଷ୍ଣ ପ୍ରତିଷ୍ଠାନ, ନୂଆଦିଲ୍ଲୀ ।
* ଶବରୀ, ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦ୍‌ଗାତା ୧୯୯୬ ବାଣୀ ପ୍ରକାଶନ, ନୂଆଦିଲ୍ଲୀ, ୨ୟ ସଂସ୍କରଣ ୨୦୧୫, ଭୁବନେଶ୍ୱର ।
* ଅଧା ଅଧା ନକ୍ଷତ୍ର-ଅନୁବାଦ: ଡଃ ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୨, ମେଧାବୁକ୍ସ, ନୂଆଦିଲ୍ଲୀ
* ତୁହ୍ମାରେ ଲିୟେ ହର୍‌ବାର୍- ୨୦୧୫ ବାଣୀ ପ୍ରକାଶନ, ନୂଆଦିଲ୍ଲୀ
* ତନ୍ମୟ ଧୂଳି-ଅନୁବାଦ: ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୪, ୨୦୧୫ କେନ୍ଦ୍ର ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ, ପ୍ରକାଶନ ।
* A Time of Rising : Translation: Padmashree Poet Laureate Jayanta Mohapatra, Publisher: Har-Ananda Publication, New Delhi-୨୦୦୧.
* If Left Unsaid...translation by C.N.Swamy I.A.S. (Rtd) Publication Grassroots, Kolkata
* Enchanted Dust: Translation: R.P. Samal, Central Sahitya Academy, New Delhi.
* Dhoor Kamni (Punjabi): Translation: Dr. Vanita, Central Sahitya Academy, New Delhi.

* Magan Dhuli (Rajsthani) : Translation: Sri Atul Kumar Sharma, Central Sahitya Academy, New Delhi.
* Tanmaya Dhulee (Telugu) Tanslation : Prof. N. Gopi, Central Sahitya Academy, New Delhi.
* Vasikarikkum Dhoosi (Tamil) Tr. by Mrs. Madhumita, Central Sahitya Academy, New Delhi.
* ମରାଠୀ ଭାଷାରେ ଶ୍ରୀମତୀ ରାଧା ଯୋଗଲେକରଙ୍କ ଦ୍ୱାରା କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ଅନୂଦିତ ହୋଇ 'ହେ ତନ୍ମୟ ଧୂଳି' ପ୍ରକାଶିତ ।
* Tanmaya Dhuli (Malayalam): - Trans. Poet Attoor Ravi Verma. Publication Sahitya Akademi, Chennai.
* ତନ୍ମୟ ଧୂଳି (ଗୁଜୁରାଟୀ)- Trans. Renuka Sriram Soni, Publication Sahitya Akademi, Western Zone.
* ବଙ୍ଗଳାରେ ଡଃ ମୃଦୁଲା ମିଶ୍ର ଓ ଡଃ ସିପ୍ରା ରାୟଙ୍କ ଦ୍ୱାରା ଅନୂଦିତ ଓ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ।
* କୋଂକଣୀ ଭାଷାରେ ଅନୂଦିତ ଅନୁବାଦିକା: ନୂତନ ସଖର ଦାଣ୍ଡେ ପ୍ରକାଶିତ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ।
* ସାନ୍ତାଳୀ ଭାଷାରେ 'ମୋନ୍ ଗାବାନ୍ ଧୂଳି' ଅନୁବାଦିକା ପଦ୍ମଶ୍ରୀ ଡଃ ଦମୟନ୍ତୀ ବେଶ୍ରା ।
* ସମୁଦାୟ ୧୩ ଗୋଟି ଭାରତୀୟ ଭାଷାରେ 'ତନ୍ମୟ ଧୂଳି' ଅନୂଦିତ ଓ ପ୍ରକାଶିତ ।
* ଆସାମୀ ଭାଷାରେ ପ୍ରକାଶୋନ୍ମୁଖୀ । କନ୍ନଡ଼ ଭାଷାରେ ମଧ୍ୟ ।

କବି ପ୍ରତିଭା ଶତପଥୀଙ୍କର କେତେକ କବିତା ଫ୍ରେଞ୍ଚ, ସ୍ପାନିଶ୍, ଆରବିକ୍ ଓ ହଂଗେରିୟାନ୍ ତଥା ତେଲୁଗୁ ଭାଷାରେ ଅନୂଦିତ ଓ ପ୍ରକାଶିତ ।

---



ଯଶସ୍ୱିନୀ କବି ପ୍ରତିଭା ଶତପଥୀ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଅନେକ ସମ୍ମାନ ଓ ପୁରସ୍କାରରେ ଅଭିଷିକ୍ତା ହୋଇଛନ୍ତି । ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ସେ କବିତା ରଚନାରେ ବ୍ୟାପୃତ ଥିଲେ ହେଁ ତାଙ୍କର ବିଶ୍ଳେଷଣାତ୍ମକ ଦୃଷ୍ଟିଟି ମଧ ପ୍ରମୁଖ ବିଶିଷ୍ଟତା ଦାବି କରେ । ୧୯୮୦ ମସିହାରୁ ଏଯାବତ୍ ସେ ରଚନା କରିଥିବା ଚାରିଗୋଟି କବିତା-ବୀକ୍ଷଣ ଗ୍ରନ୍ଥ ଉକ୍ତ ଉତ୍କର୍ଷର ପରିଚୟ ଦିଏ । ରଚନାତ୍ମକତାର ନିରୀକ୍ଷଣରେ ମନନଶୀଳତା, ରସବୋଧ, ଔଚିତ୍ୟର ସଂଯୋଗ ହେତୁ ଏହି ପୁସ୍ତକଗୁଡ଼ିକ ପାଠକକୁ ମୌଳିକତାର ସ୍ୱାଦ ପରିବେଷଣ କରିଥାଏ । ଏ ସବୁଥିରେ ତତ୍ତ୍ୱ ବା ତଥ୍ୟର ଉଚ୍ଚଘୋଷ ଅନୁପସ୍ଥିତ ।

ଅଥଚ, ମର୍ମଜ୍ଞ କବି, ପାଠକ ଓ କାବ୍ୟରସିକ ବ୍ୟକ୍ତିଙ୍କ ନିକଟରେ ଏସବୁ ଆଲୋଚନାର ଆବେଦନ ପ୍ରଚୁର । ତାଙ୍କ ଆଲୋଚନାତ୍ମକ ଗ୍ରନ୍ଥଗୁଡ଼ିକର ଏକାଧିକ ସଂସ୍କରଣ ମଧ ପ୍ରକାଶ ପାଇସାରିଛି । ସେହି ଅନୁକ୍ରମରେ ସଦ୍ୟ ପ୍ରକାଶିତ 'ସ୍ମୃତି ଓ ସ୍ମାରକୀ : କିଛି ଆଲେଖ୍ୟ, କିଛି ଅଭିବ୍ୟକ୍ତି' ପୁସ୍ତକଟି ଏକ ମହାର୍ଘ ସଂଯୋଗ ।








ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
Email : contact@vidyapuri.com Website : www.vidyapuri.com